କୁଞ୍ଜରକର୍ଣ୍ଣିଙ୍କୁ ସ୍ୱାୟତ୍ତ କଲେ । ଇତିମଧ୍ୟରେ ଅଶୋକ ସ୍ୱପ୍ନରେ କୁନାଲଙ୍କ ମୁଖ ବିଶୁଷ୍କ ଓ ବିବର୍ଣ୍ଣ ହୋଇ ଯାଇଥିବାର ଦେଖି ଏବଂ ଜ୍ୟୋତିଷିମାନଙ୍କଠାରୁ ସ୍ୱପ୍ନଦ୍ୱାରା କୁନାଲଙ୍କର ପ୍ରାଣହାନି ଅଥବା ଦର୍ଶନଶକ୍ତିର ବିନାଶ ସୂଚିତ ହେଉଅଛି ବୋଲି ଶୁଣି ନିତାନ୍ତ ଦୁର୍ମନାୟମାନ ହୋଇ କିଛିକାଳ ରାଜକାର୍ଯ୍ୟରୁ ବିରତ ହେଲେ । ଏହି ଅବସରରେ କୁନାଲଙ୍କର ଚିରାନିଷ୍ଟକାରିଣୀ ତାହାଙ୍କର ବିମାତା ତିଷ୍ୟରକ୍ଷିତା କୁଟିଳ କୌଶଳଦ୍ୱାରା ମହାରାଜଙ୍କର ମୋହର ହସ୍ତଗତ କରି ଉକ୍ତ ମୋହରଦ୍ୱାରା ଅଙ୍କିତ ଖଣ୍ଡିଏ ଆଦେଶପତ୍ର ଲେଖାଇ ପୂର୍ବୋକ୍ତ କୁଞ୍ଜରକର୍ଣ୍ଣି ନିକଟକୁ ଏହି ଆଜ୍ଞା ପ୍ରେରଣ କଲେ ଯେ ସେ ପତ୍ର-ପ୍ରାପ୍ତି ମାତ୍ରକେ କୁନାଲଙ୍କର ନେତ୍ରଦ୍ୱୟ ଉତ୍ପାଟନ କରାଇବ । ଆଦେଶପତ୍ର ଯଥାସ୍ଥାନରେ ଉପସ୍ଥିତ ହେଲା ଏବଂ କୁନାଲ ଏପରି ଆଜ୍ଞା ଆସିଥିବାର ସମ୍ବାଦ ଅବଗତ ହେଲାକ୍ଷଣି କିଂକର୍ତ୍ତବ୍ୟବିମୂଢ଼ କୁଞ୍ଜରକର୍ଣ୍ଣି ନିକଟକୁ ଯାଇ ଆଦେଶଲିପି ପାଠ କଲେ ଏବଂ ସେଥିରେ ଅଶୋକଙ୍କର ନାମର ମୋହର ଥିବାର ଦେଖି କହିଲେ, "କୁଞ୍ଜରକର୍ଣ୍ଣି ! ଏହିକ୍ଷଣି ରାଜାଦେଶ ପାଳନ କର, ନତୁବା ଏହି ଅସିଦ୍ୱାରା ତୁମ୍ଭର ଶିରଚ୍ଛେଦନ କରିବି ।" କୁଞ୍ଜରକର୍ଣ୍ଣି ଅଗତ୍ୟା ଜଣେ ଚଣ୍ଡାଳଦ୍ୱାରା ସେହି ନିଷ୍ଠୁର ଆଦେଶକୁ କାର୍ଯ୍ୟରେ ପରିଣତ କରାଇଲେ । ଏଥି ଉତ୍ତାରେ ଅନ୍ଧୀଭୂତ କୁନାଲ ଯତିବେଶରେ ଅତି କ୍ଲେଶରେ ବହୁକାଳ ଭ୍ରମଣ କରି ପାଟଳିପୁତ୍ର ନଗରରେ ଉପସ୍ଥିତ ହୋଇ ଅର୍ଦ୍ଧରାତ୍ର ସମୟରେ ରାଜପ୍ରାସାଦର ଅନତିଦୂରରେ ବଂଶୀବାଦନ କରିବାକୁ ଲାଗିଲେ । ଅଶୋକ ସେହି ଅମୃତମୟ ଧ୍ୱନି ଶୁଣି ଦିବ୍ୟାନନ୍ଦରସରେ ଅଭିଷିକ୍ତ ହୋଇ ପ୍ରାତଃକାଳରେ ବାଦକଙ୍କୁ ଅଣାଇ ଦେଖିଲେ ଯେ ସେ ତାହାଙ୍କର ପ୍ରାଣାଧିକ ତନୟ କୁନାଲ । କୁନାଲଙ୍କୁ ଅନ୍ଧ ଭିକ୍ଷୁବେଶଧାରୀ ଦେଖି ସେ ଏକାନ୍ତ କ୍ଷୁବ୍ଧ ଓ ବିସ୍ମିତ ହୋଇ କାରଣ ପଚାରିଲେ, କିନ୍ତୁ ସେ କୌଣସି ଉତ୍ତର କଲେ ନାହିଁ । ପରେ ଅନୁସନ୍ଧାନଦ୍ୱାରା ତଥ୍ୟ ବୁଝି ପାରି କ୍ରୂର ମହିଷୀ ତିଷ୍ୟରକ୍ଷିତାର ଶିରଚ୍ଛେଦନ ନିମିତ୍ତ ଉଦ୍ୟତ ହେଲେ, କିନ୍ତୁ କୁନାଲ ଦୟାବତାର ବୁଦ୍ଧଙ୍କର ପବିତ୍ର ନାମ ଉଚ୍ଚାରଣ କରି ପିତାଙ୍କର କୋପ ଶାନ୍ତ କଲେ ।

ଅଶୋକଙ୍କର ଏକମାତ୍ର ସହୋଦର ବୀତଶୋକ ଏକସମୟରେ କତିପୟ ବୌଦ୍ଧଧର୍ମଦ୍ୱେଷୀ ବ୍ରାହ୍ମଣମାନଙ୍କ ପ୍ରରୋଚନାରେ ଭ୍ରାତୃବିରୋଧୀ ହୋଇଥିଲେ, କିନ୍ତୁ ପରେ ଅଗ୍ରଜଙ୍କ ଧର୍ମଗୁରୁ ଉପଗୁପ୍ତଙ୍କ ନିକଟରେ ଶରଣାପନ୍ନ ହୋଇ ବୌଦ୍ଧଧର୍ମର ଦୀକ୍ଷା ଗ୍ରହଣପୂର୍ବକ ସନ୍ନ୍ୟାସ ଅବଲମ୍ବନ କଲେ ।

କତିପୟ ଇଉରୋପୀୟ ପ୍ରାଚ୍ୟପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ ଅସାମାନ୍ୟ ଅଧ୍ୟବସାୟ ସହକାରେ ଅଶୋକଙ୍କର ଅନୁଶାସନଗୁଡ଼ିକ ପାଠ କରି ପ୍ରକାଶ କରିଅଛନ୍ତି । ସେହି ଲିପିଗୁଡ଼ିକ ମଧ୍ୟରେ କେତେକ ଖଣ୍ଡଶୈଳକଳେବରରେ, କେତେକ ଗୁମ୍ଫାମାନଙ୍କରେ ଏବଂ କେତେକ ସମୁଚ୍ଚସ୍ତମ୍ଭମାନଙ୍କରେ ଖୋଦିତ ହୋଇଥିବାର ଦେଖାଯାଏ । ଶୈଳାଙ୍କିତ ଘୋଷଣାଗୁଡ଼ିକ ତାହାଙ୍କର ରାଜତ୍ୱର ତ୍ରୟୋଦଶ ଏବଂ ଚତୁର୍ଦ୍ଦଶ ବର୍ଷ ମଧ୍ୟରେ ଏବଂ ସ୍ତମ୍ଭଲିଖିତ ଘୋଷଣାଗୁଡ଼ିକ ସପ୍ତବିଂଶ ଓ ଅଷ୍ଟବିଂଶ ବର୍ଷ ମଧ୍ୟରେ ଖୋଦିତ ହୋଇ-

ଥିଲା । ଅଶୋକ ସପ୍ତତ୍ରିଂଶଦ୍‌ବର୍ଷ, ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୬୯ ଅବ୍ଦରୁ ୨୨୨ ଅବ୍ଦ ପର୍ଯ୍ୟନ୍ତ ସାମ୍ରାଜ୍ୟଲକ୍ଷ୍ମୀ ସମ୍ଭୋଗ କରି ଅବଶେଷରେ ଧର୍ମପ୍ରଚାରାର୍ଥ ସସାଗରା ଧରା ବୌଦ୍ଧସଙ୍ଘଙ୍କୁ ଦାନ କରି ଏବଂ ନିଜେ ଭିକ୍ଷୁବ୍ରତ ଗ୍ରହଣ କରି ନଶ୍ୱର ଦେହ ପରିତ୍ୟାଗ କରିଥିଲେ ।

ଭାରତର ବିଭିନ୍ନ ଅଂଶରେ ପାଞ୍ଚଗୋଟି ଶୈଳଦେହରେ ଶୈଳଲିଖିତ ଅନୁଶାସନଗୁଡ଼ିକ ବର୍ତ୍ତମାନ ଅଛି । ପ୍ରଥମଟି ଭୁବନେଶ୍ୱରର ଅଦୂରବର୍ତ୍ତୀ ଦୟାନଦୀତୀରସ୍ଥ ଧଉଳିଗିରି, ଦ୍ୱିତୀୟଟି ଗଞ୍ଜାମଜିଲ୍ଲାସ୍ଥିତ ଜୋଗଡ଼ା ପର୍ବତ, ତୃତୀୟଟି ଗୁଜରାଟସ୍ଥିତ ଗିର୍ଣ୍ଣାର ପର୍ବତ, ଚତୁର୍ଥଟି ଯମୁନାତଟସ୍ଥ ହିମାଳୟମଧ୍ୟବର୍ତ୍ତୀ ଖାଲସିଗିରି ଏବଂ ପଞ୍ଚମଟି ସିନ୍ଧୁନଦୀତୀରବର୍ତ୍ତୀ ଅଟକନଗରନିକଟସ୍ଥ କପର୍ଦ୍ଦିଗିରି । ପ୍ରତ୍ୟେକ ଶୈଳରେ ଚତୁର୍ଦ୍ଦଶ ଗୋଟି ଅନୁଶାସନ ଲିପିବଦ୍ଧ ହୋଇଅଛି । ପ୍ରଥମ ଅନୁଶାସନରେ ଜୀବବଧ ନିଷେଧ; ଦ୍ୱିତୀୟରେ ରୁଗ୍ଣ ମନୁଷ୍ୟ ଓ ପଶୁମାନଙ୍କ ଚିକିତ୍ସା ଓ ସେବା ନିମିତ୍ତ ଆୟୋଜନ; ତୃତୀୟରେ ବୌଦ୍ଧଧର୍ମର ମାହାତ୍ମ୍ୟ କୀର୍ତ୍ତନ ନିମିତ୍ତ ପ୍ରତି ପଞ୍ଚମ ବର୍ଷରେ ମହୋତ୍ସବର ଅନୁଷ୍ଠାନବିଧି; ଚତୁର୍ଥରେ ନିଜର ପୁତ୍ର ଓ ପୌତ୍ର ଏବଂ ବଂଶଧରମାନଙ୍କ ପ୍ରତି ଧର୍ମରକ୍ଷା ଏବଂ ଧର୍ମପ୍ରଚାର ନିମିତ୍ତ ଉପଦେଶ; ପଞ୍ଚମରେ ଧନିଦରିଦ୍ରନିର୍ବିଶେଷରେ ସକଳ ସମ୍ପ୍ରଦାୟ ମଧ୍ୟରେ ସ୍ୱଦେଶରେ ଏବଂ ବିଦେଶରେ ଧର୍ମପ୍ରଚାର ନିମିତ୍ତ ଧର୍ମମହାମାତ୍ର ବା ପରିବ୍ରାଜକ ଧର୍ମାଚାର୍ଯ୍ୟମାନଙ୍କର ନିଯୁକ୍ତି; ଷଷ୍ଠରେ ପ୍ରଜାଙ୍କଠାରେ ରାଜା ଋଣୀ ଏହି ଉଚ୍ଚଭାବ ଉପଲବ୍ଧି କରି ପ୍ରଜାଙ୍କର ଦୁଃଖ ହ୍ରାସ ଓ ସୁଖ ବୃଦ୍ଧି ନିମିତ୍ତ ଆପଣାର ସମଗ୍ର ଜୀବନକୁ ସର୍ବଦା ବିନିଯୋଗ କରିବାର ପବିତ୍ର ସଂକଳ୍ପ; ସପ୍ତମରେ ସଂକୀର୍ଣ୍ଣ ସାମ୍ପ୍ରଦାୟିକ ବିଦ୍ୱେଷ ପରିବର୍ଜନପୂର୍ବକ ସାର୍ବଜନୀନମୈତ୍ରୀବ୍ରତ ସାଧନର ଅଭିପ୍ରାୟ; ଅଷ୍ଟମରେ ମୃଗୟାଦି ରାଜବ୍ୟସନର ଅନୌଚିତ୍ୟ ପ୍ରଦର୍ଶନ ଏବଂ ଦାନ, ସେବା ଓ ସତ୍‌ପ୍ରସଙ୍ଗର ପ୍ରଶଂସା; ନବମରେ ସକଳପ୍ରକାର ଦାନ ମଧ୍ୟରେ ଧର୍ମଦାନର ଅର୍ଥାତ୍ ଧର୍ମନୀତି ବିସ୍ତାର ନିମିତ୍ତ ଆନ୍ତରିକ ଯତ୍ନର ଶ୍ରେଷ୍ଠତା ପ୍ରଖ୍ୟାପନ; ଦଶମରେ ପ୍ରଜାମାନଙ୍କ ସତ୍କର୍ମାନୁରାଗଦର୍ଶନରେ ଆନନ୍ଦ ପ୍ରକାଶ; ଏକାଦଶରେ ଭକ୍ତି ପ୍ରୀତି ମୈତ୍ରୀଭାବର ସାଧନକୁ ପରମପୁରୁଷାର୍ଥ ବୋଲି ପ୍ରତିପାଦନ; ଦ୍ୱାଦଶରେ ସମ୍ପ୍ରଦାୟ ନିର୍ବିଶେଷରେ ଗୃହତ୍ୟାଗୀ ସନ୍ନ୍ୟାସୀ ଏବଂ ଗୃହସ୍ଥ ଉଭୟ ଶ୍ରେଣୀର ଲୋକମାନଙ୍କ ପ୍ରତି ଶ୍ରଦ୍ଧା ସମର୍ପଣ ଏବଂ ବିଭିନ୍ନ ସମ୍ପ୍ରଦାୟମାନଙ୍କର ପରସ୍ପର ନିନ୍ଦାର ଅଯୌକ୍ତିକତା ପ୍ରଦର୍ଶନ; ତ୍ରୟୋଦଶରେ କଳିଙ୍ଗଯୁଦ୍ଧର ନୃଶଂସତା ବର୍ଣ୍ଣନ, ନିଜର ଅନୁତାପ ଏବଂ ନବଦୀକ୍ଷାଗ୍ରହଣର ଉଲ୍ଲେଖ, ଭାରତର ଦକ୍ଷିଣାଞ୍ଚଳରେ ଚୋଳ ପାଣ୍ଡ୍ୟ ପ୍ରଭୃତି ପ୍ରଦେଶରେ ଏବଂ ଆଣ୍ଟିଓକସ ପ୍ରଭୃତି ଯବନ ଭୂପତିମାନଙ୍କ ରାଜ୍ୟରେ ବୌଦ୍ଧଧର୍ମ ପ୍ରଚାରର ସୁଫଳଦର୍ଶନରେ ମହୋଲ୍ଲାସ ପ୍ରକାଶ; ଚତୁର୍ଦ୍ଦଶରେ ନିଜ ସାମ୍ରାଜ୍ୟର ବିପୁଳବିସ୍ତୃତି ଏବଂ ଭବିଷ୍ୟତରେ ଧର୍ମପ୍ରଚାରାର୍ଥ ଅଧିକତର ଯତ୍ନ ପ୍ରୟୋଗାର୍ଥ ସଂକଳ୍ପର ଉଲ୍ଲେଖ ଲିପିବଦ୍ଧ ହୋଇଅଛି ।

ଗୁମ୍ଫାମାନଙ୍କରେ ଖୋଦିତ ଲିପି ଗୟା ନିକଟସ୍ଥ ନାଗାର୍ଜ୍ଜୁନ ପର୍ବତରେ, ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିରେ, ମଧ୍ୟପ୍ରଦେଶସ୍ଥ ରାମଗଡ଼ରେ ଏବଂ ଅନ୍ୟାନ୍ୟ କେତେକ ସ୍ଥଳରେ

ଦେଖାଯାଏ । କେଉଁ ଗୁମ୍ଫା କେଉଁ ରାଜା ବୌଦ୍ଧତପସ୍ୱୀମାନଙ୍କ ଉପକାରାର୍ଥ ନିର୍ମାଣ କରାଇଥିଲେ, ସେଥିର ବିବରଣ ସେମାନଙ୍କରେ ଖୋଦିତ ହୋଇଅଛି ।

ସ୍ତମ୍ଭଖୋଦିତ ଲିପି ଦିଲ୍ଲୀରେ, ଏଲାହାବାଦରେ, ତ୍ରିହୁତ ଜିଲ୍ଲାର ଗ୍ରାମବିଶେଷରେ ଏବଂ ଭୂପାଲସ୍ଥିତ ସାଞ୍ଚୀ ନାମକ ସ୍ଥାନରେ ପରିଦୃଷ୍ଟ ହୁଏ । ପୂର୍ବୋଲ୍ଲିଖିତ ଚତୁର୍ଦ୍ଦଶ ଅନୁଶାସନବିଧି ସ୍ତମ୍ଭାନୁଶାସନଗୁଡ଼ିକ ମଧ୍ୟ ନାନା ଧର୍ମୋପଦେଶରେ ଏବଂ ଅଶୋକଙ୍କର ଅନୁଷ୍ଠିତ ପ୍ରଜାହିତକର କାର୍ଯ୍ୟର ବିବରଣରେ ପରିପୂର୍ଣ୍ଣ ।

ଏହି ଅନୁଶାସନଲିପି କଥା ଚିନ୍ତା କଲେ କାହାର ହୃଦୟ ବିସ୍ମୟାପନ୍ନ ନ ହେବ ? କି ଗଭୀର ଧର୍ମାନୁରାଗ ! ଧର୍ମପ୍ରଚାରାର୍ଥ କି ଅତୁଲ୍ୟ ବ୍ୟାକୁଳତା ! କେବଳ ମନୁଷ୍ୟମାନଙ୍କ ପ୍ରତି ନୁହେ, ନିକୃଷ୍ଟ ଜୀବନମାନଙ୍କ ପ୍ରତି ସୁଦ୍ଧା କି ଅନୁପମ ଦୟା ! କି ସ୍ୱର୍ଗୀୟ ଅସାମ୍ପ୍ରଦାୟିକ ଉଦାରତା ! କି ଅମୃତମୟ ପ୍ରଜାବାତ୍ସଲ୍ୟ ଓ ଅମାୟିକ ଲୋକହିତୈଷଣା ! ଧନ୍ୟ ଅଶୋକ ! ଧନ୍ୟ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ! ଧନ୍ୟ ତୁମ୍ଭର ଦୟା ! ଧନ୍ୟ ତୁମ୍ଭର ବିଶ୍ୱାସ ।

---

## ଛମାଣ ଆଠଗୁଣ

(BY FAKIRMOHAN SENAPATI)

### ପ୍ରଥମ ପରିଚ୍ଛେଦ

ରାମଚନ୍ଦ୍ର ମଙ୍ଗରାଜ

ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର ଜମିଦାର, ମଧ୍ୟ ମହାଜନ—ନଗଦ ଟଙ୍କା କାରବାରଠାରୁ ଧାନର ମହାଜନୀ ବେଶି । ଶୁଣା ଯାଏ, ଆଡ଼େ ଓସାରେ ୪ କୋଶ ମଧ୍ୟରେ ଆଉ କାହାର କାରବାର ଚଳେ ନାହିଁ । ଲୋକଟି ବଡ଼ ଧାର୍ମିକ; ବର୍ଷ ମଧ୍ୟରେ ୨୪ଟା ଏକାଦଶୀ, ୪୦ଟା ଥିଲେ ମଧ୍ୟ ଗୋଟାଏ ଯେ ଛାଡ଼ି ପଡ଼ନ୍ତା, ଏ କଥା ଆମ୍ଭେମାନେ କହିବାକୁ ଅକ୍ଷମ । ଏକାଦଶୀ ଦିନ ତୁଳସୀପତ୍ର ଜଳ ମାତ୍ର ଅବଲମ୍ବନ । ସେ ଦିନ ଉପର ଓଳି ମଙ୍ଗରାଜଙ୍କର ଜଗା ଭଣ୍ଡାରୀ କଥା କହୁଁ କହୁଁ କହି ପକାଇଥିଲା, ପ୍ରତି ଏକାଦଶୀ ଦିନ ସଞ୍ଜବେଳେ ଦ୍ୱାଦଶୀ ପାରଣା ସକାଶେ ସାଆନ୍ତଙ୍କ ଶୋଇଲାଘରେ ସେରେ ଦୁଧ, ହିଶୁ ଖଇ, ନବାତ, ପାଚିଲା କଦଳି ରଖା ଯାଇଥାଏ । ସେ (ଜଗା) ଦ୍ୱାଦଶୀ ଦିନ ବଡ଼ି ସକାଳେ ତୁଚ୍ଛ ବାସନ ମାଜେ । ଏ କଥା ଶୁଣି ଜଣକେତେ ମୁହଁ ଚିହାଁଚିହିଁ ହୋଇ ମୁରୁକି ମୁରୁକି ହସିଥିଲେ । ଜଣେ କହି ପକାଇଲା, ବୁଡ଼ି ପାଣି ପିଇଲେ ମହାଦେବଙ୍କ ବାପ ବି ଜାଣି ପାରିବେ ନାହିଁ । ଏ କଥାର ଅର୍ଥ ସଫା ବୁଝା ଗଲା ନାହିଁ, ମାତ୍ର ଆମ୍ଭେମାନେ ଅନୁମାନ କରିନେଲୁଁ, ଏହା ନିନ୍ଦୁକର କଥା । ସେ କଥା ଛାଡ଼, ବରଞ୍ଚ ଆମ୍ଭେମାନେ ସାଆନ୍ତଙ୍କ ସପକ୍ଷରେ ଓକିଲତି କରି ପାରୁଁ, ଭଣ୍ଡ

ଶୂନ୍ୟ ହେବା କାର୍ଯ୍ୟଟା ଯେ ମଙ୍ଗରାଜଙ୍କଦ୍ୱାରା ଅନୁଷ୍ଠିତ ହୋଇଅଛି, ଏଥିର ପ୍ରତ୍ୟକ୍ଷ ସାକ୍ଷୀ କାହିଁ ? ଶୁଣିବା କଥା ବା ଅନୁମାନ କଥା ପ୍ରମାଣରୂପେ ଗ୍ରହଣ କରିବାକୁ ଆମ୍ଭେମାନେ କଦାପି ନାରାଜ । ଅଦାଲତର ହାକମମାନଙ୍କର ତ ଏହି ରାୟ । ଆଉ ଗୋଟିଏ କଥା ଦେଖ — ବିଜ୍ଞାନଶାସ୍ତ୍ର କହେ, ଜଳୀୟ ପଦାର୍ଥ ସବୁ ବାଷ୍ପାକାର ହୋଇ ଉଡ଼ିଯାଏ । ଦୁଧ ତ ଜଳୀୟ ପଦାର୍ଥ, ଜମିଦାର ଘର ଦୁଧ ବୋଲି ବିଜ୍ଞାନ-ବିଧି ଟଳିବ ପରା ! ପୁଣି ସେ ଘରେ ମୂଷା ଥିଲେ, କୁକୁର ଥିଲେ, ଚଟିଆ ଥିଲେ; ଖରପୋକ, ମଶା, ମାଛି ଅବା କେଉଁ ଘରେ ନ ଥାନ୍ତି ? ପେଟପାଟଣାପାଇଁ ଜଗତର ସମସ୍ତ ପ୍ରାଣୀ ଧାଉଁଅଛନ୍ତି ? ବିଶେଷରେ ସେମାନେ ମଙ୍ଗରାଜଙ୍କ ପରି ହରିଭକ୍ତି ବିଳାସ ଗ୍ରନ୍ଥ ମାହାତ୍ମ୍ୟ ମଧ୍ୟ ଶୁଣି ନାହାନ୍ତି । ଏଥିକୁ ମଙ୍ଗରାଜଙ୍କ ଧର୍ମନିଷ୍ଠା ପ୍ରତି ସନ୍ଦେହ କରିବା ମହାପାପ ବୋଲି ବିଚାର କରୁଁ । ଆହୁରି ମଧ୍ୟ ପାର୍ଶ୍ୱବର୍ତ୍ତୀ ଘଟଣାମାନଙ୍କ ପ୍ରତି ନଜର ରଖିବା ନିମନ୍ତେ ପ୍ରମାଣ ଆଇନରେ ବିଚାରକମାନଙ୍କ ପ୍ରତି ବିଶେଷ ବିଧି ଅଛି । ମଙ୍ଗରାଜେ ଉପୁନା କୁଁ ଅନ୍ତି ନାହିଁ — ମାଛ ଶୁକୁଆ କଥା ଛାଡ଼ ! ଦ୍ୱାଦଶୀ ଦିନ ବ୍ରାହ୍ମଣ ଭୋଜନ କରାଇ ତହିଁ ଉତ୍ତାରେ ପାରଣା କରନ୍ତି । ମଙ୍ଗରାଜେ ଭାରି ହିସିଆର ଲୋକ । ଏହି ବ୍ରାହ୍ମଣଭୋଜନରୂପ ମହତ୍‌କାର୍ଯ୍ୟରେ କେବେ ବିଘ୍ନ ଘଟି ପାରେ, ଏଥି ସକାଶେ ଜଣେ କେଉଟକୁ ମାଣେ ଓ ଜଣେ ଗୁଡ଼ିଆକୁ ମାଣେ ଏପରି ଦୁଇ ମାଣ ଜମି ଖଞ୍ଜି ଦେଇଅଛନ୍ତି । ଦ୍ୱାଦଶୀ ଦିନ ଭୋର କେଉଟ ଦୁଇ ନଉତି ଚୂଡ଼ା ଓ ଗୁଡ଼ିଆ କୋଡ଼ିଏ ପଲ ଗୁଡ଼ ଦାଖଲ କରିଯାଏ । ଗୋବିନ୍ଦପୁର ଶାସନ ୨୭ ଘର ବ୍ରାହ୍ମଣ ସମସ୍ତେ ନିମନ୍ତ୍ରିତ ହୋଇ ଆସନ୍ତି । ବେଳ ୨ ଘଡ଼ି ମଧ୍ୟରେ ବ୍ରାହ୍ମଣଭୋଜନ ହୋଇଯାଏ । ମଙ୍ଗରାଜେ ସ୍ୱୟଂ ବ୍ରାହ୍ମଣମାନଙ୍କୁ ପରିବେଷଣ କରନ୍ତି । ଥରେ ପତ୍ରରେ ଚୂଡ଼ା ଗୁଡ଼ ଲଗାଇ ଦେଇ ମଙ୍ଗରାଜେ ଉଚ୍ଚ ପାଟି କରି ହାତ ଯୋଡ଼ି କହନ୍ତି, ଗୋସାଇଁମାନେ କହନ୍ତୁ, ଆଉ କିଛି ଲୋଡ଼ା କି ନାହିଁ, ଢେର ଜଳପାନ, ଢେର ଗୁଡ଼ ଅଛି । ମାତ୍ର ମୁଁ ଜାଣେ, ଆପଣମାନଙ୍କ ଆଖି ବଡ଼, ପେଟ ସାନ; ଆପଣମାନଙ୍କ ପେଟକୁ ବଳି ପଡ଼ିଲାଣି । ଏଥି ଉତ୍ତାରେ କୌଣସି ପେଟବିକଳିଆ ବ୍ରାହ୍ମଣ ଜଳପାନ ମାଗି ବସିଲେ ପାଆନ୍ତେ ତିନିଆଙ୍ଗୁଳିଆ ପାଞ୍ଚ ସାତ ପୁଞ୍ଜା ଚୂଡ଼ା ଧରି ପତ୍ରକୁ ଫୋପାଡ଼ି ଦିଅନ୍ତି । ତହିଁ ଉତ୍ତାରେ ଗୋସାଇଁମାନେ ପର୍ଣ୍ଣ ହେଲା ପୂର୍ଣ୍ଣ ହେଲା କହି ଲମ୍ବା ଲମ୍ବା ହାକୁଟି ମାରି ଆଶୀର୍ବାଦ କରି ପତ୍ର ଛାଡ଼ନ୍ତି । ବ୍ରାହ୍ମଣଭୋଜନ ଉତ୍ତାରେ ଯେଉଁ ଏକ ନଉତି ଚୂଡ଼ା ଓ ଅଧାଅଧି ଗୁଡ଼ ବଳି ପଡ଼େ, ତାହା ଭକ୍ତିପୂର୍ବକ ମଙ୍ଗରାଜେ ସେବା କରନ୍ତି । ପାଠକ, ଆପଣ ପଚାରିବେ, ନଉତିଏ ଚୂଡ଼ାରେ ସତେଇଶ ଜଣ ବ୍ରାହ୍ମଣଙ୍କର ପେଟ କିପରି ପୂରିଲା ? ହରି ବୋଲ ଭାଇ, ହରି ବୋଲ ! ଏସବୁ କଥାର ଉତ୍ତର ଦେବାକୁ ଗଲେ ଆମ୍ଭମାନଙ୍କର ଆଉ ଲେଖା ଚଳିବ ନାହିଁ । ଯିଶୁ ଖ୍ରୀଷ୍ଟ ଦୁଇ ଖଣ୍ଡ ରୁଟିରେ ବାରଶତ ଲୋକ ଖୁଆଇଲେ, ପୁଣି ଗୃର ପାଛିଆ ବଳି ପଡ଼ିଲା । କାମ୍ୟକ ବନରେ ଶ୍ରୀକୃଷ୍ଣ ଦୁର୍ବାସାଙ୍କ ବାରହଜାର ଶିଷ୍ୟଙ୍କର ପେଟ ଟିକିଏ ଶାଗରେ ପୂରାଇ ଦେଇଥିଲେ । ଏହି ମହାପୁରୁଷଙ୍କ ହସ୍ତମହିମା ପ୍ରତି ଯଦି ଆପଣଙ୍କର ବିଶ୍ୱାସ ନ ଥାଏ, ତେବେ ଆମ୍ଭମାନଙ୍କ ମଙ୍ଗରାଜଚରିତ୍ର ପଢ଼ିବା ନିମନ୍ତେ ଅନୁରୋଧ କରିବାକୁ ସାହସ କରି ପାରବୁଁ ନାହିଁ । ଏପରି ଶୁଣା ଅଛି,

ତାଙ୍କର ମାଉସୀପୁଅ ଭାଇ ଶ୍ୟାମ ମଲ୍ଲେ ସହରକୁ ଯାଇଥିଲେ—ପାପ ଛପା ରହେ ନାହିଁ—ସେ କୁସଙ୍ଗରେ ପଡ଼ି ପିଆଜମିଶା କୋବି ଖାଇଥିବା ସାଆନ୍ତଙ୍କ ନିକଟରେ ଅଜଣା ରହିଲା ନାହିଁ । ଆଜିଯାଏ ରୁଢ଼ି ବଚି ରହି ଥାଆନ୍ତା, ମଙ୍ଗରାଜେ ଖୁବ୍ କମ ଖରଚରେ ଅର୍ଥାତ୍ ଶ୍ୟାମଙ୍କ ଦେଢ଼ବାଟି ପୈତୃକ ଲାଖରାଜରୁ ୧୫ ମାଣ ଜମି ମାତ୍ର ନେଇ ଖଲାସ କରିଦେଲେ । ମଙ୍ଗରାଜେ ଦିନେ ଶ୍ୟାମଙ୍କୁ ଡାକି ମୁରବିପଣିଆ କରି କହିଲେ, ଦେଖ ଶ୍ୟାମ, ଏଣିକି ହୁସିଆର ରହ, ମୁଁ ଥିଲି ବୋଲି ମୋ ମୁଲଜାରେ ପାଞ୍ଚଜଣ ତୋତେ ଠେକି ନେଲେ ସିନା, ନୋହିଲେ ତୁ ଏକାବେଳକେ କିରସ୍ତାନ ହୋଇ ଯାଇଥାନ୍ତୁ—ତୋ ସାତ ପୁରୁଷ ଅହିନରକରେ ପଡ଼ିଥାନ୍ତେ । ଆଉ ମୁଁ ବୋଲି ସିନା ତୋର ଜମି ମାଣ ୫ ଟଙ୍କାରେ ନେଲି, ଆଉ କେହି ଦୁଇ ଟଙ୍କାରେ ଛୁଁ ଅନ୍ତା ନାହିଁ । ସେତେବେଳେ ତୁ ତ ଭାଇ, କଣ ତୋତେ ପୋପାଡ଼ି ଦେବ ? ହେଲେ ବିପଦ ଆପଦ ବେଳକୁ ମୁଁ—ଭଲ ବେଳେ କେହି ନୁହେ ! ଏହି ସେ ଦିନ ଭୀମା ଗଉଡ଼ର ଫୌଜଦାରୀ ମକଦ୍ଦମାରେ ତୋତେ ଗୁହା ଦେବାକୁ କହିଲି, ଘରେ ଲୁଚିଲୁ, ଦେଖା ଦେଲୁ ନାହିଁ ।

ହାୟ ! ହାୟ ! ଯେଉଁ ନିନ୍ଦୁକମାନେ ଖ୍ରୀଷ୍ଟଙ୍କୁ କ୍ରୁଶରେ ଚଢ଼ାଇଲେ, ପରମା ସତୀ ସୀତାଙ୍କୁ ବଣକୁ ପଠାଇଲେ, ସେମାନଙ୍କ ବଂଶଧରମାନେ ଯେ ହରିବାସର ଉପବାସୀ ପରୋପକାରୀ ମଙ୍ଗରାଜଙ୍କ ଅଖ୍ୟାତି ରଟନା କରିବେ, ଏହା କିଛି ବିଚିତ୍ର ନୁହେ ! ନିନ୍ଦୁକମାନେ ଯେଉଁ କଥା କହି ବୁଲିବେ, ଆମ୍ଭମାନଙ୍କୁ ନାଚାର ହାଲତରେ ସେ କଥା ବୋଲିବାକୁ ହେଉଅଛି । ସେମାନେ କହନ୍ତି, ମଙ୍ଗରାଜେ ଚଉରକୋଶ ମଧ୍ୟରେ କାହାର ଗୋଖୋଜରୁ ଖୋଜେ ଜମି ରଖିଲେ ନାହିଁ । ବାକୀ ଥିଲା ଭାଇ, ଓର ଖୋଜି ଖୋଜି ଏତେଦିନେ ପାଇଲେ । ଶ୍ୟାମ ପିଆଜ ଖାଇ ବ୍ରାହ୍ମଣ ଭୋଜନ କରାଇଲା, ମଙ୍ଗରାଜଙ୍କ ଘର ମାଇକିନିଆମାନେ ଯେ ଚମ୍ପାକୁ ପଠାଇ ହାଟରୁ ପିଆଜ କିଣି ଆଣନ୍ତି ? କଥା ଛଳରେ ଆମ୍ଭେମାନେ ମାନିଗଲୁଁ, ଚମ୍ପା ପିଆଜ କିଣି ଆଣିଲା । ଖାଇବାର ପ୍ରମାଣ କାହିଁ ? "ପଲାଣ୍ଡୁଗୁର୍ଜରଞ୍ଚୈବ"—ମନ୍ତ୍ରରେ ଖାଇବାକୁ ସିନା ମନା, କିଣିଲେ ପତିତ ହେବ, ଏ ବିଧି କାହିଁ ? ମାତ୍ର ଭଦ୍ରଲୋକ ଘର ମହିଳାମାନଙ୍କ ଦୋଷାଦୋଷ ସମାଲୋଚନାକାରୀ ନିନ୍ଦୁକମାନଙ୍କ କଥାର ଉତ୍ତର ଦେବାକୁ ଆମ୍ଭେମାନେ ସମ୍ପୂର୍ଣ୍ଣ ନାରାଜ ।

---

# ବିବାସିନୀ

( By Ramsankar Ray. )

## ପ୍ରଥମ ପରିଚ୍ଛେଦ—ମନ୍ତ୍ରଣା

ଆଜି ପୌଷ ପୂର୍ଣ୍ଣିମା । ନିଶାକର ଆକାଶ-ମାର୍ଗର ପ୍ରାୟ ଷଷ୍ଠାଂଶ ପଥ ଅତିକ୍ରମ କରି ଧୀରଭାବରେ ଶୀତକିରଣ ଚତୁର୍ଦ୍ଦିଗରେ ସଞ୍ଚାର କରୁଅଛନ୍ତି । ଏଣେ ଶୀତକାଳ ଯୋଗୁଁ ସ୍ୱାଭାବିକ ଶୈତ୍ୟ ମାୟାମୟୀ ପ୍ରକୃତିକି ଅଭିଭୂତ କରି ଯେଉଁ ଜାଡ୍ୟ ସମ୍ପାଦନ କରିଅଛି, ତହିଁରେ ତ ଚତୁର୍ଦ୍ଦିକ ଗମ୍ଭୀରମୂର୍ତ୍ତି ଧରି ରହିବାର କଥା, ମାତ୍ର ତହିଁରେ ଶୀତାଂଶୁଙ୍କ ସୁଶୀତଳ କିରଣଜାଳ ନିପତିତ ହୋଇ ସୌମ୍ୟଭାବ ଜନ୍ମାଇଥିବାରୁ ଶୋଭାଟି ବିଚିତ୍ର ହୋଇଅଛି ।

ଦୁଇ ତିନି ଦିନ ହେଲା ଆକାଶମାର୍ଗରେ ମେଘମାଳ ଦେଖା ଯାଉଥିବା ହେତୁ ଶୀତ ଯାହା ଛାଡ଼ି ଯାଇଥିଲା, ଆଜି ପୂର୍ଣ୍ଣିମା ତିଥିଯୋଗୁଁ ଇନ୍ଦ୍ରଦେବଙ୍କ ଅଭିଷେକ-କ୍ରିୟାସମାରୋହସନ୍ଦର୍ଶନାର୍ଥ ମେଘମାଳ ଫେରି ଯାଇଥିବା ହେତୁ ପୁଣି ଶୀତ ଦେଖା ଦେଲା ଏବଂ ଦକ୍ଷିଣଦେଶରୁ ପ୍ରବାହିତ ହେଉଥିବା ଅନିଳକୁ ଉତ୍ତରାନିଳ ପୁନର୍ବାର ପରାଭୂତ କରି ମନ୍ଦ ମନ୍ଦ ବହୁଥିବାରୁ ସେ ଶୀତ କିଞ୍ଚିତ୍ ଅଧିକଭାବେ ଅନୁଭୂତ ହେଉଅଛି । କଳାକର ଦୁଇ ତିନି ଦିନ, ମେଘମାଳା ଯୋଗେ, ଆପଣାର କ୍ଷମତା ବିସ୍ତାର କରି ପାରୁ ନ ଥିବାଯୋଗୁଁ ଯେପରି ମନୋଦୁଃଖରେ ମଳିନ ହୋଇ ରହି ଥିଲେ ଆଜି ମେଘମାଳା ବାଟରୁ ଅପସୃତ ହୋଇଥିବା ଦେଖି ତୁହିନ-ବାଧିତ ଆହ୍ଲାଦରେ ଗଦଗଦ ହୋଇ ତୁହିନ-ଜାଲ ପୃଥିବୀକି ଆଚ୍ଛନ୍ନ କରି ଥିଲେ ସୁଦ୍ଧା ନିଜ ତୁହିନ-ଜାଲରେ ତାହାକୁ ଭେଦ କରି ଚରାଚରକୁ ଅପୂର୍ବ ଶୋଭାରେ ଅବଗାହିତ କରାଇଅଛନ୍ତି । ଆହା ! କି ମଧୁରଭାବ ! ସତେ କି ପ୍ରକୃତି ସତୀ ସ୍ନାନ କରି ଶୀତଯୋଗେ ଧବଳ-ବସନାବୃତା ହୋଇ ସ୍ନିଗ୍ଧଗମ୍ଭୀରଭାବରେ ସୁଧାକରଙ୍କ ସୁଧାଜ୍ୟୋତ୍ସ୍ନା ସେବନ କରୁଅଛନ୍ତି ! ସତେ କି ଚନ୍ଦ୍ରଦେବ ଆପଣାର ସୁଧାକର ନାମର ସାର୍ଥକତା ଦେଖି ଦ୍ୱିଗୁଣଭାବେ ଉଜ୍ଜ୍ୱଳ ହୋଇଅଛନ୍ତି । ବାସ୍ତବରେ ଶୀତକାଳରେ ବେଳେ ବେଳେ ଅଭାବନୀୟରୂପେ ଏପରି ରମଣୀୟ ସମୟ ଉପସ୍ଥିତ ହୋଇ ମନରେ ଅଭୂତପୂର୍ବ ଭାବ ଜନ୍ମାଇ ଦିଏ, ଆଉ ଅନୁଭାବୀ ସେ ଭାବ ହୃଦୟରେ ଅନୁଧାବନ କରୁ କରୁ ଯେ ବିମୁଗ୍ଧ ହୁଅନ୍ତି, ତାହା କିଛି ଆଶ୍ଚର୍ଯ୍ୟର ବିଷୟ ନୁହେ ।

ପାଠକେ ! ଥରେ ଏହି ରମଣୀୟ ସମୟରେ ସୁଦୂରପ୍ରବାହିନୀ କଳଭାଷିଣୀ ଗମ୍ଭୀରବାହିନୀ ମହାନଦୀର ମଧ୍ୟସ୍ଥିତ ନନ୍ଦିକେଶ୍ୱରୀ ପଠାକୁ ଆସନ୍ତୁ । ପଠାଟି ଉପରୋକ୍ତ ପ୍ରକୃତିର ଏକ ଅଂଶ, ସୁତରାଂ ତାହା ଯେ ସେହିପରି ଶୋଭାରେ ସ୍ନିଗ୍ଧଗମ୍ଭୀରଭାବ ଧାରଣ କରିଅଛି ବୋଲିବା ଦ୍ୱିରୁକ୍ତି ମାତ୍ର । ପଠାରେ ଜନମାନଙ୍କର ବାସ ନାହିଁ ।

କେବଳ କ୍ଷୁଦ୍ର କ୍ଷୁଦ୍ର ତଣ୍ଡିବୁଦା ଏବଂ ଠାବେ ଠାବେ ବୃହଦାକାର ବୃକ୍ଷମାନଙ୍କରେ ଆବୃତ ହୋଇ ଅରଣ୍ୟମୟ ଏବଂ ଭୟାବହ ହୋଇଅଛି । ପ୍ରସ୍ତରମୟ ଗୋଟିଏ ସମାଧି ପଶ୍ଚିମାଂଶରେ ଶୋଭା ପାଉଅଛି ଏବଂ ତନ୍ନିକଟରେ ମହାବୀରମୂର୍ତ୍ତି ପ୍ରତିଷ୍ଠିତ ହୋଇ ସ୍ଥାନଟି ଶାସନ କରୁଅଛନ୍ତି । ଏଛଡ଼ା ଆଉ କିଛି ନାହିଁ ।

ଦେବାଳୟ ଶୁଣି ପାଠକେ ମନେ କରିଥିବେ, ନଦୀମଧ୍ୟବର୍ତ୍ତିନୀ ପଠାରେ ଦେବାଳୟ ଥିବାସ୍ଥଳେ ଅବଶ୍ୟ ଜଣେ ହେଲେ ସେବକ କିମ୍ବା ଅପର କେହି ସେଠାରେ ବାସ କରୁଥିବେ; କିନ୍ତୁ ସେ ଆଶା ପୃଥିବୀର ସମସ୍ତ ଆଶାପ୍ରାୟ ଅଳୀକ ମାତ୍ର । ନିନ୍ଦକାର ଆଶା ମାୟାବୀନିରୂପେ ଛଳନା କରି ଯେପରି ଲୋକରେ ଶିକ୍ଷା ଦେବା କାରଣ ସମାଧିରୂପ ଧାରଣ କରିତଃ ପଠାଟିକୁ ଅଧିକତର ଗମ୍ଭୀର କରିଅଛି, ସେହିପରି ଲୋକାଳୟବିହୀନ ପଠାସ୍ଥିତ ଦେବାଳୟରେ ମହାବୀରମୂର୍ତ୍ତି ପ୍ରତିଷ୍ଠିତ ହୋଇ ଲୋକରେ ମାୟାମୟ ଅନିଶ୍ଚିତ ସଂସାରରେ କୀର୍ତ୍ତିପ୍ରଭାବହିଁ ସାର ବୋଲି ଶିକ୍ଷା ଦେଉଅଛନ୍ତି । ସେବକ ସେଠାରେ କେହି ନାହିଁ । ଯାହାଙ୍କ ଭକ୍ତି ଜନ୍ମିଲା, ସେ ଦିନାକେତେ ଆସି ମହାବୀରଙ୍କୁ ଉପାସନା ବା ପୂଜା କଲେ ଅଥବା ସାଧନାଦ୍ୱାରା ତତ୍ତ୍ୱ ଘେନିବାରେ ବ୍ରତୀ ହେଲେ । ସେତକ ଗଲାରୁ ମହାବୀରଦେବ ନିର୍ଜନରେ ପୂଜାବିହୀନ ହୋଇ ପଡ଼ି ରହିଲେ । ସେହିପରି ଅନିତ୍ୟ ସଂସାରରେ ଅନିତ୍ୟ ଖେଳା ! ମହାବୀର କୀର୍ତ୍ତିଯୋଗେ ଲୋକରେ ପୂଜା ପାଉ-ଅଛନ୍ତି । ତାଙ୍କର ବିନାଶ ନାହିଁ, କୀର୍ତ୍ତି ଯାହାର ନାହିଁ ତାହାର ସିନା ବିନାଶ ହୁଏ । କୀର୍ତ୍ତି ଥିଲେ ଆଜି ନ ହେଲେ କାଲି ପୂଜା ପାଇବେ, ମାତ୍ର ମରଣ ନାହିଁ ଏ କଥା ନିଶ୍ଚୟ । ତେଣୁ କବିବାଣୀ କହିଅଛି, "କୀର୍ତ୍ତିର୍ଯସ୍ୟ ସ ଜୀବତି" ।

ପାଠକେ ! ମନେ କରୁଥିବେ, ଏଭଳି ପଠାକୁ ଶୀତଋତୁର ରାତ୍ରିକାଳରେ ଡାକିବାର କି ପ୍ରୟୋଜନ । ବସନ୍ତ ବା ଗ୍ରୀଷ୍ମ କାଳରେ ବାୟୁସେବନ ବା ଆମୋଦ ପ୍ରମୋଦ ନିମିତ୍ତ ଏ ସ୍ଥାନ ପ୍ରଶସ୍ତ ଅଟେ । ସେ ଋତୁମାନଙ୍କରେ ଯେତେବେଳେ ପୂର୍ଣ୍ଣଚନ୍ଦ୍ର ପ୍ରଭାବରେ ସ୍ଥାନଟି ଅଚିନ୍ତନୀୟ ଭାବ ଧାରଣ କରି ଲୋକମାନଙ୍କୁ ସେଠାକୁ ଯାଇ ଆରାମ ଉପଭୋଗ ଅଥବା ଆମୋଦ ପ୍ରମୋଦ କରିବାକୁ ଡାକୁଥିବ, ତେତେବେଳେ ଅବା ସେଠାକୁ ଗଲେ କିଛି ଲାଭ ଅଛି, ମାତ୍ର ଭୁଷ୍ଟକୁ ଶୀତକାଳର ଶୀତରେ ନଦୀମଧ୍ୟଗତା ଶୀତ-ବାୟୁପୀଡ଼ିତା ପଠାକୁ ଯାଇ କି ଲାଭ ଅଛି ?

ତାହା ସତ । ସେପରି ଲାଭ କିଛି ନାହିଁ; ଲୀଳାମୟ ବିଶ୍ୱକର୍ତ୍ତାଙ୍କ ବିଶ୍ୱ-ସଂସାରରେ ସବୁ ପ୍ରକାର ଲୀଳା ଚାଲିଅଛି । ପଠା ଚତୁର୍ଦ୍ଦିଗସ୍ଥ ମହାନଦୀର ସୁଗଭୀର ପବିତ୍ର ବାରି ଚନ୍ଦ୍ର-ଜ୍ୟୋତ୍ସ୍ନାରେ ପ୍ରଫୁଲ୍ଲ ହୋଇ ଚକ୍ ଚକ୍ ଦିଶୁଅଛି । ଆମ୍ଭେ ତାହା ଦେଖିବାକୁ ଡାକୁ ନାହୁଁ କିମ୍ବା ପଠାସ୍ଥିତ ଗଛପତ୍ର ଋତୁପ୍ରଭାବ ଅନୁଧାବନ କରି ଗମ୍ଭୀରଭାବରେ ସୁଧାକରଙ୍କ କିରଣ-ସୁଧା ସେବନ କରୁଅଛନ୍ତି ତାହା ସୁଦ୍ଧା ଦେଖିବାକୁ ଡାକୁ ନାହୁଁ । ଅଥବା ବେଳେ ବେଳେ ଶୃଗାଳାଦି ହିଂସ୍ର ଜନ୍ତୁମାନଙ୍କର ବିକଟ ନିନାଦ କି ଯାହା ସ୍ଥାନଟିର

ସ୍ନିଗ୍ଧଗମ୍ଭୀର-ଭାବଯୁକ୍ତନୀରବତାକୁ କର୍କଶଭାବରେ ଭଗ୍ନ କରୁଅଛି ତାହା ମଧ୍ୟ ଶୁଣିବାକୁ ତାକୁ ନାହିଁ ।

ତାକଲୁଁ ଏ ଭଳି ଶୀତ ସମୟରେ ପ୍ରକାଣ୍ଡମୂର୍ତ୍ତି ଦୁଇଜଣ ଲୋକ ମହାବୀରଙ୍କ ସମ୍ମୁଖରେ ଉପବିଷ୍ଟ ହୋଇ ମହାନଦୀପରିବ୍ୟାପ୍ତ ପ୍ରଗାଢ଼ ଶୀତକୁ ନ ମାନି କି ମନ୍ତ୍ରଣା କରୁଅଛନ୍ତି ଶୁଣନ୍ତୁ ।

---

ଦ୍ୱିତୀୟ ପରିଚ୍ଛେଦ— କି ମନ୍ତ୍ରଣା ?

କି ମନ୍ତ୍ରଣା ? ଏ ମନ୍ତ୍ରଣାରେ କି ଏହିମାନେ ଏକା ସଂଲିପ୍ତ ଅଛନ୍ତି କି ଏହାଙ୍କ ସଙ୍ଗରେ ଆଉ କେଏ ଅଛି ? ଏ ପ୍ରଶ୍ନର ଉତ୍ତର ଅତି ସହଜ—ମନ୍ତ୍ରଣା ଗୁରୁତର । ଏ ମନ୍ତ୍ରଣାରେ ଜଣଙ୍କର ସର୍ବନାଶ ହେବ ଏବଂ ଏହି ମନ୍ତ୍ରଣାରେ ଏ ଦୁଇଜଣଙ୍କୁ ନେଇ ପ୍ରାୟ ୫୦ ଜଣ ଲୋକ ଲିପ୍ତ ଅଛନ୍ତି ।

ଯେ ଦୁଇଜଣଙ୍କର କଥା ଉପରେ ଉଲ୍ଲେଖ କଲୁଁ ସେମାନଙ୍କ ମଧ୍ୟରେ ଜଣେ ବାହାବଲୀନ୍ ଏବଂ ଆଉ ଜଣେ ବଲୀୟାର ସିଂହ ବୋଲି ପରିଚିତ । ତାଙ୍କ ଦଳର ସମସ୍ତ ଲୋକଙ୍କ ପରି ଏମାନେ ମହାବୀର ଉପାସକ—ବୃତ୍ତି ଡକାଇତି ।

ଲୋକ ଦୁହିଙ୍କି ଦେଖିଲେ ଯେପରି ସିଂହବ୍ୟାଘ୍ରାଦି ଦେଖି ମନରେ ଭୟ ଜାତ ହୁଏ ସେହିପରି ଏମାନଙ୍କର କାର୍ଯ୍ୟଗତିରୁ ମନରେ ଆଶ୍ୱାସ ନ ଜନ୍ମିବା ପର୍ଯ୍ୟନ୍ତ ଭାବୀ ଆଶଙ୍କାରେ ହୃତ୍କମ୍ପ ଜାତ ହେଉଥିବ । ସୁଦୀର୍ଘ ଶରୀର, ପ୍ରଶସ୍ତ ବକ୍ଷ, ସୁଦୀର୍ଘ ଜାନୁ, ପ୍ରସ୍ତରପ୍ରାୟ କଠିନ ସ୍ଥୂଳବାହୁ, ବିକଟାକାର ହସ୍ତଚର୍ଚ୍ଚିତ ଶ୍ମଶ୍ରୁ, ବଡ଼ ବଡ଼ ଲୋହିତ ଚକ୍ଷୁ, ଉନ୍ନତ-ଭ୍ରୁ ଏବଂ ଗମ୍ଭୀର-କଠିନ-ଲଲାଟ-ବିଶିଷ୍ଟ ଲୋକ ଦେଖି କାହା ମନରେ ଭୟ ନ ହେବ ? ଏମାନେ ଏଡ଼େ ବଲୀୟାନ୍ ଯେ ବଡ଼ ବଡ଼ ପଥରଘରମାନ ବାହୁ ପିଟି ଦୋହଲାଇ ଦେଇ ପାରନ୍ତି । ସୁରା ମାଂସ ପ୍ରଧାନ ଭୋଜନ । ଆପଣମାନଙ୍କ ମଧ୍ୟରେ ଯେପରି ରନ୍ଧନପ୍ରଣାଳୀ ପ୍ରଚଳିତ ଅଛି ତାହାକୁ ଏମାନେ ଗ୍ରାହ୍ୟ କରନ୍ତି ନାହିଁ— ପାଇଲେ ସମୟରେ କଞ୍ଚା ମାଂସ ଖାଇ ଯିବେ । ସିଂହବ୍ୟାଘ୍ରାଦି ହିଂସ୍ରକ ଜନ୍ତୁମାନଙ୍କ ପରି ଏମାନଙ୍କର ବୁଦ୍ଧି—ମନୁଷ୍ୟ ଅବୟବ ଯାହା ଧାରଣ କରିଅଛନ୍ତି ତେତିକି !

ଏଭଳି ଲୋକଙ୍କ ତେଜ କପରି, ପାଠକେ, ତହିଁର ଅବା ଅନ୍ୟ ପରିଚୟ କି ଦେବୁଁ ? ଏଭଳି ଶୀତରାତ୍ରିରେ କୌଣସି କଷ୍ଟ ଅନୁଭବ ନ କରି ବସ୍ତ୍ରବିହୀନ ହୋଇ ଯାହା ବସିଅଛନ୍ତି ତହିଁରୁ ଆପଣମାନେ ଜାଣି ପାରିବେ—ଆମ୍ଭର ବୋଲିବା ଅଧିକ ।

ବାହାବଲୀନ୍ କହିଲେ, "ମହାବୀରଙ୍କ ସମ୍ମୁଖରେ ବସି କହୁଛି ଆଜ ଯେବେ ମୁଁ ଏକାକୀ କାମ ଉଠାଇ ନ ନେବି ତେବେ ଏ ମୁଛ କାଟି ପକାଇବି ।" ଏହା କହି ମୁଛରେ କରମର୍ଦ୍ଦନ କରି ବାହୁ ପିଟି ବିକଟ ଆନନ୍ଦ ପ୍ରକାଶ କଲେ ।

ବଳୀୟାର ସିଂହ ଗମ୍ଭୀରଭାବରେ ଶୁଣୁଥିଲେ । ବାହାବଳୀନ୍ଦ୍ରଙ୍କ ଏ ଦର୍ପ ଶୁଣି ଅଥୟ ହୋଇ ରହି ପାରିଲେ ନାହିଁ । ଚକା ପକାଇ ବସିଥିଲେ, ଜାନୁରେ ହାତ ମାରି କହିଲେ, "ବାହାବଳୀନ୍ଦ୍ରେ ! ଆମ୍ଭେ କି କୁଜଙ୍ଗ ଷଣ୍ଢଙ୍କର ଜଣେ ମାଲ ନୋହୁଁ ? ବାହାବଳୀନ୍ଦ୍ରେ ଯେବେ ଏକ ଧକାରେ ଏକ ଆଡ଼େ ପାଚେଶ ଭିଙ୍ଗି ବାଟ ସଳଖ କରି ଦେବେ, ବଳୀୟାର ସିଂହ ଅନ୍ୟ ଆଡ଼େ ଏକ କୁଦା ମାରି ପାଚେଶ ଡେଇଁ ଯିବେ । ବାହାବଳୀନ୍ଦ୍ରେ ! ଆମ୍ଭେ ଦୁହେଁ ଥାଉଁ କେଉଁ ଶତ୍ରୁ ଏଡ଼େ ବଳୀୟାନ୍ ଅଛି ଯେ ଜିଣିଯିବ ?"

ଏହା ଶୁଣି ବାହାବଳୀନ୍ଦ୍ର ବଡ଼ ସନ୍ତୁଷ୍ଟ ହେଲେ । କହିଲେ—"ଆସ ବଳୀୟାର ସିଂହେ, ପଞ୍ଝା ଲଢ଼େଇବା । ଶୀତ କି ଆମର କିଛି କରି ପାରେ ?" ଏହା କହି ମହାବୀରଙ୍କ ସମ୍ମୁଖରେ ହାତ ଘଷି ଧୂଳି କପାଳରେ ଲଗାଇ ଏକ ଲମ୍ଫରେ ତଳେ ଆସି ଠିଆ ହେଲେ । ବଳୀୟାର ସିଂହ ମଧ ତାହାଙ୍କର ଅନୁକରଣ କରି ତଳେ ଆସି ଠିଆ ହେଲେ । କିଛିକ୍ଷଣ ଉଭୟଙ୍କର ପଞ୍ଝାଲଢ଼ାଇ ଓ ମାଲଖେଳ ହୋଇ ପୁଣି ଆସି ଉଭୟେ ପୂର୍ବନିର୍ଦ୍ଦିଷ୍ଟ ସ୍ଥାନରେ ଉପବେଶନ କଲେ ।

ବଳୀୟାର ସିଂହ ପଚାରିଲେ, "ବାହାବଳୀନ୍ଦ୍ରେ ! ତୁମ୍ଭେ ନିଜେ ଯାଇ ଦେଖି ଆସିଛ ତ ?" ବାହାବଳୀନ୍ଦ୍ରେ ଉତ୍ତର କଲେ, "ମୁଁ ନିଜେ ଯାଇ ଦେଖି ଆସିଛି । ଏଭଳି ଶିକାର, ତୁମ୍ଭେ ଦେଖିବ, ଆମେ ପରା କେବେ ପାଇ ନାହୁଁ । ଯେପରି ଗଛରେ ଅନେକ ଚଢ଼େଇ ଥିଲେ ବାଣୁଆ ବନ୍ଧୁକର ଏକ ଶବ୍ଦରେ ଅନେକଗୁଡ଼ାଏ ଚଢ଼େଇ ଲାଭ କରେ, ସେହିପରି ଆମର ଏଥରକର ଶିକାରରେ ଅନେକ ପ୍ରକାର ଭୋଗ ମିଳିଯିବ ।"

ବଳୀୟାର ସିଂହ କିଛିକ୍ଷଣ ନୀରବ ଥାଇଁ କହିଲେ, "ତା ହେଲେ ତ ଅତି ଭଲ କଥା—ଏକା ଯାଗାକେ ସବୁ ଭଲ ଜିନିଷ ପ୍ରଚୁର ପରିମାଣରେ ପାଇଲେ ତହୁଁ ବଳି ଆଉ ଆନନ୍ଦର ବିଷୟ କି ଅଛି ?"

ବାହାବଳୀନ୍ଦ୍ରେ ଉତ୍ତର କଲେ, "ବଳୀୟାର ସିଂହେ ! ଏତେ ପାଇବ ଯେ ସର୍ବେ ତହିଁରୁ ଛପଣ ନେଲେ ବି ବାକୀ ଯାହା ରହିବ ତାହା ବ୍ରାହ୍ମଣବୈଷ୍ଣବଙ୍କୁ ଦାନ କରି ସୁଦ୍ଧା ସରିବ ନାହିଁ ।"

ଏହା ଶୁଣି ବଳୀୟାର ସିଂହେ ବିକଟ ହାସ୍ୟ କରି ଚତୁର୍ଦ୍ଦିଗ କମ୍ପାଇ ଦେଲେ ଏବଂ ତହିଁ ସଙ୍ଗେ ବାହାବଳୀନ୍ଦ୍ରଙ୍କ ହାସ୍ୟ ମିଳିତ ହୋଇ ଅଦ୍ଭୁତ ଭୟାନକ ହୋଇ ଉଠିଲା ।

ଏହି ସମୟରେ ଦୂରରୁ ନୌକା ବାହି ଆସିବାର ଶବ୍ଦ ଶୁଣାଗଲା । ବାହାବଳୀନ୍ଦ୍ରେ ସେ ଶବ୍ଦ ଶୁଣି ହଠାତ୍ ଉଠି "ଜୟ ମହାବୀରଙ୍କ ଜୟ" ଶବ୍ଦ କରି ବାହାରକୁ ଆସିଲେ । ବଳୀୟାର ସିଂହ ମଧ ତାଙ୍କର ଅନୁକରଣ କରି ବାହାରକୁ ଚାଲି ଆସିଲେ । ତହୁଁ ଉଭୟେ ଧରାଧରି ହୋଇ ଲମ୍ଫ ପ୍ରଦାନ କରୁ କରୁ ଯେଉଁ ଆଡ଼ୁ ସେ ଶବ୍ଦ ଶୁଣା ଗଲା ସେହି ଆଡ଼କୁ ଆସି ପଠାର ଶେଷ ସୀମାରେ ଦଣ୍ଡାୟମାନ ହେଲେ ।

---

# କବି ଉପେନ୍ଦ୍ରଭଞ୍ଜ

( BY VISWANATH KAR. )

ଉପେନ୍ଦ୍ରଭଞ୍ଜ ସୁକବି ହୋଇଥାନ୍ତୁ ବା କୁକବି ହୋଇଥାନ୍ତୁ, ତାଙ୍କର ଲେଖନୀ ଧାରଣ ସାର୍ଥକ ହୋଇଅଛି—ତାଙ୍କ ହେତୁରୁ ଆଜି ଅନେକ କୃତବିଦ୍ୟ ବ୍ୟକ୍ତିଙ୍କର ନିଦ୍ରାଭଙ୍ଗ ହୋଇଅଛି । ରାଜସୁଖ ତୁଚ୍ଛ କରି ବାଗ୍ଦେବୀଙ୍କ ଚରଣସେବାରେ ଜୀବନ ଉତ୍ସର୍ଗ କରି ସେ ଯେଉଁ ସାଧୁ ଦୃଷ୍ଟାନ୍ତ ଦେଖାଇ ଯାଇଅଛନ୍ତି, ତାହା ଆଜି ସୁଦ୍ଧା ପାଶ୍ଚାତ୍ୟଜ୍ଞାନ-ସମନ୍ୱିତ ଉତ୍କଳୀୟ ଶିକ୍ଷିତମଣ୍ଡଳୀର ଅନୁକରଣୀୟ । ଉତ୍କଳ ସାହିତ୍ୟକ୍ଷେତ୍ରରେ ଭଞ୍ଜକବିଙ୍କୁ ନେଇ ତୁମୁଳ ଆନ୍ଦୋଳନ ଉପସ୍ଥିତ । ଆମ୍ଭମାନଙ୍କର ବିଶ୍ୱାସ ଯେ, ଏହା ଗୋଟିଏ ନବଯୁଗର ଆରମ୍ଭ । ପ୍ରାଚୀନ ପ୍ରଣାଳୀ ପରିବର୍ତ୍ତିତ ହୋଇ ଧୀରେ ଧୀରେ ନୂତନ ପ୍ରଣାଳୀ ପ୍ରତିଷ୍ଠିତ ହୋଇ ଆସୁଅଛି । କାବ୍ୟ ସାହିତ୍ୟର ଗୋଟିଏ ପ୍ରଧାନ ବିଭାଗ—ସୁତରାଂ ତାହାର ସମ୍ୟକ୍ ଆଲୋଚନା ଏକାନ୍ତ ବାଞ୍ଛନୀୟ । କିନ୍ତୁ ବାଦ ପ୍ରତିବାଦ ଭଦ୍ରତା ଓ ସୁରୁଚିର ସୀମା ଲଙ୍ଘନ କରି ବ୍ୟକ୍ତିଗତ ଆକ୍ରମଣରେ ପରିଣତ ହେଲେ, ସେଥିରୁ ସୁଫଳର ଆଶା ଅନେକ ପରିମାଣରେ ତିରୋହିତ ହୁଏ । ସ୍ୱାଧୀନ-ଭାବରେ ମତ ବ୍ୟକ୍ତ କରିବାର ଅଧିକାର ସମସ୍ତଙ୍କର ଅଛି, ସେ ମତ ଗ୍ରହଣ ବା ପରିତ୍ୟାଗ କରିବାର ଅଧିକାର ମଧ୍ୟ ସାଧାରଣଙ୍କର ଅଛି । ଆପଣାର ମତ ବଜାଏ ରଖିବାକୁ ଚେଷ୍ଟା ନ କରି ସତ୍ୟର ଜୟ ପ୍ରତି ଦୃଷ୍ଟି ରଖି ସରଳ ଓ ବିଶୁଦ୍ଧ ଯୁକ୍ତିମାର୍ଗ ଅବଲମ୍ବନ କରିବା ପ୍ରକୃତ ମହତ୍ତ୍ୱର ପରିଚାୟକ । ପରଲୋକଗତ କବି ଏବଂ ମାତୃଭାଷା ଉଭୟଙ୍କ ପ୍ରତି ଆମ୍ଭମାନଙ୍କର ଅଲଙ୍ଘନୀୟ କର୍ତ୍ତବ୍ୟ ଅଛି । ସାହିତ୍ୟକ୍ଷେତ୍ରରେ ଆମ୍ଭମାନଙ୍କର କେହି ଶତ୍ରୁ ବା ମିତ୍ର ନାହିଁ । ବ୍ୟକ୍ତିବିଶେଷ ଅପେକ୍ଷା ସାହିତ୍ୟ ଆମ୍ଭମାନଙ୍କର ଅଧିକ ପ୍ରିୟ ।

ଉତ୍କଳର ପ୍ରାଚୀନ କବିମାନଙ୍କ ମଧ୍ୟରେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର ଓ କବିସୂର୍ଯ୍ୟ ବଳଭଦ୍ର ରଥ ଏ ଚାରି ଜଣ ଉଚ୍ଚ ଆସନ ଲାଭ କରିଅଛନ୍ତି । ପ୍ରକୃତପକ୍ଷେ ଏମାନେ ସେ ସମ୍ମାନର ଯୋଗ୍ୟ । ଆହୁରି ଅନେକେ ଅନେକ କବିତା ଲେଖିଅଛନ୍ତି; କିନ୍ତୁ ଏମାନଙ୍କ ସମାନ ଆସନ ଆଉ କେହି ପାଇ ପାରି ନାହିଁ । ଏ ଚାରି ଜଣଙ୍କ ତୁଳନା କରିବାର ସ୍ଥାନ ଏ ନୁହେ । କେବଳ ଭଞ୍ଜକବିଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କ ମତ ଏଠାରେ ବ୍ୟକ୍ତ କରିବୁଁ । କୌଣସି ବ୍ୟକ୍ତିଙ୍କୁ ନ୍ୟାଯ୍ୟ ଅଧିକାର ବା ଉଚିତ ପ୍ରାପ୍ୟରୁ ବଞ୍ଚିତ କରିବା ଯେପରି ଗର୍ହିତ, କାହାରିକୁ ଅତିରିକ୍ତ ପ୍ରଶଂସା ବା ସମ୍ମାନ ଦେବା ମଧ୍ୟ ସେହିପରି ଗର୍ହିତ । ଏକପକ୍ଷରେ ନିନ୍ଦୁକତା, ଅପର ପକ୍ଷରେ ସ୍ତାବକତା । ଉଭୟ ପରିହାର୍ଯ୍ୟ ।

ଆମ୍ଭମାନଙ୍କ ଦେଶରେ ଗୋଟିଏ କଥା ଅଛି, "ଆଳି ଝୁଲଣ, ଓଲକଣା ମେଲଣ, କେନ୍ଦ୍ରାପଡ଼ା ରାମନବମୀ, ପୁରୁଷୋତ୍ତମ ଚନ୍ଦନ" ଏପରି ଆଉ କେଉଁଠାରେ

ନାହିଁ । ସେହିପରି ଯେବେ କେହି କହେ ଯେ, "ଉପେନ୍ଦ୍ରଭଞ୍ଜଙ୍କ ପରି କବି ଆଉ କାହିଁ ନାହିଁ," ବିଜ୍ଞ ବହୁଦର୍ଶୀ ବ୍ୟକ୍ତିମାନେ ତାକୁ ହାସ୍ୟରେ ଉଡ଼ାଇ ଦେବେ । ଭଞ୍ଜଙ୍କର ସ୍ତାବକ ପ୍ରାଚୀନ ଗୀତାର୍ଥୀମାନଙ୍କ ମୁଖରୁ ଶୁଣାଯାଏ, "ଉପଇନ୍ଦ୍ର ଭଞ୍ଜ ବୋଲେ ଠେକି ଦୂରି ବାହାକୁ, ଧରାତଳେ କବିପଣେ ନ ଗଣଇ କାହାକୁ" ଇତ୍ୟାଦି । ଏ ସମସ୍ତ ହାସ୍ୟାସ୍ପଦ କଥା ଭଞ୍ଜଙ୍କ ମୁଖବିନିଃସୃତ ବୋଲି କଦାଚ ବିଶ୍ୱାସ କରି ଯାଇ ନ ପାରେ । କେତେକ ବର୍ଷ ପୂର୍ବରେ ଆମ୍ଭେମାନେ ଯେତେବେଳେ ଭଞ୍ଜଙ୍କ କାବ୍ୟ ଆଲୋଚନାରେ ପ୍ରବୃତ୍ତ ହୋଇଥିଲୁଁ, ସେତେବେଳେ ଆମ୍ଭମାନଙ୍କର ମଧ୍ୟ ଏହିପରି ଗୋଟିଏ ଅନୁଚିତ ଧାରଣା ଜନ୍ମିଥିଲା । ବର୍ତ୍ତମାନ ସେ ଭ୍ରମ ଦୂର ହୋଇଅଛି, ଆମ୍ଭେମାନେ ଭଞ୍ଜଙ୍କୁ ତାଙ୍କର ଉଚିତ ପ୍ରାପ୍ୟ ଦେବାକୁ ଶିକ୍ଷା କରିଅଛୁଁ ।

ଆମ୍ଭେମାନେ ସାଧାରଣତଃ ଦୁଇ ଶ୍ରେଣୀର କବି ଦେଖିବାକୁ ପାଉଁ । ଏକ ଶ୍ରେଣୀର କବି ଆପଣାର ଦେଶ ଓ ସମୟର ସୀମା ମଧ୍ୟରେ ଥାଇ କାବ୍ୟ ପ୍ରଣୟନ କରନ୍ତି—ସୁତରାଂ ସେମାନଙ୍କ କାବ୍ୟ ସର୍ବ ଦେଶ ବା ସର୍ବ ସମୟର ଉପଯୋଗୀ ହୋଇ ପାରେ ନାହିଁ । ରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେମାନଙ୍କ କବିତା ପ୍ରତି ଜନସାଧାରଣଙ୍କର ଅନାସ୍ଥା ଜନ୍ମେ । ଅଉ ଏକ ଶ୍ରେଣୀର କବି ଦେଶକାଳର ସୀମା ଅତିକ୍ରମ କରି ଭୁବନମୋହିନୀ କଳ୍ପନା ବଳରେ ମହାରସମୟୀ କବିତା ରଚନା କରି ସମଗ୍ର ମନୁଷ୍ୟଜାତିର ହୃଦୟରେ ଉଚ୍ଚ ଆସନ ଲାଭ କରନ୍ତି । କୌଣସି ଦେଶ ବା କୌଣସି କାଳ ସେମାନଙ୍କ ସମ୍ମାନ ହ୍ରାସ କରି ପାରେ ନାହିଁ—ତାହା ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହୁଏ । ଏହି ଶ୍ରେଣୀର କବିମାନେ ପ୍ରକୃତ "ମହାକବି" ଆଖ୍ୟାର ଯୋଗ୍ୟ । ଏମାନେ କେବଳ ସୌନ୍ଦର୍ଯ୍ୟପ୍ରକାଶକ ନୁହନ୍ତି—ମାନବସମାଜର ଶ୍ରେଷ୍ଠ ଶିକ୍ଷାଗୁରୁ । ପ୍ରଥମ ଶ୍ରେଣୀର କବିମାନଙ୍କ ଲେଖାରେ ଯେ ଦ୍ୱିତୀୟ ଶ୍ରେଣୀର ଭାବ ଆଦୌ ନ ଥାଏ, ଏପରି ନୁହେ—ମାତ୍ର ତାହାର ପରିମାଣ ଅତି ଅଳ୍ପ । ଆମ୍ଭମାନଙ୍କ ଭଞ୍ଜବୀର "ଦେଶକାଳାତୀତ" କବି ନୁହନ୍ତି, ସେ "ଦେଶକାଳ"ର କବି ।

ଉଲ୍ଲିଖିତ ମତର ସପକ୍ଷରେ ଦୁଇଟି ବିଷୟ ଉଲ୍ଲେଖ କରି ଯାଇ ପାରେ । ୧ମ, ଭଞ୍ଜଙ୍କ କବିତାକୁ ଭାଷାନ୍ତର କଲେ ତାହାର ସମ୍ୟକ୍ ମର୍ଯ୍ୟାଦା ରକ୍ଷିତ ହେବ ନାହିଁ । ପୃଥିବୀର ମହାକବିମାନଙ୍କ କବିତାମାନ ନାନା ଭାଷାରେ ଅନୂଦିତ ହୋଇ ନିଜ ନିଜ ମହତ୍ତ୍ୱ ଅକ୍ଷୁଣ୍ଣ ରଖିବାକୁ ସମର୍ଥ ହୋଇଅଛି । ଭଞ୍ଜଙ୍କ କବିତା ବିଶେଷ ଭାବରେ ଏ ପରୀକ୍ଷାର ଅନୁପଯୋଗୀ । ୨ୟ, ଭଞ୍ଜଙ୍କ କାବ୍ୟରେ ସାରସଂଗ୍ରହ କଲେ ତାହାର କାବ୍ୟତ୍ୱର କିଛିମାତ୍ର ଅବଶିଷ୍ଟ ରହେ ନାହିଁ । ମହାକବିମାନଙ୍କ କାବ୍ୟର ଉପାଖ୍ୟାନ ମାତ୍ର ସଙ୍କଳିତ ହୋଇ ପାଠକସମାଜର ମନ ପ୍ରାଣ ବିମୋହିତ କରୁଅଛି ଏବଂ ଜଗତକୁ ଅମୂଲ୍ୟ ଶିକ୍ଷା ପ୍ରଦାନ କରୁଅଛି । ସୁତରାଂ ରଘୁବଂଶ, କୁମାରସମ୍ଭବ, ଶକୁନ୍ତଳା, ଉତ୍ତରଚରିତ ପ୍ରଭୃତି ଯେଉଁ ହିସାବରେ ସାହିତ୍ୟ, ଭଞ୍ଜକାବ୍ୟଗୁଡ଼ିକୁ ସେହି ହିସାବରେ ଆଲୋଚନା କଲେ ସେମାନଙ୍କର ମର୍ଯ୍ୟାଦାରକ୍ଷା ଅସମ୍ଭବ ହୋଇ ଉଠେ । ଫଳ କଥା, ସେଥିରେ କଳ୍ପନାବୈଚିତ୍ର୍ୟ ଅଧିକ ନାହିଁ ।

ଭଞ୍ଜଙ୍କ ଶକ୍ତି, ସାମର୍ଥ୍ୟ ଓ ଶ୍ରମ ପ୍ରଧାନତଃ ରଚନାପ୍ରଣାଳୀରେ ପର୍ଯ୍ୟବସିତ ହୋଇଅଛି । ସେଥିରେ ତାଙ୍କର ବାହାଦୁରୀ ଯଥେଷ୍ଟ ଅଛି । ସତ୍ୟ କଥା କହିବାକୁ ଗଲେ, ଏପରି ଶବ୍ଦପାଣ୍ଡିତ୍ୟ ପୃଥିବୀରେ କେତେ ଜଣଙ୍କର ଅଛି କହାଯାଇ ନ ପାରେ । କିନ୍ତୁ ରଚନାରେ ନାନାପ୍ରକାର କଠିନ ରୀତିର ସମାବେଶ ଯୋଗୁଁ ତାଙ୍କ ରଚନାପ୍ରଣାଳୀ ମଧ୍ୟ ସ୍ୱାଭାବିକ ମଧୁରତା ହରାଇ ନିତାନ୍ତ ଦୁର୍ବୋଧ ହୋଇ ପଡ଼ିଅଛି । 'ଅଭଙ୍ଗ', 'ସଭଙ୍ଗ', 'ତ୍ରିଭଙ୍ଗ', 'ସବେଷ୍ଟିକ', 'ନିବେଷ୍ଟିକ', 'ଦନ୍ତାକ୍ଷର', 'ଦନ୍ତଚ୍ୟୁତାକ୍ଷର'; 'କ' ନିୟମ, 'ବ' ନିୟମ ପ୍ରଭୃତି ଶବ୍ଦକସରତ—ପାଣ୍ଡିତ୍ୟର ପରିଚାୟକ ମାତ୍ର; ପ୍ରକୃତ କବିତ୍ୱ ସଙ୍ଗେ ଏମାନଙ୍କର ବେଶି କିଛି ସମ୍ପର୍କ ନାହିଁ । ଯେଉଁ ବ୍ୟକ୍ତି ଏହି ସବୁ ଅସ୍ୱାଭାବିକ ନିୟମ ପ୍ରତି ଅତ୍ୟଧିକ ଦୃଷ୍ଟି ସ୍ଥାପନ କରିବ, ସେ କବିତାର ପ୍ରାଣ ଯେ ଭାବ ତାହା ପ୍ରତି ସମୁଚିତ ଦୃଷ୍ଟି କାହୁଁ ରଖି ପାରିବ ? କବିମାନେ ଛନ୍ଦାଦିର ଅନୁରୋଧରେ ସ୍ଥଳବିଶେଷରେ ବ୍ୟାକରଣ ନିୟମ ଲଙ୍ଘନ କରିଥାନ୍ତି । ମାତ୍ର ଭଞ୍ଜ ଉଲ୍ଲିଖିତ କାରଣରୁ ତାହା ପୂର୍ଣ୍ଣମାତ୍ରାରେ ଲଙ୍ଘନ କରିବାକୁ ବାଧ୍ୟ ହୋଇଅଛନ୍ତି । ସେ ଯାହାହେଉ ଏ ସମସ୍ତ ରୀତି ବିରୁଦ୍ଧରେ କଥା କହିବା ଏବଂ ମଲା ଉପରେ ଖଣ୍ଡା ମାରିବା ସମାନ କଥା । ଯେହେତୁ ଆଧୁନିକ କୌଣସି ଲେଖକ ସେ ରୀତି ଅବଲମ୍ବନ କରୁ ନାହାନ୍ତି ବା କରିବାକୁ ପ୍ରୟାସୀ ନୁହନ୍ତି ।

ଆଦିରସ ସମ୍ବନ୍ଧରେ ଭଞ୍ଜକବି ତତ୍ପୂର୍ବବର୍ତ୍ତୀ କବିମାନଙ୍କ ପନ୍ଥା ଅବଲମ୍ବନ କରି ସମୟ ପ୍ରଭାବରୁ ଗୁରୁମାନଙ୍କୁ ଅତିକ୍ରମ କରି ଅନେକ ଦୂର ଚାଲି ଯାଇଅଛନ୍ତି । ପ୍ରାଚୀନ ମହାକବିମାନେ ଅଶ୍ଳୀଳତା ଦୋଷରୁ ମୁକ୍ତ ନୁହନ୍ତି ବା ସେମାନେ ସେ ସମସ୍ତ ବିଷୟକୁ ପବିତ୍ର ଭାବରେ ଦେଖୁଥିଲେ; ସୁତରାଂ ଉତ୍କଟ ଆଦିରସ ବା ଅଶ୍ଳୀଳତା ଦୂଷଣୀୟ ନୁହେ, ଏହା ଆଦୌ ପ୍ରଶସ୍ତ ଯୁକ୍ତି ନୁହେ । ବିଷକୁ ଅମୃତ ଜ୍ଞାନ କଲେ ତାହାର ମାରାତ୍ମକତାର ଇତରବିଶେଷ ହୁଏ ନାହିଁ । ନାରୀର ରୂପବର୍ଣ୍ଣନା ବା ସ୍ତ୍ରୀପୁରୁଷର ପ୍ରେମବର୍ଣ୍ଣନା ହେଲେ ଯେ ଅଶ୍ଳୀଳ ଓ ଅପାଠ୍ୟ ହେଲା, ତାହା ନୁହେ । ସ୍ୱାମୀ ସ୍ତ୍ରୀ ମଧ୍ୟରେ ସୁଦ୍ଧା ଗୋଟିଏ ସ୍ୱାଭାବିକ ଲଜ୍ଜାର ସୀମା ଅଛି, ସେ ସୀମା ଲଙ୍ଘନ କଲେ ଦୂଷଣୀୟ ହେଲା । ଏ ସମ୍ବନ୍ଧରେ ମନୁଷ୍ୟ କଳ୍ପନା ଯେତେଦୂର ଯାଇ ପାରେ, ଭଞ୍ଜ କବି ସେତେ ଦୂର ଅନୁସରଣ କରିବାକୁ ତ୍ରୁଟି କରି ନାହାନ୍ତି । ତାଙ୍କର ଉଦ୍ଦେଶ୍ୟ ଯାହା ଥାଉ, ଉକ୍ତବିଧ ବର୍ଣ୍ଣନାଗୁଡ଼ିକ ଯେ ପ୍ରବୃତ୍ତିର ଉତ୍ତେଜକ, ଏହା କେହି ଅସ୍ୱୀକାର କରି ପାରିବ ନାହିଁ । ପ୍ରବୀଣ ଗଠିତଚରିତ୍ର ବ୍ୟକ୍ତି ପକ୍ଷରେ ତାହା ହାନିକର ନ ହୋଇ ପାରେ; କିନ୍ତୁ ସେପରି ବ୍ୟକ୍ତି ସଚରାଚର କେତେ ଜଣ ମିଳନ୍ତି ? ସହସ୍ରପ୍ରକାର ଚେଷ୍ଟାରେ ନିରୋଧ କଲେ ମଧ୍ୟ ଯେଉଁ ପ୍ରବୃତ୍ତି ମୁହୂର୍ତ୍ତକେ ମନୁଷ୍ୟକୁ ଦଗା ଦିଏ, ତାକୁ ଏପରି ଉନ୍ମୁକ୍ତ ସ୍ଥାନରେ ଛାଡ଼ି ଦେଲେ କେତେବେଳେ ଯେ କି ପ୍ରମାଦ ଘଟିବ, ତାହା କିଏ କହି ପାରେ ?

ଭଞ୍ଜଙ୍କ କାବ୍ୟ ଆଲୋଚନାରେ ଯେତେ ସମୟ ଓ ଶ୍ରମ ଆବଶ୍ୟକ, ସେଥିରେ ତଦନୁରୂପ ଫଳଲାଭର ଆଶା ଅଛି କି ନାହିଁ, ତାହା ପରୀକ୍ଷା ନ କଲେ ବୃଥା ଯିବ

ନାହିଁ । ପ୍ରଚଳିତ ଅନ୍ଧବିଶ୍ୱାସର ଅଧୀନ ହୋଇ କୌଣସି କଥା କହିଦେଲେ ଚଳିବ ନାହିଁ । ଭଞ୍ଜଙ୍କ ଯୁଗ ଓ ଆମ୍ଭମାନଙ୍କ ଯୁଗ ଏକା ନୁହେ । ଏ ଯୁଗର ମଧ୍ୟରେ ଶିକ୍ଷିତ କେତେ ଜଣ ବ୍ୟକ୍ତି ଏତେ ତ୍ୟାଗସ୍ୱୀକାର କରିବାକୁ ପ୍ରସ୍ତୁତ, ଆମ୍ଭମାନଙ୍କୁ ଜଣା ନାହିଁ ।

କେହି କେହି କହନ୍ତି ଯେ, ଭଞ୍ଜଙ୍କ କବିତା ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକରୂପେ ବ୍ୟବହୃତ ନ ହେବ କାହିଁକି ? ସେମାନଙ୍କର ଯୁକ୍ତି ଏହି ଯେ, ଆଦିରସ ଥିଲେହେଁ ଯେତେବେଳେ ଶକୁନ୍ତଳା ପ୍ରଭୃତି ପାଠ୍ୟପୁସ୍ତକ ହୋଇଅଛି, ସେତେବେଳେ ଭଞ୍ଜଙ୍କ କବିତାର ଅପରାଧ କଣ ? ସେମାନଙ୍କ ଯୁକ୍ତିର ଉତ୍ତର ଆମ୍ଭେମାନେ ଉପରେ ଦେଇଅଛୁଁ । ଏଠାରେ ଏତିକି ବକ୍ତବ୍ୟ ଯେ, କେବଳ ଦୁଇଥିରେ ସମାନ ଦୋଷ ଅଛି, ଏକଥା କହିଲେ ଚଳିବ ନାହିଁ । ଗୁଣ ବିଷୟରେ ଦୁହେଁ ସମାନ କି ନା, ଏକଥା ତୁଳନା କରି ଦେଖାଇ ଦେବା ଆବଶ୍ୟକ । ସେ ତୁଳନାର ଭାର ଉକ୍ତ ମତସମର୍ଥନକାରମାନଙ୍କ ଉପରେ; ଆମ୍ଭେମାନେ ଏତିକି ମାତ୍ର କହୁଁ ଯେ, ଶକୁନ୍ତଳା ପ୍ରଭୃତିର ଦୋଷଭାଗ—

“ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ”

ପୁଣି ଭଞ୍ଜ ପ୍ରଭୃତି ପ୍ରାଚୀନ ଉତ୍କଳୀୟ କବିମାନଙ୍କ କବିତାକୁ ପାଠ୍ୟପୁସ୍ତକ କରିବାର ଚେଷ୍ଟା ଯେ ହୋଇ ନାହିଁ ଏମନ୍ତ ନୁହେ । ଆମ୍ଭେମାନେ ଶୁଣିଅଛୁଁ, କୌଣସି କୌଣସି ବିଜ୍ଞ ବ୍ୟକ୍ତି ପ୍ରାଚୀନ କବିତା-ପୁସ୍ତକମାନଙ୍କରୁ ବିଭିନ୍ନ ଅଂଶମାନ ସଂଗ୍ରହ କରି ଖଣ୍ଡିଏ ପାଠ୍ୟପୁସ୍ତକ ପ୍ରକାଶ କରିବାର ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଅଛନ୍ତି । ଭଞ୍ଜଙ୍କ ବୈଦେହୀଶବିଳାସ ନର୍ମାଲସ୍କୁଲର ପଦ୍ୟସାହିତ୍ୟ ସ୍ଥାନରେ ଦିଆ ଯାଇଥିଲା; ମାତ୍ର ଶିକ୍ଷକମାନଙ୍କ ଆପତ୍ତିରେ ପୁଣି ତାହା ରହିତ ହେଲା । ଏତେବେଳେ ସୁଦ୍ଧା ଯେବେ କେହି ଉକ୍ତ ପୁସ୍ତକମାନଙ୍କରୁ ପାଠୋପଯୋଗୀ ଅଂଶମାନ ସଂଗ୍ରହ କରି କୃତକାର୍ଯ୍ୟ ହୁଅନ୍ତି, ସୁଖର କଥା ।

ତେବେ ଭଞ୍ଜଙ୍କ ରଚନାପ୍ରଣାଳୀ ବର୍ତ୍ତମାନ ରୀତି ଅନୁସାରେ ଦୋଷଯୁକ୍ତ ହେଲେ ମଧ୍ୟ ସେଥିରେ ଶିକ୍ଷଣୀୟ ଅନେକ କଥା ଅଛି । ଇତସ୍ତତଃ ବିକ୍ଷିପ୍ତ ସୁନ୍ଦର ସୁନ୍ଦର କବିତ୍ୱ ମଧ୍ୟ ଅଛି । ଆମ୍ଭେମାନେ ଏ କଥା ମୁକ୍ତକଣ୍ଠରେ ସ୍ୱୀକାର କରୁଁ ଯେ, ଅବସରକ୍ରମେ ସେ ସମସ୍ତ ପୁସ୍ତକ ଆଲୋଚନା କରିବା ଉତ୍କଳସାହିତ୍ୟାନୁରାଗୀ ବ୍ୟକ୍ତିମାନଙ୍କ ପକ୍ଷରେ ଅଶ୍ରେୟ ହେବ ନାହିଁ ।

ବର୍ତ୍ତମାନ ଆମ୍ଭେମାନେ ଉପସ୍ଥିତ ବିବାଦ ସମ୍ବନ୍ଧରେ ଦୁଇ ଚାରି କଥା କହି ଏ ପ୍ରବନ୍ଧର ଉପସଂହାର କରୁଁ । ରାମନାରାୟଣ ବାବୁ ଓ ଗୋଲକଧନ୍ଦା ଉଭୟଙ୍କ ଲେଖାରେ ଆମ୍ଭମାନଙ୍କର ଯଥେଷ୍ଟ ସହାନୁଭୂତି ଅଛି । କାରଣ ଉଭୟେ ଯୁକ୍ତିପଥାବଲମ୍ବୀ । କେବଳ ମଧ୍ୟରେ ଯେଉଁମାନେ ବିଦ୍ରୂପାତ୍ମକ ବିଷଜର୍ଜରିତ ଅସ୍ତ୍ରମାନ ନିକ୍ଷେପ କରି

ବିବାଦର ମାତ୍ରା ବଢ଼ାଉଅଛନ୍ତି, ସେମାନଙ୍କ କାର୍ଯ୍ୟକୁ ପ୍ରଶଂସା କରି ନ ପାରୁଁ । ଆମ୍ଭେମାନେ ସେ ସମ୍ବନ୍ଧରେ ଅଧିକ କିଛି ନ କହି ସେମାନଙ୍କୁ ଏଥିରୁ କ୍ଷାନ୍ତ ହେବାକୁ ବିନୀତଭାବରେ ଅନୁରୋଧ କରୁଅଛୁଁ । ଉତ୍କଳ ସାହିତ୍ୟରେ ଅଭାବର ସଂଖ୍ୟା ନାହିଁ । ତେବେ ଏପରି ଅସାର ବିଷୟରେ ଶକ୍ତି ଓ ସମୟର ଅପବ୍ୟୟ କାହିଁକି ?

ରାମନାରାୟଣ ବାବୁଙ୍କ ସମାଲୋଚନା ସମ୍ବନ୍ଧରେ ଆମ୍ଭମାନଙ୍କର ବିଶେଷ କିଛି ବକ୍ତବ୍ୟ ନାହିଁ । ତେବେ ସେ ଉପେନ୍ଦ୍ରଭଞ୍ଜଙ୍କ ଦୋଷଗୁଡ଼ିକ ଯେତେ ତନ୍ନ ତନ୍ନ କରି ଦେଖାଉଅଛନ୍ତି, ସେପରି କରିବା ଆବଶ୍ୟକ ନ ଥିଲା । ଯେଉଁମାନେ ଆଜି ଭଞ୍ଜଙ୍କ ପକ୍ଷ ସମର୍ଥନ କରିବାପାଇଁ କମର ବାନ୍ଧିଅଛନ୍ତି, ସେମାନେ ମଧ୍ୟ ପ୍ରକୃତପକ୍ଷେ ଉକ୍ତ ଦୋଷମାନଙ୍କୁ ଗୁଣ ବୋଲି ମନେ କରନ୍ତି କି ନାହିଁ, ସନ୍ଦେହ ବିଷୟ । ଅନ୍ତତଃ ପ୍ରକାଶ୍ୟଭାବରେ ସାହିତ୍ୟରେ କେହି ଉପେନ୍ଦ୍ରଭଞ୍ଜଙ୍କୁ ଗୁରୁପଦରେ ଅଭିଷିକ୍ତ କରିବାକୁ ପ୍ରସ୍ତୁତ ନୁହନ୍ତି । ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ, ବର୍ତ୍ତମାନ ଲେଖକମାନଙ୍କ ମଧ୍ୟରେ କେହି କେହି ଭଞ୍ଜଙ୍କ ଗୁରୁସ୍ଥାନ ଅଧିକାର କରି ବସିଲେଣି । ଅଧାର୍ମିକ ବ୍ୟାଖ୍ୟାଦ୍ୱାରା ବୀଭତ୍ସ ଓ ବିକୃତ ଅଂଶମାନଙ୍କୁ ବୀଭତ୍ସତର ଓ ବିକୃତତର କରି ଜନସାଧାରଣଙ୍କ ନିକଟରେ ଉପସ୍ଥିତ କରା ଯାଉଅଛି । କେହି ଥରେ ଧୀରଭାବରେ ପରିଣାମ ଚିନ୍ତା କରିବାକୁ ନାହିଁ । ପ୍ରକୃତପକ୍ଷେ ଭଞ୍ଜଙ୍କ କବିତାରେ ଯେତିକି ମହତ୍ତ୍ୱ, ସରଳଭାବରେ ସେତିକି ଦେଖାଇଦିଅ, ଏପରି କପଟଯୁକ୍ତିରେ କଣ ହେବ ? ଏହାଦ୍ୱାରା କେବଳ ଆପଣାର ଅସାରତା ଓ ଅପଦାର୍ଥତା ପ୍ରତିପାଦିତ ହେଉଅଛି । ଆଧୁନିକ ସମାଲୋଚନାର କଠୋର ପରୀକ୍ଷାରେ ପକାଇଲେ ଭଞ୍ଜଙ୍କ ମହତ୍ତ୍ୱ ରହି ପାରିବଟିକି ? ରାମନାରାୟଣ ବାବୁ କେବଳ ଆଧୁନିକ ଲେଖକମାନଙ୍କ ଦୃଷ୍ଟାନ୍ତ ଦେଖାଇ ନାହାନ୍ତି, ପୂର୍ବବର୍ତ୍ତୀ ସଂସ୍କୃତକବିମାନଙ୍କ ଦୃଷ୍ଟାନ୍ତ ମଧ୍ୟ ଦେଇଅଛନ୍ତି । ସୁତରାଂ ତାଙ୍କ ଅଭିସନ୍ଧିରେ ଦୋଷାରୋପ କରିବା ଯୁକ୍ତିସଙ୍ଗତ ବୋଧ ହେଉ ନାହିଁ । ପୁଣି ରାମନାରାୟଣ ବାବୁ ପ୍ରବନ୍ଧର ଉପସଂହାରକାଳରେ କଣ କହିବେ, ଜଣା ନାହିଁ । ଏପର୍ଯ୍ୟନ୍ତ ସେ ଦୋଷଭାଗ ପ୍ରତି ବେଶି ଦୃଷ୍ଟି ଦେଇଅଛନ୍ତି । ଗୁଣ ଯେ ଆଦୌ ଦେଖାଇ ନାହାନ୍ତି, ତାହା ନୁହେ । ତେବେ ତୁଳନାରେ ସେ ଅଂଶ ଅଳ୍ପ ଅଳ୍ପ । ତାଙ୍କ ପ୍ରଦର୍ଶିତ ଦୋଷଗୁଡ଼ିକ କଣ ଦୋଷ ନୁହେ ? ସେ ତ କେବଳ ଅଶ୍ଳୀଳତା ଦୋଷ ଦେଖାଇ ନାହାନ୍ତି ? କାବ୍ୟଗତ ଅନେକ ଦୋଷ ଦେଖାଇଅଛନ୍ତି । ସବୁଗୁଡ଼ିକ ଆଲୋଚନା କରି ତାଙ୍କର ଭ୍ରମ ଦେଖାଇଦେବା ଉଚିତ କାର୍ଯ୍ୟ । ସାଧାରଣ ଲୋକେ ଭଞ୍ଜଙ୍କ କବିତା "ଆଳ ଝୁଲଣି, ଓଲକଣା ମେଲଣି" ପରି ଜ୍ଞାନ କରନ୍ତି । ଯେଉଁମାନେ ଶିକ୍ଷା ପ୍ରାପ୍ତ ହୋଇ ନାନା ଭାଷାରେ ନାନା କାବ୍ୟ ପାଠ କଲେ, ସେମାନଙ୍କର ମଧ୍ୟ ଏ ଭ୍ରାନ୍ତି ଦୂର ହେଲା ନାହିଁ !

# ବାଇମହାନ୍ତି ପାଞ୍ଜି

( BY GOPAL CHANDRA PRAHARAJ. )

## ପଞ୍ଚମବଡ଼ା

'ଧୋବଧାଉଳିଆ ଚୋରି କରନ୍ତି, ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି', 'ଗରିବର ମାଇପ ସମସ୍ତଙ୍କର ଠାପରି', ଏ ପ୍ରବାଦଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । ଶାରୀରିକ ଦୋଷ ମାଇନା ( ଶବବ୍ୟବଚ୍ଛେଦ ) ନିମନ୍ତେ ଯେପରି ଡାକ୍ତରଖାନା ଅଛି, ମାନସିକ ପ୍ରବୃତ୍ତିଗୁଡ଼ିକ ମାଇନା କରିବା ନିମନ୍ତେ ସରକାରଙ୍କର ଗୋଟିଏ ଡାକ୍ତରଖାନା ବସାଇବାର କ୍ଷମତା ଥିଲେ ଆଉ ଭାବନା ଥିଲା କଣ ? ସେଦିନ ଆମ ଗ୍ରାମର ରାଧୁ ମଳିକ ପେଟବିକଳରେ ଅନ୍ଧାର ରାତିରେ ନଡ଼ିଆଟାଏ ଚୋରି ଖାଇଥିଲା ବୋଲି ଭିନ ମାସ ମାମୁଁଘରେ ଘଣା ପେଲିଲା ଓ କାଠ ବାଡ଼େଇଲା, କିନ୍ତୁ ଗଦା ଗଦା ଟଙ୍କା ସୁନା କିଏ କେଉଁଆଡ଼େ ଦିନ ଦିପହରେ ବୋହି ନେଇ ଯାଉଅଛି, କେହି ପୁଛିବା ପଚାରିବାକୁ ନାହିଁ । ତେବେ ପ୍ରଭେଦ ନାହିଁ କଣ ? ମଳିକ ବଚରାର ପରିଧାନ ଖଣ୍ଡେ ଚିରା କୌପୀନ, ବାବୁମାନଙ୍କ ପରିଧାନ ଇସ୍ତିରିକରା ଫୁଲଦାର କମିଜ ଓ ଗିଲି କୁଞ୍ଚା ସିମିଲିଆ ଚଦର; ମଳିକପୁଅର ପେଟ ଜଳିଲା ବୋଲି ଚୋରି କଲା. ବଡ଼ଲୋକ-ମାନେ ଲୋଭ ଓ ସଉକରେ ଚୋରି କରନ୍ତି । ତା ନ ହେଲେ କି 'ପୀତାମ୍ବରଂ ବୀକ୍ଷ୍ୟ ଦଦୌ ତନୁଜାଂ କ୍ଷୀତାମ୍ବରଂ ଯତ୍ ଗରଳଂ ପୟୋଧିଃ ।' ମହାବୀର ଆଲେକ୍ଜାଣ୍ଡରଙ୍କ ମସ୍ତକରେ ରତ୍ନଖଚିତ ରାଜମୁକୁଟ, ଚୋରର ଗୋଡ଼ରେ ଲୁହା ବେଡ଼ୀ, ପ୍ରଭେଦ ମଧ୍ୟରେ ଏତିକି । ଏହା ପ୍ରଭେଦ କି ଅଭେଦ, ତାହାର ନିଷ୍ପତ୍ତି ଆପଣମାନଙ୍କ ହାତ । ତେବେ ଗୋଟିଏ କଥା—କିଏ କଣ ସୁଖରେ ଗରିବ ହୁଏ ? ଧର୍ମରାଜଙ୍କୁ ଭଗବାନ୍ ପ୍ରଶ୍ନ କରିଥିଲେ; ଧର୍ମରାଜ ଉତ୍ତର କରିଥିଲେ କି 'ମନରେ ଏକା କଥା, କାର୍ଯ୍ୟରେ ତେବେ ଯାହା ପ୍ରଭେଦ ।' ଏ ତ ଭାରି ଗୋଳମାଳିଆ । ତେବେ କଣ ନା, ରଜା ଚୋରିଲି ଚୋରିବେଲେ 'ବାତ ପିତ୍ତ ନାଶନ', ଗରିବ ଚୋରିଲି ଚୋରିବେଲେ 'ବକଲାଠାଏ' । ପାଠକ ଅବଧାନ ! ଇସବୁରେ ବୁଝି ଯାଉଥିବେ, ସବୁବେଳେ ସାପ ମାରି ପର ଗଳାରେ ପକାଇ ଦେଲେ ଚଳିବ କିପରି ? ଜଣେ ଜମିଦାର ଗୋଟିଏ ଫେରାଦ ବୁଝୁଥିଲେ. ରାମା କଣ୍ଡରା ଜମିଦାରଙ୍କ ଉଆସ ପଛଆଡ଼ ବିଲରେ ଚଷ କରୁ କରୁ ପଦେ ଦାଇକା ଗାଇ ଦେଇଥିଲା ବୋଲି ତାକୁ ପାଞ୍ଚଟଙ୍କା ଜୋରିମାନା କଲେ, କିନ୍ତୁ ରାମା କଣ୍ଡରାର ସାଆନ୍ତବାପା, ଗୁରୁଗୋସେଇଁ, ଓସ୍ତାଦର ଓସ୍ତାଦ୍ ସାଆନ୍ତଙ୍କ ନଅର ଭିତରେ ନିତ୍ୟ ରାହାସ ଲଗାଇଅଛନ୍ତି, ଏପରି କି ସାଆନ୍ତଙ୍କ ଶ୍ରୀଅଙ୍ଗରେ ଧାଉଡ଼ି ଲାଗିବାର ମଧ୍ୟ ଆଶ୍ଚର୍ଯ୍ୟ ନୁହେ । ବୁଝୁଛନ୍ତି କିଏ ବା ବୁଝାଉଛି କିଏ ! ରାମା ବଚରା ଗରିବ, ତା ଘରେ ଧନ ନାହିଁ, ତାପାଇଁ ଓକିଲ ମୁକ୍ତାର ନାହାନ୍ତି, ତାପାଇଁ ଆଇନ ଦଫା ନାହିଁ, ସୁପାରିସ ନାହିଁ, ଅଛି କେବଳ ଧର୍ମ; କିନ୍ତୁ ସେ ଏକପ୍ରକାର ନିର୍ଜୀବ, ଏ କାଳରେ

ନୁହେଁ, କେବେ ହେବ ବା ହୋଇ ପାରେ ! ଧନ୍ୟ ସଂସାର ! ବିବେକ ଅଛି କାହାର ? ବିବେକକୁ ଜଳାଞ୍ଜଳି ନ ଦିଏ କିଏ ? ସରକାରଙ୍କର ପ୍ରତୀକାରରେ ତ୍ରୁଟି ନାହିଁ, ଡେଙ୍ଗା ନଡ଼ିଆଗଛକୁ ଲଗି ନ ପାଇଲେ ଲଗିର ତ ଦୋଷ ନାହିଁ । ଆପଣ ମୂରୁକି ମୂରୁକି ହସି ମନେ ମନେ କହୁଛନ୍ତି, 'ତେବେ କଣ ଡେଙ୍ଗା ନଡ଼ିଆଗଛର ଦୋଷ ?'

ଫଳ କଥା, ଧନୀ ଦରିଦ୍ର, ଶିକ୍ଷିତ ଅଶିକ୍ଷିତ, ସଭ୍ୟ ଅସଭ୍ୟ, ବୃଦ୍ଧ ବାଳକ ପ୍ରଭେଦ ଖୁବ କମ । ଶିକ୍ଷିତ ବହିରିନ୍ଦ୍ରିୟକୁ ସଂଯତ କରିବାକୁ ଚେଷ୍ଟା କରନ୍ତି, ଭିତରର ମହାକାଳଫଳକୁ ରଙ୍ଗଚହଚହ ଚୋପାରେ ଘୋଡ଼ାଇ ପକାନ୍ତି; ଅଶିକ୍ଷିତ ମୂର୍ଖ ଯାହା ମନକୁ ଆସେ ତାକୁ ଲୁଚାଇ ରଖି ପାରେ ନାହିଁ । ପ୍ରଭେଦଟା କଣ ଖୁବ ବେଶି ? ଆପଣ ସଭ୍ୟ, ଆପଣ ବଡ଼ଲୋକ, ଆପଣ ରଙ୍ଗଢ଼ଙ୍ଗିଆ ସାଟିନ୍ କୋଟ, ଘଡ଼ି ଚେନ ପିନ୍ଧି ବାସନା ତୃପ୍ତ କଲେ, କିନ୍ତୁ ଅସଭ୍ୟର ସେହି ବାସନା 'ଚଟାକୁଟା ଓ ଅଠିଲ ମାଳ'ରେ ତୃପ୍ତ ହେଲା । ସେ ହେଲାବେଳକୁ ହେଲା ହାସ୍ୟାସ୍ପଦ, ଆପଣ ହେଲେ ପୂଜ୍ୟ ।

ସେ ଜଟ ବାନ୍ଧିଲା, ଆପଣ ଆଲବର୍ଟ ଫିରେଇ କାଟିଲେ, ପ୍ରଭେଦ ଏତିକି । ଏ ପ୍ରଭେଦକୁ ବଡ଼ କହନ୍ତୁ କି ଛୋଟ କହନ୍ତୁ, ଆପଣ ଜାଣନ୍ତୁ । ବାହାରର ଆଦବ୍ କାଏଦା ଟିକିଏ ଛାଡ଼ି ଦିଅନ୍ତୁ, କଥାଟା ଧୀରେ ଧୀରେ ସମ୍ଝି ପାରିବେ । ଫାଙ୍କି ଦେଲେ ଅବଶ୍ୟ ଆମ୍ଭେମାନେ ନାଚାର । ଏଥିରେ ସାକ୍ଷୀ ଜବାନବନ୍ଦୀ, ଜେରା, ଜବାବ ସୁଆଲ, କିଛି ଚଳିବ ନାହିଁ । ଚଳୁଥିଲେ କି ଆପଣଙ୍କ ମୁହଁରେ ଏଡ଼େ ତାରିଫ ହସ ଦେଖା ଦିଅନ୍ତା ? ହାତକଡ଼ି ପକାଇ ଚୋରକୁ ପହରିବାଲାମାନେ ଜେଲଖାନାକୁ ନେଲାବେଳେ କି ଠୋ ଠୋ କରି ହସି ଠାଟ୍ଟା କରନ୍ତେ ? କହନ୍ତେ, 'ଶଳା ଯା !' ଜଣେ ପ୍ରଧାନ କବି କହିଥିଲେ, 'ଖୁବ କମ ଥରେ ଲେଖାଏ ଜେଲଖାନା ନ ଯାଆନ୍ତା, ଏପରି ଲୋକ ଦୁନିଆରେ ଅତି ଅଳ୍ପ ।' ଏ ଜେଲଖାନାରେ ତ ଦିନେ ଓଳିଏ ବନ୍ଦୀ, ଅସଲ ଜେଲଖାନାରେ ଘାଣିପେଲା, କଟାବାଡ଼ିଆ, ଢେଙ୍କିକୁଟା ଚିରଜୀବନ ଲାଗିଛି, ଲାଗିଥିବ । ଏ କଥା ବୁଝେ କିଏ ? ମନୁଷ୍ୟପ୍ରକୃତିର ନିର୍ବଳତ୍ୱ ଥରେ ଦିବ୍ୟଚକ୍ଷୁରେ ବୁଝିଲେ ଥଟ୍ଟା ତାମସା, ହସ କୌତୁକ, ଠାଟ୍ଟା ଠାପରା ରହନ୍ତା କାହିଁ ? ଆଇନ ବଳବାନର ବଳ, ନିର୍ବଳର ଶତ୍ରୁ ! 'ପରାପରାଧେନ ପରାପମାନଂ' ଏ କିଛି ନୂଆ କଥା ନୁହେଁ, 'ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।' କୁଆ ପୋଖରୀପାଣି କରି ଚମ୍ପଟ, ହଂସ ବିଚରା ମଲା ! ନିଜ ନିଜ ଅନୁଭବରୁ ଗୋଟିଏ ଗୋଟିଏ ଘଟନା ଭଲା ମିଳାଇ ବିବେକଦ୍ୱାରା ବୁଝି ନିଅନ୍ତୁ, କଥାଟା ଯେ ନିହାତି ମିଛ ନୁହେଁ । 'ପ୍ରମାଣ' ମାନେ କଣ ? ଯେ ଚୋରି କରିବ, ସେ କଏଦ ହେବ । ଏଥିର ଅର୍ଥ କଣ ? ଏହାର ଅର୍ଥ :—ଯେ ଚୋରି କରିବାର ଅଦାଲତରେ ପ୍ରମାଣିତ ହେବ, ସେ [ଚୋରି ନ କରୁ ପଛକେ] ଦଣ୍ଡ ପାଇବ । ସାକ୍ଷୀ ମେଳ ହେଲେ ଅସଲ କଥାକୁ ପଚାରେ କିଏ ? ସେଥିପାଇଁ କହନ୍ତି, 'କହି ଜାଣିଲେ ବାରହାତ କାକୁଡ଼ିରେ ତେର ହାତ ମଞ୍ଜି ।' 'ତିନି ମୁହଁରେ ଛେଳି କୁକୁର' ନ ହୋଇ ଯିବ କେଉଁଆଡ଼େ ? ଆପଣଙ୍କ ଗ୍ରାମରେ ବା ପଡ଼ାରେ ସିନା ଗୃଧୁ ମଳିହ କି ଗ୍ରାମ ମଳିକ ନାହିଁ, ତେବେ ଭୀମ ଘଟୋଇ, ମଧୁ ଭୋଇ ତ ଥିବେ । ନ

ଥିବେ କେବଳ ଆପଣଙ୍କ ଚକ୍ଷୁ ଦୋଷରୁ । ଆପଣଙ୍କର ଚକ୍ଷୁ ନାହିଁ ବୋଲି ଆମ୍ଭମାନଙ୍କ କଥାଟା ଯେ ବାଏଁ ବାଏଁ ଉଡ଼ି ଯିବ, ଏ କଥା କେଉଁ ହିସାବରେ କହିବେ ? ଆମ୍ଭେମାନେ ଘରୁ ଖାଇ ବଣିଜ ଶିଖିବୁଁ କଣ ମିଛରେ ? ଯେଉଁ ଲୋକ ବହୁତ ଦେଖେ, ବହୁତ ଶୁଣେ, ସେ ଅପେକ୍ଷାକୃତ କ୍ଷମାଶୀଳ ହୁଏ କାହିଁକି ? ତହିଁର କାରଣ ମାନବ-ପ୍ରକୃତିର ନିର୍ବଳତା-ଉପଲବ୍ଧି । ନଚେତ୍ 'ଯଥା ଖରଶ୍ଚନ୍ଦନଭାରବାହୀ ।' ବୁଲୁଥାଅ, ଶୁଣୁଥାଅ । କିଏ ସିନା ତୁମ ଆଗରେ ଭାତ ଥାଳିଏ ଥୋଇ ଦେବ, ତୁମେ ନ ଖାଇଲେ କେହି ତ ଗିଳେଇ ଦେବ ନାହିଁ । ଗିଳେଇ ଦେଲେ ଯେ ଦଫା ଧର୍ମ ବନ୍ଧା ! ଆତ୍ମରକ୍ଷା ଯେ ପ୍ରଥମ ନୀତି । ସଭ୍ୟ କିଏ, ଅସଭ୍ୟ କିଏ ? କାର୍ଯ୍ୟତଃ କିଛି ନାହିଁ । ତୁମେ ଆମେ ମିଳି ମିଶି ଯାହା ମୁଣ୍ଡରେ ଶିରପା ଦେବା, ସେହି ସିନା ସଭ୍ୟ, ଯାହାକୁ ଝିଅଁଣି ବାଡ଼ିରେ ବାଡ଼େଇବା, ସେହି ସିନା ଅସଭ୍ୟ ! ଥରେ ଭଲା ଈଶ୍ୱରଙ୍କୁ ସାକ୍ଷୀ ରଖି ତନ୍ନ ତନ୍ନ କରି ଦୁନିଆର ରୀତି ନୀତି ଦେଖ, ଯେବେ ମନୁଷ୍ୟ ହୋଇଥିବ ତେବେ ଶ୍ରେଷ୍ଠ ଲୋକ, ଅସଭ୍ୟ, ଅଶିକ୍ଷିତଙ୍କଠାରୁ ଅନେକ କଥା ଭିକ୍ଷା କରି ଆପଣା ଘରେ ସାଇତିବ । 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' ଲେଖିଲା ବେଳେ କଣ ଚାଣକ୍ୟଙ୍କର ବୃଦ୍ଧତ୍ୱ ହେତୁ ମତିଭ୍ରମ ହୋଇଥିଲା ? ନ ବୁଝି ପାରିଲେ ନାଗର ! ତୁମପାଇଁ ସବୁ ବେଳେ ଦ୍ୱାର ଖୋଲା ନ ଥିବ । 'ବସିଲେ ବସ', ନଚେତ୍ 'ବେଳହୁଁ ଖସ ।' ଲୋକେ କହନ୍ତି ପରା 'ଦୃଢ଼େ ଚରନ୍ତି, ମୂଢ଼େ ଚରନ୍ତି, ମଝିମଝିକିଆ ବୁଡ଼ି ମରନ୍ତି ।' ମୂଢ଼ଙ୍କୁ ତ ଭାରି ଜଲଦି ଚିହ୍ନି ପକାଉଅଛ । କିନ୍ତୁ ଦୃଢ଼ ବୋଲି ଯାହାଙ୍କୁ ମନେ କରୁଛ, ସେମାନେ ଅଧିକାଂଶ ମଝି-ମଝିକିଆ । ଯାହାର ଯେଉଁ ଦାଣ୍ଡାକ ପାଳି, ସେ ଦାଣ୍ଡାକ ସେ ରଜା । ଯୋଗିମାନେ (ନାଥ) ଘର ଘର ବୁଲି 'ଧନ, ଜନ, ଗୋପ, ଲକ୍ଷ୍ମୀ ବର୍ଦ୍ଧିତ ରହେ; ବାବାକା କଲମ ଜାଗନ୍ତି ରହେ' ହେଉଥାନ୍ତି, କିନ୍ତୁ କପିଳାସ କନ୍ଦରରେ ଚନ୍ଦ୍ରଶେଖରଙ୍କଠାରେ ଶିବରାତ୍ରି ଦିନ ସେମାନଙ୍କର ପହରେ ଜଗିବା ପାଳି ପଡ଼ିଯାଏ । କାଲି ସିନା ନାଥଙ୍କୁ ମୁଠାଏ ଭିକ ଦେବାକୁ କେତେ ଜାରି ବାହାର କରୁଥିଲ, ଆଜି ଆଉ ଜୁହାର ନ ହୋଇ ଯିବ କେଉଁ ଆଡ଼େ ? ଦିନ ଯିବ ରାତି ଆସିବ, ସୁଖ ଯିବ ଦୁଃଖ ଆସିବ, 'ବାଘ ଘରେ ମିରଗର ନାଟ' ଏ ପ୍ରକୃତିର ନିୟମ । ତୁମେ କିଛି ଅମର ଲଡ଼ୁ ଖାଇ ନାହଁ । ମୁଁ କିଛି କୋଳି ଖାଇ କୋଳମଞ୍ଜି ପୋତି ନାହିଁ । 'କପାସିଆ ଛମାସିଆ' 'ଶୁକର ତାଳଗଛ ଛାଇ', 'ଓଲବ ଗୁଜର ଯାଏଗା' ଏଗୁଡ଼ିକର ମର୍ମ ଭୁଲିଗଲେ ଆପେ ହଟହଟା ! ଦାଣ୍ଡ ଲୋକ ଆଜି ତାକୁ ଚାହିଁ ହସୁଛନ୍ତି, କାଲି ତୁମ୍ଭଙ୍କୁ ଚାହିଁ ହସିବେ । ବଡ଼ ଲୋକ ନ କରନ୍ତି କଣ ? 'ପରୋପଦେଶେ ପାଣ୍ଡିତ୍ୟଂ' ନାହିଁ କାହାର ? ପାଠକ ଅବଧାନ ! ପୋଷାକ ଚଳନ୍ତା ଟିକିଏ ଓଲଟାଇ ପୋଲଟାଇ ଦେଖି ନେଉଥିବେ, ଉପରଟି ଖୋଳଟି ପରିଶ୍ରମ କରି ନ ଛଡ଼ାଇଲେ ଭିତରର ବସ୍ତୁଟି ବୁଝିବା କଷ୍ଟ । ଖୋଳିଟି ଛଡ଼ାଇବା ଏକା ମନୁଷ୍ୟତ୍ୱ । ତରବର ହୋଇ ଗୋଟାଏ ରାୟ ଲେଖିବା ମହାଦୋଷ । ତୁମ ରାୟରେ ଆଜି କଥାଟା ଖତମ ହୋଇଗଲା ବୋଲି ଯାହା ମନରେ ଗୋଣ୍ଠ କରି ବସିଛ, ସେ କିଛି ନୁହେ । କହନ୍ତି ପରା 'ମଝି ବରଡ଼ା ଥାଇ ବୋଇଲା ତୋ ଦିନ କାଲି ଆସୁଛି ।' ଉପରକୁ ଉପର ପାହାଚ ଲାଗିଛି । ଗୋଡ଼ ଜଖମ ଥିଲେ

ଅବଶ୍ୟ ଗୋଟାଏ ହେଲେ ପାହାଚରେ ଖସି ଯିବ । ଗୋଡ଼ ମଜଭୁତ ଥିଲେ ଭଙ୍ଗା ପାହାଚ ଟପି କରି ମଧ୍ୟ ମନୁଷ୍ୟ ଉଠେଇଁ ଚାଲି ଯିବ । ପାହାଚ କେବଳ ଅବଲମ୍ବନ ମାତ୍ର । ପରୀକ୍ଷାର ସ୍ଥାନ ଅଲଗା । ଖାଲି ଗ୍ରନ୍ଥ ଲେଖିବାର କ୍ଷମତା ଥିଲେ ଚଳିବ ନାହିଁ । ଡିଗ୍ରୀ ଜାରି କର, କୋରଖି ନିଲାମ କର, ନିଲାମ ଖରିଦ କରି ଦଖଲ ଦେଇଦେବା କ୍ଷମତା ଥିଲେ ହୁଏ । ତା ନ ହେଲେ ସବୁ ପୋଥିଗତ ବିଦ୍ୟା, ପରହସ୍ତ ଧନ । ସେଥିରେ ଆସେ କେତେ ଯାଏ କେତେ ? ଯେ ଯହିଁକି ଉପଯୁକ୍ତ, ତାପାଇଁ ଟିକିଏ ମରି ଜାଗା ଆଗରୁ ଧରିବନ୍ଧା ! ତୁମର ଆମର ବିଚାର କେତେ ? ବିଧାତା ଏ ସବୁ କଥା ତୁମ ଆମ ଉପରେ ଛାଡି ଦେଇ ନିଶ୍ଚିନ୍ତ ହୋଇ ବସିଥିଲେ କି ରକ୍ଷା ଥାନ୍ତା ? ତୁମପାଇଁ ରେଲ ଅଛି, ମୋପାଇଁ ଅଛି ନଈବଢ଼ି । ତୁମପାଇଁ ଅଛି ମାର୍କାମରା ( Chubbs ) ତାଲା, ମୋର ଅଛି ଧଡ଼ାଲଗା ଡାଟି । ତୁମପାଇଁ ଅଛି ଝାଲରଲଗା ପଙ୍ଖା, ମୋର ଅଛି ନଈ କୂଳିଆ ସୁଲୁସୁଲିଆ ପବନ । ତୁମପାଇଁ ଅଛି Vinum Galici, ମୋର ଅଛି Aqua pura । ତୁମପାଇଁ ଅଛି ଭସ୍ମ, ବଟିକା, ଆସବ, ପ୍ରାସ, ଘୃତ, ତୈଳ, ଚୂର୍ଣ୍ଣ, ରସାୟନ, ମୋପାଇଁ ମୂଳିମୂଳିକା ଖଞ୍ଜା; ତୁମପାଇଁ ହଜାର ହଜାର ହାକିମ ଗଡ଼ଗଡ଼ାଉଛନ୍ତି, ମୋର ଅଛି ମନର ଶାନ୍ତି, ଚିତ୍ତପ୍ରସାଦ, ହୃଦୟର ସନ୍ତୋଷ, ଈଶ୍ୱରବିଶ୍ୱାସ । ନାହିଁ କେବଳ ଚକଚକିଆ ବିଲେତି ଝାଡ଼–ହଣ୍ଡା ବିଚାରରେ ଜୟଲାଭ । ସେ ଜୟଲାଭକୁ ଯେ ବଡ଼ କରି ଗଣେ, ସେ ଗଣୁଥାଉ, ତା ଆଖିରୁ ପ୍ରଚକ୍ଷୁ କାଢ଼ି ଦିଅ ନା । ମୁଣ୍ଡରେ ଖରି ଫତୁ ପଛକେ, ଆଖିରେ ନେଳ ଚଷମା ଥାଉ, ଆଖିକି ଅନ୍ଧାରୁଆ ଦିଶୁଥାଉ । ଯାହା ମନ ଯେତେ, ତାହା ପ୍ରଭୁ ତେତେ । 'ହରି ବୋଲ ଭାଇ ଗୋବିନ୍ଦ ବୋଲ, ଭସିଲା ପଥର ବୁଡିଲା ଶୋଲ ।' ସବୁ କଥାରେ ସ୍ଲେଟ ପେନ୍ସିଲ ଧରି ଅଙ୍କ କସି ବସିଲେ ଚଳିବ କାହିଁ ? ପଣକିଆ, କଡ଼ାଗଣ୍ଡା, ଶୋଧ, ଓଡ଼ାଙ୍କ, ମେଳାଙ୍କ ଏଗୁଡିକ ଶିଖ, କେତେ ପରିଶ୍ରମରୁ ଖଲାସ ପାଇବ । ଉପଯୁକ୍ତ ହୁଅ, କ୍ଷମତା ପାଇବ । ଚକ୍ଷୁ ଥାଇ ପାଗଳ ପଛକେ ହେବ, ଅନ୍ଧ ହେବାକୁ ଭଲ ଲାଗୁ ନାହିଁ । ତେଲଏ ପରି ଗୋଟାଏ ମାତ୍ର ଶବପାଇଁ ଧରାଧରି ହୋଇ ବୁଡି ମରିଥିଲେ ! ଇମିତି କେତେ ଚଉକିବସା, ପଲଙ୍କଶୁଆ, ଘୋଡ଼ାଚଢ଼ା ତେଲି ଅଛନ୍ତି । ଟିକିଏ ଠିକଣା ଲଗେଇଲେ ଧରା ନ ପଡି ଯିବେ କାହିଁ ? ଏହାକୁ କହନ୍ତି ବାତୁଳପ୍ରବୃତ୍ତି; କିଏ କଣ ଇଚ୍ଛା କରି ବାୟା ହୁଏ ? ଭଗବାନ୍ କହି-ଅଛନ୍ତି ଗୀତାରେ—'ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜ୍ଜୁନ । ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ।' ଜ୍ଞାନୀ କିଏ ? ଉତ୍ତରଶାସନର ବାଲିଦସ୍ତି ପାଗଳ କହେ, 'ଜ୍ଞାନୀ ମୁଁ ।' ଜଣେ ପଶ୍ଚିମା ପଣ୍ଡିତ କହିଥିଲେ, "ଯେ ଜାଣେ 'ମୁଁ କିଛି ଜାଣେ ନାହିଁ' ସେହି ଏକା ଜ୍ଞାନୀ ।" ଆଉ ସମସ୍ତେ କୁହୁଡିପହିଁରା । ଗର୍ବ କରିବାକୁ ମନ ହୁଏ କାହାର ? ମନ ନ ହୁଏ କେବଳ ମୁହଁଭରୁଡ଼ାଙ୍କର । ଆତ୍ମମ୍ଭରିତା ନାହିଁ କାହାର ? ନାହିଁ କେବଳ ଦାମ୍ଭିକର । 'ଭରୁଡ଼' ଏ ତିନି ଅକ୍ଷରରେ ତ୍ରିଲୋକ ଜୟ । ତାରିଫ କରି ଗୁଡ଼ାଏ ଏଣୁ ତେଣୁ କହି ପାଟିକୋଚରେ ସିନା ପରର ପାଟି ବନ୍ଦ କରି ଦେବ, କିନ୍ତୁ ଘରକଥାବେଳେ କେଉଁଆଡେ ଯିବ ? 'ଆପଣା ସୁନା ତ ବେଣ୍ଟି, ପର ସଙ୍ଗେ କାହିଁ ବାଲି ଧରାଧରି' 'ଗୋଁଦଳ ଲୋ ଆପଣା ଗୋଡ଼କୁ ଚାହାଁ' ।

ଭୃକୁଡ଼ିରେ ଜନ୍ମ ହେଉଥିଲେ ଚିନ୍ତା ନ ଥାନ୍ତା । ମହାପୁରୁଷମାନେ କଣ ବେକୁଫ୍ ? ସବୁ କଥା ଏତେ ସହଜରେ ଖତମ ହୋଇ ଯାଉଥିଲେ ଜନ୍ମବ୍ୟାପୀ ସାଧନା, କଠୋର ତପସ୍ୟା, ହାଡ଼ଭଙ୍ଗା ପରିଶ୍ରମ ଓ ଈଶ୍ୱରପ୍ରେମର ମାହାତ୍ମ୍ୟ ଥାନ୍ତା ନାହିଁ ? ଦାଣ୍ଡଚୋରଙ୍କୁ ସିନା ବାଡ଼ ବୁଝିବ, ଘରଚୋରଙ୍କୁ କି ଉପାୟ ? ଧୋବଧାଉଳିଆ ହେଲେ ସିନା ଲୋକେ ବାବୁ ବୋଲି ଡାକିବେ, ଆପଣା ମନକୁ ଆପେ ଯେପରି ବାବୁ ବୋଲି ଡାକିବ, ସେ ଉପାୟ କର । ଏ କଥା କିଛି ମୁହଁରେ ନାହିଁ । ଶିକାରବେଳେ କୁକୁର ହଗି ବସିଲେ ଚଳିବ ଟିକି ? ପରୀକ୍ଷାରେ କଣ ସମସ୍ତେ ପାଶ୍ କରି ଯାନ୍ତି ? ଫେଲ୍ ହୁଅନ୍ତି ଅନେକ । ଫେଲ୍‌ରେ ଫେଲ୍ ଅଛି । ଯେ ୧ ନମ୍ବରପାଇଁ ଫେଲ୍ ସେ ଫେଲ୍, ଯେ ଶୂନ୍ୟ ପାଇଥାଏ ସେ ମଧ୍ୟ ଫେଲ୍ । ପାଶ୍‌ରେ ମଧ୍ୟ ପାଶ୍ ଅଛି । ଆପେ କେତେ କଷ୍ଟରେ ନଈ ପାରି ହେଲ, ସେ କଥା ଭୁଲିଗଲଣି । ଏଣିକି ଯେ ପାଶ୍ କରି ନ ପାରିଲା, ତାର ଅଭାବ ଅସୁବିଧାକୁ ଟିକିଏ ନଜର କଲ ନାହିଁ; ସେ ହେଲା ନାଲାଏକ, ଗଦ୍ଧା, ଓଲୁ । ତୁମେ ହେଲ ସରସ । ସେଥିପାଇଁ କହନ୍ତି, 'ଆଗ ମାଧିଆ କି ? ମାଧିଆ ହାତରେ ଠେଙ୍ଗାଠୋକର, (ମାଧିଆ) ମଣିଷ ଚିହ୍ନଇ କି !' ଆଖିରେ କିଛି ଶୁଖୁଆକଣ୍ଟା ମରି ନାହିଁ । ଚାହିଁ କରି ଦେଖ, ପରୀକ୍ଷାଦାନ ଖୁବ୍ ଭଲ ପିଲାର ଶରୀର ଅସୁସ୍ଥ ହେଲେ ମଧ୍ୟ ଫେଲ୍ । ଏଥିରୁ କଣ ବୁଝିଲ ? ଅଦୃଷ୍ଟ ମାନେ କଣ ? ଯାହା ଦେଖା ନାହିଁ, ତାହା ଅଦୃଷ୍ଟ । ତୁମର ଯାହା ଅଦୃଷ୍ଟ, ତାହା ମୋର ଦୃଷ୍ଟ; ମୋର ଅଦୃଷ୍ଟ, ତୁମର ଦୃଷ୍ଟ । ସେଥିପାଇଁ କହନ୍ତି, ପେଟ୍ ଅଦୃଷ୍ଟ ଯାହାର ; ଅଦୃଷ୍ଟରେ ମଧ୍ୟ କାହାର ହାତ ନାହିଁ । ହାତ ନ ଥିଲେ ତ ସାନ୍ତ୍ୱନା ଅଛି । ଅଦୃଷ୍ଟର ଅନ୍ୟ ନାମ ବିଧିବିଧାନ । ଅଦୃଷ୍ଟବାଦୀ ନୁହେ କିଏ ? ମୁହଁରେ ନ ହେଉ, ଫଳତଃ ସମସ୍ତେ । ମାନନ୍ତି ସମସ୍ତେ, କିନ୍ତୁ ଟିକିଏ ହୃଦୟର ଦମ୍ଭ ଚାହିଁ, ଦୃଢ଼ ବିଶ୍ୱାସ ଚାହିଁ, ଜୀବନ୍ତ ପ୍ରେମ ଚାହିଁ । ପ୍ରେମ ନ ଥିଲେ ସଂସାର ଶୁଖିଲା । ଆପଣାକୁ ଆପେ ଆଗେ ଚିହ୍ନ । ପର ନ ଚିହ୍ନିଲେ କିଛି ଚିନ୍ତା ନାହିଁ । ପୋଥି ବାଇଗଣ ବାଡି ବାଇଗଣ ଏକ କଲେ ଯାଇ ସମତା ରକ୍ଷା ହେବ । ନଚେତ୍ 'ଦଦରା ଡଙ୍ଗା, ମଝି ନଈରେ ଦେବ ଦଗା ।' ଏସବୁ କଥା ବୁଝିବା କଥା, ବୁଝାଇବା କଥା ନୁହେ । ହାତୁଡ଼ା ହାତ ଗୋଡ଼ ହଲାଇ ମନ ଭାବ ପ୍ରକାଶ କରିବା ପରି । ସମସ୍ତେ ନାଚୁଆ । ନାଚୁଆ ତ ସହଜେ ନାଚୁଛନ୍ତି । ଦେଖଣାହାରୀ ମଧ୍ୟ ନାଚୁଆ । କଥାଟା କଣ ନା, ଯାହାଙ୍କୁ ଆମ୍ଭେମାନେ ଅସଭ୍ୟ କହୁଁ, ସେମାନଙ୍କ ପରିଧାନ ବକ୍କଲ । ସଭ୍ୟଙ୍କର ପରିଧାନ ଚୁଡ଼ିଦାର, କଲକଣ୍ଠା କମିଜ । ଟିକିଏ ଥୟ କରି ଦେଖିଲେ ଦ' ମୁଣ୍ଡ ଏକା ସମାନ; ପିଲାଙ୍କର ଦାନ୍ତ ନାହିଁ, ବୁଢ଼ାଙ୍କର ଦାନ୍ତ ନାହିଁ; ଦିଗମ୍ବରଙ୍କର ବିଧି ନିଷେଧ ନାହିଁ, 'ନିସ୍ତ୍ରୈଗୁଣ୍ୟେ ପଥି ବିଚରତଃ କୋ ବିଧିଃ କୋ ନିଷେଧଃ ।' ବଣୁଆଙ୍କ ପରିଧାନ ବକ୍କଲ, ଋଷିଙ୍କର ମଧ୍ୟ ତାହା; ଜଗନ୍ନାଥ ଦେଉଳରେ ପ୍ରସ୍ତୁତ ଖାଦ୍ୟ ବିକ୍ରି, ହୋଟେଲରେ ଦେଖ ତାହା; ଡାବଲ ପୁଅ ଯାହା, କ୍ରିକେଟ ତାହା; ପାଉଁଆ ସଅର ନାଚ ଯାହା, ବଲ ନାଚ ମଧ୍ୟ ତାହା; ଅଶିକ୍ଷିତ ଅସଭ୍ୟଙ୍କର ସ୍ତ୍ରୀସ୍ୱାଧୀନତା, ଖୁବ ସଭ୍ୟସମାଜରେ ଦେଖ ସେହି କଥା; ଯେଉଁଠାରେ ମଶାଲ ନାହିଁ, ସେଠାରେ ଯେଉଁ ଅନ୍ଧାର, ମଶାଲର ଠିକ ତଳେ ମଧ୍ୟ ସେହି ଅନ୍ଧାର;

ଆସିଲା ବେଳେ ଯେଉଁ ଏକା, ଗଲା ବେଳେ ମଧ୍ୟ ସେହି ଏକା; ଅସଭ୍ୟ ଜାତିର ଜୁଆଖେଳ ଓ ସଭ୍ୟ ଜାତିର ଜୀବନବୀମା, ଜାହାଜବୀମା, ନିଆଁବୀମା ମଧ୍ୟରେ ପ୍ରଭେଦଟା କଣ ବେଶି ? ସବୁ କଥାରେ ଭିତରର ପ୍ରଭେଦ ଖୁବ କମ । ଯାହା ପ୍ରଭେଦ ବାହାରେ, ତୁମ ଆମ ଏକତରଫା ବିଚାରରେ । ସମସ୍ତେ କହନ୍ତି, ଆକାଶ ପାତାଳ ପ୍ରଭେଦ; କିନ୍ତୁ ଆକାଶରୁ ପାତାଳକୁ ଖସିବାକୁ ମୁହୂର୍ତ୍ତେ ସୁଦ୍ଧା ଲାଗେ ନାହିଁ । ଏ ମୁହୂର୍ତ୍ତରେ ଦେବତା, ଅନ୍ୟ ମୁହୂର୍ତ୍ତରେ ରାକ୍ଷସ । 'ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମଂ' ସେହି ସୁଖ ପଦବାଚ୍ୟ ଓ ସେବ୍ୟ । ଅନ୍ୟ ସବୁ କେବଳ ମଶାଲ ପାଖ ଅନ୍ଧାର ପରି । ମସ୍ତରାମ ପାଗଲ କହୁଥିଲା—'ଈଶ୍ୱରଙ୍କଠାରେ ସବୁ ଖୋଲା । ତାଙ୍କଠାରୁ ତୁମର କଣ ବେଶି ବୁଦ୍ଧି ! ତୁମକୁ ଅଣାଏ ପଇସା ମିଳିଲା, ଦଲଦାର ମିଆଁ ଦୋକାନରୁ ଖଣ୍ଡେ କୋଲପ କିଣି ନେଇ ନିଶ୍ଚିନ୍ତ ହୋଇ ବସିଲ । ତାଙ୍କୁ କଣ ଅଣାଏ ପଇସା ମିଳନ୍ତା ନାହିଁ ? ତୁମେ ପର ମୁହଁକୁ ଚାହିଁଥାଅ, ଚାବିଟି ହଜିଲେ ଉପରକୁ ଚାହିଁ ଆଁ କରି ବସିଥିବ । କିନ୍ତୁ ମୋ ଚାବି ହଜିବା ଚାବି ନୁହେଁ । ତୁମ ଚାବି ତୁମ ଅଣ୍ଟାରେ, ମୋ ଚାବି ମୋ ଭିତରେ ।'

ଶେଷ କଥା :—ତୁମେ ମନେ ମନେ କଥାଟା ଯେତେ ସହଜ ଓ ସାଧାରଣ ବୋଲି ବିଚାରୁଛ, ଅସଲ କଥା ତାହା ନୁହେଁ । ତୁମେ ଯେଉଁ 'ଘଡ଼ି' ଝୁଲେଇ 'ଟାଇନ୍ ପିଠ' ହୋଇ ବୁଲୁଛ, ମନେ ମନେ ବିଚାରୁଛ ଟଙ୍କା ପାଞ୍ଚଟା ମନିଅର୍ଡ଼ର କରି ଦେଲେ ଆଉ ଶନିବାର ଡାକରେ ଦୁଆର ମୁହଁରେ ଡାକ ଡାକବାଲା ଏକ ପୁଳିନ୍ଦା ଦେଇ ଯିବ, ଟିକିଏ ଧୈର୍ଯ୍ୟ କରି ହିସାବ କର, ବହୁବର୍ଷବ୍ୟାପୀ କଠୋର ପରିଦର୍ଶନ, ପରୀକ୍ଷା, ପରିଶ୍ରମ, କେତେ ସ୍ୱାର୍ଥତ୍ୟାଗ, କେତେ ଜୀବନନାଶ, କେତେ ସାଧନା ପରେ ଏ ଯନ୍ତ୍ରଟି ବର୍ତ୍ତମାନ ଅବସ୍ଥା ଧାରଣ କରିଅଛି ଓ ଏତେ ଅଳ୍ପ ବ୍ୟୟ ଓ ସମୟରେ ତୁମ୍ଭ ନିକଟରେ ପହଞ୍ଚିଲା । ଏତେ ଲୋକଙ୍କୁ ବାଧା ନ ହୋଇଥିଲେ ତୁମେ ଆଜି ବାବୁ ହୋଇ ବୁଲୁ ନ ଥାନ୍ତ । ଜଣେ ଲେଖକ କହିଅଛନ୍ତି, 'ଗୋଟିଏ ବଡ଼ଲୋକର ଘର କେତେ ଭଙ୍ଗା ଘରର ସମଷ୍ଟି ।' କିନ୍ତୁ ଆମ୍ଭେମାନେ କହୁଁ, ଗୋଟିଏ 'ସଭ୍ୟ ବାବୁ' ସହସ୍ର ସହସ୍ର 'ଅସଭ୍ୟ' ମୂଲିଆଙ୍କ ଅର୍କ (Essence) । "ମାରେ ସିପାହି ନାମ ସରଦାରକା ।"

ନୋଟ—ବାଇ ମାହାନ୍ତିଙ୍କ ଟିପାରୁ ଯଥା ଦୃଷ୍ଟଂ ତଥା ଲିଖିତଂ । 'ଶୁଦ୍ଧ ଅଶୁଦ୍ଧ ଦୂରିଇ ଗାଇବ, ଲେଖନକାର ଦୋଷ ନ ଧରିବ ।' ମତାମତ ନିମନ୍ତେ ଆମ୍ଭେ-ମାନେ ଦାୟୀ ନୋହୁଁ । ( ମୁହେଁ ମୁହେଁ ଦାୟିତ୍ୱଟା ଏତେ ସହଜରେ ଉଡ଼ି ଯାଉଥିଲେ ଅବଶ୍ୟ କଥା ନ ଥିଲା । ) ପାଠକ ଅବଧାନ ! କ୍ଷମା କରିବେ । ଆମ୍ଭେମାନେ ବାଇ ମାହାନ୍ତିଙ୍କ ସାମାନ୍ୟ ପ୍ରତିଜ୍ଞାଗୁଡ଼ିକ ନିଜରଦ୍ୱାରା ବୁଝାଇବାପାଇଁ ଚେଷ୍ଟା କରିଥାନ୍ତୁ । କିନ୍ତୁ ବୁଝିଲେ କି ନା, ଆମ୍ଭେମାନେ ହେଲୁଁ ଲେଖନକାର, ସୁତରାଂ ଆମ୍ଭମାନଙ୍କ ଦାୟିତ୍ୱଟା ବଡ଼ ଜବର । ସବୁ କଥା ବୁଝାଇ ଉଦାହରଣ ଦେଇ ଲେଖିଲେ ଦଣ୍ଡବିଧିର ଦଫାଯାକ ସରିଯିବ, ଏଥି ନିମନ୍ତେ ବାଇ ମାହାନ୍ତିଙ୍କ କଥାଗୁଡ଼ିକ ହେଉଡ଼ଙ୍ଗରେ ହେଉଡ଼ଙ୍ଗରେ ମାରି ଦେଇ ବସିଲୁଁ । ମଧ୍ୟ ଟୀକାକାରମାନଙ୍କ ହାତାରେ ଧୂଳି ଦେବା

ଆମ୍ଭମାନଙ୍କ କର୍ତ୍ତବ୍ୟ ନୁହେ । ଆପଣ ଥରେ ପ୍ରିଣ୍ଟିଂକୋମ୍ପାନୀ ସାମନାକୁ ଗଲେ ଆମ୍ଭମାନଙ୍କର ଉପସ୍ଥିତ ଅବସ୍ଥା ଉତ୍ତମରୂପେ ହୃଦୟଙ୍ଗମ କରି ପାରିବେ । ସାମନାରେ ଜେଲଖାନା, ଡାହାଣ ତରଫକୁ ପାଗଲଖାନା, ବାଁ ତରଫ ଅଦାଲତ, ଖଣ୍ଡେଦୂର ଗଲେ ଭୂତଖାନା, ମଝିରେ ଡାକ୍ତରଖାନା, ନିକଟରେ ଅଦାଲତ ପୋଖରୀ, ନାଚଖାନା, ଗାଡ଼ିଖାନା, ଚାଡ଼ିଖାନା ଇତ୍ୟାଦି । ଏତେ ଆଡ଼କୁ ନଜର ରଖି କାମ କରିବା କଥା କଣ ମୁହଁରେ ପଡ଼ିଛି ? 'ବଡେଇ ଦିଏ ପରକୁ, ବୁଦ୍ଧି ନ ଆସଇ ଘରକୁ ।' ଟିକିଏ ଗୋଡ଼ ଖସି ଗଲେ କିଏ କେଉଁ ଆଡ଼େ ଶାଗୁଣା ପରି ଓଟାରି ନେବେ, ଠିକଣା ନାହିଁ । କିଏ କହିବ କାତିରେ ମାର, କିଏ କହିବ ଭିତରେ ମାର, କିଏ କହିବ ମୂଳ୍କୁ ମାର । କିଏ ଲଡ଼ୁ ଖୁଆଇ ମାରିବେ, କିଏ ବିଷ ଖୁଆଇ ମାରିବେ । ଆପଣମାନେ ହସୁଥିବେ, ବିଗିଡ଼ୁଥିବେ, 'ମୁଖରସ୍ତୁତ ହନ୍ୟତେ ।' 'ଅଁଚ୍ଛା ହେଲା, ଯା !' ଯୁଦ୍ଧରେ ଶତ୍ରୁପକ୍ଷ ବାଜାଦାରଙ୍କୁ ପହିଲେ ହାଣ । ଅତି ତାରିଫ ହେଲାବେଳକୁ ଯେ ଆମ କଥା ଖୋଲ ବିଶ୍ୱା । ଏଥିରେ କରୁଁ କଣ ? ତେବେ ଆମ୍ଭେମାନେ ବି କମ ଜନ୍ତୁ ନୋହୁଁ । ବାଜୁ ନ ବାଜୁ ଆମ୍ଭେମାନେ କି ଖାଲି ଖାଲି ଛାଡ଼ି ଦିଅନ୍ତୁ ? ପଠତୋ ନାସ୍ତି ମୂର୍ଖତ୍ୱଂ ଜପତୋ ନାସ୍ତି ଦୁର୍ଗତିଃ । 'ମାନିଲେ ଦେବତା ନ ମାନିଲେ ପଥର ।' ଇତି ଲେଖକକାରସ୍ୟ କୈଫିୟତ୍ ।

---

## ସାତକୋଶିଆରେ ଅନ୍ଧକାର ।

( By Shashibhusan Rai )

ସାତକୋଶିଆ ! ତୋତେ କେତେ ଥର ଦେଖିଅଛି, ମାତ୍ର ତୁ ଚିର-ନୂତନ, ସମଗ୍ର ଉତ୍କଳରେ ତୋହି ପରି ଲଳିତ-ଭୀଷଣ ଦୃଶ୍ୟ ଆଉ କେହି ଦେଖାଇବାକୁ କ୍ଷମ ନୁହନ୍ତି । ଆକାଶ-ଚନ୍ଦ୍ରାତପ ତଳେ ଦୁଇପାର୍ଶ୍ୱସ୍ଥିତ ବିଶାଳ ହରିତ୍ ପର୍ବତଶୃଙ୍ଗ, ମଧ୍ୟସ୍ଥିତା ନୀଲ-ଜଳପୂର୍ଣ୍ଣା ମହାନଦୀର ସପ୍ତକ୍ରୋଶବ୍ୟାପୀ କି ବିରାଟ, କି ଭୀଷଣ, କି ମହାନ୍ ଚିତ୍ର ପରମେଶ୍ୱରପ୍ରତିଷ୍ଠିତ ପବିତ୍ର ନିୟମାନୁସାରେ ତୁ ସଜାଇ ରଖିଅଛୁ ! ବାସ୍ତବରେ ତୁ ପ୍ରଫୁଲ୍ଲତାର ରଙ୍ଗଭୂମି, ସରଳତାର ଆକର, ପବିତ୍ରତାର ଜନ୍ମଭୂମି, ନିର୍ମଳତାର ଆଧାର ଏବଂ ସୌନ୍ଦର୍ଯ୍ୟର କଳ୍ପବୃକ୍ଷ । ତୋହର ସହସ୍ର ପ୍ରକାରରେ ବର୍ଣ୍ଣନା କଲେ ମଧ୍ୟ ବର୍ଣ୍ଣନା-ସାଫଲ୍ୟର ଅଧିକାର କାହାରି ନାହିଁ । ତୋହର ସୌନ୍ଦର୍ଯ୍ୟ କେବଳ ଅନୁଭବଯୋଗ୍ୟ ।

---

ଏକ ପାର୍ଶ୍ୱରେ ଦଶପଲ୍ଲାର ବଡ଼ମୂଳଠାରୁ ବଉଦର ଡମିରିଆ ପର୍ଯ୍ୟନ୍ତ ଏବଂ ଅପର ପାର୍ଶ୍ୱରେ ଦଶପଲ୍ଲାର ଯୋଡ଼ମୁହଁଠାରୁ ଆଠମଲ୍ଲିକର ବନକେଇ ଠାକୁରାଣୀ ପର୍ଯ୍ୟନ୍ତ ସ୍ୱଳ୍ପ-ପରିସର-ବିଶିଷ୍ଟା ମହାନଦୀର ଉଭୟ ପାର୍ଶ୍ୱସ୍ଥିତ ବିରାଟ ପର୍ବତଶ୍ରେଣୀର ପ୍ରାଚୀର; ଉପରେ ନୀଳାକାଶ, ତଳେ ନୀଳ ଜଳରାଶି, ଉଭୟ ପାର୍ଶ୍ୱରେ ତରିହରି

ପର୍ବତମାଳା ! ପ୍ରକୃତି ଦେବୀଙ୍କ ଶୂନ୍ୟସ୍ଥିତର ବରିଷ୍ଠ ଆବାସ । ଏହି ପର୍ବତମାଳା ଉପରେ ବିଶାଳ କଡ଼ିକାଠ ପକାଇ ଦେଲେ ପ୍ରକାଣ୍ଡ ଛାତ ପ୍ରସ୍ତୁତ ହେବାର ସମ୍ଭାବନା । ଏ ପର୍ଯ୍ୟନ୍ତ ଏଭଳି କଡ଼ିକାଠ ଜଗତରେ ସୃଷ୍ଟି ହୋଇ ନାହିଁ— ତେବେ ସାନ୍ତ୍ୱନାର ବିଷୟ ଏତିକି, ପ୍ରକୃତି ଦେବୀଙ୍କ ଗୃହର ଛାତ ଅନନ୍ତ ନୀଳ ଆକାଶ; ଆମ୍ଭମାନଙ୍କ ଭଳି ଅପଦାର୍ଥମାନଙ୍କରହିଁ କଡ଼ିକାଠର ପ୍ରୟୋଜନ ସିନା !

---

ଏକ ପାର୍ଶ୍ୱରେ ଦଶପଲ୍ଲାର ଗୋହାଲଡିହି ଏବଂ ବଉଦର ସୁନାକଣିଆ ପର୍ବତଶ୍ରେଣୀ, ଅପର ପାର୍ଶ୍ୱରେ ଦଶପଲ୍ଲାର ବାଇଗଣି ଏବଂ ଅନୁଗୋଳର ଟିକରପଡ଼ା ଅଞ୍ଚଳର ପର୍ବତଶ୍ରେଣୀ ତର ହରିତ୍ ସମ୍ଭାରରେ ସୁସଜ୍ଜିତ । ନୀଳ ଜଳଠାରୁ ନୀଳ ଆକାଶ ପର୍ଯ୍ୟନ୍ତ ପ୍ରକୃତିଙ୍କର ବିଶାଳ ମାରକତ ଶୋଭା ! ପ୍ରକାଣ୍ଡକାୟ ଶାଳବୃକ୍ଷରାଜି ପରସ୍ପରର ଆଲିଙ୍ଗନ-ପାଶରେ ଆବଦ୍ଧ ହୋଇ ସ୍ୱ ସ୍ୱ ପାଦଭୂମିସମୂହ ଛାୟାସମାଚ୍ଛନ୍ନ କରି ନୀରବରେ ଦଣ୍ଡାୟମାନ । ଅନ୍ୟାନ୍ୟ ଅସଂଖ୍ୟ ପ୍ରକାର ବୃକ୍ଷ ଏବଂ ଗୁଳ୍ମରାଜି ଏହି ଶାଳ ଅରଣ୍ୟ ସହିତ ସଂଶ୍ଳିଷ୍ଟ, କେବଳ ସୁନାକୋଣିଆ ନିକଟରେ କେତେକ ତାଳ ବୃକ୍ଷ ଦୃଷ୍ଟ ହୁଏ । ତମାଳ ବୃକ୍ଷ ତ ରହିଅଛି । ଫଳତଃ ପ୍ରାଚୀନ କବି-ରସନା-ନିଃସୃତ "ଶାଳ-ତାଳ-ତମାଳ"ର ଦୃଶ୍ୟ ଉପଭୋଗ କରିବାର ସ୍ଥାନ ଏହି ସିନା ? ଅପର୍ଯ୍ୟାପ୍ତ ପୁଷ୍ପରାଶି ଘେନ ଲତାକୁଞ୍ଜମାନ ମହାନଦୀ ଜଳୋପରି ପ୍ରସାରିତ ଏବଂ ଏହି ହେତୁରୁ କବିଙ୍କର ବର୍ଣ୍ଣନା—

"ନିର୍ଜନେ ଦିଅନ୍ତି ବନଦ୍ରୁମାବଳୀ ଜଳଦେବତାଙ୍କୁ ଯହିଁ ପୁଷ୍ପାଞ୍ଜଳି ।"

ଏଠାରେ ସମ୍ପୂର୍ଣ୍ଣ ସାର୍ଥକ । ଏଠାରେ ବିହଙ୍ଗର କଳଗୀତି, ସମୀରଣର ଅବ୍ୟାହତ ଗତି, ବୃକ୍ଷ ପତ୍ରର ଶରଶର ଶବ୍ଦ, କଳ୍ପନାମୁଖର କୃତିଙ୍କ ହୃଦୟର ଭକ୍ତି-ଉଚ୍ଛ୍ୱାସସ୍ୱରୂପ କବିଙ୍କର ସୁମଧୁର ଭାଷାରେ ମହିମାମୟୀ ପ୍ରକୃତି ଦେବୀଙ୍କ ପରିଚୟ ପ୍ରଦାନରେ ସର୍ବଦା ବ୍ୟାପୃତ ରହିବାକୁ ଇଚ୍ଛା କରେ ଏବଂ ଏହି ଇଚ୍ଛା ଅବଲୀଳାକ୍ରମେ କବିଙ୍କୁ ସୀମାତୀତ ରାଜ୍ୟକୁ ଘେନିଯାଏ ! ଦୂର ନଦୀବକ୍ଷରୁ ମନେ ହୁଏ, ଅନନ୍ତ ଆକାଶର ଅନନ୍ତ ଅଙ୍କେସ୍ଥିତା ତଟୋତ୍ଥିତା-ସଲିଳ-ସଂଲଗ୍ନ ପର୍ବତଶ୍ରେଣୀର ଅଜ୍ଞାତ ପବିତ୍ରତାରେ ମିଶି ଯାଇଅଛି !

---

ପର୍ବତ କାଟି ଯେଉଁ ମାର୍ଗ ସୋନପୁର ପର୍ଯ୍ୟନ୍ତ ଯାଇଅଛି, ତାହା ଠିକ୍ ମହାନଦୀ ଧାରରେହିଁ ଅବସ୍ଥାପିତ । ଏକଆଡ଼େ ପର୍ବତଶ୍ରେଣୀ ଆପାଦମସ୍ତକ ବୃକ୍ଷଲତାପୂର୍ଣ୍ଣ ଗଭୀର ଅରଣ୍ୟରେ ପରିପୂର୍ଣ୍ଣ, ତଳେ ମହାନଦୀ ଗର୍ଭର ଅତଡ଼ା ! ସ୍ଥାନେ ସ୍ଥାନେ ଏହି ଗଭୀର ଅରଣ୍ୟ ଭେଦ କରି ନିର୍ଝରଣୀ ଶ୍ରୁତିମଧୁର କଳନାଦରେ ଉପତ୍ୟକାର ଗଭୀରଗର୍ଭରେ ନିପତିତ ହେଉଅଛି । ନିର୍ଜନ ବନଭୂମିର ଅନ୍ତରାଳରୁ ଫେନରାଶି ଉଦ୍ଗୀରଣ କରି କରି ନିର୍ଝରର ନିର୍ମଳ ସଲିଳ-ପ୍ରବାହ ବଂଶହସ୍ତ ନିମ୍ନରେ ପତିତ

ହୋଇ ଗଭୀର ଆବର୍ତ୍ତ ଉତ୍ପାଦନ କରୁଅଛି; କିନ୍ତୁ ସେହି ଅନାବିଳ ଆବର୍ତ୍ତକୁ ଉଲ୍ଲଙ୍ଘନରେ ଅତିକ୍ରମ କରି ମହାନଦୀରେ ପଡୁଅଛି । ପଦ୍ମତୋଳା ଘାଟ ନିକଟସ୍ଥ ପାର୍ବତ୍ୟ ତରୁମୂଳରେ ଶିଖିଦଳର ସଂସ୍ଥିତି ଏବଂ ସମୟ ସମୟରେ ମୁକ୍ତପୁଚ୍ଛ ହୋଇ ନୃତ୍ୟ ଦର୍ଶନର ସୁବିଧା ପ୍ରାୟ ସୁଲଭ । 'ସପ୍ତକୋଶୀ'ର ଠିକ୍ ମଧ୍ୟସ୍ଥଳରେ ଗଭର୍ଣ୍ଣମେଣ୍ଟଙ୍କ କୋଠରି ଡାକ ବଙ୍ଗଳା ଏବଂ ବଙ୍ଗଳାରୁ ପ୍ରାୟ ଅର୍ଦ୍ଧମାଇଲ ବ୍ୟବଧାନରେ ଶିକ୍ଷା-ରଶ୍ମି-ହୀନ ନିଭୃତ ପଲ୍ଲୀ । କି ପବିତ୍ର ଏହି ପାର୍ବତ୍ୟ ନିର୍ଜନ ପଲ୍ଲୀ ! ଏଠାରେ ଐଶ୍ୱର୍ଯ୍ୟର ମାଦକତା ନାହିଁ, ଏଠାରେ ଉଚ୍ଚାଶାର ଉନ୍ମତ୍ତତା ନାହିଁ, ଏଠାରେ ଦ୍ୱେଷ, ହିଂସା, କୃତଘ୍ନତା ପ୍ରଭୃତି ମହାପାପ ନାହିଁ, ଏଠାରେ ଅନ୍ତର୍ବିଦ୍ରୋହ, ପରପୀଡ଼ନ ନାହିଁ । ପ୍ରକୃତ ସୁସନ୍ତାନମାନେ ପ୍ରକୃତିଙ୍କ ସ୍ନେହାଲିଙ୍ଗନରେ ସର୍ବଦା ଆବଦ୍ଧ, ପର୍ବତ ଉପତ୍ୟକାରେ ପରମାନନ୍ଦରେ ମୃଗୟା କରି ବୁଲନ୍ତି, ପର୍ଣ୍ଣକୁଟୀରରେ ଜୀବନଯାପନ କରି ପ୍ରକୃତି-ପଦରେ ନମ୍ର ମସ୍ତକ ଅବନତ କରିଥାନ୍ତି ! ଏହି ବନ୍ୟ ପୁଷ୍ପାଭରଣ-ଭୂଷିତ, ଶ୍ୟାମାଞ୍ଚଳମଣ୍ଡିତ, ନଦୀନିର୍ଝରସମାକୁଳ ଅନନ୍ତ ପ୍ରକୃତିଙ୍କ ପୁଣ୍ୟାଙ୍କଶୋଭି ପବିତ୍ର ପର୍ଣ୍ଣଶାଳା ନିକଟରେ ନଗରର ସୌଧାବଳୀର ମୋହାଙ୍କିତ ନଶ୍ୱର ସୌନ୍ଦର୍ଯ୍ୟ କେଡ଼େ ମ୍ରିୟମାଣ !

---

କୋଠରି ବଙ୍ଗଳାରେ ଅବସ୍ଥାନ କରି ସୌନ୍ଦର୍ଯ୍ୟ-ଭୀଷଣତାର ପୂର୍ଣ୍ଣ ବିକାଶ ଅବଲୋକନ କଲି । ତିନି ଆଡ଼େ ପର୍ବତଶ୍ରେଣୀ--ଏହି ପର୍ବତଶ୍ରେଣୀ ବିବିଧ ବୃକ୍ଷରାଜି ସମାକୀର୍ଣ୍ଣ, ହିଂସ୍ର-ଜନ୍ତୁ-ନିନାଦିତ, ନିବିଡ଼ ଅରଣ୍ୟରେ ପୂର୍ଣ୍ଣ ! ସମ୍ମୁଖରେ ମହାନଦୀର ବାଲୁରାଶି ପର୍ଯ୍ୟନ୍ତ କ୍ଷୁଦ୍ରାରଣ୍ୟଭୂଷିତ ଉନ୍ମୁକ୍ତ ଭୂମିଖଣ୍ଡ । ଅସ୍ତମିତ ପ୍ରାୟ ତପନର ହିରଣ୍ମୟ ରଶ୍ମିଜାଲ ପର୍ବତର ଅନ୍ତରାଳରୁ ଦୂରସ୍ଥ ଗିରିଚୂଡ଼ା ଏବଂ ବୃକ୍ଷଶୀର୍ଷ ଆଲୋକିତ କରି ପ୍ରତି ମୁହୂର୍ତ୍ତରେ ଦୀପ୍ତିହୀନ ହେଉଥିଲା ଏବଂ ପକ୍ଷିମାନଙ୍କର ଦିଗନ୍ତ କାକଳିରେ ପ୍ରଦୋଷ ସୂଚିତ ହେଉଥିଲା ।

ସନ୍ଧ୍ୟାର ଛାୟାରେ ପ୍ରକୃତି ସମାଚ୍ଛନ୍ନ ହେଲେ । ବୃକ୍ଷସମୂହରେ ଦଳବଦ୍ଧ ଖଦ୍ୟୋତ ଦୀପିକାର ସ୍ନିଗ୍ଧଜ୍ୟୋତି ଏବଂ ଚତୁର୍ଦ୍ଦିଗସ୍ଥ ଝିଲ୍ଲୀସ୍ୱନ ଯଥାକ୍ରମେ ନୟନ ଏବଂ କର୍ଣ୍ଣକୁ ଉପହାର ଦେଉଥିଲା । ଚତୁର୍ଦ୍ଦିଗ ଭୟଙ୍କର ନିସ୍ତବ୍ଧ ଏବଂ ସମଗ୍ର ବିଶ୍ୱପ୍ରକୃତି ଯେପରି ଏହି ଅନନ୍ତ ବ୍ରହ୍ମାଣ୍ଡର ଅଧୀଶ୍ୱରଙ୍କ ଧ୍ୟାନରେ ସମାହିତଚିତ୍ତ । ସେହି ମୌନ, ଶାନ୍ତ, ସ୍ତବ୍ଧ ସନ୍ଧ୍ୟାରେ ବିଶ୍ୱପ୍ରକୃତିଙ୍କ ଅନିର୍ବଚନୀୟ ସୌନ୍ଦର୍ଯ୍ୟ ସନ୍ଦର୍ଶନ କଲି ।

---

ଅନ୍ଧକାରର ଏକପ୍ରକାର ସୌନ୍ଦର୍ଯ୍ୟ ଅଛି, ଯାହା ଭାବୁକ ଏବଂ ଚିନ୍ତାଶୀଳ ବ୍ୟକ୍ତିମାନେହିଁ ଉପଲବ୍ଧି କରି ପାରିବେ । ଅନ୍ଧକାରକୁ ମୁଁ ବାସ୍ତବିକ ସୁଖ ପାଏଁ; କାହିଁକି, ତାହା ମୁଁ ଜାଣେ ନାହିଁ । ଅନ୍ଧକାର କ୍ରୋଡ଼ରେ ବସିଗଲେ ମନେ ହୁଏ, ସଂସାର ଜ୍ୱାଳା କିମ୍ବା ଯନ୍ତ୍ରଣା ଆଉ ଭୋଗିବାକୁ ହେବ ନାହିଁ ପରି ? ଅନ୍ଧକାରରେ ମୁଁ ନିଜକୁ

ପ୍ରକୃତଭାବରେ ଚିହ୍ନି ପାରେଁ ଏବଂ ଭବିଷ୍ୟତର ପଥ ଯେପରି କିଛି କିଛି ଦେଖେଁ । ମୋହର ମନେ ହୁଏ, ଏ ବିଶ୍ୱରେ ଯାହାର କେହି ନାହାନ୍ତି, ଅନ୍ଧକାରହିଁ ତାହାର ଏକମାତ୍ର ଆଶ୍ରୟ । ହୃଦୟର ବ୍ୟାକୁଳତାରେ ଅନ୍ଧକାରରେ ବୁଡିଗଲେ ପୃଥିବୀର ଦୁଃଖ, କଷ୍ଟ, ଅଭାବ ଆଉ ସ୍ମରଣ ହୁଏ ନାହିଁ । ଅନ୍ଧକାରର ଅନ୍ଧରୂପ କେତେ କାବ୍ୟର ଉତ୍ପତ୍ତି ସାଧନ କରିଅଛି, କେତେ ଅକବିଙ୍କୁ କବି କରାଇଅଛି । ଏହି ସୌନ୍ଦର୍ଯ୍ୟର ଈଷତ୍ ସ୍ପଷ୍ଟ ଆଭାସ ପାଇ କେତେ ପ୍ରାଣ ସଂସାରରେ ଭୋଗସୁଖର ମାୟା ବିସର୍ଜନ କରିଅଛି । ଅନ୍ଧକାରର ମର୍ଯ୍ୟାଦା ଯେ ବୁଝିଅଛନ୍ତି, ସେ ନିଶ୍ଚୟ କହିବେ, ସଂସାର ଅନିତ୍ୟତା ମଧ୍ୟରେ ତୃପ୍ତି ନାହିଁ । ଅନ୍ଧକାରରେ ବସି କେତେ ନିରାଶ ହୃଦୟ ନୂତନ ପ୍ରତିଜ୍ଞାର ବଳ ଲାଭ କରିଅଛି, ତାହାର ସଂଖ୍ୟା କିଏ କହିବ ?

---

ମାନବର ପ୍ରକୃତିଭେଦରେ ପ୍ରକୃତିଙ୍କ ଭିନ୍ନ ଭିନ୍ନ ଚିତ୍ର ଲୋକର ଅନୁରାଗ ଆକର୍ଷଣ କରେ । ପ୍ରଫୁଲ୍ଲତା, ଆଶା, ସୁଖପ୍ରବୃତ୍ତି ଯାହାଙ୍କର ଅଧିକ, ସେ ଆଲୋକଭକ୍ତ । ଯାହାଙ୍କ ପ୍ରକୃତି ବିଷାଦ, ନିରାଶା ଏବଂ ଅତୃପ୍ତିରେ ଗଠିତ, ସେ ନିଶ୍ଚୟ ଅନ୍ଧକାରର ଉପାସକ । ଆଲୋକ—କାର୍ଯ୍ୟ ଓ ଉତ୍ସାହ; ଅନ୍ଧକାର ବିଶ୍ରାମ ଓ ଆତ୍ମଚିନ୍ତା । ଆମ୍ଭେମାନେ ଆଲୋକର ଦୃଢ଼ଭିତ୍ତି ଉପରେ ଛିଡ଼ା ହୋଇ ଜୀବନର ଦିଗନ୍ତ ସୀମା ପର୍ଯ୍ୟବେକ୍ଷଣପୂର୍ବକ ଆମ୍ଭମାନଙ୍କ କର୍ତ୍ତବ୍ୟ ନିରୂପଣ କରି ପାରୁଁ । କିନ୍ତୁ ଅନ୍ଧକାରରେ ଆମ୍ଭେମାନେ ଏ ସମସ୍ତ ସାଂସାରିକ ଗଣନାରୁ ବଞ୍ଚିତ ହୋଇଥାଉଁ । ଅନ୍ଧକାରରେ ବାହ୍ୟଜଗତ୍ ଲୁଚିଯାଏ, କେବଳ ଚିନ୍ତାଜଗତ୍ ଥାଏ । ଏହି ଅନ୍ତର୍ଜଗତର ସୀମା ନାହିଁ, ଅନ୍ଧକାରର ମଧ୍ୟ ସୀମା ନାହିଁ । ଅନ୍ଧକାରରେ ଆମ୍ଭେମାନେ ଆତ୍ମଶକ୍ତି ଉପରେ ନିର୍ଭର କରି ନ ପାରୁଁ, ଆମ୍ଭେମାନେ ଯେ ନିତାନ୍ତ ଅସହାୟ, ଏହି ଧାରଣା କ୍ରମେ କ୍ରମେ ହୃଦୟରେ ବଦ୍ଧମୂଳ ହୁଏ । ଅନ୍ଧକାରର ବିଭୀଷିକାମୟ ସୌନ୍ଦର୍ଯ୍ୟ ପ୍ରଭାବରେ ଆମ୍ଭମାନଙ୍କ ଜୀବନର ପ୍ରକୃତ ଉପକାର ହୁଏ ।

---

ଅନ୍ଧକାରରେ ଅନନ୍ତଭାବର ଅତି ସୁନ୍ଦର ଉପଲବ୍ଧି ହୁଏ । ସସୀମ ହୋଇ ଆମ୍ଭେମାନେ ଏହି ତମିସ୍ରାଚ୍ଛାଦିତ ପ୍ରାକୃତିକ ଶୋଭାରେ ଅସୀମ କିଣ, ତାହା ବୁଝି ନେଉଁ । ସେତେବେଳେ ସ୍ଥାନ ଆଉ ଦୃଷ୍ଟିକୁ ଅବରୁଦ୍ଧ କରି ପାରେ ନାହିଁ । ମୃତ୍ୟୁ ପରକାଳ ପ୍ରଭୃତି ଚିନ୍ତାରାଜ୍ୟ ଆକ୍ରମଣ କରେ । ଏକପ୍ରକାର ଅଜ୍ଞାତ ଭୟ ଏବଂ ଅଟଳ ନିୟତି ଜୀବନର ଭିତ୍ତି ଉପରେ ସବଳରେ ଆଘାତ କରୁଥାଏ । ଯାହା ମନୁଷ୍ୟ କେବେହେଁ ଶିଖି ପାରିବ ନାହିଁ—ଯେ ତତ୍ତ୍ୱ ଜାଣିଲେ ମନୁଷ୍ୟ ତ୍ରିକାଳଜ୍ଞ ହୋଇଯିବ—ସେହି ମରଣାନ୍ତ ତତ୍ତ୍ୱ ଭେଦ କରିବାକୁ ହୃଦୟ ବିଦ୍ରୋହୀ ହୁଏ । ସେତେବେଳେ ଦେଶ ଓ କାଳର ଯେ ଅଭେଦ୍ୟ ଶୃଙ୍ଖଳ ଆମ୍ଭମାନଙ୍କୁ ପୃଥିବୀରେ ବାନ୍ଧି ରଖିଅଛି, ତାହା ଛିଣ୍ଡାଇ ଦେବା ସକାଶେ ନିର୍ଭୀକ ଉଦ୍ୟମ ଆସି ଉପସ୍ଥିତ ହୁଏ !

---

# ପୁରାଣ

( SELECTION FROM JALANDHAR DEV'S MAHABHARAT CRITICISM )

ପୁରାଣ ( ପୁରା-ନ ) ପ୍ରାଚୀନ ଉପାଖ୍ୟାନ, ପୁରାବୃତ୍ତ, ପୁରାତନ କଥା ( କାହାଣୀ ) । ଏକ ହିସାବରେ ପୁରାଣ ବେଦଠାରୁ ମଧ୍ୟ ପ୍ରାଚୀନ; କାରଣ ବେଦ-ରଚନା ପୂର୍ବରୁ ମଧ୍ୟ ଲୋକମୁଖରେ ତତ୍‌ପୂର୍ବବର୍ତ୍ତୀ ପ୍ରାଚୀନ ଉପାଖ୍ୟାନମାନ ବିଦ୍ୟମାନ ଥିଲା ।

ମହାଭାରତ ପ୍ରଭୃତି ପୁରାଣ ଆଖ୍ୟା ପାଇଅଛନ୍ତି । ଏଥିର ତାତ୍ପର୍ଯ୍ୟ କଣ ? ବୈଦିକ ଯୁଗର ବା ତତ୍‌ପୂର୍ବବର୍ତ୍ତୀ ଯୁଗର ପାରମ୍ପର୍ଯ୍ୟୋପଦିଷ୍ଟ ପୁରାବୃତ୍ତ ପାଞ୍ଜଳ ଭାଷାରେ ପଞ୍ଚଲକ୍ଷଣାନ୍ୱିତ ବା ଦଶଲକ୍ଷଣାନ୍ୱିତ ହୋଇ ଲିଖିତ ହୋଇଅଛନ୍ତି ।

ଲେଖକର ସମସାମୟିକ ଘଟଣାର ବିବରଣକୁ ପୁରାଣ ବୋଲିବାର ଅଯୌକ୍ତିକ । ଲେଖକ ମହାଭାରତକୁ ପୁରାଣ ଆଖ୍ୟା ଦେଇଥିବାରୁ ସେ ତହିଁର ସମସାମୟିକ ଲୋକ ନୁହନ୍ତି । ଆମ୍ଭମାନଙ୍କ ଦେଶରେ ଯେମନ୍ତ ଲୋକମୁଖରେ ଅନେକ-ଗୁଡ଼ିଏ କାହାଣୀ ଅଛି, ପ୍ରାଚୀନକାଳରେ ଲୋକମୁଖରେ ମଧ୍ୟ ଅନେକ କାହାଣୀ ଥିଲା; ସେ ସମସ୍ତ ସଂଗୃହୀତ ହୋଇ ସୁଶୃଙ୍ଖଳଭାବରେ ଲିଖିତ ହୋଇଅଛି ଏବଂ ସେହି ଗ୍ରନ୍ଥ-ମାନଙ୍କୁ ଆମ୍ଭେମାନେ ପୁରାଣ ବୋଲି ନିର୍ଦ୍ଦେଶ କରୁଅଛୁଁ । ପୁରାକାଳରେ ଏକ ଦଳ ଲୋକ ଥିଲେ, ସେମାନଙ୍କର ବ୍ୟବସାୟ ଥିଲା ଲୋକମାନଙ୍କୁ ପୁରାବୃତ୍ତ ଶୁଣାଇବା । ଲୋମହର୍ଷଣ, ସୂତ, ସୌତି ପ୍ରଭୃତି ପୌରାଣିକଶ୍ରେଷ୍ଠ । ଏମାନେ ଗଦ୍ୟରେ କଥାରେ ଲୋକଙ୍କୁ ପୁରାଣ ଶୁଣାନ୍ତି ।

ପଞ୍ଚଲକ୍ଷଣାନ୍ୱିତ ବା ଦଶଲକ୍ଷଣାନ୍ୱିତ ପୁରାଣସମୂହ ଯାହା ଆମ୍ଭମାନଙ୍କର ହସ୍ତଗତ ହୋଇଅଛନ୍ତି, ସେ ସମସ୍ତ ପୌରାଣିକ ଯୁଗରେ ଲିଖିତ ହୋଇଅଛନ୍ତି । ପୁସ୍ତକରେ ରଚକର ନାମ ନ ଥିବାରୁ କେଉଁ କବି କେଉଁ ପୁସ୍ତକର ରଚକ, ତାହା ଜ୍ଞାତ ହେବା ଅସମ୍ଭବ । ପୁରାଣରଚକମାନେ କବିଯଶଃପ୍ରାର୍ଥୀ ନ ଥିଲେ । ଜ୍ଞାନର ମତ ବିସ୍ତାରହିଁ ସେମାନଙ୍କର ମୂଳ ଉଦ୍ଦେଶ୍ୟ ଥିଲା । ଏଣୁ ଗ୍ରନ୍ଥ ରଚନା କରି ବ୍ୟାସରଚିତ ବୋଲି ପ୍ରକାଶ କରିଅଛନ୍ତି !

ବ୍ୟାସ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବାଚକ ନୁହେ । ଯେଉଁ ବ୍ୟକ୍ତି ଯୁଗ-ଭେଦରେ ବେଦ ବିଭାଗ କରନ୍ତି, ସେ ବ୍ୟାସ । ଏ ହିସାବରେ ସ୍ୱୟଂ ବ୍ରହ୍ମା ବଶିଷ୍ଠ ପ୍ରଭୃତି ଅଠାଇଶ ଜଣ ଅତୀତ ବ୍ୟାସ—ପୁଣି ଭବିଷ୍ୟତରେ ଦ୍ରୌଣି ପ୍ରଭୃତି ବ୍ୟାସ ହେବେ । ଏହା ଛଡ଼ା ପୁଣି ବ୍ୟାସ ଶବ୍ଦର ଆଉ ଗୋଟିଏ ଅର୍ଥ ଅଛି । "ଯେଉଁ ବିପ୍ର ବିଶିଷ୍ଟ, ସ୍ପଷ୍ଟାକ୍ଷରପଦଯୁକ୍ତ, କଳସ୍ୱରସମାଯୁକ୍ତ, ରସଭାବସମନ୍ୱିତ, ସୁବୋଧ, ବେଦ-

ବ୍ରାହ୍ମଣାଦି ଗ୍ରନ୍ଥରୁ ସଂଗୃହୀତ ପୁରାଣାଦି ଗ୍ରନ୍ଥ ପ୍ରକାଶ କରେ, ସେ ବ୍ୟାସ ।" ଏ ହିସାବରେ ସମସ୍ତ ପୁରାଣଲେଖକ ବ୍ୟାସ । ସୁତରାଂ ଭାଗବତ ଲେଖକ, ସ୍କନ୍ଦପୁରାଣ ଲେଖକ, ଭବିଷ୍ୟତ୍ ପୁରାଣ ଲେଖକଗଣ ଭାଗବତକୁ, ସ୍କନ୍ଦପୁରାଣକୁ, ଭବିଷ୍ୟତ୍‌ପୁରାଣ ପ୍ରଭୃତିକୁ ବ୍ୟାସରଚିତ ବୋଲି ପ୍ରକାଶ କରିବା ଆଶ୍ଚର୍ଯ୍ୟ କଣ ?

ମହାଭାରତ ବିଷୟ ମଧ୍ୟରୁ କେତେକ ବୈଦିକ ଗ୍ରନ୍ଥରୁ ଏବଂ କେତେକ ଲୋକ ମୁଖରୁ ସଂଗୃହୀତ । ଯେଉଁଗୁଡ଼ିକ, ଲୋକ ମୁଖରୁ ସଂଗୃହୀତ, ତାହା ନିର୍ଦ୍ଧାରଣର ଉପାୟ ନାହିଁ; ମାତ୍ର ବୈଦିକ ଗ୍ରନ୍ଥରୁ ସଂଗୃହୀତ ବିଷୟର ନିର୍ଦ୍ଧାରଣ ନିମନ୍ତେ ଆମ୍ଭମାନଙ୍କୁ ବୈଦିକ ଗ୍ରନ୍ଥ ଆଲୋଡ଼ନ କରିବାକୁ ପଡ଼ିବ ।

ମହାଭାରତରେ ଅସଂଖ୍ୟ ଅପ୍ରାସଙ୍ଗିକ ଉପାଖ୍ୟାନ ଅଛି, ସେଗୁଡ଼ିକର ମୂଳ ବିଷୟ ସହିତ ଅତି ଅଳ୍ପ ସମ୍ପର୍କ ଥିବାର ଦେଖାଯାଏ । ବୋଧ ହୁଏ, କୁରୁ ପାଣ୍ଡବଙ୍କର ବିବାଦ ଏବଂ ଯୁଦ୍ଧ ମହାଭାରତର ମୁଖ୍ୟ ବିଷୟ ଏବଂ ସଙ୍ଗେ ସଙ୍ଗେ କୃଷ୍ଣ ଓ ବ୍ୟାସଙ୍କର ଅତ୍ୟଧିକ ପ୍ରଶଂସାରେ ବୈଷ୍ଣବ ଧର୍ମ ପ୍ରଚାର ଉଦ୍ଦେଶ୍ୟ ଅନ୍ତର୍ନିହିତ ।

ମହାଭାରତୋକ୍ତ ଜଣକେତେ ପ୍ରଧାନ ବ୍ୟକ୍ତିଙ୍କର ପ୍ରକୃତ ପରିଚୟ ପାଇବା ନିମନ୍ତେ ବୈଦିକ ଗ୍ରନ୍ଥ ଆଲୋଚନା କରି ଯେଉଁ ପ୍ରମାଣ ପାଇଅଛୁଁ, ତାହା ନିମ୍ନରେ ପ୍ରକାଶ କରୁଅଛୁଁ ।

ପ୍ରଥମରୁ ବ୍ୟାସ; କାରଣ ସେ ପରା ଯୁଧିଷ୍ଠିର ଏବଂ ଦୁର୍ଯ୍ୟୋଧନ ପ୍ରଭୃତିଙ୍କର ଅଜା ଏବଂ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର ଜନକ, ପରାଶର ସତ୍ୟବତୀଙ୍କର ପୁତ୍ର ଏବଂ ମହାଭାରତର ରଚକ ଓ ବେଦବିଭାଗକର୍ତ୍ତା ଋଷି । ମହାଭାରତରୁ ବ୍ୟାସଙ୍କର ଏହି ପରିଚୟ ପାଉଅଛୁଁ । ବୈଦିକ ଗ୍ରନ୍ଥରେ ବ୍ୟାସଙ୍କର ସ୍ଥାନ କେଉଁଠାରେ, ଦେଖାଯାଉ । ତୈତ୍ତିରୀୟ ଆରଣ୍ୟକରେ ଲିଖିତ ଅଛି, ବ୍ୟାସ ପାରାଶର୍ଯ୍ୟ ବିଶ୍ୱକ୍‌ସେନଙ୍କର ଶିଷ୍ୟ; ଏତଦ୍‌ଭିନ୍ନ ତାହାଙ୍କର ଅନ୍ୟ ପରିଚୟ ମିଳେ ନାହିଁ । ମହାଭାରତର ପରାଶରପୁତ୍ର ବ୍ୟାସ ଏବଂ ତୈତ୍ତିରୀୟ ଆରଣ୍ୟକର ବ୍ୟାସ ପାରାଶର୍ଯ୍ୟ ଅଭିନ୍ନ ବୋଲି‌ଯାଇ ପାରେ । ବ୍ୟାସମାତା ସତ୍ୟବତୀଙ୍କର ନାମ ଦେଖାଯାଏ ନାହିଁ । ସତ୍ୟବତୀ ଶବ୍ଦର ଅର୍ଥ ଦୃଷ୍ଟିରେ ଏହା ରୂପକ ବୋଲି ଅନୁମାନ କରାଯାଇ ପାରେ । ଯେଉଁ ପରାଶର ଋଷିଙ୍କର ପୁତ୍ର ବ୍ୟାସ ତୈତ୍ତିରୀୟ ବ୍ରାହ୍ମଣ ରଚନା ପୂର୍ବେ ବିଦ୍ୟମାନ ଥିଲେ, ସେ ପୁଣି ପୁରାଣଯୁଗରେ ମହାଭାରତ ଲେଖିଅଛନ୍ତି ବୋଲିବା ଯୁକ୍ତିସଙ୍ଗତ ନୁହେ । ପାଠକଗଣ ଅବଶ୍ୟ ସ୍ୱୀକାର କରିବେ ଯେ, ବୈଦିକ ଭାଷା ଓ ସଂସ୍କୃତ ଭାଷା ଏକ ନୁହେ ଏବଂ ଏକ ସମୟର ଭାଷା ନୁହେ । ବୈଦିକ ଯୁଗର ଲୋକ ପୌରାଣିକ ସଂସ୍କୃତ ଲେଖିବା ସମ୍ଭବପର ନୁହେ । ପୁଣି ଯେଉଁ ବ୍ୟକ୍ତିର ନାମ ଆମ୍ଭେମାନେ ବୈଦିକ ଗ୍ରନ୍ଥରେ ପାଇବା, ସେହି ବ୍ୟକ୍ତି ବୈଦିକ ଗ୍ରନ୍ଥ ଲେଖା ବେଳେ କିମ୍ବା ତତ୍‌ପୂର୍ବେ ଜୀବିତ ଥିଲେ ବୋଲିବାକୁ ହେବ । ମହାଭାରତର ବିନ୍ଦୁବନ ପୂର୍ବେ ବ୍ରାହ୍ମଣଗ୍ରନ୍ଥମାନ ରଚିତ ହୋଇଥିବା ସର୍ବବାଦିସମ୍ମତ । ବ୍ରାହ୍ମଣଗ୍ରନ୍ଥରେ ଯେଉଁ ବ୍ୟକ୍ତିର ନାମ ଅଛି, ସେ ପୁରାଣ ରଚନା ବେଳେ ନ ଥିଲେ, ଏହା ସ୍ୱଚ୍ଛନ୍ଦରେ

କହାଯାଇ ପାରେ । ସମ୍ଭବତଃ ବ୍ୟାସ ମହାଭାରତର ମୂଳ ଉପାଖ୍ୟାନର ଉଦ୍ଭାବନକର୍ତ୍ତା ଏବଂ ବସ୍ତୁତଃ ଧୃତରାଷ୍ଟ୍ର ଏବଂ ପାଣ୍ଡୁଙ୍କର ଖ୍ୟାତିର ପ୍ରଥମ ସୂତ୍ରପାତକର୍ତ୍ତା; ଏଣୁ ବ୍ୟାସ ପରେ ମହାଭାରତରଚକ ଏବଂ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର ଜନକରୂପେ ପରିଗୃହୀତ ହୋଇଅଛନ୍ତି ।

ପାଣ୍ଡବ-ତରୀର କର୍ଣ୍ଣଧାର, ଉପନିଷଦ୍-ଦୋଗ୍ଧା, ଗୋପାଳନନ୍ଦନ କୃଷ୍ଣଙ୍କର ପରିଚୟ ପୁରାଣାଦିରେ ଯଥେଷ୍ଟରୂପେ ପାଉଅଛୁଁ । ବୈଦିକ ଗ୍ରନ୍ଥରେ ତାଙ୍କର ସ୍ଥାନ ଅନ୍ୱେଷଣ କରାଯାଉ । ଆମ୍ଭେମାନେ ପୁରାଣରୁ ଜାଣୁ, କୃଷ୍ଣ ଯଦୁବଂଶୀୟ ବସୁଦେବଙ୍କ ନନ୍ଦନ । ବସୁଦେବ ଶବ୍ଦ ବୈଦିକ ଗ୍ରନ୍ଥରେ ଦେଖାଯାଏ ନାହିଁ । ଯଦୁବଂଶ ଗୋଟିଏ ଅତି ପ୍ରାଚୀନ ବଂଶ । ତୁର୍ବଶବଂଶୀୟମାନଙ୍କ ସହ ଏମାନେ ମିଳିତ ହୋଇ ସୁଦାସମାନଙ୍କ ବିପକ୍ଷରେ ଯୁଦ୍ଧ କରିଥିବାର ବିବରଣ ଋଗ୍‌ବେଦରେ ଦୃଷ୍ଟ ହୁଏ । ବୈଦିକ ଗ୍ରନ୍ଥରେ କୃଷ୍ଣ ନାମ ମିଳେ—ଜଣେ କୃଷ୍ଣ ଋଗ୍‌ବେଦର ମନ୍ତ୍ରଦ୍ରଷ୍ଟା, ତାଙ୍କର ଅନ୍ୟ ପରିଚୟ ନାହିଁ । ଐତରେୟ ଆରଣ୍ୟକର ଜଣେ ଋଷିଙ୍କର ନାମ କୃଷ୍ଣ ହାରିତ । ଜଣେ କୃଷ୍ଣ ଧୃତି ସାତ୍ୟକି ସତ୍ୟଶ୍ରବଙ୍କର ଶିଷ୍ୟ ବୋଲି ଜୈମିନୀୟ ଉପନିଷଦରେ ଲିଖିତ ଅଛି । ଏହା ଛଡ଼ା ଜଣେ କୃଷ୍ଣଦତ୍ତ ଲୌହିତ୍ୟଙ୍କ ନାମ ମଧ୍ୟ ଅଛି । ଉପରୋକ୍ତ କୌଣସି କୃଷ୍ଣଙ୍କ ସହିତ ମହାଭାରତର କୃଷ୍ଣଙ୍କର ସମ୍ବନ୍ଧ ନ ଥିଲା ପରି ଜଣା ଯାଉଅଛି । ଉପରୋକ୍ତ କେତୋଟି କୃଷ୍ଣ ଛଡ଼ା ବୈଦିକ ଗ୍ରନ୍ଥରେ ଆଉ ଜଣେ କୃଷ୍ଣଙ୍କର ନାମ ଦେଖିବାକୁ ପାଉଁ, ତାହା ଦେବକୀପୁତ୍ର କୃଷ୍ଣ । ଏହି କୃଷ୍ଣ ଘୋର ଆଙ୍ଗିରସ ଋଷିଙ୍କର ଶିଷ୍ୟ ।

ତଦ୍ଧୈତଦ୍ ଘୋର ଆଙ୍ଗିରସଃ
କୃଷ୍ଣାୟ ଦେବକୀପୁତ୍ରାୟୋ
କ୍ତ୍ୱୋବାଚାପିପାସ ଏବ ସ ବଭୂବ ।
× × × ଛା. ଉ ୩।୧୭।୬

ମହାଭାରତର କୃଷ୍ଣ ମଧ୍ୟ ଦେବକୀଙ୍କର ପୁତ୍ର, ସୁତରାଂ ଛାନ୍ଦୋଗ୍ୟ ଉପନିଷଦର "କୃଷ୍ଣ ଦେବକୀପୁତ୍ର" ଏବଂ ମହାଭାରତର "ଦେବକୀପୁତ୍ର କୃଷ୍ଣ" ଅଭିନ୍ନ ବୋଲିଯାଇ ପାରେ । ଏହି କୃଷ୍ଣଙ୍କର ତତ୍କାଳୀନ ଲୋକଙ୍କଠାରେ ଯଥେଷ୍ଟ ଖ୍ୟାତି ଥିବାରୁ ତାହାଙ୍କୁ ନରଦେବରୂପେ ପରବର୍ତ୍ତୀ ଲୋକେ ସମ୍ମାନ କରୁଥିଲେ । କ୍ରମେ ପୁରାଣ ଯୁଗରେ କୃଷ୍ଣ ସ୍ୱୟଂ ଭଗବାନ୍ ହୋଇଅଛନ୍ତି । ଦେବତା ହେଲେ ବା ନର ଦେବତ୍ୱ ପ୍ରାପ୍ତ ହେଲେ କଶ୍ୟପ ପୁତ୍ର ହେବାକୁ ହେବ, ଏହା ଗୋଟିଏ ପୌରାଣିକ ସ୍ୱତଃସିଦ୍ଧ । ଏଣୁ ହରିବଂଶ କହିଲେ, କୃଷ୍ଣପିତା ବସୁଦେବ କଶ୍ୟପ ଏବଂ କୃଷ୍ଣମାତା ଦେବକୀ ଅଦିତି । ପୁଣି ବ୍ରହ୍ମବୈବର୍ତ୍ତ ପୁରାଣ ଗାଇଲେ—

"କଶ୍ୟପୋ ବସୁଦେବଶ୍ଚ ଦେବମାତା ଚ ଦେବକୀ ।
ପୂର୍ବପୁଣ୍ୟଫଳେନୈବ ସମ୍ପ୍ରାପ ଶ୍ରୀହରିଂ ସୁତଂ ।"

କୃଷ୍ଣ ବିଷ୍ଣୁତ୍ୱ ପ୍ରାପ୍ତ ହେଲେ କିପରି, ତାହା ପରେ ଆଲୋଚିତ ହେବ ।

ବ୍ୟାସ ଓ କୃଷ୍ଣ ମହାଭାରତରେ ଦୁଇ ଜଣ ମୁଖ୍ୟ ବ୍ୟକ୍ତି । ଏଥି ଉତ୍ତାରୁ କୁରୁ ପାଣ୍ଡବଙ୍କର ବଂଶ ବିବରଣ ଆଲୋଚନା କରାଯାଉ ।

"ଭରତାଭାରତୀ କୀର୍ତ୍ତି ର୍ଯେନେଦଂ ଭାରତଂ କୁଳଂ"

ଭରତଙ୍କର ନାମରୁ ଭାରତବର୍ଷ ଏବଂ ଭରତଙ୍କ ବଂଶଧରଙ୍କର ଯୁଦ୍ଧର ନାମ ଭାରତଯୁଦ୍ଧ । ଭରତଙ୍କର ଅନ୍ୟ ନାମ ଶାକୁନ୍ତଳେୟ ଓ ଦୌଷ୍ମନ୍ତି । ଭରତ ଶକୁନ୍ତଳା ଓ ଦୁଷ୍ମନ୍ତଙ୍କର ପୁତ୍ର । ଋଗ୍‌ବେଦରେ ଏହି ବଂଶର ଉଲ୍ଲେଖ ଅଛି ।

"ଶକୁନ୍ତଳା ନାଡ଼ପିତ୍ୟପ୍ସରା ଭରତଂ ଦଧେ ପରଃ ସହସ୍ରାନନ୍ଦ୍ରାୟାଶ୍ୱାନ୍ମେଧ୍ୟାନ୍ୟ ଆହରାଦ୍‌ବିଜିତ୍ୟ ପୃଥିବୀଂ ସର୍ବାମିତି ।" ଶ. ବ୍ରା. ୧୩।୫।୧୩

ଐତରେୟ ବ୍ରାହ୍ମଣାଦିରେ ମଧ୍ୟ ଭରତ ଦୌଷ୍ମନ୍ତିଙ୍କର ନାମ ମିଳେ ।

କୁରୁବଂଶ ମଧ୍ୟ ଅତି ପ୍ରାଚୀନ ବଂଶ । ଋଗ୍ବେଦରେ କୁରୁବଂଶର ଉଲ୍ଲେଖ ଅଛି । ଭରତବଂଶ ପରେ କୁରୁବଂଶ ନାମରେ ଅଭିହିତ ହୋଇଥିବାର ପଣ୍ଡିତଗଣ ଅନୁମାନ କରନ୍ତି । ମହାଭାରତପାଠରୁ ମଧ୍ୟ ତାହା ଜଣାଯାଏ ।

ପାଞ୍ଚାଳବଂଶ ମଧ୍ୟ ପ୍ରାଚୀନ ବଂଶ । ବୈଦିକ ଗ୍ରନ୍ଥରେ କୁରୁ ପାଞ୍ଚାଳର ଯଥେଷ୍ଟ ଉଲ୍ଲେଖ ଅଛି । ଏହା ଛଡ଼ା ଯଦୁ ଓ ପୃଥୁବଂଶର ଉଲ୍ଲେଖ ବୈଦିକ ଗ୍ରନ୍ଥରେ ଦେଖିବାକୁ ପାଉଁ । ମାତ୍ର ଦୁଃଖର କଥା, ପାଣ୍ଡବବଂଶର ନାମ କୌଣସିଠାରେ ଦେଖାଯାଉ ନାହିଁ ।

ଯୁଦ୍ଧସ୍ଥଳର ନାମ କୁରୁକ୍ଷେତ୍ର । ବୈଦିକ ଗ୍ରନ୍ଥରେ କୁରୁକ୍ଷେତ୍ରର ନାମ ଅଛି । କୁରୁକ୍ଷେତ୍ରରେ ଦୃଷଦ୍ୱତୀ, ସରସ୍ୱତୀ ଏବଂ ଆପୟା ନଦୀ ପ୍ରବାହିତ ହେଉଥିବାର ଉଲ୍ଲେଖ ଅଛି । କୁରୁକ୍ଷେତ୍ରର ଉତ୍ତରରେ ଖାଣ୍ଡବ ଏବଂ ଦକ୍ଷିଣରେ ତୁର୍ଘ୍ନ । ମହାଭାରତ ମତରେ ସମନ୍ତପଞ୍ଚକରେ ଯୁଦ୍ଧ ହୋଇଥିଲା, ଯେଉଁଠାରେ ପରଶୁରାମ କ୍ଷତ୍ରିୟ ରୁଧିରଦ୍ୱାରା ପାଞ୍ଚୋଟି ହ୍ରଦ ନିର୍ମାଣ କରି ପିତୃତର୍ପଣ କରିଥିଲେ । "ସମନ୍ତପଞ୍ଚକେ ପଞ୍ଚ ଚ ନାର-ରୌଧିରାନ୍ ହ୍ରଦାନ୍ ।" ମାତ୍ର ଭାଗବତରଚକଙ୍କର ପାଞ୍ଚୋଟି କ୍ଷତ୍ରିୟରୁଧିର ହ୍ରଦରେ ପିତୃତର୍ପଣ କରିବା ମନଃପୂତ ହେଲା ନାହିଁ । ଏଣୁ ତାଙ୍କ ପୋଥିରେ "ନବାନ୍ ହ୍ରଦାନ୍" ନିର୍ମାଣ କରି ପିତୃତର୍ପଣ କଲେ । ଭାଗବତ କଥା ସତ, କି ଭାରତ କଥା ସତ, ପାଠକେ ବୁଝି ନେବେ । ତେବେ ସମନ୍ତପଞ୍ଚକର ନାମ ବୈଦିକ ଗ୍ରନ୍ଥରେ ନାହିଁ ।

ହସ୍ତିନାପୁର କୁରୁ ରାଜଧାନୀ, ହସ୍ତୀ ନାମକ ରାଜାଙ୍କଦ୍ୱାରା ସ୍ଥାପିତ ହୋଇଥିବାରୁ ନାମ ହସ୍ତିନାପୁର । ( ୨।୯୫।୩୫ ) ମାତ୍ର ବୈଦିକ ଗ୍ରନ୍ଥରେ ଏ ନଗରର ନାମୋଲ୍ଲେଖ ନ ଥିବାରୁ ବୈଦିକ ଗ୍ରନ୍ଥର ପରବର୍ତ୍ତୀ ନାମ ବୋଲି ଅନୁମାନ କରାଯାଏ ।

ଜନମେଜୟ ସର୍ପସତ୍ର କରିଥିଲେ, ମହାଭାରତ ଶ୍ରବଣ କରିଥିଲେ । ଜନମେଜୟ କିଏ ଏବଂ କେଉଁ ଯୁଗର ଲୋକ ? ମହାଭାରତ ପ୍ରାରମ୍ଭରେ ସୌତି

କହିଲେ ଯେ, ପାରିକ୍ଷିତ ଜନମେଜୟଙ୍କର ସର୍ପସତ୍ରରେ ବୈଶମ୍ପାୟନ ମହାଭାରତ ବ୍ୟାଖ୍ୟାନ କଲେ । ଆମ୍ଭେମାନେ ଏଥିରୁ ସ୍ପଷ୍ଟରୂପେ ଜାଣି ପାରିଲୁଁ ଯେ, ଜନମେଜୟ ପରୀକ୍ଷିତଙ୍କର ପୁତ୍ର । ମହାଭାରତ ପୌଷ୍ୟ ପର୍ବରୁ ମଧ୍ୟ ଜ୍ଞାତ ହେଲୁଁ ଯେ, ଜନମେଜୟ ପରୀକ୍ଷିତଙ୍କର ପୁତ୍ର ଏବଂ ତାହାଙ୍କର ତିନି ଜଣ ଭ୍ରାତା ଥିଲେ, ନାମ—ଶ୍ରୁତସେନ, ଉଗ୍ରସେନ ଓ ଭୀମସେନ; ପୁଣି ଏମାନେ ସର୍ପସତ୍ର କରିଥିଲେ । ଏହି ଚାରି ଭ୍ରାତାଙ୍କ ନାମ ବୈଦିକ ଗ୍ରନ୍ଥରେ ଅଛି କି ନାହିଁ, ଏହା ଅନୁସନ୍ଧାନ କରିବାକୁ ଯାଇ ଅମ୍ଭେମାନେ ନିମ୍ନୋକ୍ତ ପ୍ରମାଣ ପାଉଅଛୁଁ । ଅଥର୍ବ ବେଦରେ ପରୀକ୍ଷିତଙ୍କ ନାମ ଦୃଷ୍ଟ ହୁଏ । ଏହା ଛଡ଼ା ଐତରେୟ ବ୍ରାହ୍ମଣ ଏବଂ ଅନ୍ୟାନ୍ୟ ବ୍ରାହ୍ମଣରେ ପରୀକ୍ଷିତଙ୍କ ନାମ ଦେଖାଯାଏ । ଜନମେଜୟ ପରୀକ୍ଷିତଙ୍କର ପୁତ୍ର ଏବଂ ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଶତପଥ ବ୍ରାହ୍ମଣରେ ଲେଖା ଅଛି । ପରୀକ୍ଷିତଙ୍କ ରାଜଧାନୀର ନାମ ଆସନ୍ଦିବନ୍ତ; ଜନମେଜୟଙ୍କ ସହୋଦରମାନଙ୍କର ନାମ ଉଗ୍ରସେନ, ଶ୍ରୁତସେନ ଓ ଭୀମସେନ; ଏମାନେ ଅଶ୍ୱମେଧ-ଯଜ୍ଞ କରି ପାପରୁ ଉଦ୍ଧାର ପାଇଥିଲେ ବୋଲି ଐତରେୟ ବ୍ରାହ୍ମଣ ଓ ଶାଙ୍ଖ୍ୟାୟନ ଶ୍ରୌତସୂତ୍ରରେ ଲିଖିତ ହୋଇଅଛି । ଉପରୋକ୍ତ ପ୍ରମାଣରୁ ଆମ୍ଭେମାନେ ଜାଣି ପାରିଲୁଁ ଯେ, ଜନମେଜୟ ବୈଦିକ ଯୁଗର ଲୋକ । ବୈଶମ୍ପାୟନଙ୍କ ନାମ ଐତରେୟ ଆରଣ୍ୟକରେ ଦେଖାଯାଏ ।

ମହାଭାରତ ମତରେ ଶାନ୍ତନୁ ଧୃତରାଷ୍ଟ୍ର ଏବଂ ପାଣ୍ଡୁଙ୍କର ପିତାମହ । ପ୍ରତୀପଙ୍କର ପୁତ୍ର ଦେବାପି ବାହ୍ଲିକ ଓ ଶାନ୍ତନୁ । "ଦେବାପିଃ ଖଳୁ ବାଲ ଏବାରଣ୍ୟଂ ବିବେଶ । ଶାନ୍ତନୁସ୍ତୁ ମହୀପାଲୋ ବଭୂବ ।" ୧।୯୫।୪୫ ଋଗ୍ୱେଦରେ (୧୦।୯୮ ସୂ) ଦେବାପି ଆର୍ଷ୍ଟିଷେଣର (ଋଷ୍ଟିଷେଣ ପୁତ୍ର ଦେବାପି) ଉଲ୍ଲେଖ ଅଛି । ନିରୁକ୍ତ ଅନୁସାରେ ଦେବାପି ଏବଂ ଶାନ୍ତନୁ ଦୁଇ ଜଣ କୁରୁରାଜପୁତ୍ର । ଅନ୍ୟାୟକ୍ରମେ ଶାନ୍ତନୁ ରାଜା ହେବାରୁ ରାଜ୍ୟରେ ବାର ବର୍ଷ ବୃଷ୍ଟି ହେଲା ନାହିଁ । ଏଣୁ ବ୍ରାହ୍ମଣମାନେ କହିଲେ, ବଡ଼ ଭାଇଙ୍କି ରାଜ୍ୟଚ୍ୟୁତ କରି ରାଜା ହେବାରୁ ଅନାବୃଷ୍ଟି ହେଲା । ତେଣୁ ଶାନ୍ତନୁ ରାଜ୍ୟ ଫେରି ଦେବାକୁ ପ୍ରସ୍ତୁତ ହେଲେ, ମାତ୍ର ଦେବାପି ରାଜ୍ୟ ଗ୍ରହଣ କଲେ ନାହିଁ । କିନ୍ତୁ ବୃଷ୍ଟି ହେବା ନିମନ୍ତେ ନିଜେ ଯଜ୍ଞ କଲେ, ଏଣୁ ଜଳ ବୃଷ୍ଟି ହେଲା । ଦେବାପି ଯଜ୍ଞ କରିଥିବାର ଋଗ୍ୱେଦରୁ ମଧ୍ୟ ଜଣାଯାଏ । ଉପରୋକ୍ତ ପ୍ରମାଣ ଦେଖିଲେ ମହା-ଭାରତୋକ୍ତ ଶାନ୍ତନୁ ଏବଂ ବୈଦିକସୂକ୍ତୋକ୍ତ ଶାନ୍ତନୁ ଅଭିନ୍ନ ବୋଲି ମନେ ହୁଏ ।

ଧୃତରାଷ୍ଟ୍ର ପାଣ୍ଡୁଙ୍କର ବିମାତାନନ୍ଦନ, ଏହା ମହାଭାରତର କଥା । ପୁଣି ସେ ଜନ୍ମାନ୍ଧ । କଥକ ସଂହିତାରେ ଧୃତରାଷ୍ଟ୍ର ବୈଚିତ୍ରବୀର୍ଯ୍ୟଙ୍କର ବର୍ଣ୍ଣନା ଅଛି । ମହାଭାରତର ଧୃତରାଷ୍ଟ୍ର ବିଚିତ୍ରବୀର୍ଯ୍ୟଙ୍କ ପୁତ୍ର ବୋଲିବାକୁ ହେବ । ବିଚିତ୍ରବୀର୍ଯ୍ୟଙ୍କଦ୍ୱାରା ଉଭୟ ଧୃତରାଷ୍ଟ୍ର ପରିଚିତ ହୋଇଥିବାରୁ ଉଭୟ ଗ୍ରନ୍ଥ ଜଣେ ଧୃତରାଷ୍ଟ୍ରଙ୍କୁ ଲକ୍ଷ୍ୟ ରଖିଥିବାର ଅନୁମାନ କରାଯାଇ ପାରେ ।

ଆମ୍ଭେମାନେ ଜନମେଜୟ, ପରୀକ୍ଷିତ ଓ ଶାନ୍ତନୁଙ୍କ ନାମ ବୈଦିକ ଗ୍ରନ୍ଥରେ ଦେଖିବାକୁ ପାଉଅଛୁଁ; ମାତ୍ର ପାଣ୍ଡୁ, ଅର୍ଜୁନ, ଅଭିମନ୍ୟୁଙ୍କ ନାମ ବୈଦିକ ଗ୍ରନ୍ଥରେ ନ

ମିଳିବାର କାରଣ କଣ ? ଏହି ତିନି ଜଣଙ୍କ ନାମ କାଳ୍ପନିକ, କିମ୍ବା ଏମାନେ ବିଖ୍ୟାତି-ନାମା ନୁହନ୍ତି, କିମ୍ବା ଅପ୍ରସିଦ୍ଧବଂଶୀୟ ଲୋକ । ପୁରାଣକର୍ତ୍ତା ଏମାନଙ୍କ ନାମକୁ ବୈଦିକ ଯୁଗର ବିଖ୍ୟାତ ବ୍ୟକ୍ତିଙ୍କର ବଂଶ ସହିତ ସଂଯୋଗ କରି ପୁରାଣର ଅଙ୍ଗବୃଦ୍ଧି କରିଅଛନ୍ତି । ପୁରାଣଲେଖକ ଏବଂ କାବ୍ୟଲେଖକମାନେ ସର୍ବଦା ଏହି ପନ୍ଥା ଅବଲମ୍ବନ କରି ଆର୍ଯ୍ୟ ଇତିହାସର କ୍ଷୀଣାଲୋକକୁ ଆବୃତ କରି ରଖିଅଛନ୍ତି ଏବଂ ଆମ୍ଭେମାନେ ପୁରାଣାନ୍ଧ-କାରରେ ଦିଗ୍ଭ୍ରାନ୍ତ ହେଉଅଛୁଁ ।

ଦୁର୍ଯ୍ୟୋଧନ ବା ତତ୍‌ପକ୍ଷୀୟ କୌଣସି ପ୍ରସିଦ୍ଧ ବ୍ୟକ୍ତିଙ୍କର ନାମ ବୈଦିକ ଗ୍ରନ୍ଥରେ ଦେଖାଯାଏ ନାହିଁ ।

ମୂଳ ଉପାଖ୍ୟାନର ଜଣକେତେ ପ୍ରସିଦ୍ଧ ବ୍ୟକ୍ତିଙ୍କ ନାମ ଅନୁସନ୍ଧାନ କରି ଯାହା ପାଇଅଛୁଁ, ତାହା ଉପରେ ପ୍ରକାଶ କରାଗଲା । ବର୍ତ୍ତମାନ ପକ୍ଷରେ ଏତିକି ଯଥେଷ୍ଟ ।

---

# ଭଗ୍ନକଙ୍କଣ

## A chapter from the novel Bhagnakankan.

( By Maharaj Sir B. M. Singh Deo K. C. I. E. )

### ଅଷ୍ଟମ ଅଧ୍ୟାୟ

"ମା ! ଏହି ରାଜନୀତି ଅପ୍ରୀତିକର ମନେ ହୋଇ ପାରେ, କିନ୍ତୁ ରାଜ୍ୟ-ଶାସନ ଓ ପ୍ରଜାପାଳନରେ ଏହାର ପ୍ରୟୋଜନ ଅଛି ।" ମନ୍ତ୍ରୀଙ୍କର ଏହି ଉକ୍ତି ଶୁଣି ରତ୍ନମୟୀ ବିନୀତଭାବରେ କହିଲେ, "ବାପା ! ଆଜି ରାଜନୀତି ସଙ୍ଗରେ ମୋର ଜାତିବିରୋଧ ଉପସ୍ଥିତ ।" ରାଣୀ ରତ୍ନମୟୀ ଶୈଶବରୁ ମନ୍ତ୍ରୀଙ୍କୁ ବାପା ସମ୍ବୋଧନ କରି ଆସୁଅଛନ୍ତି । ମନ୍ତ୍ରୀ କହିଲେ, "ଅବସ୍ଥାଫଳରେ ମୋର କନ୍ୟା ପ୍ରବ୍ରଜ୍ୟା ଗ୍ରହଣ କରେ, ମୋର କିଛିମାତ୍ର ଦୁଃଖ ନାହିଁ; ମୋର ମା ରାଣୀ କରୁଣାମୟୀ ଜଗଜ୍ଜନନୀ ହୋଇ ସଂସାରର ପଥେ ପଥେ ବିଚରଣ କଲେ ମୂଢ଼ ବ୍ୟକ୍ତି ଭିନ୍ନ ଅନ୍ୟ କେହି ଦୁଃଖିତ ହେବେ ନାହିଁ । କିନ୍ତୁ ରାଜସିଂହାସନ ଆପଣଙ୍କୁ ଯେଉଁ କର୍ତ୍ତବ୍ୟ-ଭାର ଦେଇଅଛି, ବିନା କାରଣରେ ତାହା ପରିତ୍ୟାଗ କରିବେ ନାହିଁ । ଆପଣ ଯାହା ଶୁଣିଅଛନ୍ତି ତାହା ସତ୍ୟ ହେଲେ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ ନୁହେ; ମୁଁ କହି ପାରିଅଛି, ସେ ସମସ୍ତ କଥା ପ୍ରକାଶ କରିବାର ସମୟ ଉପସ୍ଥିତ ହୋଇ ନାହିଁ । ଅନ୍ତତଃ ଏକ ମାସ ସମୟ ଦେଉନ୍ତୁ; ତହିଁ ଉତ୍ତାରୁ ଆପଣମାନେ ଅବାଧରେ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବେ ।"

ରାଣୀ କହିଲେ, "ଶୂରପାଳ ରାଜା ରୁଦ୍ରଦେବଙ୍କୁ ଯାହା ଜଣାଇଅଛି, ତାହା ମୋର ରାଣୀ ପଦବୀର ଓ ବିବାହ-ପ୍ରସ୍ତାବର ବିରୋଧୀ ହୋଇ ପାରେ; କିନ୍ତୁ ସେ ଯଦି ମିଥ୍ୟା କଥା ରଚନା କରି ନାହିଁ, ତେବେ ତାହାକୁ ସମସ୍ତ ଅଧିକାରରୁ ବଞ୍ଚିତ କରି

ବନ୍ଦୀପ୍ରାୟ ରଖିବାର ବ୍ୟବସ୍ଥା ହେଉଅଛି କାହିଁକି ? ମୁଁ କାରଣ ନ ଜାଣିଲେ ଏ ପ୍ରସ୍ତାବ ଅନୁମୋଦନ କରିବି ନାହିଁ ।”

ମନ୍ତ୍ରୀ ଏ ଦୃଢ଼ତା ଦେଖି ଆନନ୍ଦିତ ହେଲେ ଓ କହିଲେ, “ସତ୍ୟ କଥା ପ୍ରମାଣିତ ହେବା ସମୟରେ ତାହାର ଉପସ୍ଥିତିର ପ୍ରୟୋଜନ ଅଛି । ସେ ଗୋପନରେ ସୈନ୍ୟମାନଙ୍କୁ ନେଇ ବିଦ୍ରୋହ କରିବାର ଷଡ଼ଯନ୍ତ୍ର କରୁଥିଲା; ସେନାମାନେ ତାହା ସ୍ୱୀକାର କରିବେ । ଏ ରାଜସୈନ୍ୟ ଓ ପ୍ରଜାମାନେ ଆପଣଙ୍କୁ ଦେବୀ ପରି ପୂଜା କରନ୍ତି, ସେଥିପାଇଁ ଆପଣଙ୍କ ବିରୁଦ୍ଧରେ କଥା ଉଠିବା ମାତ୍ରକେ ସୈନ୍ୟମାନେ ଶୂରପାଳଙ୍କୁ ବଧ କରିବାର ଅନୁମତିପାଇଁ ଗୋପନରେ ଆମ୍ଭଠାରେ ପ୍ରାର୍ଥନା କରିଥିଲେ । ସମସ୍ତ ଅବସ୍ଥା ବିଚାର କରି ସ୍ଥିର କରାଯାଇ ଅଛି ଯେ, ଏପରି ବ୍ୟବସ୍ଥା କରାଯିବ, ଯହିଁରେ ଲୋକମାନେ ବୁଝି ପାରିବେ ନାହିଁ, ଯେ ଶୂରପାଳଙ୍କୁ ପଦଚ୍ୟୁତ କରା ହୋଇଅଛି, ଅଥଚ ତାହାଙ୍କୁ ସମସ୍ତ ଅଧିକାରରୁ ବଞ୍ଚିତ ଓ ଆବଦ୍ଧ କରି ରଖାଯିବ । ବୃଦ୍ଧ ପୁତ୍ରର ଏହି ପ୍ରାର୍ଥନା ଗୃହୀତ ହେଉ ।” ରାଣୀ ସଜଳନୟନରେ ମନ୍ତ୍ରୀଙ୍କ ପ୍ରଦତ୍ତ ତାଳପତ୍ରର ଉପରିଭାଗରେ ସ୍ୱୀୟ ନାମମୁଦ୍ରା ଅଙ୍କିତ କଲେ ।

ମନ୍ତ୍ରୀଙ୍କ ହସ୍ତରେ ଅନୁଜ୍ଞାଲିପି ଦେଇ ରାଣୀ ରହିମଯ୍ୟୀ କହିଲେ, “ମୋର ସିଂହାସନ ଗୋଟିଏ କଳ୍ପନା ଉପରେ ପ୍ରତିଷ୍ଠିତ; ମୋ ସମ୍ବନ୍ଧରେ ଲୋକମାନଙ୍କର ଧାରଣା, ଯେଉଁ ଭ୍ରାନ୍ତି ଓ କଳ୍ପନାଫଳରେ ଉତ୍ପନ୍ନ, ସେ ଭ୍ରାନ୍ତି ଚାଲିଗଲେ; ମିଥ୍ୟା କଳ୍ପନା ଆଉ ରହିବ ନାହିଁ ଓ ଲୋକମାନେ ଏହି ଅଜ୍ଞାତକୁଳଶୀଳା ବାଳିକାଙ୍କୁ ଦୂରରେ ନିକ୍ଷେପ କରିବାକୁ କୁଣ୍ଠିତ ହେବେ ନାହିଁ ।” ମନ୍ତ୍ରୀ ମନେ ମନେ ଭାବିଲେ, ଯେ ଚଉଦବର୍ଷକାଳ ପରିଶ୍ରମ କରି ସେ ଯେଉଁ କାର୍ଯ୍ୟ ସାଧନ କରିବାକୁ ଉଦ୍ୟୋଗ କରିଅଛନ୍ତି, ଆଜି ତାହା ପ୍ରାୟ ସଫଳ ହେବା ସମୟରେ ଯେ ଏହି ପ୍ରଶ୍ନ ଉଠିଅଛି, ତାହା ଅମଙ୍ଗଳର ଚିହ୍ନ ନୁହେଁ; କିଛିଦିନ ପୂର୍ବେ ଏ କଥା ଉତ୍ଥାପିତ ହୋଇଥିଲେ, ଗୁରୁତର ବିପଦର ସମ୍ଭାବନା ଥିଲା । ସେ ଅଧିକ କିଛି ନ କହି ରାଣୀଙ୍କୁ ଏତିକି କହିଲେ, ତାହାଙ୍କ ପ୍ରାର୍ଥିତ ଏକ ମାସ ସମୟ ମଧ୍ୟରେ ରାଣୀ ଏ ବିଷୟ ଯେନ ତାହାଙ୍କ ସଖୀ ସଙ୍ଗରେ ମଧ୍ୟ କଥା ହେବେ ନାହିଁ । ରାଣୀ ଏ ପ୍ରସ୍ତାବରେ ସ୍ୱୀକୃତ ହେଲେ ଓ ମନ୍ତ୍ରୀଙ୍କୁ ପଚାରିଲେ ଯେ, ତାହାଙ୍କ ଶିକ୍ଷୟିତ୍ରୀ ଅନେକ ଦିନ ହେଲା ନିରୂପିତ ସମୟରେ କାହିଁକି ଆସୁ ନାହାନ୍ତି । ମନ୍ତ୍ରୀ ଜଣାଇଲେ ଯେ, ସେ ପନ୍ଦର ଦିନ ହେଲା ଗୋଟିଏ ବିଶେଷ କାର୍ଯ୍ୟରେ ଆବଦ୍ଧ ଅଛନ୍ତି । ରାଣୀ ଏହି ଉତ୍ତର ଶୁଣି କୌଣସି କଥା ନ କହି ଚିନ୍ତିତଭାବରେ ମସ୍ତକ ଆନ୍ଦୋଳନ କଲେ । ମନ୍ତ୍ରୀ ସସମ୍ମାନରେ ବିଦାୟ ନେଇ ମନ୍ତ୍ରଣାକକ୍ଷରୁ ନିଷ୍କ୍ରାନ୍ତ ହେଲେ ଓ ରାଣୀ କିଛିକ୍ଷଣ ଉତ୍ତାରୁ ଅର୍ଦ୍ଧସ୍ଫୁଟ ସ୍ୱରରେ କହିଲେ– ଭିକ୍ଷୁଣୀମାନଙ୍କ ପକ୍ଷରେ ମିଥ୍ୟା ଓ ଛଳନା ଅସମ୍ଭବ ।

ମନ୍ତ୍ରୀ ଚାଲିଯିବା ଉତ୍ତାରୁ ବାଳିକା ରହିମଯ୍ୟୀ ଏକାକିନୀ ପୁଷ୍ପବାଟିକାରେ ପ୍ରବେଶ କଲେ । ଏକମାସକାଳ ରାଜଗାଦିର ଆବର୍ତ୍ତରେ ପଡ଼ି ରହିବାକୁ ହେବ,

କମଳାଙ୍କୁ ମଧ୍ୟ ସରଳଭାବରେ ସବୁ କଥା କହିବାକୁ ଅଧିକାର ରହିବ ନାହିଁ, ଏହା ଅତି କଠୋର ତପସ୍ୟାସାଧ୍ୟ ମନେ କରି ବାଳିକା ରତ୍ନମୟୀ ଗୋଟିଏ ଲତା-ମଣ୍ଡପରେ ପ୍ରବେଶ କରି ଯୁକ୍ତକରରେ ଜିନ-ସ୍ତୋତ୍ର ଆବୃତ୍ତି କରିବାକୁ ଆରମ୍ଭ କଲେ । ସେହି ସ୍ତୋତ୍ରଗୁଡ଼ିକ ସେ ସର୍ବଦା ମଧୁର ମନେ କରୁଥିଲେ, କିନ୍ତୁ ଆଜି ସେଗୁଡ଼ିକର ଆବୃତ୍ତିରେ ଶାନ୍ତିଲାଭ କରି ପାରିଲେ ନାହିଁ । ଲତା-ମଣ୍ଡପ ପରିତ୍ୟାଗ କରି ଗୋଟିଏ କ୍ଷୁଦ୍ର ବେଦିକା ଉପରେ ଯାଇ ବସିଲେ ଓ କର୍ତ୍ତବ୍ୟ-ନିର୍ଦ୍ଧାରଣରେ ଅକ୍ଷମ ହୋଇ ଆକାଶଆଡ଼କୁ ଅନାଇ ରହିଲେ । ସହସା ଜୈନ ଶିକ୍ଷାର ଅନନୁରୂପ କୋମଳତାରେ ମନ ଅଭିଭୂତ ହେଲା ଓ ଅଜ୍ଞାତସାରରେ ବାଳିକାର ପ୍ରାଣ ଭେଦ କରି ବାଷ୍ପାକୁଳ କଣ୍ଠରେ "ମା" "ମା" ଧ୍ୱନି ଉଚ୍ଚାରିତ ହେଲା । ଏ କି ମଧୁର ଧ୍ୱନି, ଏ କି ମଧୁର ଶବ୍ଦ; ଅସ୍ତଗାମୀ ସୂର୍ଯ୍ୟକିରଣରେ ବିବିଧବର୍ଣ୍ଣରଞ୍ଜିତ ମେଘମାଳା, ଯେପରି କି ତାହାର ଅଜ୍ଞାତ ମାତାର ଅଞ୍ଚଳପରି ପର୍ବତ-ଶିଖରେ ପ୍ରସାରିତ ରହିଅଛି; କିଏ ସେ ମା, କେବେ ତାହାର ପରିଚୟ ପାଇ ନାହିଁ, ଜାଣେ ନାହିଁ, ପରିଚୟ ନାହିଁ, ତଥାପି ଆଜି ସେ ବାଳିକା, ପ୍ରାଣରେ ମାତୃସ୍ପର୍ଶ ଅନୁଭବ କରି ଶୂନ୍ୟଆଡ଼କୁ ଅନାଇ 'ମାଆ ମାଆ' ବୋଲି କାନ୍ଦିବାକୁ ଲାଗିଲେ । ରୋଦନରେ ଯେ ଏତେ ସୁଖ, ଏତେ ମାଧୁର୍ଯ୍ୟ ଓ ଏତେ ଶାନ୍ତି, ତାହା କେବେ ସେ ଜାଣି ନ ଥିଲେ । ଯାହା ପୂର୍ବେ କଠୋର ତପସ୍ୟାସାଧ୍ୟ ମନେ ହୋଇଥିଲା, ତାହା ଏବେ ସହଜସାଧ୍ୟ ମନେ ହେଲା; ମନେ ହେଲା, ସେ ଆଜି ମାତୃବେଷ୍ଟନରକ୍ଷିତା ଓ ତାହାର ଜୀବନର କର୍ତ୍ତବ୍ୟ ଅତି ସହଜ ଓ ସରସ । ସନ୍ଧ୍ୟା ଅତୀତ ପ୍ରାୟ ଦେଖି, ରାଣୀ ରତ୍ନମୟୀ ଉଦ୍ୟାନ ପରିତ୍ୟାଗ କଲେ ଓ ପ୍ରଶାନ୍ତଚିତ୍ତରେ ଆପଣାର କକ୍ଷରେ ପ୍ରବେଶ କଲେ ।

---

# Selections from the writings OF Radhanath Ray.

(B. 1848; D. 1908.)

( ୧ )

## ମେଘଦୂତ ।

### ପୂର୍ବମେଘ

( ରାଗ— କଳହଂସକେଦାର )

ଦକ୍ଷିଣଦେଶେ ରାମଗିରି ଶୋଭନ,
ବିମଳ ଶୁଭ୍ର ଯହିଁ ନଦୀ ଜୀବନ
ଜନକକନ୍ୟା ସ୍ନାନେ ପବିତ୍ର ଅତି;
ସ୍ନିଗ୍ଧଦଳ ଯହିଁ ତରୁ ବ୍ରତତୀ । ୪ ।
ତହିଁ କୁବେର ଶାପେ ହୋଇ ପ୍ରେରିତ,
ରହିଲା ଯକ୍ଷ ଦୁଃଖେ ଆତୁରଚିତ୍ତ,
ବର୍ଷର ଅନ୍ତେ ହେବ ଶାପମୋଚନ,
ବର୍ଷର ଅନ୍ତେ କାନ୍ତା ସଙ୍ଗେ ମିଳନ । ୮ ।
ଗମିଲା କେତେ କାଳ ସେ ଧରାଧରେ
ବାଳାବିରହୀ କାମୀ ଯକ୍ଷ କାତରେ,
କ୍ରମେ ଶରୀରକାନ୍ତି ହେଲା ବିଲୟ,
ଖସିଲା ଶୀର୍ଣ୍ଣ କରୁଁ ସ୍ୱର୍ଣ୍ଣ ବଳୟ । ୧୨ ।
ଆଷାଢ଼ ଆଦ୍ୟ ଦିନେ ଶିଖରଶିର
ଘୋଟିଲା ଆସି ଘନମାଳ ସୁନ୍ଦର,
କ୍ରୀଡ଼ା ନିମନ୍ତେ ବପ୍ରେ କରୀ ଯେସନ,
ତେସନେ ମନୋରମ ଦିଶଇ ଘନ । ୧୬ ।
କେତକୀ ପ୍ରକାଶକ ଘନ ଦର୍ଶନେ
ଅଧୀର ଯକ୍ଷ ପୂର୍ବ ସୁଖ ସ୍ମରଣେ,
ବେଗେ ବହିଲା ଶୋକଅଶ୍ରୁ ନୟନେ,
କହି ନୁହଇ କେତେ ପାଞ୍ଚିଲା ମନେ । ୨୦ ।
ଅଙ୍ଗନା ସଙ୍ଗେ ମଧ୍ୟ ଥିଲା ଲୋକର
ଘନାଗମେ ଆକୁଳ ହୋଏ ଅନ୍ତର,
ପ୍ରାଣସଙ୍ଗିନୀ ସଙ୍ଗସୁଖ ହଜାଇ
ଆତୁର ଯକ୍ଷ, ତାର କଥା ତ ନାହିଁ । ୨୪ ।

ନିଜ କୁଶଳ ବାର୍ତ୍ତା ମେଘ ହସ୍ତରେ
ପ୍ରେରିବ ପ୍ରିୟା ପାଶେ ନିଜ ନଗରେ,
ପାଇ ବାରତା କାନ୍ତା ହୋଇବ ସ୍ଥିର,
ଆଶାପ୍ରଭା ଶୋଷିବ ତା ନେତ୍ରନୀର । ୨୮ ।

ଏ ଭାବେ ପ୍ରାଣକାନ୍ତା ଦୁଃଖେ ବିକଳ,
ଅର୍ଘ୍ୟସ୍ୱରୂପେ ଦେଲା ନିର୍ଝର ଜଳ,
ପୂଜିଣ ଜୀମୂତଙ୍କୁ କୁଟଜ ଆଣି,
ତା ଅନ୍ତେ ପଚାରିଲା ସ୍ୱାଗତ ବାଣୀ । ୩୨ ।

ଧୂମଜ୍ୟୋତିସଲିଳବାୟୁରଚିତ
କାହିଁ ଜୀମୂତ ? ସେହୁ ଜୀବବର୍ଜିତ !
ମାନବବନ୍ଧନୀୟ କାହିଁ ସନ୍ଦେଶ ?
ଯକ୍ଷ ନ ବିଚାରିଲା ଏଥି ବିଶେଷ । ୩୬ ।

ଉତ୍କଣ୍ଠାକୁଳ ହୋଇ ଘନକୁ ଭାଷେ,
ସଜୀବ ମଣି ହୃଦକଥା ପ୍ରକାଶେ,
ଅଙ୍ଗ ଧାରଇ ଯାର ଅନଙ୍ଗବାଣ
ଚେତନ ଅଚେତନ ତାର ସମାନ । ୪୦ ।

ପୁଷ୍କର ଆବର୍ତ୍ତକ ବଂଶେ ସମ୍ଭୂତ,
ବିଖ୍ୟାତ ଧରାତଳେ ଅଟ ଜୀମୂତ !
କାମରୂପୀ ସଚିବ ତୁମ୍ଭେ ଇନ୍ଦ୍ରର,
ବିରହୀ ଜନଠାରେ କରୁଣା କର । ୪୪ ।

ବିଫଳା ହୋଏ ଯେବେ ମୋହୋ କାମନା,
ଜଳଦ ! ତହିଁ ନ କରଇ ଭାବନା,
ଫଳବତୀ ପ୍ରାର୍ଥନା ଅଧମଠାରେ
ନିନ୍ଦନୀୟ ଅଟଇ ମୋହୋ ବିଚାରେ । ୪୮ ।

ତାପିତ ଜନଙ୍କର ଅଟ ଶରଣ,
ହେ ନୀରଦ ! ରଖ ମୋ ପ୍ରିୟା ଜୀବନ,
ଧନପତି ଶାପେ ମୁଁ କାତର ଅତି,
ମୋ ବିନା କାତର ସେ ବରଯୁବତୀ । ୫୨ ।

ଯାଅ ମୋ ବାର୍ତ୍ତା ଘେନି ହେ ନୀରଧର !
ଅଳକା ନଗରୀକି * ଯହିଁ ସୁନ୍ଦର
ବହିରୁଦ୍ୟାନେ ଛନ୍ତି ଶଶିଶେଖର,
ସେ ଶଶିକରେ ଧଳା ସୌଧନିକର । ୫୬ ।

* ଅଳକା—କୁବେରପୁରୀ ।

ତୁମ୍ଭ ଦର୍ଶନେ ପାନ୍ଥବନିତାକୁଳ-
ହୃଦୟେ ବିକସିବ ଆଶାମୁକୁଳ,
ଧରଣ ବେଣୀ ବାମ କରକମଳେ
ଦେଖିବେ ଗତି ତୋର ଅମ୍ବର-ତଳେ । ୭୦ ।

କେ କ୍ରୂର ଏକାଳରେ ବିଦେଶେ ଥାଇ
ବନିତାମନ ଖେଦହ୍ରଦେ ବୁଡ଼ାଇ
ନିଶ୍ଚିନ୍ତରେ ରହଇ କହ ମୋ ବିନା ?
ପରାଧୀନର ଧନ ! ଏ ଗତି ସିନା ! ୭୪ ।

ଅନୁକୂଳ ସମୀର ଧୀରେ ବହଇ,
ବାମେ ଚାତକ ମନୋହର କୂଜଇ,
ତୋହୋ ଉଦୟେ ତାର ଗର୍ବ ଉଦିତ,
ଆକାଶ ଝଙ୍କାରଇ ଏଣୁ ତା ଗୀତ । ୭୮ ।

ତୋହ ଆଗମ କାଳେ ଯାହା ଉତ୍ପତ୍ତି,
ତୋତେ ସେବିବେ ସେହି ବକପଙ୍କତି;
ଧବଳ ପୁଣ୍ଡରୀକମାଳ ପରାୟେ
ଦିଶିବେ ଅଭିରାମ ତୋ ଶ୍ୟାମକାୟେ । ୭୨ ।

ନିଶ୍ଚେ ନାଗରୀ ମୋର ଥିବ ଜୀବନେ,
ବାସର ଗଣୁଥିବ ଉତ୍ସୁକ ମନେ,
ଅବଳାମନଃପଦ୍ମ ଆଶାମୃଣାଳେ
କଷ୍ଟେ ରହଇ ଘୋର ବିରହକାଳେ । ୭୬ ।

ଶ୍ରୁତିମଧୁର ତୋର ନାଦ ଗମ୍ଭୀର
( ଭୂଷଇ ଯେହୁ ଧରାଦେବୀଶରୀର
ନବ କନ୍ଦଳୀଦଳ ଶ୍ୟାମଳ ବାସେ )
ମିଳାଇବ ତୋ ସଙ୍ଗୀ ଆଣି ଆକାଶେ । ୮୦ ।

ରାଜହଂସେ ଶୁଣିଲେ ତୋର ଗର୍ଜ୍ଜନ,
ନୀଳାମ୍ବୁ ମାନସକୁ ଯିବେ ବହନ,
ପାଥେୟରୂପେ ଘେନ ମୃଦୁ ମୃଣାଳ
କୈଳାସଯାଏ ସଙ୍ଗେ ଯିବେ ମଙ୍ଗଳ । ୮୪ ।

ପ୍ରିୟସଖା ତୋହର ଏ ଧରାଧର,
ଦେହେ ଧରନ୍ତି ରାମଚନ୍ଦ୍ର-ପଦ୍ୟର,
ତେଣୁ ଅଟନ୍ତି ଗିରି ଅତି ପବିତ୍ର,
ଚିର ଭୂଷଣ ଚିର [illegible] । ୮୮ ।

ଉଭୟେ ଯଥାକାଲେ ହେଲେ ମିଳିତ,
ପ୍ରେମଅଶ୍ରୁ ପ୍ରବାହ ବହେ ତ୍ୱରିତ;
ଅମ୍ବୁଦ ! ଗିରିଠାରୁ ମାଗ ମେଲାଣି,
କାତର ଅଛଇ ମୁଁ, ରଖ ମୋ ବାଣୀ । ୯୨ ।

ତୁମ୍ଭ ଗମନଯୋଗ୍ୟ ମାର୍ଗ ନିର୍ଦ୍ଦେଶ
କରଇ, ଅବଧାନ ହେଉ ବିଶେଷ,
ଆତ୍ମସନ୍ଦେଶ ପୁଣି କହିବି ପରେ,
ଶୁଣି ହରଷ ଜାତ ହେବ ଅନ୍ତରେ । ୯୬ ।

କ୍ଳାନ୍ତ ହୋଇଲେ ଗିରିଶୃଙ୍ଗେ ରହିବ,
କ୍ଷୀଣ ହୋଇଲେ ନଦୀବାରି ସେବିବ,
ଏଣୁ ହୋଇବ ସୁଖେ ତୁମ୍ଭ ଗମନ,
କଷ୍ଟ ନୋହିବ ମୋହୋ ବାଞ୍ଛାପୂରଣ । ୧୦୦ ।

ଘନ ! ବେତସପୂର୍ଣ୍ଣ ଏ ସ୍ଥାନ ତ୍ୟଜି
ବେଗେ ଗଗନେ ଉଠ ଧୀରେ ଗରଜି,
ଚକିତ ନୟନରେ ସିଦ୍ଧରମଣୀ
ଅନାଇବେ ତୁମ୍ଭଙ୍କୁ ବିସ୍ମୟ ମଣି । ୧୦୪ ।

ପରସ୍ପରେ ଭାଷିବେ "ଦେଖ ଗୋ ସଇ !
କି ଅବା ବାୟୁ ଗିରିଶୃଙ୍ଗ ହରିଲ ।"
ଅନନ୍ତରେ ଅମ୍ବୁଦ ! ଦିଗବାରଣେ
ତ୍ୟଜିବେ କର-ଗର୍ବ ତୁମ୍ଭ ଦର୍ଶନେ । ୧୦୮ ।

ବଲ୍ମୀକଶିଖାଗ୍ରରୁ ହୋଇ ବାହାର
ସୁରେନ୍ଦ୍ରଚାପ-ଲତା ଦିଶେ ବାହାର,
ରତନକାନ୍ତି-ସ୍ରୋତ ଯେହ୍ନେ ଉଚ୍ଛଳେ,
କି ଶୋଭା ପାଉଅଛି ତୋ ଉରସ୍ଥଳେ । ୧୧୨ ।

---

( ୧ )

# ବେଣୀସଂହାର ।

ପ୍ରଭାତିଲା ବିଭାବରୀ, ହସିଲେ ଉତ୍କଳେ
ପଙ୍କଜବରଣୀ ଊଷା ଉଦୟ ଅଚଳେ,
ନବୋଦିତତପନମଣି ଆରକ୍ତକିରଣ
କାଞ୍ଚନ ଶିଖରଚୂଡ଼ା ଚୁମ୍ବିଲା ବଦନ,
ଝର ଝର ଝରେ ନିଶିପତିତ ତୁଷାର;
ଦୁଇ ଦଳେ ରଣସଜ୍ଜା କଲେ ଯେ ଯାହାର,
ବାଜିଲା ବିବିଧ ବାଦ୍ୟ, ମାତି ବୀରରସେ
ଆୟୁଧ ଆସ୍ଫାଳି ବୀରେ ଧାଇଁଲେ ସାହସେ;
ବୀରମଦେ କେହି ବୀର କାର୍ମ୍ମୁକ ଟଙ୍କାରେ,
କେ ଅବା ଆସ୍ଫାଳି ଅସି ଭୀଷଣ ହୁଙ୍କାରେ;
ଦୋଳେ ଝକ ଝକ ପୃଷ୍ଠେ ଫଳକ ବର୍ତ୍ତୁଳ,
କେ ଅବା ଉନ୍ମଦ ଶୂନ୍ୟେ ଘୂରଇ ତ୍ରିଶୂଳ;
ଭାବି ପ୍ରତିପକ୍ଷ ବକ୍ଷ ଲକ୍ଷି କେହି ବୀର
ଧାଆନ୍ତେ କବଚେ ବାଜି ବାଜଇ ତୂଣୀର;
ଗମ୍ଭୀର ସମରବାଦ୍ୟ, ଅସ୍ତ୍ରର ଝନ୍‌ଝନ,
ସିଂହନାଦ ଶଙ୍ଖନାଦ ବ୍ୟାପଇ ଅବନୀ ।
ପ୍ରଚଣ୍ଡ ପାଣ୍ଡବଯୋଧେ ଆୟୁଧ ଭାସ୍ୱର
ଧରି କ୍ରୋଧେ ମହାଯୁଦ୍ଧେ ଧାଇଁଲେ ସତ୍ୱର,
ଯେସନ ଭୀଷଣଘୋଷୀ ପଶ୍ଚିମଅନିଳ—
ଆଘାତେ ସଂଘାତେ ଧାଏଁ ତରଙ୍ଗ ଫେନିଳ,
ଆଗେ ସିନ୍ଧୁ-ନୀଳବକ୍ଷେ ଉଚ୍ଛୁଳି ଉଚ୍ଛ୍ୱାସେ
ହଲାଇ ଖେଳାଇ ଚୂଡ଼ା ଠେକଇ ଆକାଶେ,
ଦମ୍ଭୋଳି ଆରବେ ପୁଣି ଗରଜି ଗମ୍ଭୀର
ସ୍ତରେ ସ୍ତରେ ତଟେ ଲାଗି ପିଟେ ତହିଁ ଶିର,
ଉତ୍ତୁଙ୍ଗ ମଳୟଗିରି ଚରଣେ ଆଶ୍ରିତ
ଇତର ଶିଖରକୁଳ କରେ କବଳିତ,
ତେସନ ମୁଖର କ୍ଷେତ୍ର ଭୈରବ ଆରବେ
କ୍ଷତ୍ରିଯୁଦ୍ଧାଧ୍ୟକ୍ଷ ଶୂରେ ଧାଇଁଲେ ଆହବେ ।
ଦେବାକୃତି ଶୂରବୃନ୍ଦ ସର୍ବେ ବୀର୍ଯ୍ୟଶାଳୀ,
[illegible] ।

ଧର୍ମଙ୍କ ଛାମୁରୁ ପାର୍ଥ ଘେନିଣ ମେଲାଣି
କପିଧ୍ୱଜେ ବଜେ କଲେ ସଙ୍ଗେ ଚକ୍ରପାଣି ।
ବିଶୋକ ସାରଥି ପ୍ରତି କହେ ଭୀମ ବୀର,
"ରଖ ରଥେ ସୂତ ! ବହୁ ଖରଶାଣ ତୀର,
ଆଜ ଧୃତରାଷ୍ଟ୍ର ହେବେ ପୁତ୍ରପୌତ୍ରହୀନ,
ଆଜ ବସୁନ୍ଧରା ହେବ ଧର୍ମଙ୍କ ଅଧୀନ,
ଆଜ ଦୁର୍ଯ୍ୟୋଧନ ରାଜା ଶୋଇବେ ଭୂତଳ,
କପଟ ପାଶାର ଆଜ ଦେବ ପ୍ରତିଫଳ,
ଯାବତ ନ ମିଳେ ଆସି ପାର୍ଥ ମହାରଥୀ,
ସସଜ୍ଜ ମୋ ରଥ ବେଗେ କର ତୁ ସାରଥି ।"
ଏ ସମୟେ ଉତ୍ତରେ ଶୁଭିଲା କୋଳାହଳ,
ଆବରେ ଅର୍ଜ୍ଜୁନ ବାଣ ଗଗନମଣ୍ଡଳ,
କପିଧ୍ୱଜ ଅଶ୍ୱହ୍ରେଷା, ଦେବଦତ୍ତ ସ୍ୱନ
ଶୁଭିଲା, ଦିଶିଲା ଦୂରେ ବାନରକେତନ ।
ଦୁଇ ଦଳେ ମହାରୋଷେ ମିଳିଲେ ସମରେ,
ଶନଶନ ଶରକୁଳ ଗର୍ଜିଲା ଅମ୍ବରେ,
ଖଡ଼୍ଗେ ଖଡ଼୍ଗ ବାଜେ, ଫଳକେ ଫଳକ,
ଶୂଳେ ଶୂଳ, ଭଲ୍ଲେ ଭଲ୍ଲ, ସାୟକେ ସାୟକ,
ଆର୍ତ୍ତନାଦ ସିଂହନାଦ ଉଠଇ ଅମ୍ବରେ,
ଘାତକ ଆହତ ପରେ ନାଦେ ଦମ୍ଭରେ,
ଘୋଟକ କ୍ଷୁରପଟ ଧୂଳି ଘୋଟେ ନଭସ୍ଥଳ,
ଘର୍ଘର ଘୂରଇ ଚକ୍ର ଉଗାରି ଅନଳ,
ତୁରୀ ଭେରୀ ଆଦି ବାଦ୍ୟ ବାଜେ ଅଗଣନ,
ଘନଘଣ୍ଟା ଘୋରଧ୍ୱନି ବଧିର ଶ୍ରବଣ,
ପଡ଼ିଲେ କଣ୍ଟିଶରେ କୁରୁ ଚତୁରଙ୍ଗ
ଭୟେ କୁରୁବୀରବୃନ୍ଦ ରଣେ ଦେଲେ ଭଙ୍ଗ,
ଦେଖିଣ ସୌବଳ କହେ ରାଜାଙ୍କ ଛାମୁର,
"ଦେଖ ରାଏ ! ସୈନ୍ୟ କ୍ଷୟ କଲା ପାର୍ଥ ଶୂର;
ମୁଁ ଯାଇଁ କରିବ ଆଗେ ଭୀମଙ୍କୁ ସଂହାର,
ନୋହିଲେ କୁରୁଙ୍କୁ ଆଜ ନାହିଁ ସେ ନିସ୍ତାର ।"
ମହାବଳ ସୌବଳ ଧାଇଁଲେ ଭୀମ ପ୍ରତି,
ଯୁଝନ୍ତି କେଶରୀ ପ୍ରାୟେ ବେନି ସେନାପତି,
ପ୍ରହାରଇ ଶକ୍ତି ଭୀମ ସଉବଳ ମାଥେ,
ହୁଙ୍କାରି ସେ ଶକ୍ତି ବୀର ନେଲା ବାମହାତେ,

ସେହି ଶକ୍ତି ହେନ ପୁଣି ଭୀମଙ୍କୁ ପ୍ରହାରେ,
ମୂର୍ଚ୍ଛିତ ହୋଇଣ ଭୀମ ପଡ଼ିଲେ ଧରାରେ,
ମୂର୍ଚ୍ଛାଭଙ୍ଗେ ରଣରଙ୍ଗେ ମାତିଲେ ମାରୁତି,
ବାଣେ କୁରୁବୀରଙ୍କୁ ସେ ପକାଇଲେ ପୋତି,
କ୍ରୋଧାନ୍ଧେ ବିନ୍ଧିଲା ବୀର ସୌବଳ ଶରୀର,
ଭେଦିଲା ସୌବଳ କର୍ଣ୍ଣମୂଳେ ଭୀମ ତୀର,
ମୂର୍ଚ୍ଛିତ ହୋଇଣ ବୀର ହେଲା ରଥଶାୟୀ,
ବେଗେଣ ସାରଥି ରଥ ନେଲା ବାହୁଡ଼ାଇ,
ଧନୁ ଏଡ଼ି ଗଦା ନେଲେ ପବନକୁମର,
ଗଦାଘାତେ ଅରାତିଙ୍କୁ କଲେ ସେ ଜର୍ଜ୍ଜର,
ଧୂମକେତୁ ଭୀମ ପୁଚ୍ଛ ସଂଗ୍ରହ ବହନ
ନିଶୀଥେ ଆକାଶେ ଥାଇ ବୁଣଇ ଯେସନ
ଦୁର୍ଭିକ୍ଷ ମଡ଼କ ରାଷ୍ଟ୍ରେ, ସୁବର୍ଣ୍ଣମଣ୍ଡିତ
ପ୍ରଚଣ୍ଡ ଆୟସୀ ଗଦା ବୁଲାଇ ଉଦ୍ଧତ
ବିପକ୍ଷଙ୍କୁ ତେସନ ପ୍ରେରଇ ପ୍ରେତପୁର
କୁରୁକୁଳଧୂମକେତୁ ଭୀମ ମହାଶୂର;
ମାତଙ୍ଗେ ମାହୁନ୍ତ ପଡ଼େ, ତୁରଙ୍ଗେ ରାଉତ,
ପଡ଼ନ୍ତି ପଦାତି ରଣେ ଅୟୁତ ଅୟୁତ ।
ବେଗେ କୁରୁବଳେ ନେଲେ କର୍ଣ୍ଣଙ୍କ ଶରଣ,
କର୍ଣ୍ଣଙ୍କୁ କାତରେ କହେ ରାଜା ଦୁର୍ଯ୍ୟୋଧନ,
"ଦେଖ ଅଙ୍ଗରାଜେ ! ବେଗେ ଆସେ ପାର୍ଥବୀର,
ସୁରାସୁର ଯୁଦ୍ଧେ ଯାର ନିର୍ଭୟ ଶରୀର,
ତୁଳାରାଶି ମହାବାତେ ଉଡ଼ଇ ଯେସନ,
ତେସନ ପଳାନ୍ତି ତ୍ରାସେ କୁରୁସୈନ୍ୟଗଣ;
ତୁମ୍ଭେ ସାହା ଥାଉଁ ସଖା ଘଟେ ଏ ଦୁର୍ଗତି !"
ଶୁଣିଣ ରୁଷିଲା ବୀର କର୍ଣ୍ଣ ମହାମତି,
ଶଲ୍ୟଙ୍କୁ ଆଦେଶେ ବୀର, "ବେଗେ ନିଅ ରଥ,
ଆଜ ନିଶ୍ଚେ ପାର୍ଥଙ୍କୁ କରିବ ରଣେ ହତ ।"
ଅଶ୍ୱଙ୍କୁ ସାରଥି କଲେ ଛାଟେଣି ପ୍ରହାର,
ଖେଳା ଗଜଧ୍ୱଜ ବେଗେ ନକ୍ଷତ୍ର ଆକାର,
ହ୍ରେଷାରବେ ଦ୍ରୁତଗତି ଧାଇଁଲେ ଘୋଟକ,
ଘର୍ଘର ଘୂରଇ ଚକ୍ର ଉଗାର ପାବକ,
ମହାବୀର୍ଯ୍ୟବନ୍ତ ବୀର ସୂର୍ଯ୍ୟଙ୍କ କୁମର,
ଧୈର୍ଯ୍ୟ ବୀର୍ଯ୍ୟ ମହୀତଳେ ନାହିଁ ପଟାନ୍ତର,

ଗହନ ବିପିନେ ଯେହ୍ନେ ଅନଳ ଦୁର୍ବାର,
ତେସନେ ପାଣ୍ଡବବଳ କଲା ନାରଖାର,
ମସ୍ତକେ ଉଜ୍ଜ୍ୱଳ ଶୋଭେ ସୁବର୍ଣ୍ଣ ମୁକୁଟ,
ମେରୁ ମହୀଧରେ ଯେହ୍ନେ ଶୋଭେ ହେମକୂଟ;
ଗଜଧ୍ୱଜ ରଥେ ବଜେ ବୀରଚୂଡ଼ାମଣି,
କୋଦଣ୍ଡ ଟଙ୍କାରେ ମୁହୁ କମ୍ପଇ ଅବନୀ;
ଶ୍ରବଣେ କୁଣ୍ଡଳ ଦୋଳେ, ଶରଦେ ଯେମନ୍ତ
ପ୍ରାଚୀମୂଳେ ନିଶାଅନ୍ତେ, ତାରା ଦୀପ୍ତିମନ୍ତ,
ଯେବେ ମହୋଦଧି ଜଳେ ଦେହ ଅବଗାହି,
ହସେ ପ୍ରାଚୀ ଶିରେ ଧନୀ ଉଷାକୁ ଅନାଇ,
ସଦ୍ୟ ସିନ୍ଧୁସ୍ନାନେ ତନୁ ଦ୍ୱିଗୁଣ ଝଟକେ,
ଶିରୋମଣିରୂପେ ରାଜେ ରଜନୀ ଅଳକେ,
ଦୈତ୍ୟଯୁଦ୍ଧେ ଚଣ୍ଡତେଜା ଶିଖଣ୍ଡିବାହନ
ନର୍ତ୍ତିତକଣ୍ଠ ଦେବ କାର୍ତ୍ତିକ ଯେସନ,
କୌରବଗୌରବରବି ରବିଙ୍କ ନନ୍ଦନ
କୁରୁଯୁଦ୍ଧେ ଧନୁର୍ଦ୍ଧର ଦୁର୍ଦ୍ଧର୍ଷ ତେସନ;
କର୍ଣ୍ଣେ ଦେଖି କୁରୁବଳ କଲେ ସିଂହନାଦ,
ଆତଙ୍କେ ପାଣ୍ଡବବଳ ଗଣିଲେ ପ୍ରମାଦ,
କର୍ଣ୍ଣେ ଦେଖି ଭୀମସେନ ହେଲେ ଅଗ୍ରସର,
ବେଗେଣ ବର୍ଷଇ ବୀର ଖରଶାଣ ଶର,
ଭୀମଙ୍କ ସହାୟ ହେଲେ ପାଣ୍ଡୁ ଯୋଧଗଣ,
ସହଦେବ, ଧୃଷ୍ଟଦ୍ୟୁମ୍ନ ଦ୍ରୁପଦନନ୍ଦନ,
ଶିଖଣ୍ଡି, ନକୁଳ ଆସି ମିଳିଲେ ସତ୍ୱର,
ସମସ୍ତଙ୍କୁ ନିବାରିଲା କର୍ଣ୍ଣ ଏକେଶ୍ୱର, *
ତିନି ଶରେ ନକୁଳଙ୍କୁ କଲା ଅଚେତନ,
କଟାକ୍ଷେ ଛେଦିଲା ସହଦେବ ଶରାସନ,
ଗୃରବାଣେ ଧୃଷ୍ଟଦ୍ୟୁମ୍ନ ହୋଇଲେ ବିରଥ,
ହେଳେ ସଂହାରିଲା ପାଣ୍ଡୁ ସୈନ୍ୟ ଶତ ଶତ,
ଏକ ଶରେ ଭୀମର କାଟିଲା ଧନୁର୍ଗୁଣ,
ସୈନ୍ୟଭଙ୍ଗ ଦେଖି ଦୂରେ ଗର୍ଜିଲେ ଅର୍ଜୁନ,
ସଂଶପ୍ତକ ରଣେ ରତ ପାର୍ଥ ଧନୁର୍ଦ୍ଧର,
ଏଣେ ଆସିବାକୁ ତଲେ ନାହିଁ ଅବସର,

---

* ସାହାଯ୍ୟନିରପେକ୍ଷ ।

ସଂଶପ୍ତକ ସେନାପତି କୃପ ମହାଶୟ
ଯୁଝନ୍ତି ଅର୍ଜୁନ ସଙ୍ଗେ ନିର୍ଭୟ ହୃଦୟ,
ମହାକ୍ରୋଧେ ବର୍ଷେ ବାଣ ପାର୍ଥ ମହାଶୂର,
ଶତ ଶତ ସଂଶପ୍ତକ ଗଲେ ପ୍ରେତପୁର,
କୃପଙ୍କୁ ବିନ୍ଧିଲେ ବକ୍ଷେ ତୀକ୍ଷ୍ଣତର ଶରେ,
ଶୋଣିତ ଉଗାରେ କୃପ ପଡି ରଥପରେ,
କଟାକ୍ଷେ ପୁଣ୍ଡରୀକାକ୍ଷ ନେଲେ କପିଧ୍ୱଜ,
ଯୁଝିଲ ଦୁର୍ଦ୍ଧର୍ଷ ଯହିଁ ଭାସ୍କରଆତ୍ମଜ,
କର୍ଣ୍ଣଙ୍କୁ ଦେଖିଣ ଗର୍ଜେ ପାର୍ଥ ବୀରମଣି,
ପକ୍ଷୀନ୍ଦ୍ର ଗରୁଡ଼ ଯେହ୍ନେ ଦେଖି ଭକ୍ଷ୍ୟ ଫଣୀ,
କର୍ଣ୍ଣାର୍ଜ୍ଜୁନମହାରଣ ନାହିଁ ପଟାନ୍ତର,
ଅନ୍ତରୀକ୍ଷେ କୁତୂହଳେ ଦେଖନ୍ତି ଅମର,
କଳିଙ୍ଗ ସଙ୍ଗତେ ଯୁଝେ ଦ୍ରୁପଦକୁମର,
ଉଭୟେ ଯୁଝନ୍ତି ଯେହ୍ନେ ମତ୍ତ କରିବର,
ଧୃଷ୍ଟଦ୍ୟୁମ୍ନ ବିଶିଖେ କଳିଙ୍ଗ ହେଲେ ନାଶ,
ନିକାଶି ଦେବାକୁ ଗଲେ ଶମନସକାଶ,
ମହୋଦଧିତୀରେ ରମ୍ୟ ପ୍ରାସାଦେ ସେ ଥିଲେ,
ରଣ-ନିମନ୍ତ୍ରଣ ରିଏ କ୍ଷଣେ ଘେନଲେ,
ସିନ୍ଧୁବାୟୁ-ବିଧୂନିତ ରମ୍ୟ ଉପବନ,
ସୁରମ୍ୟ ରମଣୀ ଗୁଡି କଲେ ଆଗମନ,
ଆସିଥିଲେ ବୀରପଣ ଦେଖାଇବା ଆଶେ,
କୁରୁକ୍ଷେତ୍ରେ ପଡିଲେ ସେ ଗୋମାୟୁଗରାସେ,
କର୍ଣ୍ଣ ଏଡ଼ି କୃତବର୍ମ୍ମୀ ସଙ୍ଗେ ଯୁଝେ ଭୀମ,
ପ୍ରତାପେ ଅନନ୍ତ ସମ ରଣେ ଅପ୍ରତିମ,
କୃତବର୍ମ୍ମୀ ସହାୟ ହୋଇଲେ ଦୁର୍ଯ୍ୟୋଧନ,
ଉଗ୍ରାୟୁଧ ଦୁଃଶାସନ ବୀର ବିରୋଚନ,
ସମସ୍ତଙ୍କୁ ନିବାରଇ ଭୀମ ଅବହେଳେ,
ମତ୍ତ ମତଙ୍ଗଜ ଯେହ୍ନେ ନଳବନେ ଖେଳେ,
ଗଦାଘାତେ ଦୁର୍ଯ୍ୟୋଧନ ରଥ ହେଲା ଚୂର୍ଣ୍ଣ,
ଶୋଣିତେ ସମରସ୍ଥଳୀ ହେଲା ସେ ପିଶୁନ,
ସାରଥି ସହିତେ କୃତବର୍ମ୍ମୀ ରଥ ହୟ,
ଉଗ୍ରାୟୁଧ ବିରୋଚନ ଗଲେ ଯମାଳୟ,
ରଥୁଁ ଖସି ବେନି ଭାଇ ପଡିଲେ ଧରାରେ,
[illegible]

ଚଡ଼ଚଡ଼ ଚଡ଼େ ଯେବେ ପଡ଼ଇ ଚଡ଼କ
ଉପୁଜାଇ ବଣବାସିହୃଦୟେ ଦମକ,
ପତନେ କବଚ ଗାତ୍ରେ ବଜାଇ ଝନ୍‌ଝନ,
ଇଷ୍ଟଦେବ ସ୍ମର ଶୂରେ ମୁଦିଲେ ନୟନ,
ବଡ ପ୍ରିୟ ବେନି ଏହୁ ଥିଲେଟି ରାଜାର,
ଦୁରନ୍ତ କୃତାନ୍ତ କିଛି ନ କଲା ବିଚାର,
କୋମଳ ଶୟନେ ଦୁହେଁ ନିତ୍ୟ ଶୋଉଥିଲେ,
କୁରୁକ୍ଷେତ୍ରେ ଏବେ ମହାନିଦ୍ରାକୁ ଭଜିଲେ !
ଭ୍ରାତୃଶୋକେ ଦୁଃଶାସନ ନେତ୍ରୁଁ ଜଳ ଝରେ,
ମହାକ୍ରୋଧେ ଅଗ୍ରସର ହେଲେ ସେ ସମରେ,
ଦେଖି କ୍ଷେତ୍ରେ କ୍ଷତ୍ରଗ୍ଲାନି ଦୁଷ୍ଟ ଦୁଃଶାସନ
ବଜ୍ରନାଦେ ଗର୍ଜି ଭୀମ ଧାଇଁଲେ ତକ୍ଷଣେ ।
ରୌଦ୍ରରୂପୀ ମହାବୀର ଧାଇଁଲେ ସରୋଷେ,
ବାନ୍ଧଇ ଉରୁରେ ଅସି ଗୁରୁ ଅସିକୋଷେ,
"ଏତେ ଦିନେ" କହେ ଭୀମ ଗର୍ଜିଣ ନିର୍ଘାତେ,
"ଏତେ ଦିନେ ଆରେ ଦୁଷ୍ଟ ! ପଡିଲୁ ମୋ ହାତେ,
କ୍ଷତ୍ରକୁଳକୁଳାଙ୍ଗାର ଆରେ ରେ ନିର୍ବୋଧ !
ପୂର୍ବ ଋଣ ଆଜ ରେ କରିବ ପରିଶୋଧ ।"
ପ୍ରଚଣ୍ଡ ଆୟସୀ ଗଦା ଆସ୍ଫାଳି ଭୀଷଣେ
ଧାଏଁ ଭୀମ, ଧକଧକେ ଅନଳ ଲୋଚନେ,
ହାସେ ଦୁଃଶାସନ ବୀର ବେଗେ କ୍ଷେପେ ଶର,
ନିବାରେ ବୁଲାଇ ଗଦା ଭୀମ ଗଦାଧର;
ତ୍ରସ୍ତେ ବ୍ୟସ୍ତେ ଦୁଃଶାସନ ଅନ୍ୟ ଅସ୍ତ୍ର ମାରେ,
ସେହିରୂପେ ବୃକୋଦର ସେ ଅସ୍ତ୍ର ନିବାରେ,
ଗଦାଘାତେ ଦୁଃଶାସନ ରଥ ଭୀମ ନାଶେ,
ଲମ୍ଫା ଏଡି ଦୁଃଶାସନ ପଳାନ୍ତି ତରାସେ,
ଅନ୍ତରୀକ୍ଷେ କପୋତକୁ ଦେଖିଣ ସଞ୍ଚାଣ
ବଜ୍ରନଖ ଧାଏଁ ଯେହ୍ନେ ବିଜୁଳି ସମାନ,
ଇତର ପକ୍ଷିଏ କରୁଥାନ୍ତି କୋଳାହଳ,
ଏଣେ ତେଣେ ନିଜ ପ୍ରାଣ ଆତଙ୍କେ ବିକଳ,
କପୋତ ସଞ୍ଚାଣ ମୁଖୁ ଏଡ଼ାଇବା ଆଶେ
ଆତଙ୍କେ ବିବିଧ ରଙ୍ଗେ ଉଡ଼ଇ ଆକାଶେ,
କ୍ଷଣେ ଉଠେ, କ୍ଷଣେ ପଡ଼େ, କ୍ଷଣେ ଉଲଟଇ,
କିଛି ଦୂର ଯାଇ ପୁଣି ଖରେ ଲେଉଟଇ,

ଅନ୍ତରୀକ୍ଷେ ବ୍ୟଗ୍ରନେତ୍ରେ ଆଶ୍ରା ଲୋଡ଼ୁଥାଏ,
ଜୀବନ ବିକଳେ ମୁହୁ ସଞ୍ଚାଣକୁ ଗୃଧ୍ରେ,
ତେମନେ ପଳାଏ ରଣେ ଦୁଷ୍ଟ ଦୁଃଶାସନ,
କ୍ଷଣେ ରହେ, କ୍ଷଣେ ଧାଏଁ, ଭୟେ ଉଚ୍ଚାଟନ,
ଆକୁଳେ କୌରବବଳ କଲେ ହାହାକାର,
ଧାଏଁ ଭୀମସେନ ବେଗେ ନକ୍ଷତ୍ର ଆକାର,
କାଞ୍ଚନ-କିରୀଟ-ଚୂଡ଼ା ଦୋଳଇ ମସ୍ତକେ,
କାଞ୍ଚନ କଞ୍ଚୁକ ଦେହେ ଉଜ୍ଜ୍ୱଳ ଝଟକେ,
କଣ୍ଠାଗ୍ରେ ଧରିଲା ଯାଇଁ ଦୁଃଶାସନ ବାଳ,
ଗର୍ଜଇ ବିକ୍ରମେ ମୁଖ କରି ବିକଟାଳ,
ଆତଙ୍କେ କମ୍ପଇ ମୁହୁ ଦୁଃଶାସନ ଅଙ୍ଗ,
କେଶରୀ କବଳେ ଯେହ୍ନେ ପଡ଼ିଲା କୁରଙ୍ଗ,
କହେ ଦୁଃଶାସନ ବୀର ବିନୟ ବଚନ,
"ଆହେ ବୀରମଣି ! ରଖ ରଖ ଏ ଜୀବନ,
ପଳାୟକ ଅଟଇ ମୁଁ, ନିରସ୍ତ୍ର ଆବର,
ବୀରଧର୍ମ୍ମ ଅବିହିତ ନୁହଇ ତୁମ୍ଭର ।"
କହେ ଭୀମ ଭୀମବାହୁ, "ଆରେ ରେ ପାମର !
ବିପଦେ ପଡ଼ିଣ ଏବେ ଧର୍ମ୍ମକୁ ସୁମର,
କାହିଁ ଥିଲା ଧର୍ମ୍ମ ରେ କପଟପାଶା ବେଳେ ?
କୃଷ୍ଣାକୁ ବିବସ୍ତ୍ର ଯେବେ କଲୁ ଅବହେଳେ !
ଅଧର୍ମ୍ମୀ ସହିତେ ଧର୍ମ୍ମ ନୁହେ ପାଳିବାର,
କପଟୀ ସହିତେ ଯୁକ୍ତ କପଟ ବେଭାର,
ମୃଗ ସଙ୍ଗେ ଯେଉଁ ଧର୍ମ୍ମ ଆଚରେ ଶାର୍ଦ୍ଦୂଳ,
ଭେକ ସଙ୍ଗେ ଭୁଜଙ୍ଗମ, ଭୁଜଙ୍ଗେ ନକୁଳ,
କରୀ ସଙ୍ଗେ ଯେଉଁ ଧର୍ମ୍ମ ଆଚରେ କେଶରୀ,
ଶତ୍ରୁ ସଙ୍ଗେ ଶତ୍ରୁ ପଣେ ସେହି ଧର୍ମ୍ମ ଧରି ।
ନୁହଇ ମୁଁ କାପୁରୁଷ, ଅସ୍ତ୍ର ନ ଧରିବି,
ବିନା ଅସ୍ତ୍ରେ ପାମର ! ତୋ ପରାଣ ହରିବି,
ବାନ୍ଧ ତୁ ସାହସ ହୃଦେ ଆରେ ଦୁରାଶୟ !
ଏ କାଳେ ସାହସ ତୋର ଲୋଡ଼ା ଅତିଶୟ ।"
ଏହା ବୋଲି ଗଦା ଫିଙ୍ଗି ଦେଲା ବୃକୋଦର,
ନିରାଶେ ସାହସ ଦୁଃଶା ବାନ୍ଧିଲା ମନର,
ମହାବଳେ ଭୀମଙ୍କୁ ସେ ଧରିଲା ଆକଟି,
[illegible]

ପଡ଼ିଲେ ଭୂତଳେ ଭୀମ ଗର୍ଜି ଭୀମନାଦେ,
ମାଡ଼ି ବସି ଦୁଃଶାସନ ବୈରଶୋଧ ସାଧେ,
ନିର୍ଘାତେ ପ୍ରହାରେ ମୁଷ୍ଟି ଭୀମଙ୍କ ମସ୍ତକେ,
କୁରୁବଳ ସାଧୁବାଦ ଦେଲେ ସେ ପୁଲକେ ।
ଭୟେ ପାଣ୍ଡୁବଳେ ପଡ଼ିଗଲା ହାହାକାର,
ଆକୁଳ ନକୁଳ ନେତ୍ରୁ ବରଷେ ଆସାର,
ଆକୁଳ ଅର୍ଜୁନନେତ୍ରୁ ଝରେ ଅଶ୍ରୁଜଳ,
ବିକଳେ ପାଣ୍ଡବବଳ କାନ୍ଦିଲେ ସକଳ,
ଶ୍ରୀଭୁଜେ ବାନରଧ୍ୱଜେ ପୋଛୁ ଅଶ୍ରୁନୀର
କାନ୍ଦନ୍ତି ନୀରବେ ବସି ପ୍ରଭୁ ଯଦୁବୀର,
ଯେସନ ବରଷାଗମେ ମାନସରୋବର
ଅସଂଖ୍ୟ ମରାଳ ରବେ ହୁଅଇ ମୁଖର,
ତେସନ ମୁଖର କ୍ଷେତ୍ର ଦୁଃଖ କଳରବେ
ସୋଦର ବିପଦ ଦେଖି କାନ୍ଦିଲେ ପାଣ୍ଡବେ,
ମହାବୀର ସହଦେବ ବଦନ ସହାସ,
ବିସ୍ମୟେ ପୁଚ୍ଛନ୍ତି ତାଙ୍କୁ ପ୍ରଭୁ ଶ୍ରୀନିବାସ,
"କହ ବୀର, କିପାଁ ତୋର ହରଷ ବଦନ ?
ଅଗ୍ରଜ ବିପଦେ ହର୍ଷ ନୁହଇ ଶୋଭନ ।"
ଶୁଣି ବାସୁଦେବ ବାଣୀ କହେ ମାଦ୍ରୀସୁତ,
"କାହିଁକି କାତର ଏଡ଼େ ହେଉ ତୁ ଅଚ୍ୟୁତ ?
କି ଅବା ନ ଜାଣୁ ନାଥ ଜଗତର ସ୍ୱାମୀ,
ଜାଣୁ ଜାଣୁ କାନ୍ଦୁ ନାଥ, ଅଟୁ ଅନ୍ତର୍ଯ୍ୟାମୀ,
ବାଲ୍ୟେ ଲଭିଥିଲେ ଭୀମ ଶତଶୃଙ୍ଗ ଶାପ,
ତହୁଁ ଆଦ୍ୟ ରଣେ ପାଉଛନ୍ତି ମନସ୍ତାପ,
ତୁ ନାଥ ଭୀମଙ୍କୁ ବେଗେ କରାଅ ଚେତନ,
ଶତଶୃଙ୍ଗ ଗିରିଙ୍କୁ ସେ କରନ୍ତୁ ସ୍ମରଣ,
କାହିଁ ଭୀମ ରଣସିଂହ, କାହିଁ ଦୁଃଶାସନ !
ଶାପ ଯୋଗୁଁ ଉପୁଜିଲା ଦୁର୍ଗତି ଏସନ ।"
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ନାରାୟଣ,
ନିଜ ତେଜ ଭୀମଙ୍କୁ ସେ ଦେଲେ ସେହିକ୍ଷଣ,
"ଶତଶୃଙ୍ଗ," "ଶତଶୃଙ୍ଗ", ଘୋଷେ ଶଙ୍ଖବର,
ପଶିଲା ଶବଦ ଯାଇ ଭୀମଙ୍କ କର୍ଣ୍ଣର,
ଚେତନା ଲଭିଣ ବୀର କଟକ୍ଷେ ଉଠିଲା,
ଲେଉଟାଇ ଦୁଃଶାଙ୍କୁ ସେ ମାଡ଼ିଣ ବସିଲା,

ରଣରଙ୍ଗେ ସିଂହ ସମ ଅଟେ ବାୟୁସୁତ,
ମହାବୀର୍ଯ୍ୟବନ୍ତ ସେହୁ ବିକ୍ରମେ ଅଦ୍ଭୁତ,
ମହାବକ୍ଷ, ତେଜେ ବୀର ତେଜସ୍ୱୀ ଥିବର,
ହେଲା ସେ ବିରାଟ ମୂର୍ତ୍ତି ମହାଭୟଙ୍କର,
ମହାଶବ୍ଦେ ଭୂତଳେ ପଡ଼ିଲା ଦୁଃଶାସନ,
ବଜ୍ରାଘାତେ ଶାଳତରୁ ପଡ଼ଇ ଯେସନ
ବିନ୍ଧ୍ୟାଚଳ ତୁଙ୍ଗଶୃଙ୍ଗେ, କୁରୁପାଣ୍ଡୁବଳ
ଆତଙ୍କେ ଅବଶ ଚକ୍ଷୁ ବୁଜିଲେ ସକଳ,
ପର୍ବତ ଆକାରେ ପଡ଼ିଅଛି ଦୁଃଶାସନ,
ବସିଅଛି ତା ଉପରେ ପବନନନ୍ଦନ,
ଭୟଙ୍କର ହୁଙ୍କାରେ ଅଧରେ ଦନ୍ତ ଚିପି
ରେରେକାର କରଣ ଗର୍ଜଇ କାଳରୂପୀ,
ଗଗନ ମାର୍ଗକୁ ତୋଳିଅଛି ବଜ୍ରମୁଷ୍ଟି,
କିଅବା ମନ୍ଦରଗିରି ପଡ଼ୁଅଛି ତୁଟି,
କାଳଚକ୍ର ପ୍ରାୟେକ ବୁଲାଇ ବେନି ତୋଳା,
ଚରଣେ ଚିପଇ ଭୀମ ଦୁଃଶାସନ ଗଳା,
"ଆରେ ଆରେ ଦୁଃଶାସନ ଦୁରନ୍ତ କୌରବ !
ଏବେ ତୋ ଗରବ ରଣେ ହେଲା ପରାଭବ !
ଶତ ପୁତ୍ର ଜାତ କଲା ତୋହର ଜନନୀ,
ସମସ୍ତେ ମୋ ଅସ୍ତ୍ରାଘାତେ ଶୋଇବେ ଅବନୀ,
ଧାତାର ଲେଖନ ଏହୁ କେ କରିବ ଆନ ?
ଆରେ ଦୁଷ୍ଟ ! ଆଜ ତୋର ନାହିଁ ପରିତ୍ରାଣ,
କାଲି ରେ ସମରେ ପଳାଇଲୁ ମୋ ଅଗରୁ,
ଆଜ ରେ ପାଇଲି ଭେଟ ଦଇବଯୋଗରୁ,
ଆରେ ମୂର୍ଖ, ଆଜ ତୋତେ କରଣ ସଂହାର
କରିବି ଦ୍ରୌପଦୀ ଚିର-ଦୁଃଖ ଆଜ ପାର,
ଆରେ ଦୁଷ୍ଟ ! କେ ରକ୍ଷିବ ତୋତେ ରିବିତଳେ ?
ଦୁରନ୍ତ ପଡ଼ିଲୁ ନଷ୍ଟେ କୃତାନ୍ତ କବଳେ ।"
ଟଳନ୍ତି ଚାହିଁଲା ଭୀମ ବିରାଟମୂରତି,
ତର୍ଜନ୍ତି ଚାହିଁଲା ରୋଷେ ଅନ୍ତରୀକ୍ଷ ପ୍ରତି;
ଗର୍ଜିଣ କହିଲା, "ଆହେ ଆହେ ସୁରଗଣ !
ଆହେ ସୁରନାଥ ଇନ୍ଦ୍ର, ଶୈଳ-ବିଦାରଣ,
ପବନ, ତପନ, ଯମ, ବ୍ରହ୍ମା ଆଦିକରି
ମିଳି ଏ ସମରେ ଆସି କରିଲ ରକ୍ଷା ଧରି,

ଆସ କେ ରକ୍ଷିବ ରଖ କୌରବ ପାମର,
ଆସ ଆସ ବେଗ କର ବିଳମ୍ବ ନ କର ।”
ଭୀମର ଭୀଷଣ ବାଣୀ ଶୁଣି ସୁରଗଣେ
ହାସିଲେ ଦାନବ-ତ୍ରାସ ବାସବ ଆପଣେ ।
ଥରହର କମ୍ପିଲା ସୁବର୍ଣ୍ଣ ନିକେତନ
ମଣିଚୂଡ଼, ଥରହର କମ୍ପିଲା ଆସନ,
ମହାପ୍ରଳୟେ ଯେସନ ପ୍ରଭୁ ଦିଗମ୍ବର—
—ଭୀଷଣ-ବିଷାଣନାଦେ କମ୍ପେ ଥରହର
ତିନିପୁର, ଭୀମସେନ ଭୟଙ୍କର ନାଦ
ଶୁଣି ମର୍ତ୍ତ୍ୟମର ଜୀବେ ଗଣିଲେ ପ୍ରମାଦ ।
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଆଖଣ୍ଡଳ,
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଦେବଦଳ;
କେହି ଅଗ୍ରସର ଯହୁଁ ନ ହେଲେ ତରାସେ,
ଦୁଃଶାସନ ଚାହିଁ ଭୀମ କହନ୍ତି ସହାସେ,
ଯେ ବିକଟ ହାସ୍ୟ ଦେଖି ଡରିଲା ସଂସାର !
ଗର୍ଜିଣ କହନ୍ତି ଭୀମ, “ଆରେ କୁଳାଙ୍ଗାର !
ଆରେ ଦୁଃଶାସନ, କେହି ରକ୍ଷି ନ ପାରିଲେ ।”
ପାତାଳପୁରକୁ ଭୀମ ପୁଣି ସେ ଚାହିଁଲେ,
“ଆହେ ନାଗଲୋକ ହେ ଅନନ୍ତ ଧରାଧର !
ଧରଣୀ ଧାରଣ ତୁମ୍ଭେ କର ମସ୍ତକର,
ସପ୍ତଲୋକେ ଶ୍ରେଷ୍ଠ ଅଟ ତୁମ୍ଭେ ନାଗେଶ୍ୱର,
ପାରିଲେ ରଖ ହେ ଆସି କୌରବ ପାମର ।”
କାମରୂପୀ ବୃକୋଦର ଚାହାନ୍ତେ କରାଳ,
ଥରହର କମ୍ପିଲା ସେ ସପତ ପାତାଳ,
ନାଗଲୋକ ତ୍ରାସିଲେ ଭୀମର ମୂର୍ତ୍ତି ଚାହିଁ,
ଆତଙ୍କେ ଅସ୍ଥିର ହେଲେ ନାଗଲୋକସାଇଁ,
କେହି ନ ଆସିଲେ ଯହୁଁ ଭୀମଙ୍କର କତି,
ସରୋଷେ ଚାହିଁଲେ ଭୀମ କୁରୁଆଡ଼େ ପ୍ରତି,
କୁରୁବଳ ପାଣ୍ଡୁବଳ ହେଲେ ସ୍ତମ୍ଭୀଭୂତ,
ଗମ୍ଭୀରେ ଅମ୍ବରେ ଯେହ୍ନେ ହୁଙ୍କାରେ ଜୀମୂତ,
ଗର୍ଜିଣ କହଇ ଭୀମ ଭୀମପରାକ୍ରମ,
କୌରବ ସମ୍ମୁଖେ ଯେହ୍ନେ କାଳାନ୍ତକ ଯମ,
ଦୁଇବଳ ଅନାଇ ସେ ରହିଲେ ସ୍ତିମିତେ,
ଭୈରବ ହୁଙ୍କାରେ ଧ୍ୱନି ଉଦ୍ଭୁଜାଳା ଚିତ୍ତେ ।

"ଆରେ ଦୁର୍ଯ୍ୟୋଧନ ଆରେ କୁରୁ ଦୁରାଚାର !
ଆରେ କର୍ଣ୍ଣ ଆହବନୃ-ତରୀ-କର୍ଣ୍ଣଧାର !
ଆହେ କୁରୁ ସେନାପତି ମହାଧନୁର୍ଦ୍ଧର !
ହେ ସୌବଳ ଦ୍ୟୂତଜୟୀ ହେ ଦ୍ରୋଣକୁମର !
ଆହେ ମହାବୀର ! ଏହା କେମନ୍ତ ସହିବ ?
ତୁମ୍ଭେ ଥାଉଁ ଥାଉଁ ଦୁଃଶାସନ ନାଶ ଯିବ !
ବଡ଼ ପ୍ରିୟ ଦୁଃଶାସନ ଅଟଇ ତୁମ୍ଭର !
ଆସି ରକ୍ଷା କର ବେଗେ ପ୍ରିୟ ସହୋଦର !
ସମ୍ପଦକାଳକୁ ସଖା ସମସ୍ତେ ତ ଥିଲ !
ବିପଦକାଳରେ କେହି କତି ନ ପଶିଲ !"
ପୁଣି କୁରୁଯୋଧଙ୍କୁ ସମ୍ବୋଧି ବୃକୋଦର
ସଦର୍ପେ କହଇ, "ଆହେ ଆହେ ଅସ୍ତ୍ରଧର
ଶୂରେ ! ଭଲା ଆସି ରଖ ଦୁଃଶାସନ ଜୀବ !
ଏତେ ସଖା ଥାଉଁ ଦୁଃଶାସନ ନାଶ ଯିବ !
କୁରୁ ନୃପତିର ଧନ ଭଣ୍ଡାଇ ଖାଇଲ,
ବିପଦକାଳକୁ କେହି ସାହା ନ ହୋଇଲ !"
କେହି ନ ଆସିଲେ ଯହୁଁ ଗର୍ଜି ବୃକୋଦର
ଦୁଃଶାସନ ମୁଖ ଚାହିଁ କହିଲେ, "ବର୍ବର !
ଆରେ ରେ ଦୁରନ୍ତ ! କେହି ନ ଆସିଲେ କତି,
ଯାର ଆଜ୍ଞାବଳେ ଯାଜ୍ଞସେନୀଙ୍କ ଦୁର୍ଗତି
କଲୁ ଦୁଷ୍ଟ ! ନୋହିଲା ସେ ଏତେବେଳେ ସାହା,
ରଖି ନ ପାରିଲା ତୋର ଶିର କୁରୁନାହା !"
ପୁଣି ସେ ଚାହିଁଲା ବୀର ନିଜ ଆଠ ପ୍ରତି,
"ଆସି ସାହା ହୁଅ ଯାର ଅଛଇ ଶକତି,
କେ ଅଛିବ ବେଗେ ଆସ, ରଖ ଦୁଃଶାସନ,
ଦେଖାଅ ଯାହାର ଯେତେ ଅଛୁ ବୀରପଣ ।"
"ହେ କିରୀଟି ! ଧର ତୁମ୍ଭେ କୋଦଣ୍ଡ ଗାଣ୍ଡୀବ,
ପାରିଲେ ରଖ ହେ ବୀର ଦୁଃଶାସନ ଜୀବ,
ତ୍ରିଭୁବନେ ମହାବୀର ବୋଲାଉ ଅର୍ଜୁନ !
ଅଛି ତୋର ଅକ୍ଷୟ ସେ ଶରପୂର୍ଣ୍ଣ ତୂଣ,
ଧ୍ୱଜେ ବିରାଜଇ ତୋର ବୀର ହନୁମାନ,
ସାରଥି ଅଟନ୍ତି ତୋର ପ୍ରଭୁ ଭଗବାନ,
ପାଶୁପତ ଅସ୍ତ୍ର ସିଦ୍ଧ ଅଟଇ ତୋହର,
ତୁ ପାରିଲେ ରଖ ବୀର ! କୌରବ ପାମର ।

ହେ ମୁରାରି ! ସୁଦର୍ଶନଧାରୀ ଯଦୁବୀର !
ତୁ ପାରିଲେ ରଖ ଦୁଷ୍ଟ ଦୁଃଶାସନ ଶିର ।"
ନିଜ ନିନ୍ଦା ଶୁଣି ପାର୍ଥ ଥିଲେ ନିରୁତ୍ତର,
ବାସୁଦେବ ନିନ୍ଦା ଶୁଣି ରୁଷିଲେ ଆବର,
ବିଜୟ ଗାଣ୍ଡୀବେ ଶର ଖଞ୍ଜିଲେ ସାୟକ,
ଧରିଲେ କିରୀଟି-କର ରୁକ୍ମିଣୀନାୟକ,
ବୋଲନ୍ତି ଗାଣ୍ଡୀବୀ, "ପ୍ରଭୁ ! ନ କର ବାରଣ,
ନଷ୍ଟେ ମୁଁ ରକ୍ଷିବି ଭୀମକୋପୁଁ ଦୁଃଶାସନ,
ସହି ମୁଁ ପାରଇ ସବୁ, ତୁମ୍ଭ ନିନ୍ଦାବାଣୀ
କେବେଁ ନ ସହିବ, ଏ ମୋ ପଣ ଚକ୍ରପାଣୀ !
ନଷ୍ଟେଁ ଏ ନାରାଚେ ମୁଣ୍ଡ ହାଣିବ ଭୀମର,
ତୁମ୍ଭ ନିନ୍ଦା ଯେ କରେ ସେ ନୁହେ ମୋ ସୋଦର ।"
ହସ୍ତୁ ଉ ଗାଣ୍ଡୀବ ନେଲେ ପ୍ରଭୁ ଚକ୍ରପାଣି,
"ଛାଡ଼ ଛାଡ଼ ଭୀମ ମୁଣ୍ଡ ନ ପକାଅ ହାଣି !
କାହାକୁ କରୁ ତୁ କୋପ ଆହେ ଧନଞ୍ଜୟ !
ଯାର ଇଚ୍ଛାବଳେ କ୍ଷଣେ ହୁଅଇ ପ୍ରଳୟ,
ତା ତେଜେ ତେଜସ୍ୱୀ ଭୀମ ଅଟଇ ସମ୍ପ୍ରତି,
ଧରିଅଛି ମହାବୀର ସଂହାରମୂରତି,
ନାହିଁ ବନ୍ଧେ ଭୀମକୁ ଯେ ସମରେ ଜିଣିବ,
ତୁ ପୁଣି ଦେଖାଉ ତାକୁ ଏ ଛାର ଗାଣ୍ଡୀବ !
ଏ ରୂପେ ନାଶିଲି ମୁହିଁ ହିରଣ୍ୟକଶିପୁ,
ଏ ରୂପେ ନାଶଇ ମୁହିଁ ଧର୍ମର ଯେ ରିପୁ,
ଧର୍ମର ସହାୟ ସଦା ଏ ମୂର୍ତ୍ତି ମୋହର,
ଧର୍ମଦ୍ରୋହୀ ପାପୀ ପକ୍ଷେ ମହାଭୟଙ୍କର !"
ଏମନ୍ତ ବୋଲନ୍ତେ ସିନ୍ଧୁସୁତା-ପ୍ରାଣଧନ,
ନିଶ୍ଚଳେ ବସିଲେ ରଥେ ନରନାରାୟଣ ।
ତହିଁ ସହଦେବ ପ୍ରତି କହେ ଭୀମବୀର,
"ବେଗେ ବିଜେ କର ବାବୁ ! ପାଣ୍ଡବଶିବିର,
ପାଣ୍ଡବ-କେଶରୀ-ରାଣୀ ଆଣ ଯାଜ୍ଞସେନୀ,
ଦୁଃଶାରକ୍ତଲିପ୍ତହସ୍ତେ ବାନ୍ଧିବ ତା ବେଣୀ ।"
ଶୁଣି ଭୀମସେନ-ବାଣୀ ମନ୍ତ୍ରିଚୂଡ଼ାମଣି
ବେଗେ ବିଜେ କଲେ ଯହିଁ ପାଣ୍ଡବରମଣୀ,
ବସିଥିଲେ ସତୀ ପତି-ଆଗମନ ଆଶେ,
ମିଳିଲେ ସୁରେନ୍ଦ୍ର ଯାଇଁ ସତୀଙ୍କ ସକାଶେ ।

ଦରହସିତ ବଦନ ଦେଖିଣ ତାଙ୍କର
ପଚାରନ୍ତି ଦେବୀ, କହ ବାରତା ଯୁଦ୍ଧର ।
ବୋଲେ ସହଦେବ, "ଦେବ ! ବଜେ କର ରଥେ,
ଏହିକ୍ଷଣି ଚାଲ ଭୀମସେନଙ୍କ ଅଗ୍ରତେ,
ଭୀମସେନ ଠାକୁରଙ୍କ ଅଟେ ଏ ଆଦେଶ,
ବାନ୍ଧିବେ ସେ ଆଜ ତୋର ଚିରମୁକ୍ତ କେଶ,
ଏତେଦିନେ କଷ୍ଟ ଦେବ ! ହେଲା ଅବସାନ,
କପଟପାଶାରେ ଦୁଷ୍ଟ କଲା ଅପମାନ,
ଲଭିବ ଉଚିତ ଆଜ ତାର ପ୍ରତିଫଳ,
ଦୁଃଶାସନ ରକ୍ତେ ଧରା ହେବ ସେ ଶୀତଳ ।"
ଶୁଣିଣ ଦ୍ରୌପଦୀ ଦେବୀ ଅନ୍ତରେ ସନ୍ତ୍ରାସ,
ବେଗେଣ ମିଳିଲେ ଯାଇ ଭୀମସେନ ପାଶ,
ମହାମନ୍ତ୍ରୀ ପାଣ୍ଡବ-ସମ୍ରାଟ ପାଟରାଣୀ—
—ହସ୍ତ ଧରି ଭୀମ ଆଗେ ଭେଟାଇଲେ ଆଣି ।
ପଡିଅଛି ଦୁଃଶାସନ ପର୍ବତଆକାରେ,
ବସିଣ ଉପରେ ଭୀମ ନର୍ଘାତେ ପ୍ରହାରେ,
କାଳରୂପୀ ଭୀମସେନ ଭୈରବ ମୂରତି
ଦେଖିଣ ହାସିଲେ ମନେ ପାଣ୍ଡବଯୁବତୀ,
ଆସନ୍ତେ ଦ୍ରୌପଦୀ କର ଧରିଣ ମନ୍ଥୀର,
"ଆସ ଆସ ଦେବି ଗୋ !" ଡାକଇ ଭୀମବୀର,
"କୁରୁସଭାତଳେ ବସ୍ତ୍ର କଲା ଯେ ହରଣ,
ଚାହିଁ ବଟି ଏହାଟିକ ସେହି ଦୁଃଶାସନ !
ଭଲ କରି ଦେଖ ମୋର ଭ୍ରାତାଙ୍କ ବଦନ,
ଉପକାରୀ ପୁରୁଷ ଗୋ ଅଟନ୍ତି ଏ ଜନ,
କେତେ କେତେ ଦଣ୍ଡ ତୋତେ କୁରୁସଭାତଳେ
ଦେଇଥିଲେ ବଙ୍କମଣି କୁରୁଆଙ୍କାବଳେ !"
ଉତ୍ତରେ ପଡିଛ କୁରୁ ଭ୍ରାତା ମୁଖ ଚାହିଁ,
ଜଳଦଗମ୍ଭୀର ସ୍ୱନେ କହେ ଭୀମ ବୀର,
"ଆରେ ଦୁଃଶାସନ ! ତୋତେ ଛାଡିଲା ଦଇବ,
ତିନପୁରେ ରଖି ନ ପାରିଲେ ତୋର ଜୀବ,
ଦ୍ୱିଜକୁଳଚୂଡ଼ାମଣି ଦ୍ରୁପଦରାଜନ
ଶାନ୍ତ ଋଷି ଯେବେ କଲେ ଯଜ୍ଞ ଆୟୋଜନ,
ହୋମାନଳ ବଦାର ଉଠିଲେ ଯେ ରମଣୀ,
ସାଧ୍ୱୀପଣେ ଯେ ନାରୀଙ୍କୁ ଶ୍ରେଷ୍ଠ ବୋଲି ଗଣି,

ତୁ ଛାର ପାମର ରେ ଧରିଲୁ ତାର କେଶ,
ଗୁରୁ ଆଗେ ଅପମାନ କଲୁ ରେ ଅଶେଷ,
ପାଣ୍ଡୁ-କୁଳ-ପାଟରାଣୀ କୃଷ୍ଣା ଯାଜ୍ଞସେନୀ,
ଆକର୍ଷି ଝିଙ୍କିଲୁ ରେ ପାମର ! ତାର ବେଣୀ,
କାଳେ କର୍ମବୃକ୍ଷ ଫଳେ ଶାସ୍ତ୍ରର ଏ ଲେଖା,
ତୋହୋ କର୍ମଫଳ ଏତେ ଦିନେ ଦେଲା ଦେଖା ।
ଦଶନଖେ ବିଦାରିବି ତୋର ବକ୍ଷସ୍ଥଳ,
ତେବେ ସେ ମୋହର ହିଆ ହୋଇବ ଶୀତଳ;
ଏବେ ଇଷ୍ଟଦେବଙ୍କୁ ସ୍ମର ରେ ବୀର ଦୁଃଶା !
କରିବି ସମ୍ପ୍ରତି ତୃପ୍ତ ମୋ ରୁଧିରତୃଷ୍ଣା,
ପଡ଼ଇ କି ମନେ ତୋର ଆରେ କୁରୁ କ୍ରୂର !
ଦାସୀପଣେ କୃଷ୍ଣାକୁ ଝିଙ୍କିଲୁ ଅନ୍ତଃପୁର
ଯେ କାଳେ, ସହସା ମହୀ କମ୍ପିଲେ ବିକଳେ,
ଟଳିଲା ହସ୍ତିନାହର୍ମ୍ମ୍ୟରାଜି ଟଳଟଳେ,
ଚନ୍ଦ୍ରଶାଳାଚୂଡ଼େ ବସି ରାବିଲେ ପେଚକ,
ଆଚମ୍ବିତେ ନଭୋଦେଶେ ଶୁଭିଲା ଚଡ଼କ,
ରାବିଲେ ଭୀଷଣ ରାବେ ଗୋମାୟୁ ଗର୍ଦ୍ଦଭ;
ସଭାସ୍ଥଳେ ଶୁଭିଲା ସେ ଭୟଙ୍କର ରବ,
ଚକିତ ହୋଇଲେ ସର୍ବେ ଭୀଷ୍ମ ଦ୍ରୋଣ ଆଦି,
ସ୍ୱସ୍ତି ସ୍ୱସ୍ତି ଉଚ୍ଚାରିଲେ ଋଷି ବ୍ରହ୍ମବାଦୀ,
ନିୟତି ଘୋଷଣା ସେହି ଜାଣି ନ ଜାଣିଲୁ,
ଅନିତ୍ୟ ଐଶ୍ୱର୍ଯ୍ୟମଦେ ଧର୍ମଙ୍କୁ ପୀଡ଼ିଲୁ,
ଅଗ୍ରଜ ବାସ୍ତଲେ ଦୃଢ଼·କରଣ ନିର୍ଭର
ଉପହାସ-ରସିକ ତୁ ଥିଲୁ ରେ ବର୍ବର !
ସେହି ଧର୍ମ ଅନ୍ତେ ଏବେ ହେଲାଟି ପ୍ରବଳ,
ସେହି ଧର୍ମ ଏ ଭୁଜେ ଦେଉଛି ପ୍ରତିଫଳ ।"
କହନ୍ତି ଦ୍ରୌପଦୀ, "ନାଥ ! ହେଉଛି ସ୍ମରଣ,
ଅନ୍ତଃପୁରେ କୁନ୍ତୀ ସଙ୍ଗେ ଥିଲି, ଏ ଦୁର୍ଜନ
ନିରଦୟ, ନିରପେକ୍ଷ, ନିର୍ଭୟେ ଚଣ୍ଡାଳ
ବାମ କରେ କର୍ଷି ଧରଣ ମୋର ବାଳ
ଆଣନ୍ତେ ଚରଣ ନି ପଡ଼ଇ ଭୂମିତଳେ,
ପଦବୀ ପ୍ଲାବିତ ନାଥ ! କଲି ଅଶ୍ରୁଜଳେ,
କୁରୁସଭାତଳେ ଗୁରୁଜନଙ୍କ ଛମ୍ମୁର
ଅବହେଳେ ବିବସନ କଲା ମତେ କ୍ରୂର;

ଆକୁଳେ ଡାକିଲି, ନାଥ ! କେହି ନ ଶୁଣିଲେ
ଭୀଷ୍ମ ଦ୍ରୋଣ ଆଦି କରି ବସିଣ ଯେ ଥିଲେ,
ସମସ୍ତଙ୍କୁ ତ୍ରସ୍ତେ ବ୍ୟସ୍ତେ ଡାକିଲି ବହନ,
ଦୟା ନ ବହିଲେ ଶୁଣି ଅବଳା ରୋଦନ,
ଲଜ୍ଜାନିବାରଣବାନା ପ୍ରଭୁ ଭଗବାନ
ଧର୍ମର ସହାୟ ହୋଇ କଲେ ପରିତ୍ରାଣ ।
ସେକାଳେ ବିକଳ ଯେତେ ହେଲା ଏ ହୃଦୟ,
ଜାଣନ୍ତି କେବଳ ସେହି ପ୍ରଭୁ ଦୟାମୟ ।”
ତରୁଣୀ-କରୁଣ-ବାଣୀ ଶୁଣିଲେ ମାରୁତି,
ହେଲା ସେ ବିଷମ-ରୋଷ-ଅନଳେ ଆହୁତି,
ପୂର୍ବ ଦୁଃଖ ଅପମାନ କଲେକ ସ୍ମରଣ,
ବିଷଦାନ, ଯତୁଗୃହ, ବନବିବାସନ,
ମହାକୋପେ ଗରଜିଲେ ପବନତନୁଜ,
ଆକ୍ରୋଶେ ଧରିଲେ ଦୁଃଶାସନ ବାମ ଭୁଜ,
ବକ୍ଷେ ଶିରେ ପାଦ ରୁପି ଉପାଡ଼େ ସେ କର,
ଶବଦେ ଅବନୀ ଭୟେ କମ୍ପେ ଥରହର;
ଭୁଜ ଉପାଡ଼ନ୍ତେ ଶବ୍ଦ ଶୁଭେ ଭୟଙ୍କର,
କି ଅବା ଉପୁଡି ପଡ଼େ ହିମାଦ୍ରି ଶିଖର,
ପ୍ରଚଣ୍ଡ ବୈଷ୍ଣବ ତେଜେ ଗର୍ଜଇ ପାବନ,
କି ଅବା ଗଗନୁ ଖସେ ଭୀଷଣ ଅଶନ,
ଅଷ୍ଟକୁଳାଚଳ କମ୍ପେ, କମ୍ପେ ତନପୁର,
ଆତଙ୍କେ କମ୍ପିଲେ ନାଗ ନର ସୁରାସୁର,
ରବିରଥେ ଶୂନ୍ୟପଥେ କମ୍ପିଲେ ଅରୁଣ,
କୂଳ-ପ୍ରକମ୍ପନ-ଦେବ କମ୍ପିଲେ ବରୁଣ,
କମ୍ପିଲା ସଘନେ ରମ୍ୟ ମୁକ୍ତାସଦନ
ନୀଳ ଅମ୍ବୁରାଶି ତଳେ, କମ୍ପିଲା ଆସନ
ସୁରଙ୍ଗ ପ୍ରବାଳମୟ ଭେଦି ଜଳରାଶି;
ଛୁଟିଲେ ତରଙ୍ଗାବେଗ ପାଶାଘାତେ ପାଶୀ ।
ମହିଷ-ମର୍ଦ୍ଦିନୀ-ଚଣ୍ଡୀ-ପ୍ରଚଣ୍ଡ-ଶବଦ
ଧ୍ରାଏକ କଲା ସେ ଶବ୍ଦ ତ୍ରିଲୋକ ସ୍ତବଧ ।
ଶୋଣିତ-ପାଟଳ ଭୁଜ ଭୀମ ଉପାଡଣ
ଗଗନକୁ ଫିଙ୍ଗି ଦେଲା ବେଗେ ବୁଲାଇଣ,
ବରଷେ ରୁଧିର ବିନ୍ଦୁ ଆକାଶ ବିସ୍ତାରି,
ଅନ୍ତରୀକ୍ଷେ ଶ୍ୟେନପକ୍ଷୀ ଭୁଜ ନେଲା ମାରି ।

ପୁଣି ଦକ୍ଷ ଭୁଜ ଧରି ଉପାଡିଲା ବଳେ,
ଏ ଭୁଜେ ଧର୍ମଙ୍କୁ ବସାଇଲୁ ସଭାତଳେ !
ବୁଲଇଣ ଫିଙ୍ଗି ଦେଲା ସେ ଭୁଜ ହୁଙ୍କାରି,
ଅନ୍ତରୀକ୍ଷେ ଶ୍ୟେନପକ୍ଷୀ ପୁଣି ନେଲା ମାରି ।
କୃଷ୍ଣା କୃଷ୍ଣକେଶେ ରକ୍ତ ବର୍ଷଇ ପ୍ରଚୁର,
ବିଦାରିଲା ବୃକୋଦର ଦୁଃଶାସନ ଉର,
ଦନ୍ତ କଡ଼ମଡ଼ି ସିଂହ ପଡ଼େ ଆଚମ୍ବିତ
ବୃଷସ୍କନ୍ଧେ, ପଡି ଯେହ୍ନେ ପିଅଇ ଶୋଣିତ,
ତେସନେ ବିକ୍ରମ-ସିଂହ ଭୀମ ମହାବୀର
ରକ୍ତାକ୍ଷ, ଅରାତି ବକ୍ଷେ ପିଅଇ ରୁଧିର,
ଦୂରେ ବୃଷପତି ରହେ ସନ୍ତ୍ରାସେ ଅନାଇ,
ତେସନେ ସନ୍ତ୍ରାସେ ଦୂରୁ ଗୃହେଁ କୁରୁସାଇଁ ।
ରକ୍ତହସ୍ତେ ଯାଜ୍ଞସେନୀ ମୁକ୍ତ ଲମ୍ବ କେଶ
ବାନ୍ଧିଲା ଆନନ୍ଦେ ବାୟୁନନ୍ଦନ ବୀରେଶ,
ଅସ୍ତଗିରିଶୃଙ୍ଗେ ଏବେ ପ୍ରବେଶ ତପନ,
ପଶ୍ଚିମ ଆକାଶ ଦିଶେ ଲୋହିତ ବରଣ,
ଅସ୍ତଗାମୀ ରବିପ୍ରଭା ପଡି ରଣସ୍ଥଳେ
ଦିଶଇ ମିଶ୍ରିତ ଯେହ୍ନେ ପାଟଳି ପାଟଳେ ।
ସନ୍ଧ୍ୟା ଜାଣି ଦୁଇବଳ ଗଲେ ନିଜସ୍ଥାନ,
ମହାସୁଖେ ଏକ, ପୁଣି ମହାଶୋକେ ଆନ ।
ଦ୍ରୁପଦନନ୍ଦିନୀ ସଙ୍ଗେ ସୁନ୍ଦର ସ୍ୟନ୍ଦନେ
ବାହୁଡିଲେ ଭୀମବାହୁ ଭୀମ ହୃଷ୍ଟମନେ,
ଯମୁନା ନିର୍ମଳ ନୀରେ ପଖାଳି ଶରୀର
ମିଳିଲେ ସାନନ୍ଦେ ଯାଇଁ ପାଣ୍ଡବ ଶିବିର ।



( ୩ )

# ଭାରତେଶ୍ୱରୀ ।

( ଉଦ୍ବୋଧନ )

ସୁନୀଳ ସାଗରେ ରାଜେ ଶ୍ୱେତ ଦ୍ୱୀପ,
ଅଜେୟ ଜଗତେ ନାମ ବ୍ରିଟାନୀୟା,
ପ୍ରାକାର ଯାହାର ନୀଳ ପାରାବାର,
ଅଖିଳ ଅବନୀ ମଧ୍ୟେ ମାନନୀୟା,
ଅଖିଳ ଅବନୀ-ପତି ପୂଜନୀୟା ।

ଅଜେୟ ଜଗତେ ବ୍ରିଟିଶ-କେଶରୀ,
ବ୍ୟାପିଛି ଯା ଯଶ ସର୍ବ ମର୍ତ୍ତ୍ୟପୁର,
ଜଗତନୟନ ସୁଧାଂଶୁ ତପନ
କିରଣର ଗତି ଯାଏ ଯେତେ ଦୂର,
ଦୁର୍ଜୟ ସର୍ବତ୍ର ଶ୍ୱେତଦ୍ୱୀପ ଶୂର ।

ନିରପେକ୍ଷ ଯେହ୍ନେ ଶମନ ସମାନ,
ରୋଷେ ବୈଶ୍ୱାନର ପ୍ରାଏ ସର୍ବନାଶୀ,
ନ୍ୟାୟେ ବୃହସ୍ପତି, ପାଳନେ ଶ୍ରୀପତି,
ଦୟାର ଆଧାର ଶ୍ୱେତଦ୍ୱୀପବାସୀ,
ଶକ୍ତି ସତ୍ତ୍ୱେ କ୍ଷମା ଗୁଣ ପରକାଶି ।

ଖଟନ୍ତି ଯା ପଦେ ନୀଳଅମ୍ବୁପତି
ଶୌରିପଦେ ଯେହ୍ନେ ହର କର-ଦାସ,
ବିଜ୍ଞାନ କୌଶଳେ ଉଠି ନଭସ୍ଥଳେ
ତାରା ସଙ୍ଗେ ଯେହ୍ନେ କରନ୍ତି ସମ୍ଭାଷ,
ତଡ଼ିତ ସଙ୍ଗେ ଯେ କରନ୍ତି ବିଳାସ,
ମେରୁ ମହାର୍ଣ୍ଣବ ତୁଷାର ଉରସେ,
ନିରକ୍ଷମଣ୍ଡଳ ଆଗ୍ନେୟ ଉତ୍ସଙ୍ଗେ,
ସାଗର ବକ୍ଷରେ ଭୂଧର କନ୍ଦରେ,
ସର୍ବତ୍ର ଶ୍ୱେତାଙ୍ଗେ ବିହରନ୍ତି ରଙ୍ଗେ,
ରତ ଅବିରତ ବିଜ୍ଞାନ ପ୍ରସଙ୍ଗେ ।

ସାଗର-କେଶରୀ ସଖାଳି କେଶର
ଗରଜେ ଯେ କାଳେ ଉଗାରି ଅନଳ,
କମ୍ପେ ବସୁମତୀ, କମ୍ପେ ଅମ୍ବୁପତି,
ବୁଡ଼ାଇ ଦଅଇ ସାଗର ଚହଲ,
ଅନୁକରେ ବଜ୍ରଧ୍ୱନି ଅବିକଳ ।

ସ୍ୱାଧୀନତା ଦେବୀ ପ୍ରିୟ ନିକେତନ
ଅଟେ ଯେ ବ୍ରିଟେନ, ସେ ଦ୍ୱୀପ ଈଶ୍ୱରୀ
ପୂର୍ବ ଭାଗ୍ୟଫଳେ, ପୂର୍ବ ତପୋବଳେ,
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ
ମଣି କାଞ୍ଚନର ସଂଯୋଗ ଏପରି ।

ମାନବ ଦାସତ୍ୱ-ଶୃଙ୍ଖଳ ମୋଚନ
କଲା ଯେଉଁ ଜାତି, ସ୍ୱାଧୀନତା ଦାନ
ଯାର ନିତ୍ୟବ୍ରତ, ତାର ଅନୁଗତ
ଆଜି ଏ ଯାବନ୍ତ ଭାରତ ସନ୍ତାନ,
ଏ ଅଟେ ଭାରତ ମଙ୍ଗଳନିଦାନ ।

ଆଜି ଭାରତର ବଦନ ଉଜ୍ଜ୍ୱଳ,
ନବ ବିକଶିତ ଭାରତ-କମଳ,
ଭାରତ ଆକାଶେ ସୁଖେ ପରକାଶେ
ନବ ଅରବିନ୍ଦବନ୍ଧୁ ସୁବିମଳ,
ଉପୁଜଇ ଆର୍ଯ୍ୟ ଦେହେ ନବବଳ ।

ୟୁରୁପ * ଦଳନ ଦମ୍ଭୀ ନେପୋଲିୟନ,
ଦୁର୍ଜ୍ଜୟ ଜଗତେ କୀର୍ତ୍ତିବୀର୍ଯ୍ୟ ଯାର,
ଯାର ଭୁଜବଳେ ନମ୍ରକଲେ ତଳେ
ନିଜ ଶିର, ସେହି ବ୍ରିଟେନ-ଈଶ୍ୱରୀ
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ ।

ନବ ଇନ୍ଦ୍ରପ୍ରସ୍ଥେ ନବ ରାଜସୂୟେ
ଉପସ୍ଥିତ ଆଜି ରାଜନ୍ୟମଣ୍ଡଳ,
ରାଜେନ୍ଦ୍ର-ଉଚିତ ଭୂଷଣେ ଭୂଷିତ,
ଯୋଗ୍ୟ ଉପହାର ଅର୍ପନ୍ତି ସକଳ,
ବନ୍ଦନ୍ତି ଈଶ୍ୱରୀ ଚରଣଯୁଗଳ ।

---

* ୟୁରୁପ— ଇଉରୋପ ।

ମହାରାଷ୍ଟ୍ର ଶୂର ବୀରେନ୍ଦ୍ର ସିନ୍ଧିଆ,
ମହାରାଷ୍ଟ୍ରକୁଳ-ଗୌରବ-ଭାସ୍କର
ପ୍ରୌଢ଼ ହୁଲକାର, କିଶୋର ଗୁଇକାର,
ଯବନ ନିଜାମ—ଦାକ୍ଷିଣାତ୍ୟେଶ୍ୱର,
ଉଦେପୁରପତି ରବି-ବଂଶଧର ।

କାବେରୀମେଖଳ ଶ୍ରୀରଙ୍ଗପତ୍ତନ,
ତୁଷାର-ଉଜ୍ଜ୍ୱଳ ସୁରମ୍ୟ କାଶ୍ମୀର,
ଶିଖ ପଟ୍ଟିଆଲ, ଭୂଟାନ, ନେପାଳ,
ଏ ଆଦି ଯେତେକ ଦେଶ ରାଜବୀର
ନତ ପଦେ ଆଜ ଭାରତେଶ୍ୱରୀର ।

ନବ ଇନ୍ଦ୍ରପ୍ରସ୍ଥେ ନୂତନ କେତନ
ଉଡ଼ିଲ ଅମ୍ବରେ, ବାଦିତ୍ରନିଃସ୍ୱନ
ଶୁଭିଲ ଗମ୍ଭୀର, ଯେସନେ ଯଦୁବୀର
ପାଞ୍ଚଜନ୍ୟ ନାଦ କରନ୍ତି ସଘନ,
ଚକିତେ ଶୁଣନ୍ତି ନୃପ ଅଗଣନ ।

ଏ ନବ ଘୋଷଣା ପ୍ରତିଧ୍ୱନି ଛଳେ
ଗାଇବେ ଭୀଷଣ ତୁଷାରଶିଖରୀ,
ବିନ୍ଧ୍ୟ ଧରାଧରେ କନ୍ଦରେ କନ୍ଦରେ
ଉଠିବ ଏ ଧ୍ୱନି ଅମ୍ବରେ ସଞ୍ଚରି,
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ" ।

"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ଉଲ୍ଲାସେ କଲ୍ଲୋଳେ ଗାଇବେ ସାଗର,
ବେନି ଉପକୂଳେ ନୀଳ ଉର୍ମିକୁଳେ
ଗାଇବେ ଗମ୍ଭୀରେ ମଳୟ ଭୂଧର,
ଝର୍ଝର ଶବଦେ ଗାଇବେ ନିର୍ଝର ।

"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ଏ ଘୋଷଣା ଆଜ ବ୍ୟାପଇଁ ଉତ୍କଳ,
ଗାଏ ମହାନଦୀ, ଗାଏ ମହୋଦଧି,
ଗାବନ୍ତୁ ହରଷେ ପ୍ରତୀଚୀ ଅଚଳ,
ଗାବନ୍ତୁ ଦକ୍ଷିଣେ ହ୍ରଦ ଉର୍ମିଦଳ ।

କାଞ୍ଚନ ବିମାନେ ଗଗନେ ସଞ୍ଚରି
କର ପୁଷ୍ପବୃଷ୍ଟି ସୁର-ବିଦ୍ୟାଧରି !
ଏକାମ୍ର କାନନେ ଲତା-ଦୋଳାସନେ
ଗାଅ ବନଦେବି ! କରେ ବୀଣା ଧରି
"ଜୟ ଉତ୍କୋଳୀୟା ରାଜରାଜେଶ୍ୱରୀ" ।

"ଜୟ ଉତ୍କୋଳୀୟା ରାଜରାଜେଶ୍ୱରୀ"
ପ୍ରତିଧ୍ୱନି ଛଳେ ଗାଉନ୍ତୁ ଦେଉଳ,
ଖଣ୍ଡଗିରି ଦରୀ ଉଦରେ ସଞ୍ଚରି
କୁଞ୍ଜେ କୁଞ୍ଜେ ରବ ଉଠୁ ସୁମଞ୍ଜୁଳ,
ମଧୁପଗୁଞ୍ଜିତେ ହେଉ ସେ ପୃଥୁଳ ।

ଚନ୍ଦ୍ରଭାଗାତୀରେ ସାଗର ନୈକଟେ
ଚନ୍ଦ୍ରାଲୋକେ ସୁଖେ କର ଯେ ବିହାର,
ଜଳଦେବୀକୁଳ ! ସର୍ବେ ହୋଇ ଠୁଳ
କର ଏ ଘୋଷଣା ସଙ୍ଗୀତେ ପ୍ରଚାର,
ତାଳେ ତାଳେ ହେଉ ଲହରୀପ୍ରହାର ।

କର ଭାରତର ବାସନା ପୂରଣ
ପ୍ରଭୁ ନିରଞ୍ଜନ ଏ ଭିକ୍ଷା ଶ୍ରୀପଦେ,
ଭାରତ-ତପନ ପ୍ରସାରି କିରଣ
ପ୍ରକାଶୁ ଏ ମୃତ ଆର୍ଯ୍ୟଃ-ମନଃପଦ୍ମେ,
ଏକତା ବିରାଜୁ ଏ ଭାରତ ସଦ୍ମେ ।



(୪)

## ଚନ୍ଦ୍ରଭାଗା ।

ରାଗ—ରାମକେରୀ

ଅଭିଷେକୋତ୍ସବ (୧) ଦର୍ଶନ ଆଶେ ସିଂହଦୁଆରେ(୨)
ବଜେ ଆଜ ଦେବ-ଦେବୀଏ ଯେଝା-ପୂଜାସମ୍ଭାରେ ।
କେତକ-କାନନ-ସଙ୍କୁଳ ରମ୍ୟ ସିକତାସ୍ଥଳ
ଛାଡ଼ି ହରଚଣ୍ଡୀ(୩) ଆଗତ ଆଜ ଶ୍ରୀନୀଳାଚଳ(୪) ।
ଭଗବତୀ ବାଣପୁରରୁ ଉପନୀତ ସ୍ୱଗଣେ,
ଶୋଲରୀ(୫) ଦେଖଇ ସ୍ୱମୁଖ ଯହିଁ ହ୍ରଦ-ଦର୍ପଣେ ।
ପ୍ରଭାମଣ୍ଡଳରେ ମଣ୍ଡିତ ତନୁ କନକଗୋରୀ,
ତୈଲଙ୍ଗୀ ବସନ ଭୂଷଣେ ପୁଣି ଦଶଇ ଗୋରୀ ।
ଉଭା ସେ ଭୁବନ-ଈଶ୍ୱରୀ(୬) ହେମଗିରିବାସିନୀ,
ଏକାମ୍ରକାନନ ଦେବତା ବନପୁଷ୍ପଶୋଭିନୀ ।
ନରେନ୍ଦ୍ର(୭) ମଞ୍ଜୁଳ-କୁସୁମ- ରେଣୁ-ରକ୍ତଚରଣା,
ମୈନାକଶିଖର-ବାସିନୀ(୮) ରଣପୁରମଣ୍ଡନା ।
ନାବିକ-ଅର୍ଚ୍ଚିତ ଚର୍ଚ୍ଚିକା- ଦେବୀ ବାଙ୍କି-ଈଶ୍ୱରୀ,
ମହାନଦୀକୂଳେ ଯାହାଙ୍କ ଅଧିଷ୍ଠାନ-ଶିଖରୀ,
ମଣ୍ଡନ୍ତ ବଦନମଣ୍ଡଳ ଯେହ୍ନୁ ସଦା ସୁହାଗେ
ସରଣ୍ଡା-ଦର୍ପଣ ଅଂଶୁପା(୯) ଶତଦଳ ପରାଗେ ।
ବରୁଣୀ-(୧୦)-ଶଇଳ-ଶିଖରେ ପୁଣି ଯେହ୍ନୁ ବସନ୍ତ,
ଧୁଅନ୍ତ ଯାହାଙ୍କ ଚରଣ ଝର-ଲହରୀପନ୍ତ ।
ଏକାନ୍ତେ ସୁକାନ୍ତ-ତନୁଜା-(୧୧) ତୀର-ଶୈଳବିହାର
ଛାଡ଼ି ଦେବୀଦ୍ୱାର-(୧୨) ଚଣ୍ଡିକା ବଜେ ସିଂହଦୁଆର ।

---

(୧) ପୌଷମାସରେ ଅମାଭିଷେକ । (୨) ପୁରୀ ବଡ଼ଦେଉଳର ସିଂହଦ୍ୱାର ।
(୩) ଚିଲ୍କାକୂଳର ନିକଟସ୍ଥ ହରଚଣ୍ଡୀ । (୪) ପୁରୁଷୋତ୍ତମକ୍ଷେତ୍ର ।
(୫) ବାଣପୁର-ନିକଟସ୍ଥ ଚିଲ୍କାକୂଳବର୍ତ୍ତୀ ପର୍ବତ ।
(୬) ଭୁବନେଶ୍ୱରକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବତା । (୭) ନରେନ୍ଦ୍ର ରଣପୁର ରାଜାଙ୍କ ଉପାଧି ।
(୮) ମୈନାକଦୁର୍ଗ । (୯) ଆଇଁଶପାହ୍ରଦ, ସରଣ୍ଡାଗିରିର ପାଦଦେଶରେ ଅବସ୍ଥିତ ।
(୧୦) ଖୋରଧାର ବରୁଣୀ ପର୍ବତ ।
(୧୧) ସୁକାନ୍ତ ଋଷିଙ୍କ ତପଃପ୍ରଭାବରୁ ମହାନଦୀ ଜାତ ହୋଇଥିବାର କିମ୍ବଦନ୍ତୀ ଅଛି ।
(୧୨) ଦେବୀଦ୍ୱାର—ତମପଡ଼ା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସ୍ଥାନ ।

ହାଟକଗଉରୀ କଟକ— ଚଣ୍ଡୀ ନାଗରୀବେଶେ,
ଅମଳ ରଜତକୁସୁମ ଶୋଭେ ଶ୍ୟାମଳ କେଶେ ।
ସଙ୍କଟତାରଣୀ ଝଙ୍କଡ଼- ଦେବୀ ସିଂହସାରଳା (୧),
ଭଲ୍ଲୁକ-ସଙ୍କଟ କାକଟ- ପୁର ମହାମଙ୍ଗଳା (୨) ।
ଚିଲିକା-ଲହରୀ-ମାଳିକା ଭେଦ ଗିରି ଲୁଣ୍ଠିତ,
ଚଉଦିଗେ ନୀଳ ଚିଲିକା- ବକ୍ଷ ତରଙ୍ଗାୟିତ,
ଚନ୍ଦ୍ରାଲୋକେ ଯହିଁ ନଶୀଥେ ଜଳଦେବୀ ସଙ୍ଗୀତ
ଶୁଣନ୍ତି ଚକିତେ ନାବିକେ ଦୂରେ ବାହିଁ ବୋଇତ,
କାଳୀଜାଈ ଦେବୀ (୩) ଆଗତ ଛାଡି ସେ ଗିରିଚୂଡ଼ା,
ହସଇ ପରମ ମଞ୍ଜୁଳ ଶିରେ ଚୈଲଙ୍ଗୀ ଜୁଡ଼ା ।
ମହୋଦଧି ଫେନପୁଞ୍ଜରୁ ଜାତ ଯେତେ ଅପ୍ସରୀ,
ରମାଙ୍କର ବାଲ୍ୟସଙ୍ଗିନୀ ସିନ୍ଧୁ-ଚିତ୍ରି-ସୁନ୍ଦରୀ ।
ସବିତା, କୋଣାର୍କ (୪) ଦେବତା ନବଗ୍ରହବେଷ୍ଟିତ,
ମହାତେଜଃପୁଞ୍ଜବିଗ୍ରହ ସିଂହଦ୍ୱାରେ ଶୋଭିତ ।
ରତି, ରତିପତି ସେଠାବେ ଆସି ମିଳିଲେ ଶେଷେ,
ଆଣିଥିଲେ ପୁଷ୍ପଭୂଷଣ ସିନ୍ଧୁସୁତା ଆଦେଶେ ।
ରୂପରଚନାରେ ବିରଞ୍ଚି— ଶିଳ୍ପସୀମା ଏ ବେନି,
ଅବନୀରେ ଅବା ଉପମା କହ କି ଦେବ ଯେନି ?
ପ୍ରତିହାରୀ ଜୟ ବିଜୟ (୫) ଛାଡ଼ିଦେଲେ ସରଣୀ,
ପଛେ ଆସି ଆଗେ ପଶିଲେ ସ୍ମର ସ୍ମରରମଣୀ ।
ସ୍ୱଭାବେ ସର୍ବତ୍ର ବେନିଙ୍କ ଗତି ଅପ୍ରତିହତ,
ସୂର୍ଯ୍ୟ ନ ବୁଝିଲେ ଏ କଥା, ହେଲେ ମର୍ମ-ଆହତ ।
ମହୋତ୍ସବ ସାରି ସକଳେ ସ୍ୱର୍ଗଦ୍ୱାରେ(୬) ମିଳିଲେ,
ଯେଝା ପୁର ଯିବା ମାନସେ ନିଜ ଯାନେ ଚଢ଼ିଲେ ।
ବେଗେ ଦେବ ଦେବୀ ସ୍ୱପୁରେ ଗଲେ ନ ପାହୁଁ ନିଶି,
ସିନ୍ଧୁଜାତ ଯେତେ ଅପ୍ସରୀ ଗଲେ ତରଙ୍ଗେ ମିଶି ।
ଯିବାବେଳେ ରବି କାମଙ୍କୁ କୋପ ଚକ୍ଷୁରେ ଚାହିଁ
କହିଲେ, "ଛଡ଼ାଇ ଦେବନି ତୋର ଏହି ବଡ଼ାଇ,

---

(୧) କଟକ ଜିଲ୍ଲାର ଝଙ୍କଡ଼ ପ୍ରଗନାରେ । (୨) ପୁରୀ ଜିଲ୍ଲା ଗୋପ ଥାନାରେ ।
(୩) ଚିଲ୍କା ମଧ୍ୟବର୍ତ୍ତୀ ପର୍ବତରେ କାଳୀଜାଈ ଠାକୁରାଣୀଙ୍କର ମନ୍ଦିର ଅଛି ।
(୪) କଣାରକ ଦେଉଳ ।(୫) ଜୟ ବିଜୟ ପୁରୀ ବଡ଼ଦେଉଳର ଦ୍ୱାରୀ ବୋଲି ପ୍ରସିଦ୍ଧ ।
(୬) ପ୍ରବାଦ ଅଛି ଯେ ଦେବତାମାନେ ବଡଦେଉଳକୁ ଆସି ସ୍ୱର୍ଗଦ୍ୱାର ନାମକ ସ୍ଥାନରେ ରୁଣ୍ଡ ହୋଇ ସ୍ୱ ସ୍ୱ ସ୍ଥାନକୁ ଯାନ୍ତି ।

ସ୍ତ୍ରୈଣ ଜନ ମନ ମଜାଇ   ତୋର ଏଡ଼େ ଗୁମାନ !
ତେଜସ୍ୱି-ଧର୍ଷଣ-ପ୍ରମାଦେ   ହନେ ଯିବ ତୋ ପ୍ରାଣ ।
ହର-କୋପାନଳେ ଥରେ ତୁ   ଜଳିଥିଲୁ ମଦନ,
ପୁଣି ଜଳିବାକୁ ଏ ଦେହେ   ପଶି ବଳୁଛୁ ମନ ।
ଯହାରେ ଯାବତ କଳଙ୍କ   ତାର ଅନ୍ତୁ କରତା,
ନାରୀ, ନାରୀରଙ୍କ ନରଙ୍କ   ତୁହି ଅନ୍ତୁ ଦେବତା ।
ଛାଡ଼ି ଫୁଲଧନୁ ଧରି ତୁ   ଯୁରେ ବୋଲାଉ ଶୂର,
ଲଜ୍ଜା ଯାର ନାହିଁ ପାରେ ସେ   ହେଲେ ଜଣେ ତ୍ରିପୁର ।"
ଶୁଣି ସୂର୍ଯ୍ୟବାଣୀ କହନ୍ତି   ହସି ହସି ମଦନ,
"ଜଗତେ କେ ଲଙ୍ଘି ପାରିବ   ଫୁଲଧନୁ ଶାସନ ?
ଯେତେ ଦମ୍ଭ କର ହେଲେ ମୁଁ   ଦମ୍ଭ ହରିବ ହନେ,
ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କୁ   ସାକ୍ଷୀ କରିବ ହନେ ।
ତମୋଦମ୍ଭହର ଜଗତେ   ତୁମ୍ଭ କର ସର କେ ?
ଦମ୍ଭି-ଦମ୍ଭ-ହର ତେସନ   ଫୁଲଶର ସର କେ ?
ଦାରୁଭେଦକ୍ଷମ ଭ୍ରମର   ପଶି କମଳ କୋଳେ
ପାସୋରେ ଅପଣା ବିକ୍ରମ   ପ୍ରେମ-ମୋହନ-ଭେଳେ ।
ସୁକୁମାରପଣେ ନଳିନୀ   ତୁଲେ କେ ଅଛି ଆନ ?
ତା ସଙ୍ଗେ ଛନ୍ଦିଲା ତୁମ୍ଭଙ୍କୁ   ବିନା ଫୁଲକମାଣ ?
ଯେ ଯେତେ ତେଜସ୍ୱୀ ତା ତେଜ   ମୋତେ ଅଛଇ ଜଣା,
ଫୁଲଶର ଆଗେ ପଡ଼ିଲେ   ବୁଦ୍ଧି ହୁଅଇ ବଣା ।"
ଏହା କହି ଦେବ କୁସୁମ-   ଧନୁ ପ୍ରିୟା ସଙ୍ଗତେ
ଅନ୍ତରୀକ୍ଷେ ଲୁଚି ରହିଲେ   ମୀନକେତନ ରଥେ ।
ପ୍ରତିକ୍ଷଣ ଦେବ ପାଞ୍ଚିଲେ   ପ୍ରତିଶୋଧ ଉଆଣ,
ବେଳେଶ୍ୱରେ (୧)ଦିବ୍ୟ ସୁଯୋଗ   ଜାଣି ଶାଣିଲେ ବାଣ ।
ସୁମନ୍ୟୁ ନାମରେ ପରଶୁ-   ରାମ-ଶିଷ୍ୟପ୍ରବର
ମହୋଦଧିତୀରେ ସମାଧି-   ଯୋଗେ ଥିଲେ ତତ୍ପର ।
ଚନ୍ଦ୍ରଭାଗା ନାମେ ଦୁହିତା   ସେହି ଋଷି ପ୍ରଭାବେ
ସାଗର ଅପ୍ସରୀ ଗର୍ଭରୁ   ଜନ୍ମିଥିଲା ସେଠାବେ ।
ପାଳିଲେକ ଅତି ଯତନେ   ଯତି କନ୍ୟାରତନ,
ଯଥାକାଳେ ଅଙ୍ଗ ମଣ୍ଡିଲା   ଅଭିନବ ଯୌବନ ।
ନେତ୍ରଯୁଗେ ଯୁବା ପିଅନ୍ତି   ଯେଉଁ ରୂପ-ଅମୃତ,
ସେ ଅମୃତେ କଲା ଯୌବନ   ବାଳା ତନୁ ଧଉତ ।

---

(୧) ପୁରୀଠାରୁ ଦୂର ପାଞ୍ଚ କ୍ରୋଶ ସମୁଦ୍ର କୂଳରେ ବେଳେଶ୍ୱର ନାମକ ସ୍ଥାନ ଅଛି ।

ଶୋଭି ସେ ଲଭିଲା ଅପ୍ସରା  ଦିବ୍ୟ ଶୋଭାକୁ ବଳି,
ଫୁଟିଲା ଲାବଣ୍ୟ-ସରସେ  ନବ କମଳକଳି ।
ସ୍ୱଭାବେ ସୁବର୍ଣ୍ଣ, ଯୌବନ  ହେଲା ଯୋଗ୍ୟ ଶାଣ,
ରୂପାସ୍ତ୍ର(୧) ହେଲା ରୂପସୀ  ଷଷ୍ଠ ଅମୋଘ ବାଣ ।
ସତ୍ୟେ ଶକୁନ୍ତଳା ଯେମନ୍ତ  ରୂପରାଜ୍ୟେ ଅତୁଳା,
ଚନ୍ଦ୍ରଭାଗା ହେଲା କଳରେ  ଦିବ୍ୟ ଶୋଭାପିତୁଳା ।
ଥିଲେ ଚନ୍ଦ୍ରଭାଗା ଜନନୀ  ପୂର୍ବେ ବାଲ୍ୟ ସମୟେ
ପ୍ରିୟ ସହଚରୀ ରମାଙ୍କ  ନୀଳ ବରୁଣାଳୟେ ।
ସଖୀ ଅନୁରୋଧେ ଇନ୍ଦିରା  ଦେଲେ କୋଠଭଣ୍ଡାରୁ
ଚନ୍ଦ୍ରଭାଗାପାଇଁ ବିବିଧ  ବସ୍ତ୍ର ଭୂଷଣ ଗୁରୁ ।
କୁମୁଦହାସିନୀ ସୌନ୍ଦର୍ଯ୍ୟ-  ମଦେ ସଦା ବିହ୍ୱଳ,
ପ୍ରମୋଦେ ଭ୍ରମଇ ପ୍ରମଦା  ସଦା ବିଜନ-ସ୍ଥଳ ।
ବିଷ ପ୍ରାୟେ ପ୍ରେମପ୍ରସଙ୍ଗେ  ସଦା ଅରୁଚି ତାର,
ପୁରୁଷ କଥାକୁ ଡରେ ସେ  କରେ ଦୂରୁ ଜୁହାର ।
କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ  କେବେ ରସିକ ଛାଡ଼େ ?
ମଧୁ ଥିଲେ ପୁଷ୍ପେ ଯତନେ  ଖୋଜି ମଧୁପ କାଢ଼େ ।
ଯେ ଅଟେ ଜଗତଜନର  ମନ-ନୟନ-କାରୀ,
ଅପ୍ରକଟ ହୋଇ ରହିବା  ପାଇଁ କାହିଁ ତା ଗୁହା ?
ରୂପ ଆକର୍ଷଣ ପ୍ରବଳ  ନରେ କିବା ଅମରେ,
ଭୈମୀ ସ୍ୱୟମ୍ବରେ (୨) ପ୍ରମାଣ  ହୋଇଅଛି ସତ୍ୟରେ ।
ମଧୁର ପ୍ରଦୋଷ ସମୟ,  ସ୍ୱର୍ଣ୍ଣ-କିରଣବୋଲା
କାଦମ୍ବିନୀ ଖେଳେ ଗଗନେ  ଧୀର ସମୀରଦୋଳା ।
ଗୋଧୂଳି ଗଗନ ସୁଚିତ୍ର  ଦିଶେ ଶତବରଣେ,
ଯତ ମନୋରଥ ଝଲକେ  ଯେସନେ ଆଶା-କାନନେ ।
କଳଁ ସାରଲତା-ଶ୍ୟାମଳ  ବାଲସ୍ତୂପର ଛାୟା
ଦିବା ଆବସାନ ଦେଖିଣ  କ୍ରମେ ବିସ୍ତାରେ କାୟା ।
ବାରୁଣୀ-ଦର୍ପଣ ପରାୟେ  ଝଲେ ସରସଲିଳ (୩)
ସୁବର୍ଣ୍ଣ-ଲହରୀ ସୃଜଇ  ତହିଁ ମନ୍ଦ ଅନିଳ ।
ନୀଳ ପାରାବାର ଅଦୂରେ  ଗାଏ ଅମର ଗୀତ,
ଅମଳ ତରଙ୍ଗ ନର୍ତ୍ତନେ  ବେଳା ହୁଏ ଧ୍ୱନିତ ।

---

(୧) ରୂପାସ୍ତ୍ର—ମଦନ । (୨) ଦମୟନ୍ତୀ ସ୍ୱୟମ୍ବର ।
(୩) ପୁରୀର ଉତ୍ତରକୁ ଗୁର ପାଞ୍ଚ କୋଶ ଦୂରରେ ସର ନାମରେ ଗୋଟିଏ ହ୍ରଦ ଅଛି ।

ଶୁକ୍ତି ତାରକାଭ-ସୈକତେ   ଫେନଚୂଡ଼ ଲହରୀ
ଚୁମ୍ବେ ଚନ୍ଦ୍ରଚୂଡ଼(୧) ଚରଣ   ସ୍ତରେ ସ୍ତରେ ସଞ୍ଚରି ।
ନାନାଜାତି ପୁଷ୍ପପରାଗ   ଧୀରେ ହରେ ସମୀର,
ଗୁଡ଼ାକଙ୍କ ଯେନ କନ୍ଦୁକ-   କ୍ରୀଡ଼ା କରେ ସମୀର ।
ଯୂଥ ଯୂଥ ହୋଇ ଭ୍ରମନ୍ତି   ନାନାରଙ୍ଗେ ହରିଣ,
ତରଙ୍ଗ ଚାହାଣୀ ଚାହାନ୍ତି   ଚାରୁ ଗ୍ରୀବା ଟୋଳଣି ।
କନ୍ଦୁକକ୍ରୀଡ଼ାରେ ସୁନ୍ଦରୀ   ଆଜ ରତ ଏ ସ୍ଥଳେ,
ଉଠୁଛି ପଡ଼ୁଛି କନ୍ଦୁକ   ଚାରୁ କରକମଳେ ।
କନ୍ଦୁକର ଗତି କଲନ୍ତେ   କ୍ରୀଡ଼ା-ଲୋଲ-ଲୋଚନ,
ଚଳଭ୍ରୂ-ଚାରୁ-ନର୍ତ୍ତନ   ଦିଶେ କିବା ଶୋଭନ ।
ଲମ୍ବିତ ସୁଗୋଲ ନିତମ୍ବ—   ବମ୍ବେ ହେମମେଖଳା,
ସ୍ତନାଙ୍କୁରେ ବ୍ୟସ୍ତେ ଦୋଲଇ   ମୋତିମାଳା ତରଳା ।
ଶ୍ରବଣେ ଦୋଲଇ କୁଣ୍ଡଳ,   ଦୋଲେ ନୀଳ ଅଳକ,
ଲାବଣ୍ୟଦର୍ପଣ ପରାଏ   ଝଲେ ଗଣ୍ଡ-ଫଳକ ।
ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର-   ବିନ୍ଦୁ ରମଇ ଆଖି,
ନୁହଇ ସିନ୍ଦୂର, ରହିଛି   ସ୍ମର ହୃଦୟ ଲାଖି ।
ଦଶନ-ଅଂଶୁକ ମିଶଇ   ନାସାମଣି-ଅଂଶୁକେ,
ମୃଗମଦବିନ୍ଦୁ ସୁନ୍ଦର   ଶୋଭେ ଚାରୁ ଚିବୁକେ ।
କାମ-କାଳକୂଟ-କାଳିମା   ଭ୍ରୂଯୁଗଳ ଧରେ,
ପ୍ରବାଳଲତା କି ଅଧର,   ଆହା, ରୂପସାଗରେ ।
ବିଳାସ ବିଲୋଲ-ଲୋଚନ-   ତାରା କନ୍ଦୁକ ସଙ୍ଗେ
ଉଦ୍ବେଗେ ଭ୍ରମଇ ଚୌଦଗେ   କିବା ମଧୁରରଙ୍ଗେ ।
ତୁଟେ ଯୁବା-ଧୈର୍ଯ୍ୟ-କବଚ   ପ୍ରତି କଟାକ୍ଷ-ଶରେ,
ଉଠେ ନବଶୋଭା-ତରଙ୍ଗ   ପ୍ରତି ଅଙ୍ଗଭଙ୍ଗୀରେ ।
ଅସମ୍ଭାଳେ ଫିଟି କୁନ୍ତଳ   ଭୂମି ଯାଏ ପରଶି,
ଯେଣେ ଅନାଉଛି ଲଳନା   ଫୁଲ ଯାଏ ବରଷି ।
ଦୁକୂଳ କବରୀ ସମ୍ଭାଳୁ-   ଅଛି ଦକ୍ଷିଣେତରେ,
ଫିଙ୍ଗୁଛି ଧରୁଛି କନ୍ଦୁକ   ବାମ ଦକ୍ଷିଣ କରେ ।
ଶୋଭା-ସଦନାକୁ ମଦନ   ଦେଖି ହେଲେ ହରଷ,
ପ୍ରତିଫଳ ଦେବେ ରତିଙ୍କି   ମନେ ହେଲା ସାହସ ।
ଅର୍କ କୋଣାର୍କରୁ ଏକାଳେ   ଆସୁଥିଲେ ଆକାଶେ,
ନୟନ ତାଙ୍କର ଦଇବେ   ଗଲା ସୁନ୍ଦରୀ ପାଶେ ।

(୧) ବେଲେଶ୍ୱର ନାମକ ମହାଦେବ ।

ବନ୍ଧୁକ-ଅଧରୀ କନ୍ଦୁକ   ଫିଙ୍ଗି କର ପତାଇ
ଚାରୁ ଭୂରୁ ରଙ୍ଗେ ନଚାଇ   ଦେଲା ଊର୍ଦ୍ଧ୍ୱକୁ ଚାହିଁ ।
ଏହି କାଳେ ଦୃଷ୍ଟି ରବିଙ୍କ   ବାଳା ବଦନ୍‌ବଦନେ
ପଡ଼ିଲା, ଉଡ଼ିଲା ହୃଦୟ,   ଧୈର୍ଯ୍ୟ ବୁଡ଼ିଲା କ୍ଷଣେ ।
ଉଭା ଶୋଭା ଦେଖି ରବିଙ୍କ   ଭାବସିନ୍ଧୁ ଉଚ୍ଛଳେ,
ଅବସର ଏବେ ବୁଝିଲେ   ମନୋଭବ କୌଶଳେ ।
ଫୁଲକାଣ୍ଡ ଫୁଲକୋଦଣ୍ଡ   ଚଣ୍ଡେ ଆକର୍ଷି ଠାଣେ
ସମ୍ମୋହନବାଣ ରବିଙ୍କ   ଦେଲେ ହୃଦୟେ ହାଣି ।
ବିପରୀତେ ମୀନକେତନ   ଖଞ୍ଜି ସେ ଫୁଲଶର
ବିରାଗେ ମୃଗାକ୍ଷିଗଞ୍ଜିନୀ   ତନୁ କଲେ ଜର୍ଜର ।
ଅନୁରାଗ ମନେ ଉପୁଜେ   ଯେଉଁ କୁସୁମବାଣେ,
ଓଲଟା ଯୋଖିଲେ ସେ ବାଣ   ପୁଣି ବିରାଗ ଆଣେ ।
ଫଳେ ଅନୁରାଗ, ବିରାଗ   କଙ୍କପତ୍ରେ ତାହାର,
ପରିଣାମେ ତେଣୁ ବିରସ   ମନୋଭବ ବିକାର ।
ବିପ୍ରଯୁବାବେଶେ ମିହିର   ବାଳା ସମୀପେ ଗଲେ,
ସ୍ୱର୍ଣ୍ଣତାଳ ପ୍ରାୟେ ଶରୀର   ଚଉଦିଗ ଉଜଳେ ।
ମେରୁଗିରିତଟେ ଅମର-   ଧୁନୀ ଯଥା ଶୋଭିତ,
ଶୁଭ୍ର ଉପବୀତ ତେସନ   ସ୍କନ୍ଧଦେଶେ ଲମ୍ବିତ ।
ମିହିରଙ୍କୁ ଦେଖି ନିକଟେ   ନାରୀମୁକୁଟହୀରା
ବେଗେ ପଳାଇଲା ଛଇଳା   ଲାଜ ଭୟେ ଅଧୀରା ।
ବିଦ୍ୟୁତବରଣୀ ବିଦ୍ୟୁତ-   ବେଗେ ଧାଏଁ ବେଳାରେ,
ଯେତେ ଦୂର ଯାଏ ରବିଙ୍କ   ମନ ତେତେ ଓଟାରେ ।
ଅଧୀରେ ସହସ୍ରଦୀଧିତି   ଧୀରି ପଛେ ଗୋଡ଼ାଇ,
ଧନାଙ୍କ ସମ୍ବୋଧି କାତର-   ସ୍ୱରେ କହନ୍ତି ରହି ।
"କାହିଁ ପଳାଉଛ ସୁନ୍ଦରି,   ହୋଇ ଏଡ଼େ କାତର ?
"ତରୁଣୀକଙ୍କର ଜନକୁ   କିପାଁ ଏଡ଼େ ତୋ ଡର ?
"ଚଞ୍ଚଳାକ୍ଷି ! ତୁ କି ପାଞ୍ଚିଲୁ   ମୋତେ ବ୍ରାହ୍ମଣ କରି ?
"ବାନ୍ଧାଇ ରଖିଛି ବିଶ୍ୱକୁ   ସିନା ତେଜ ମୋହର ।
"ବିଶ୍ୱଚକ୍ଷୁ ମୁହିଁ ତପନ,   ତ୍ୱିଷାମ୍ପତି ମୋ ନାମ,
"ପ୍ରଭାପୁଞ୍ଜ ଯେତେ ଜଗତେ,   ତାର ଅଟେ ମୁଁ ଧାମ ।
"ବନ୍ଧା ମୋର ସ୍ନେହ-ରଜ୍ଜୁରେ   ଏହି ଚାରୁ ସୃଜନ,
"ଛିଣ୍ଡିଲେ ସେ ରଜ୍ଜୁ ଉତ୍ପାତେ   ସର୍ବେ ହେବେ ନିଧନ ।
"ବର୍ଷ ମାସ ଦିନ ନିତ୍ୟାର   ମୁହିଁ ଅଟେ ଅଧିପ,
"ଖଟନ୍ତି ଋତୁଏ ସେବକ   ପ୍ରାୟେ ମୋର ସମୀପ ।

"ଚନ୍ଦ୍ରକର ପ୍ରାଚ୍ୟେ ମୋ କର   ଚନ୍ଦ୍ରୁ ଅଛୁ ସଂସାର,
"ତହିଁ ନବ ଶୋଭାତରଙ୍ଗ   ଭବେ ଉଠେ ଅପାର ।
"ଅସଂଖ୍ୟ କ୍ଷତ୍ରିୟ ଭୂପତି   ମୋର ବଂଶସମ୍ଭୂତ,
"ପୂତ କଲେ ବଂଶ ଏ ବଂଶେ   ଜନ୍ମ ଲଭି ଅଚ୍ୟୁତ ।
"କୋଣାର୍କକ୍ଷେତ୍ରରେ ମୋହର   ଏହି ତୁଙ୍ଗ ମନ୍ଦିର
"ଉତ୍କଳ ଦେବୀଙ୍କ ମୁକୁଟେ   ପ୍ରାଚ୍ୟେ ରାଜେ ରୁଚିର ।
"ସୁରତରୁ-*କୁଞ୍ଜେ ମଞ୍ଜୁଳ   ମୋର ମୈତ୍ରେୟ ବନ†,
"କୁସୁମସମ୍ପଦେ ବିରାଜେ   ଯହିଁ ଋତୁରାଜନ ।
"ଭୋଜରାଜସୁତା ଲଭିଲା   ମୋତେ ଭଜି ଦ୍ୱାପରେ
"ମହାବୀର୍ଯ୍ୟବନ୍ତ କୁମର ‡   ନର ହର୍ଯ୍ୟକ୍ଷ ନରେ ।
"ମନ୍ତ୍ରବଳେ କୁନ୍ତୀ ଆକର୍ଷି   ମୋତେ ଆଣିଣ ଥିଲା,
"ଆଣିଲୁ ଲାବଣ୍ୟ-ରଜ୍ଜୁରେ   ବାନ୍ଧି ତୁହି ଛଇଳା ।
"ରାଜରାଜେଶ୍ୱରୀ ସୁଷମା-   ରାଜ୍ୟେ ତୁହି, ସୁନ୍ଦରି,
"ଛାୟାମୟୀ ଛାୟା ନୁହେ ତୋ   ଦାସୀପଣକୁ ସରି ।
"ପ୍ରଦକ୍ଷିଣ କରେ ମୋ ରଥ   ନିତ୍ୟ ମେରୁ ପର୍ବତ,
"ଅସଂଖ୍ୟ ଅପ୍ସରୀ ଦେଖଇ   ବେଶଭୂଷାରେ ରତ ।
"ଦେଖି ନାହିଁ କେବେ ଏମନ୍ତ   ମନୋହର ମାଧୁରୀ,
"ଶୋଭା ଦେଖି ଶୋଭା କମଳା   ଦୁଃଖେ ମରିବେ ଝୁରି ।
"ନୟନ ନିମେଷ-ବିହୀନ   କରି ରଚିଲେ ବିଧି,
"ସାର୍ଥକ କଲୁ ଏ ବିଧିକି   ତୁହି, ଲାବଣ୍ୟନିଧି ।
"ଶତ୍ରୁ ମୁଁ ନୁହଇ ତୋହର   କର ଯୋଡ଼ି ମାଗଇ,
"ସ୍ଥିର ହୁଅ, ମୃଦୁ ଚରଣେ   ବଡ଼ ବ୍ୟଥା ଲାଗଇ ।
"ତହିଁ ବଳି ବ୍ୟଥା ଲାଗଇ   ବାଲା, ହୃଦେ ମୋହର,
"ସୁକୁମାରୀ ହୋଇ କଷଣ   ଏଡ଼େ ଲଭିଲୁ ଘୋର ।
"ମୁହିଁ ମାଡ଼ି କାଲେ କର୍ତ୍ତିତ   ବାଲା, ପଡ଼ିବୁ ଝୁଣ୍ଟି,
"କୁଶାଙ୍କୁର ଯିବ କୋମଳ   ଶୃଗୁ ଚରଣେ ଫୁଟି ।
"ସଞ୍ଚାଣ ମୁଖରୁ କପୋତ   ଏହିରୂପେ ପଳାଏ,
"ଶ୍ୱାନଠାରୁ ଭୀରୁ ଶଶକ   ପ୍ରାଣ ବିକଳେ ଧାଏଁ ।
"ସିଂହଠାରୁ ଖରେ ପଳାଏ   ମୃଗ ଏରୂପେ ସିନା,
"କିଣା କିଙ୍କରକୁ ଏ ଶଙ୍କା   କପାଁ କରୁ ନବୀନା ?
"ରଖ ଏ ଜୀବନ ସେବକ-   ପଦେ ବରି, ସୁନ୍ଦରି !
"ତୋହ ଦୟା ବିନା ଗଲଟି   ନଷ୍ଟେଁ ସରି, ସୁନ୍ଦରି ।"

* ସୁରତରୁ—ପୁନ୍ନାଗ । † ମୈତ୍ରେୟ—କୋଣାର୍କସ୍ଥିତ ପବିତ୍ର ବନ । ‡ କୁନ୍ତୀପୁତ୍ର—କର୍ଣ୍ଣ ।

ବୃଥା ହେଲା ଏତେ ମିନତି,   ଏତେ ସ୍ତୁତି ବଚନ,
ପଳାଇଲା ଋଷିକୁମାରୀ   ବେଗେ ହୋଇ ଉଚ୍ଛନ୍ନ ।
ବ୍ୟଗ୍ରେ ଧାଉଁଛି ଲଳନା,   ସଙ୍ଗେ ଲୋକଲୋଚନ,
କେନ ଭାବ କେନ ହୃଦୟେ   କରେ ବେଗ ବର୍ଦ୍ଧନ ।
ମାୟା ବପ୍ରରୂପେ ପଶ୍ଚାତେ   ଅନୁସରନ୍ତି ହରି *,
ଡୋରଲଗ୍ନ ଥୋପ ଯେସନ   ଅନୁସରେ ଶଫରୀ ।
ପଳାୟନେ ପୁଣି ସୁନ୍ଦରୀ   ଦିଶେ ସୁନ୍ଦରତର,
ଅସମ୍ଭାଳ-ବେଶ-ଭୂଷଣେ   ଆହା କି ମନୋହର !
କ୍ଷୀଣଶୀର୍ଣ୍ଣ ପ୍ରାୟେ ଅଙ୍ଗନା-   ଅଙ୍ଗ ସ୍ପୃଶୁ ବଳନ
ବସନ ଉଡ଼ାଇ ଦେଖାଏ   ରଙ୍ଗେ ହିନ୍ଦୁ ପବନ ।
ଚୁମ୍ବି ଚରଣକୁ ଚକ୍ର-   ରାଜ ଦୋଳେ ଚରମେ,
ମଦନ-କେତନ ଉଡ଼ଇ   କିବା ଶୋଭା-ଆଶ୍ରମେ ।
କଳିବାକୁ ଏହି ସୌନ୍ଦର୍ଯ୍ୟ   ଧୈର୍ଯ୍ୟ ସୂର୍ଯ୍ୟଙ୍କୁ କାହିଁ ?
ନ ଧରିଲେ ସେହି ବାଳୀକୁ   ତାଙ୍କ ତ୍ରାହି ତ ନାହିଁ ।
ହେମାଙ୍ଗ ହଳଦୀବସନ୍ତ   ଦେଖି ଯେସନେ ସଞ୍ଚାଣ
ଅନ୍ତରୀକ୍ଷେ ଧାଏଁ ସଲକ୍ଷେ   କ୍ଷଣପ୍ରଭା ସମାନ ।
ଜୀବନ ବକଲେ ସଭୟେ   ଖରେ ଧାଏଁ ଦୁର୍ବଳ,
ଖରତରବେଗେ ଜୀବକା   ଆଗେ ଧାଏଁ ପ୍ରବଳ ।
ମୁହୁ ଚଞ୍ଚୁ ମୁନ ସଞ୍ଚାଣ   ପକ୍ଷୁଁ କରେ ବିସ୍ତାର,
ମଣେ କରଗତ ପଲକେ   ପରା ହେଲା ଶୀକାର ।
ହଳଦୀବସନ୍ତ ଏକାନ୍ତ   ପ୍ରାଣଭୟେ ଅସ୍ଥିର,
କ୍ଷଣେ ଧୃତ କ୍ଷଣେ ମୁକତ   ମଣେ ନିଜ ଶରୀର ।
କାଞ୍ଚନ-ପୁଚ୍ଛକୁ ସଞ୍ଚାଣ-   ଚଞ୍ଚୁ କ୍ଷଣେ ପରଶେ,
ଚଞ୍ଚଲେ ଏଡ଼ାଇ ଶୀକାର   ଖରେ ତର୍ଯ୍ୟକେ ଖସେ ।
ଏହିରୂପେ ହରି ଧାଆନ୍ତି   ପ୍ରେମଭୋଳେ ବିହ୍ୱଳ,
ଅବଳା ବାଳାକୁ ଏରୂପେ   ଭୀତ ଦଅଇ ହଳ ।
ହରିଣଲୋଚନା ଏରୂପେ   ଧାଏଁ ଉତ୍ତରମୁଖେ,
ଉତ୍ସୁକଲୋଚନେ ହରିଣେ   ଦୂରୁ ଦେଖନ୍ତି ଦୁଃଖେ ।
ଅତି ଦ୍ରୁତବେଗେ ଦଉଡ଼ି   ଅବସାଦେ ଜଡ଼ିତ,
ଊର୍ଦ୍ଧ୍ୱଶ୍ୱାସେ ଧନୀ ଉଦଧି-   କୂଳେ ହେଲା ସ୍ଥଗିତ ।
କଣ୍ଠାଗତପ୍ରାଣ କାରୁଣ୍ୟ-   ମୂର୍ତ୍ତି ପ୍ରାୟେ ବରାକୀ
ହାତ ଯୋଡ଼ି ନିଜ ମାତାଙ୍କୁ   କହେ ଉଦ୍ଦେଶେ ଡାକି ।

---

* ସୂର୍ଯ୍ୟ ।

"ଦୁଃଖ ଫେଡ଼ ମୋର, ଜନନି, ହର ଏରୂପ ମୋର,
"ବିଭୂଷଣ ହୋଇ ହେଲା ଏ ସିନା ଦୂଷଣ ଘୋର ।
"ଦିବ୍ୟ ରୂପ ତୋର, ତା ସଙ୍ଗେ ଅଛି ଦିବ୍ୟ ଶକତି,
"ଶକ୍ତିହୀନ ରୂପ କେବଳ ସିନା ଲଭେ ଦୁର୍ଗତି ।
"ଭୂତଧାତ୍ରି ମାତଃ, ବସୁଧେ, ଦ୍ୱିଧା ହୁଅ ତୁ ଲବେ,
"ଶରଣ ସମ୍ଭାଳ, ଆଶ୍ରୟ ମୋତେ ଦିଅ ଗରଭେ ।"
ଏମନ୍ତ କହନ୍ତେ ଉଠିଲା ଊର୍ମି ପର୍ବତାକାର,
ନୀଳ ବାହୁ ନୀଳ ସାଗର କବା କଲେ ବିସ୍ତାର ।
ମହାକଲରବେ ଉଡିଲେ . ନଭେ ଜଳ-ବିହଙ୍ଗ,
ବେଳାମୁଖେ ମାଡି ଆସିଲା ବିଶ୍ୱଗ୍ରାସୀ ତରଙ୍ଗ ।
ମିଶିଯାଏ ଯଥା ପ୍ରଭାତ ତାରା ରବିକିରଣେ,
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ-ଆତ୍ମା ଚରଣେ;
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।
ସ୍ତମ୍ଭୀଭୂତ ହୋଇ ରହିଲେ ରବି ମହାବିସ୍ମୟେ,
ଭୟ ଏତେଦିନେ ପଶିଲା ଭୟଶୂନ୍ୟ ହୃଦୟେ ।
ଘନଘୋଷ ପ୍ରାୟେ ଏକାଳେ ହେଲା ଶବ୍ଦ ଭୈରବ,
ଚକିତେ ଚାହିଁଲେ ପଶ୍ଚିମେ ପ୍ରଭୁ ଅବ୍ଜବାନ୍ଧବ ।
ଭୂମିସାତ ଦେବ ଦେଖିଲେ ନିଜ ପ୍ରିୟ ଦେଉଳ,
ଉତ୍କଳଭୁବନେ ଦେଉଳେ ଯାହା ଥିଲା ଅତୁଳ ।
ଧ୍ୟାନଯୋଗେ ଜାଣି ସୁମନ୍ୟୁ ସୂର୍ଯ୍ୟ କାର୍ଯ୍ୟକଳାପ
କୋପାନଳେ ଜଳି ତପସ୍ୱୀ ଦେଲେ ଦାରୁଣ ଶାପ ।
ସେହି ଶାପ ଯୋଗୁଁ ପଡିଲା ତଳେ ଦେଉଳରାଜ,
ଦିନୁଁ ଦେବଶିଳ୍ପୀ* ଯା ଦେଖି ଲଭୁଥିଲେକ ଲାଜ ।
ବିଷମ କୁସୁମକୋଦଣ୍ଡ ଦଣ୍ଡ ଲଭଣେ ଭଳେ
ବିମନା ହୋଇଣ ମାର୍ତ୍ତଣ୍ଡ ଗଲେ ନିଜ ମଣ୍ଡଳେ ।
କୋଣାର୍କକ୍ଷେତ୍ରରୁ ଉଠିଲା ଅର୍କପୂଜା ବିଧାନ,
ପରଣତ ହେଲା ସେ ଦିନୁ ମରୁରୂପେ ସେ ସ୍ଥାନ ।
ସେ - ପୂର୍ବ-ଗୌରବ-ସାକ୍ଷିଣୀ ମଖଶାଳା ମାତର
ପ୍ରତିଧ୍ୱନି ଛଳେ ପାନ୍ଥକୁ ଏବେ ଦିଏ ଉତ୍ତର ।



* ଦେବଶିଳ୍ପୀ—ବିଶ୍ୱକର୍ମା ।

( ୪ )

# ନନ୍ଦକେଶ୍ୱରୀ ।

## ପ୍ରଥମ ସର୍ଗ

( ନଟବାଣୀ ବୃତ୍ତ )

କାଠଯୋଡ଼ି ତୀରେ ଶୋଭଇ ଶିବିର,
କୋଳାହଳପୂର୍ଣ୍ଣ କାଠଯୋଡ଼ି ତୀର,

ଧାଡ଼ି ଧାଡ଼ି ହୋଇ ମହାନଦୀ ଯାଏ
ଶୁଭ୍ର ତାମ୍ବୁ ଶୋଭେ ଖଣ୍ଡଶୈଳ ପ୍ରାୟେ.

ଉଡ଼ଇ କେତନ ମନ୍ଦ ସମୀରଣେ,
ଝକଝକେ ଅସ୍ତ୍ର ପ୍ରଦୋଷ କିରଣେ,

ବାଦ୍ୟ ଶବଦେ କମ୍ପଇ ଅବନୀ,
ନଦୀଗର୍ଭୁଁ ଉଠେ ଶତ ପ୍ରତିଧ୍ୱନି,

ଲାଖ ବିନ୍ଧୁଛନ୍ତି କାହିଁ ଯୋଧଦଳ,
କ୍ଷଣେ କ୍ଷଣେ ଉଠେ ହର୍ଷକୋଳାହଳ,

କାହିଁ ତଲବାର ଖେଳବାଡ଼ିକରେ
ବଜୁଳି ପରାୟେ ଝଲେ ସୌରକରେ,

ମଲ୍ଲଯୁଦ୍ଧେ କାହିଁ କମ୍ପେ ରଙ୍ଗସ୍ଥଳୀ,
ତାଳି ଦେଉଛନ୍ତି ଦର୍ଶକମଣ୍ଡଳୀ,

କାହିଁ ଅଶ୍ୱାରୋହୀ ଧେନି ଅଶ୍ୱବର
କଦମେ ବୁଲାଇ ଦିଅଇ ଚକ୍କର,

କାହିଁ ବସି ଅସ୍ତ୍ର ମାଜୁଛନ୍ତି ଲୋକେ,
କାହିଁ ଅବା ଗଳ୍ପ କରୁଛନ୍ତି ଥୋକେ,

ଅବଗାହୁଛନ୍ତି କେହି ଦଳେ ଦଳେ
ବିଷମ ପରାୟେ ଦିଶି ସ୍ରୋତ ଜଳେ,

ଦାସେରକ * ଆଶ୍ରା କରି ତରୁତଳ
ଚୋବାଉଛି ଗ୍ରୀବା ଟେକି ଲମ୍ବଦଳ,

* ଦାସେରକ—ଉଷ୍ଟ୍ର ।

ଭାରବାହୀ ଯେତେ ଗର୍ଦ୍ଦଭାଦି କରି
ଭ୍ରମୁଛନ୍ତି ଦୂରେ ଦଳେ ଦଳେ ଚରି,
ବିପଣି ବସିଛି କାଠଯୋଡ଼ି ବନ୍ଧେ,
ବିକା କଣା ଲାଗିଅଛି ନାନା ଛନ୍ଦେ,
ନଦୀଶଯ୍ୟା ନଦୀବନ୍ଧ ନଦୀକୂଳ,
ସବୁଠାରେ ଲୋକେ ହୋଇଛନ୍ତି ଠୁଳ ।
କୁଶଭଦ୍ରା-ଦୟା-ପ୍ରମୁଖ ଭାର୍ଗବୀ
କାଠଯୋଡ଼ିଠାରୁ ଯହିଁ ଜନ୍ମ ଲଭି
ବହୁଛି ଦକ୍ଷିଣେ, ବିପଣିତେ ତାର
ଗୌରଗଙ୍ଗଙ୍କର ଶୋଭେ ସ୍କନ୍ଧାବାର,
ଶୂନ୍ୟ ଥିଲା ଆଜ ପ୍ରଭାତେ ଶିବିର,
ଏବେ ବେଢ଼ି ଅଛି ମନୁଷ୍ୟ-ପ୍ରାଚୀର ।



## ଦ୍ୱିତୀୟ ସର୍ଗ

( ନଷ୍ଟବାଣୀ ବୃତ୍ତ )

ଡୁବନ୍ତି ଦିନାନ୍ତେ ତପ୍ତ ହେମଛବି
ଧୀରେ ଦେଖାଦ୍ୱାର (୧) ଗିରିଶୃଙ୍ଗେ ରବି,
ପୀତ କରଜାଲେ ଝଲୁଛି ଭୁବନ,
ସୁଖସ୍ୱପ୍ନ ପ୍ରାୟେ ହରେ ଜନମନ,
ବାରୁଣୀଗଗନ ପ୍ଲାବିତ ପ୍ରଭାରେ,
ଗନ୍ଧର୍ବନଗରୀ ଶୋଭାନ୍ତି ଧିକ୍କାରେ,
ବାରୁଣୀ ରାଣୀ କି ପିନ୍ଧି ସ୍ୱର୍ଣ୍ଣଚେଲ
ସଖୀ ସଙ୍ଗେ ଖେଳୁଛନ୍ତି ଫଗୁ ଖେଳ,
ସୁବର୍ଣ୍ଣବିମାନ, ସ୍ୱର୍ଣ୍ଣରଥ ଦୋଳା
ନଭସ୍ତଳେ କେତେ ହୋଇଛନ୍ତି ତୋଳା,
ସୁବର୍ଣ୍ଣର ନଦେ ବହେ ସ୍ୱର୍ଣ୍ଣସ୍ରୋତ,
ସୁବର୍ଣ୍ଣ ଅଟ୍ଟାଳେ ଚଳେ ସ୍ୱର୍ଣ୍ଣପୋତ,
ସୁବର୍ଣ୍ଣ ମଞ୍ଚରେ ସୁବର୍ଣ୍ଣ ଆସନ,
ତହିଁ କି ବସିଛି ଦେବବେନ୍ଦ୍ରଗଣ,
ଦୂରେ ବାଲିରାଶି ମିଶିଛି ଗଗନେ,
ବିଭାସିତ ସନ୍ଧ୍ୟା କନକକିରଣେ,
ସାରଙ୍ଗଗଡ଼ରୁ ଆଠଗଡ଼ଯାଏ
ଶୋଭେ ଶୈଳ ନୀଳପ୍ରାଚୀର ପରାୟେ,
ଠାବେ ଠାବେ ତୁଙ୍ଗ ନୀଳଶୃଙ୍ଗମାଳା
ଶୋଭେ ଯେହ୍ନେ ଇନ୍ଦ୍ରନୀଳ ଚନ୍ଦ୍ରଶାଳା,
ଊର୍ଦ୍ଧ୍ୱଭାରେ ଦେଇ ସର୍ବଶୈଳେ ଲଙ୍ଘା
ଟେକିଛି ଶିଖର ଗିରି ସପ୍ତଶଯ୍ୟା, (୨)
ମଣ୍ଡିଛନ୍ତି ସ୍ୱର୍ଣ୍ଣ କରେ ଗ୍ରହରାଜ
ବୌଦ୍ଧକୀର୍ତ୍ତିରାଜମଣ୍ଡିତ ନରାଜ, (୩)
ଉତ୍ତରେ ବିରାଜେ ଶୈଳ ସର୍ପେଶ୍ୱର, (୪)
ସର୍ପେଶ୍ୱରୀ ଯାର ଧୁଅଇ ପୟର;

(୧) ଡମପଡ଼ା ଅନ୍ତର୍ଗତ ସ୍ୱନାମ ପ୍ରସିଦ୍ଧ ପର୍ବତମାଳା । କଟକର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ । (୨) ସପ୍ତଶଯ୍ୟା ପର୍ବତ ଢେଙ୍କାନାଳର ଅନ୍ତର୍ଗତ । କଟକର ପଶ୍ଚିମରେ ଯେଉଁ ପର୍ବତମାନ ଦୃଶ୍ୟ ହୁଅନ୍ତି, ସେମାନଙ୍କ ମଧ୍ୟରେ ସପ୍ତଶଯ୍ୟା ସର୍ବୋଚ୍ଚ । (୩) ନରାଜର ବୌଦ୍ଧକୀର୍ତ୍ତି ଇତିହାସପ୍ରସିଦ୍ଧ । (୪) ସର୍ପେଶ୍ୱର ପର୍ବତ ଆଠଗଡ଼ର ଅନ୍ତର୍ଗତ । ନରାଜର ବିପରୀତ ପାର୍ଶ୍ୱରେ ଅବସ୍ଥିତ । ଅଠଗଡର ପ୍ରଧାନତମ ନଦୀ ସର୍ପେଶ୍ୱରୀ ( ସାପୁଆ ) ଏ ପର୍ବତ ତଳେ ମହାନଦୀରେ ମିଶିଅଛି ।

ବକ୍ରଗାମୀ ସ୍ରୋତେ, ବିସ୍ତୃତ ସୈକତେ
ସନ୍ଧ୍ୟାରାଗ ଖେଳୁଅଛି ନାନାମତେ;
ସ୍ୱଚ୍ଛ ସ୍ରୋତଜଳେ ପୀତ ରବିରୁଚି
ପଡ଼ି, ବୀଚିମାଳା ହାଲୁଛି ଝୁଲୁଛି;
ଧୂମାକାରେ ଦୂରେ ପର୍ବତର ଛାଇ
ମାଡ଼ି ଆସୁଅଛି ଜଳ ସ୍ଥଳ ଛାଇ,
ରଥାଙ୍ଗୀ ଭାସଇ କାଠଯୋଡ଼ି ନୀରେ
ଥରେ କାନ୍ଦେ, ଥରେ ଅନାଇ ମିହିରେ,
ପଟିଆଦହରୁ * ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି ନଭେ କୋଳାହଳେ;
ଗଉଡ଼େ ମଧୁରେ ମୁରଲୀ ବଜାଇ
ପଠାରୁ ଗୋଠକୁ ଆଣୁଛନ୍ତି ଗାଈ;
ଚାହୁଁ ଚାହୁଁ ରବି ହେଲେ ଅସ୍ତମିତ,
ପଶ୍ଚିମାଶା ହେଲା କୁଙ୍କୁମେ ରଞ୍ଜିତ,
କେତେ ରୂପ ଧରୁଅଛି ଚକ୍ରବାଳ,
ଦେଖାଉଛି ନବ ନବ ଇନ୍ଦ୍ରଜାଳ,
ରକ୍ତ, ପୀତ, ନୀଳେ ଚିତ୍ର କରି ନଭ
ଭିଆଇଛି ନାନାବର୍ଣ୍ଣେ ବର୍ଣ୍ଣୋତ୍ସବ;
ତାରାଟିଏ ଫୁଟି ଗୋଧୂଳି କୁନ୍ତଳେ
ଦେଖୁଅଛି ମୁଖ କାଠଯୋଡ଼ି ଜଳେ,
ପର୍ବତକନ୍ଦରୁ ବାହାରି ଅନ୍ଧାର
କ୍ରମେ ସବୁ କରୁଅଛି ଏକାକାର,
ଚଉଦିଗେ ଘୋଟି ତିମିର କାଳିମା
ଲିଭିଗଲା ଜଳ ସ୍ଥଳ ବ୍ୟୋମସୀମା;
ମାତ୍ର ବଡ଼ାନାସି ଗଡ଼େ ତିମିରର
ପ୍ରବେଶର ଆଜି ନାହିଁ ଅବସର,
ଯହିଁ ଦେଖ ତହିଁ ଚନ୍ଦ୍ରୋଦୟ ଜଳେ,
ଯହିଁ ଶୁଣ ତହିଁ ସଙ୍ଗୀତ ଉଥଳେ,
ଉଲ୍ଲାସେ ଗଡ଼ନ୍ତି ଗଡ଼ବାସିଜନେ
ନାନା ମନୋରାଜ୍ୟ ଜାଗ୍ରତ ସ୍ୱପନେ ।

---

* ପଟିଆ—ଏହି ରାଜ୍ୟ କଟକରୁ ୩ କୋଶ ଦକ୍ଷିଣରେ ଅବସ୍ଥିତ । ଏହାର ପର୍ବତ ଏବଂ କାନନବେଷ୍ଟିତ ଦହମାନ ଅତି ରମଣୀୟ । ଏହି ଦହମାନଙ୍କରୁ ପଦ୍ମପତ୍ର, ପଦ୍ମପୁଷ୍ପ ଏବଂ ଶିଙ୍ଗଡ଼ା ପ୍ରଭୃତି କଟକକୁ ଯଥେଷ୍ଟ ପରିମାଣରେ ଆମଦାନୀ ହୁଏ ।

( ୬ )

## ଉଷା ।

ବୃତ୍ତ—ଖଣ୍ଡ କୁମୁଦକାମୋଦା ।

ଯତିର ନିୟମ—ଛ ଅକ୍ଷର, ଛ ଅକ୍ଷର, ପାଞ୍ଚ ଅକ୍ଷର ।

ଶାଳ୍ମଳୀଶୈଳରୁଁ * ଉଠି ସ୍ଥାନେ ଉଠି ତଟିନୀ ଝରେ,
ଲଙ୍ଘି ନାନା ବନ ଜନପଦ ମିଶେ ବଙ୍ଗସାଗରେ;
ଉତ୍ତରେ ବଳାଙ୍ଗୀ, ମଧ୍ୟେ ଗଙ୍ଗାହାର, ଶୋଣ ଦକ୍ଷିଣେ
ଜଲବେଣୀ-ବର୍ଣ୍ଣେ କୁରଙ୍ଗୀ-ନୟନ—ନୀଳିମା ଜିଣେ;
ରଜ, ତମ, ସତ୍ତ୍ୱେ ମିଶିଲା ପରିପ୍ରାୟେ ବଳାଙ୍ଗୀ-ପଦେ
ଶୋଣ, ଗଙ୍ଗାହାର ମିଶନ୍ତି ଯେ ଯାହା ନୀରସମ୍ପଦେ;
ତ୍ରେମୁହାଣୀ ନାମେ ଏହି ସ୍ଥାନ ଏବେ ବିଦିତ ଲୋକେ,
ତଣ୍ଡୀକୁଞ୍ଜେ ଜାୟା—ସଙ୍ଗେ ରଙ୍ଗେ ଯହିଁ କ୍ରୀଡ଼ନ୍ତି କୋକେ;
ନିର୍ଭୟେ ନିରତେ ନୀର-ଆସ୍ତରଣେ କରନ୍ତି ରଙ୍ଗ
ବାର ବାର ହୋଇ ଯହିଁ ଭଞ୍ଜଭୂମି - ବନ-ବିହଙ୍ଗ;
ତିନି-ନଦୀ-ଜଳ ନିଜ ପୁଣ୍ୟ-ବଳେ ବଳାଙ୍ଗୀ ବହି
ଯୋଜନାନ୍ତେ ଯାଇ ନିଜେ ମହାସିନ୍ଧୁ,—ବକ୍ଷେ ମିଶଇ;
ଥିଲେ ତାର ତୀରେ ନୁରୁ † ନାମେ ରାଜା ମହାପ୍ରତାପୀ,
ପୂଜୁଥିଲେ ଯେହି ନଦୀତୀରେ ଶ୍ୟାମା § ପ୍ରତିମା ସ୍ଥାପି;
ସ୍ୱପ୍ନାଦେଶେ ନଦୀ—ଗର୍ଭୁଁ ନରପତି ଲଭି ବିଗ୍ରହ
ଯଥାବିଧି ନୀତି ଚଳାଇବାପାଇଁ କଲେ ଆଗ୍ରହ;
ନଦୀତୀରେ ଦିବ୍ୟ—ଦେଉଳ ତୋଳାଇ ତହିଁ ସ୍ଥାପନା
କରାଇ ନଗର— ଅଧିଷ୍ଠାତ୍ରୀ-ରୂପେ କଲେ ଅର୍ଚ୍ଚନା,
ହୋମ ଯାଗ ଆଦି ଅନୁଷ୍ଠାନେ ଦ୍ୱିଜେ ହେଲେ ଦୀକ୍ଷିତ,
ବଳ-ଲୋହେ ନୀଳ— ବଳାଙ୍ଗୀ-ସଲିଳ ହେଲା ଲୋହିତ,
ଦେବୀଙ୍କ ନିୟୋଗେ ନରବଳି ହେଉ—ଥିଲା ଅର୍ପଣ,
ଇତର ପଶୁଙ୍କ କଥା ଅବା କିଏ କରେ ଗଣନ ?
ଦେବୀଙ୍କ ପ୍ରସାଦେ ରାଜାଙ୍କର ହେଲା ଭାଗ୍ୟ ଉଦୟ,
ଚିର-ଶତ୍ରୁ କୁଳ ନଷ୍ଟ କଲେ ବୀର ହୋଇ ସଭୟ;

---

* ମୟୂରଭଞ୍ଜ ଅନ୍ତର୍ଗତ ସୁଦୀର୍ଘ ପର୍ବତମାଳା । ସ୍ଥାନୀୟ ନାମ ଶିମୁଳିପାଳ ଅଥବା ଶିମୁଳିପାହାଡ଼ । † ବାଲେଶ୍ୱର ନଗରର ଅଂଶବିଶେଷର ନାମ ନୁରୁପୁର ।

§ ମାଣିକଖମ୍ବ ନାମକ ବାଲେଶ୍ୱର ନଗର ଅଂଶବିଶେଷରେ କାଳୀମନ୍ଦିର ଅଛି ।

( ୭ )

# ପାର୍ବତୀ ।

ନୀଳାଚଳେ ଆଜ    ଦୋଳ ମହୋତ୍ସବେ
ମତ୍ତ ସର୍ବେ ପୁରବାସୀ,
ବାଦ୍ୟର ଶବଦ    ହେଲେ ପକାଉଛି
ସିନ୍ଧୁ-କୋଲାହଳ ଗ୍ରାସି ।

ଶ୍ରୀଖଣ୍ଡ-ଶଇଳୁଁ    ମୃଦୁଳେ ସମୀର
ପାରାବାର-ବକ୍ଷେ ବହି,
ଶ୍ରୀକ୍ଷେତ୍ର-ଲଳନା—    କପୋଳେ ଅଳକ
କମ୍ପାଉଛି ରହି ରହି ।

ଉଡ଼ୁଛନ୍ତି ସୌର—    କରେ ପ୍ରଜାପତି
ସ୍ନାତ ଇନ୍ଦ୍ରଧନୁ ବର୍ଣ୍ଣେ,
ଉଡ଼ୁଁ ଉଡ଼ୁଁ ଥରେ    ବସି ପଡ଼ୁଛନ୍ତି
କେଭେ ପୁଷ୍ପେ, କେଭେ ପର୍ଣ୍ଣେ ।

ଭରତିଆ ନିଜ    ପ୍ରିୟା ସଙ୍ଗେ ନାଟ୍ୟ-
ତରଙ୍ଗେ ମଗ୍ନ ନାଚୁଆ,
ଇନ୍ଦ୍ରଧନୁ ଖଣ୍ଡ    ପ୍ରାଏ ଖଣ୍ଡେଉଡ଼ା
ଦେଇ ବୁଲେ ବାଳଶୁଆ ।

ସ୍କନ୍ଦରୁ ପୁଷ୍ପିତ—    ଛୁରିଅନା ଗନ୍ଧେ
ବାସିତ ଉଦ୍ୟାନମାନ,
ଉଡ଼ୁଛନ୍ତି ଯୂଥେ—    ଯୂଥେ ମଧୁକର
ସୌରଭେ ହୋଇ ଅଜ୍ଞାନ ।

ସ୍ୱର୍ଣ୍ଣଦୀ ନଳିନୀ    ପ୍ରାଏ ନୀଳାକାଶେ
ଦୋଳଇ ରଙ୍ଗ-ଶାଳ୍ମଳୀ,
ନିଚୁଳ କିଂଶୁକ—    କୁସୁମ-ମଣ୍ଡନେ
ସିନ୍ଦୂରିତ ବନସ୍ଥଳୀ ।

କରୁଛନ୍ତି ରାଜ୍ୟ    ଧର୍ମଧାମେ ଆଜ
ଋତୁ ସଙ୍ଗେ ଋତୁପତି,
ଠେକିଅଛି ନାଗ —    କେଶର ବେନିଙ୍କ
ଶିରେ ହେମ-ପୁଷ୍ପ-ଛତି ।

ବର୍ଣ୍ଣି-ଅନୁରୂପେ ବନ୍ଦୀ ବେନଙ୍କର
ହଳଦୀବସନ୍ତ ପିକ, (୧)
ପଥିକ-ମାନସେ ଭୀତି ଆଣିବାକୁ
କେ ଊଣା କେ ବା ଅଧିକ !

ଛାଲଇ ସୁରଭି ଭ୍ରମର ଶିବିର
ରାଜ ପରିକର-ଭାବେ,
ପ୍ରବାଳ-ପତାକା ଧରିଣ ତନ୍ଦୁକ
ଉଭା ଦେଖ ଠାବେ ଠାବେ ।

ଦଶୁଅଛୁ ଯାହା ଶ୍ୟାମଳ ଚମ୍ପକ-
ପାଦପେ ହେମ-କଳିକା,
ରାଜା ରାଣୀଙ୍କର ନୀରାଜନାପାଇଁ
ସେ ସିନା ପ୍ରଦୀପଶିଖା ।

ମଲ୍ଲିକା କୋରକ— ଶଙ୍ଖ ବଜାଉଛୁ
ଷଟ୍‌ପଦ ପୁଷ୍ପ-ଲମ୍ପଟେ,
ହେମଗୋଷ୍ଠୀ ସୂର୍ଯ୍ୟ— ମୁଖୀ ଧରିଅଛୁ
ଛମୁରେ ସ୍ୱର୍ଣ୍ଣ ଆଲଟ ।

ମନ୍ଦାନିଳେ ନାନା ଅଙ୍ଗଭଙ୍ଗୀ କରେ
ବଧୂର-ଧୈର୍ଯ୍ୟ-ଘାତକୀ
ପଦ୍ମରାଗ-ପୁଷ୍ପ— କଙ୍କିଣୀ-ଧାରିଣୀ
ଧାତକୀ ରାଜ-ନର୍ତ୍ତକୀ ।

ରାଜ-ଅସ୍ତ୍ରାଗାର ପରିପୂର୍ଣ୍ଣ ଏବେ
କିବା ଜଳେ କିବା ସ୍ଥଳେ,
ଅଶୋକ ନିଅଲୀ ଚୂତେ ପୂର୍ଣ୍ଣ ବନ,
ସରଃ ଉତ୍ପଳ କମଳେ ।

କାଞ୍ଚନ - କୋରକ ହେଲେ କରୁଅଛୁ
ବିରହୀର ଦମ୍ଭ ଚୂନା,
ଅବା ସେ ବିରହୀ ରୁଧିରେ ଲୋହିତ
ମଦନର ଏକମୁନା ।

ସ୍ଥାବର ଜଙ୍ଗମ ମନ ହୋଇଅଛୁ
ଅନଙ୍ଗର ଲୀଳାଗାର,
ପୁରୁଷେ ଦେଖନ୍ତି ନାରୀମୟ, ନାରୀ
ପୁରୁଷମୟ ସଂସାର ।

---

(୧) ତିତି ବୌରଙ୍ଗୀ, ମଦନ ଶ୍ୟାମକଣ୍ଠି ।

ଆନ କଥା ଥାଉ, ଯତ୍ତଜନମନ
ହୋଇଛି ଆଜ ଅଥୟ,
ଦେଖୁଥିଲେ ଯେହ୍ନ ବ୍ରହ୍ମ-ମୟ ବଣ,
ଦେଖନ୍ତି ସେ ନାରୀ-ମୟ ।
ଦଣ୍ଡଧର ପୁଷ୍ପ— କୋଦଣ୍ଡ ଶାସନ
ଶିରୋଧାର୍ଯ୍ୟ କରି ଶିରେ
ଯୁଗ୍ମେ ଯୁଗ୍ମେ ପ୍ରାଣୀ ବିହରନ୍ତି ଆଜ
କବା ନୀରେ କବା ତୀରେ ।
ସମଗରି ପାଠେ ହଂସ ହଂସୀ ପଦ୍ମ-
ପରାଗେ ଶରୀର ବୋଳ
କରୁଛନ୍ତି କଳ— ନାଦେ ପ୍ରେମାଳାପ
ଲହରୀ-ଦୋଳାରେ ଦୋଳ ।
ଲଙ୍କାଆମ୍ର କୁଞ୍ଜେ ବିହରନ୍ତି ମୃଗୀ
କୃଷ୍ଣସାର ପ୍ରେମଭୋଳେ
ପ୍ରଭୁ ଲୋକନାଥ— ଅର୍ଦ୍ଧଷ୍ଟିତ ଶୁଭ୍ର—
ବାଲ-ସ୍ତୂପାବଳୀ-କୋଳେ ।
କପୋତ—ଦମ୍ପତୀ ପ୍ରେମ କ ସମ୍ପତ୍ତି
ରଖିଛନ୍ତି ତାଲବନୁ
ଉଲ୍ଲାସେ କମ୍ପାଇ ବସନ୍ତ-ରଚିତ
ଗଲେ ନବ ଇନ୍ଦ୍ରଧନୁ ।
ଏହା ପରେ ପୁଣି ଦୋଳ ଚର୍ଚ୍ଚରୀର
ଲାଗିଛି ଆଜ ଗହଳ,
ଫଗୁବର୍ଣ୍ଣୋଦକେ ସର୍ବାଙ୍ଗ ରଞ୍ଜିତ
ବିହରନ୍ତି ଯୁବାଦଳ ।
ବାଳାତପ-ପୁଞ୍ଜ ପ୍ରାଏ ଫଗୁରାଶି
ଶୋଭେ ପ୍ରତି ବିପଣିରେ,
ପ୍ରତି ଯୁବା ହସ୍ତେ ଶୃଙ୍ଗକୋଷମାନ
ପରିପୂର୍ଣ୍ଣ ବର୍ଣ୍ଣନୀରେ ।
ନବ ତରୁଣୀଙ୍କ ଅମଳ କପୋଳ
ଅରୁଣ ଗୁଲ୍ଲାଲଘାତେ,
ଶବଳିତ ବର୍ଣ୍ଣ— ନୀରେ ପୀତ ଚେଲ
ଦୋଳଇ ମୃଦୁଳ ବାତେ ।
ନାରିକେଳ ପୂଗ— ପୁନ୍ନାଗ-ଶ୍ୟାମଳ
ଶାସନରୁ ଦଳେ ଦଳେ

ମଦନ-ଶତଘ୍ନୀ ଦ୍ୱିଜସୀମନ୍ତିନୀ
ଆସୁଛନ୍ତି ନୀଳାଚଳେ ।
ବିକଶି ଆସିଲା କମଳ କୋରକ
ପଡ଼ିଏ ଦଣ୍ଡେ ଝଟକି,
ଗୌରଦେହେ ଶୋଭେ ରଙ୍ଗଚେଲ, ନୀଳ-
କେଶପାଶେ କୁରୁବକ ।
ଖର୍ଜ୍ଜୁର-କାନନ — ଅନ୍ଧାରିତ ପଥେ
ଆସୁଛନ୍ତି ବିପ୍ରଦାରି,
ଦିକ୍ସୁ ମୁଖେ ଅବା ଆଗ୍ନେୟ ଶଇଳୁଁ
ବହେ ଧାତୁଦ୍ରବ-ଧାରି ।
ଏହିରୂପେ ଶୃତି— ଦଣ୍ଡେ ଲାଗିଅଛି
ମହୋତ୍ସବ ରାଜପୁରେ,
ମାତ୍ର ରାଜେଶ୍ୱର ଗଙ୍ଗେଶ୍ୱର ଆଜ
ଛନ୍ତି ପୁରୁଁ ବହୁଦୂରେ ।
ଋଷିକୁଲ୍ୟାଠାରୁ ସୁବର୍ଣ୍ଣରେଖା—
ଯାଏ ସର୍ବ ଜନପଦ
ନାନା ଉପାୟରେ ପୂଜୁଛନ୍ତି ଆଜ
ବୀର ଗଙ୍ଗେଶ୍ୱର ପଦ ।
ସୁବର୍ଣ୍ଣରେଖା—ଶୁଭ୍ର କୋଳେ କୋଳେ
କରନ୍ତି ସ୍ୱର୍ଣ୍ଣ-ସଂଚୟ
ହେବାପାଇଁ ରାଜ— ମଞ୍ଜୁକେଶୀଙ୍କର
ପୟରେ ଶିଞ୍ଜା ବଳୟ ।
ରାଜରାଣୀଙ୍କର କବରୀମଣ୍ଡନ
ପାଇଁ ଖଣି ଅନ୍ଧକାରେ
ଖନକେ ଖୋଲନ୍ତି ମଣି ମହାନଦୀ-
ବିଷମ-ଶିଳା-ଶଯ୍ୟାରେ ।
କୌଷେୟ-ବସନେ ଆବରିବେ ଅଙ୍ଗ
ନୀଳାଚଳେ ରାଜଯୋଷା,
ଶାଲ୍ମଳୀ-ଶଇଳେ (୧) ସେଥିପାଇଁ କୋଷ-
କୃମି ହେଉଛନ୍ତି ପୋଷା ।
ବିମ୍ବାଧରୀଙ୍କର ଚମ୍ପକ ଅଙ୍ଗୁଳି-
କମ୍ପନେ ମଧୁ-ଝଙ୍କାର

---

(୧) ମୟୂରଭଞ୍ଜର ପ୍ରଧାନ ପର୍ବତ, ଏହି ପର୍ବତର ନିକଟବର୍ତ୍ତୀ ପ୍ରଦେଶ କୃମି-କୋଷ ସକାଶେ ବିଖ୍ୟାତ ।

ଉପୁଜିବା ଆଶେ          କେନ୍ଦୁଝରେ ଗଢ଼ା
ହେଉଅଛି ଲୌହିତାର । (୧)
ବ୍ରାହ୍ମୀ-ତୀର-ଗିରି—          କନକ-ବହାଳି
ଦନ୍ତାବଳ-ଦନ୍ତେ ଗଢ଼ା
ମହିଷୀଙ୍କ ଶେଯ          ସକାଶେ ପଲଙ୍କ
ଯୋଗାଏ ଭକ୍ତେ ଲହଡ଼ା ।
ଅଙ୍ଗଲାଗିପାଇଁ          କନ୍ଦପଲ୍ଲି-ଜାତ
ହରିଦ୍ରା ଯୋଗାଏ ବୋଦ,
ଅନୁଗୁଳ ଶାଳ—          କ୍ଷୀରେ ହେଉଅଛି
ନଅରେ ଧୂପ ଆମୋଦ ।
ନୀଳ-ମାଧବଙ୍କ (୨)          ଅଧିଷ୍ଠାନ ଗିରି-
ତଟ-ବାସି-କାରିଗର
ଗଢ଼ୁଅଛି ଭକ୍ତେ          ସୁଢ଼ଳ ତାମ୍ବୂଲ-
କରଙ୍କ ମହିଷୀଙ୍କର ।
ଭୁଜଙ୍ଗ ଯୋଗାଏ          ଉଶୀର ବ୍ୟଜନ,
କନକା ମୁକ୍ତା ପ୍ରବାଳ,
ମହୋଦଧି ବକ୍ଷେ          ବହି ଦ୍ୱୀପାନ୍ତରୁ
ଆଣନ୍ତି ଯା ପୋତମାଳ ।
ଲଳନାଙ୍ଗୀଙ୍କର          ଅଳତାମଣ୍ଡନ
ପାଇଁ ବନେ ଅହରହ
ଅଞ୍ଜନାଭ ଗୁଞ୍ଜା—          ମାଳିଆ ପାଉଁଆ(୩)
କରନ୍ତି ଜଉ ସଂଗ୍ରହ ।
ଯୋଗାଏ ଚନ୍ଦନ—          ପେଡି ନୀଳଗିରି,(୪)
ଲଳିତଗିରି ଚନ୍ଦନ, (୫)
କଟକ ଯୋଗାଏ          ଅମତ୍ତି-ବାଞ୍ଛିତ
ମଞ୍ଜୁ ରଜତ-ଭୂଷଣ ।
ଶୃଙ୍ଗରୁ ଚନ୍ଦ୍ରାତପ          ପିମ୍ପୋଲରୁ(୬) ଆସି
ଚହ୍ଚରେ ହୋଇ ଲମ୍ବିତ

---

(୧) ସେତାରର ତାର ନିମନ୍ତେ କେନ୍ଦୁଝର ପ୍ରସିଦ୍ଧ । (୨) ଖଣ୍ଡପଡ଼ା ଅନ୍ତର୍ଗତ କଣ୍ଟିଲୋରେ ନୀଳମାଧବଙ୍କ ଦେଉଳ ପ୍ରତିଷ୍ଠିତ । ଏଠାରେ ପିତ୍ତଳବାସନ ପ୍ରସ୍ତୁତ ହୁଏ । (୩) ଆରଣ୍ୟ ଜାତିବିଶେଷ । (୪) ନୀଳଗିରି ପଥର ବାସନ ସକାଶେ ପ୍ରସିଦ୍ଧ । (୫) ଲଳିତଗିରିରେ ଅଦ୍ୟାପି କ୍ଷୁଦ୍ର କ୍ଷୁଦ୍ର ଚନ୍ଦନବୃକ୍ଷ ଦେଖାଯାଏ । (୬) ପିମ୍ପୋଲି ଉତ୍ତମ ସୂଚୀକର୍ମ ସକାଶେ ପ୍ରସିଦ୍ଧ ।

ରାଜ-ଅବରୋଧେ   ଶତ ଇନ୍ଦ୍ରଧନୁ-
ଶୋଭା କରେ ସମୁଦିତ ।
ବାମଣ୍ଡା-ମଣ୍ଡନ(୧)   ପ୍ରପାତ-ଶୀକର-
ସ୍ନାତ ଘନବନସ୍ଥଳୀ
ସ୍ମରି ଶ୍ୟାମା ଏବେ   ସମ୍ରାଟ ସଦନେ
କରୁଣେ କରେ କାକଳୀ ।
ମଣିଭଦ୍ରା-ଶୈଳେ(୨)   ମନକୁମାରୀଙ୍କ
ଦାବାର-ମୁଷ୍ଟି ଆସ୍ୱାଦ
ସ୍ମରି ରାଜ-ସଦ୍ମେ   ଶିକୁଳରେ ବନ୍ଧ
ଭଜୁଛି ଶୁକ ବିଷାଦ ।
ପିଞ୍ଜରେ ଘୁମାଇ   ଘୁମାଇ ଶାରିକା
ସ୍ମରୁଅଛି ଜନ୍ମସ୍ଥାନ,
ସ୍ୱପ୍ନେ କରୁଅଛି   ସପ୍ତକୋଶୀ ଗଣ୍ଡେ (୩)
ବନ୍ୟ-ଜମ୍ବୁ-ରସପାନ ।
ମକର ଉଦ୍ୟାନେ   ସ୍ୱର୍ଣ୍ଣ ଯଷ୍ଟି ପରେ
ବସି ମୟୂର ମୟୂରୀ
ମଇନାକ-ଶୈଳେ(୪)   ମେଘାଗମ-ସୁଖ
ସ୍ମରୁଛନ୍ତି ଝୁରି ଝୁରି ।
ଏ ବିଭବେ ଥାଇ   ମହାରାଣୀଙ୍କର
ମନେ ନାହିଁ ସୁଖ ଲେଶ,
କି କୌଶଳେ କଲା   ଶୋକ-କୀଟ ଏହି
କୁସୁମ-ବନେ ପ୍ରବେଶ ।
ଅସ୍ତରାଗେ ରଞ୍ଜି   ଭୁଙ୍ଗ ବାଲସ୍ତୂପ
ଶ୍ୟାମଳ ପୁନ୍ନାଗ ବନ
ଲୋକନାଥ ପଥେ   ବୁଡ଼ନ୍ତି ସାଗରେ
କମଳିନୀ-ପ୍ରାଣ-ଧନ,
ଭାସମାନ ରକ୍ତ—   ରବି-ବିମ୍ବ ଦେଖି
ଏ ଭାବ ଆସେ ଅନ୍ତରେ,

---

(୧) ବାମଣ୍ଡା ନିସର୍ଗଲକ୍ଷ୍ମୀର ମୁକୁଟାଳଙ୍କାର ପ୍ରଧାନପାଟ ପ୍ରପାତ । (୨) ଦଶପଲ୍ଲା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ଅତି ସୁରମ୍ୟ ପର୍ବତ । ପୂର୍ବେ ଏଠାରେ ଅନେକ ଋଷି ଥିବାର କିମ୍ବଦନ୍ତୀ ଅଛି । (୩) ମହାନଦୀର ସାତକୋଶିଆ ଗଣ୍ଡ । (୪) ରଣପୁର ରାଜଧାନୀ ନିକଟବର୍ତ୍ତୀ ବିଶାଳ ପର୍ବତ ।

ବିରଞ୍ଚି-ରଚିତ     ସୁବର୍ଣ୍ଣ ବ୍ରହ୍ମାଣ୍ଡ
ଭାସଇ କିବା ସାଗରେ ।
କିବା ଜଳନିଧି-     ଶାୟୀ ମଧୁରିପୁ-
ନାଭି-ନାଳେ ଅରବିନ୍ଦ,
ଅବା ଦିଗ୍‌ବଳୟ—     ରୂପୀ ବଳୟର
ଅନୁରୂପ କୁରୁବିନ୍ଦ ।
ବୁଡ଼ନ୍ତେ ମାର୍ତ୍ତଣ୍ଡ,     ପ୍ରାଚୀମୂଳୁଁ ଏବେ
ସନ୍ଧ୍ୟା ପ୍ରବାଳ-ପାଟଳା
ଊର୍ଦ୍ଧ୍ୱେ ଉଠି ଇନ୍ଦୁ—     କରଣେ ସୁନ୍ଦରୀ
ମଧ୍ୟାକାଶେ ମିଶିଗଲା ।
ପଟହ କାହାଳୀ     ଶଙ୍ଖ ଘଣ୍ଟାଧ୍ୱନି
ଉଠିଲା ପ୍ରତି ଦେଉଳେ,
ଦୀପାଲୋକ ଦେଖି     ଚଞ୍ଚଳେ କଞ୍ଚୁକୀ
ଚଢ଼ିଲା ପ୍ରସାଦଚୂଳେ,
ତହୁଁ ବସି ବୃଦ୍ଧ     ଦେଖିଲା ଭୂତଳେ
ଧରିତ୍ରୀ ଛବି ସୁନ୍ଦର,
ଦେଖିଲା ଉଦ୍‌ବେଳ     କୋଳାହଳମୟ
କୌମୁଦୀ-ଧୌତ ସାଗର ।
କର୍ପୂର-ଧବଳ     ବାଲୁସ୍ତୂପାବଳି
ଖୋଲେ ଶୋଭେ ଉପବନ,
ଠାବେ ଠାବେ ଅବା     ବସିଥାଇ ତଳେ
ତିମିର ହୋଇଛି ଘନ ।
ଶୀତଶେଷେ ପାଣ୍ଡୁ—     ବେଶ ପରିହରି
ଅମଳ-ଶୁଭ୍ର- ବସନା
ଚନ୍ଦ୍ରିକା-କୁସୁମେ     କରୁଛନ୍ତି କେଳି
ଚତୁର୍ଦ୍ଦିଶେ ଦିଗଙ୍ଗନା ।
ଦୂରେ ସମଗ୍ର     ଦିବ ରଜତର
ଆସ୍ତରଣ ପରି ଦିଶେ,
ଦିଗ୍‌ବଳୟେ ନୀଳ—     ତରୁ-ରାଜି ତାର
ଦାଢ଼େ ଅଙ୍କରେଖା କି ସେ ?
ବିଶ୍ୱଜନ ଗୁରୁ—     ଚନ୍ଦ୍ରାତପ ପ୍ରାଏ
ଊର୍ଦ୍ଧ୍ୱେ ହୋଇ ଲମ୍ବମାନ
ବିରଳ-ତରଳ—     ତାରକା-ଗୁମ୍ଫିତ
ସୁନୀଳ ନଭ-ଖିଲାନ ।

ସରପାନ୍ତୁଁ ( ୧ ) ଉଡ଼ି ସୁଖେ ଭାସି ଭାସି
ତରଳ ଶଶି-ମୟୂଖେ
ନଭେ ଧାଇଁ ଧାଇଁ ଯାଉଛି ଟେଣ୍ଟୋଇ
ସୁନୀଳ-ଚିଲିକା-ମୁଖେ ।
କୋଲାହଳ-ନୃତ୍ୟ— ବାଦ୍ୟ-ପରିପୂର୍ଣ୍ଣ
ଦୀପମାଳେ ବିଭୂଷିତ
ଫଗୁଖେଳେ ରଙ୍ଗ— ବରଣୀ ନଗରୀ
ହର୍ମ୍ମ୍ୟ-ତଳେ ବିରାଜିତ ।
ଉତ୍ତରାସ୍ୟ ହୋଇ ବସିଣ କଞ୍ଚୁକୀ
ଦେଖୁଅଛି କୁତୂହଳେ
ମନୁଷ୍ୟ ଗହଳ ନୃତ୍ୟ ଫଗୁଖେଳ
କୀର୍ତ୍ତିନାଦ ମହୀତଳେ ।
ଏହିରୂପେ ରାତ୍ରି ଦଶଘଡ଼ି ଅନ୍ତେ
ଉତ୍ସବୁଁ ହୋଇ ବିରତ
ଯେ ଯାହା ଭବନେ ନାଗରିକେ ଯାଇ
ସୁଖେ ହେଲେ ନିଦ୍ରାଗତ ।
ଚନ୍ଦ୍ରମା ବୁଡ଼ିଲେ ହରଚଣ୍ଡୀଙ୍କର ( ୨ )
ନିର୍ଜନ-ଦୂର-ପ୍ରାନ୍ତରେ,
ଏକ ଏକ ହୋଇ ପ୍ରଦୀପ ଆଲୋକ
ଲିଭିଗଲା ଘରେ ଘରେ ।
ଗାଢ଼ ଅନ୍ଧକାର ନଭେ ଜଳେ ସ୍ଥଳେ
ଚୌଦିଗୁଁ ଆସିଲା ମାଡ଼ି,
ପ୍ରକୃତି-ଦେହରୁ ଜୀବନ-ନାଟିକା
ସହସା ଗଲା କି ଛାଡ଼ି ?
ଝିଙ୍କାରି -- ଝିଙ୍କାରି ମାତ୍ର କଲା ସେହି
ନୀରବତାକୁ ମୁଖର,
ହିମ-ବିନ୍ଦୁ-ବାହୀ ନିଶାନ୍ତ-ସମୀରେ
ଦେହ ହେଲା ଜରଜର ।
ସୌଧଚୂଳେ ବସି ସ୍ଥବିର କଞ୍ଚୁକୀ
ଭାବୁଅଛି ହୃଦଗତେ—
"କେତେ କାଳ ମୁହିଁ ସଙ୍କେତକୁ ଚାହିଁ
ଜଗୁଥିବି ଏହିମତେ ?

(୧) ପୁରୀର ନିକଟବର୍ତ୍ତୀ ହ୍ରଦ । (୨) ପୁରୀର ଦକ୍ଷିଣ ପଶ୍ଚିମ ୪ କ୍ରୋଶ ଦୂରରେ ସାଗରସୈକତରେ ହରଚଣ୍ଡୀଙ୍କର ଦେଉଳ ପ୍ରତିଷ୍ଠିତ

ତେବେ ବର୍ଷ ଜଗି      ବସି ସୌଧତଳେ
ହୋଇଗଲ ଅବସନ୍ନ,
ତଥାପି ବିଳାସ --      ଲକ୍ଷ୍ମୀ ଗଙ୍ଗେଶ୍ୱର
ପ୍ରତି ନ ହେଲେ ପ୍ରସନ୍ନ ।
ଅଧର୍ମରେ ମତି      ରାଜାଙ୍କର ସଦା
ଅଧର୍ମରେ ସଦା ଗତି,
ବିଶାଳ ସାମ୍ରାଜ୍ୟ      ଲଭି ନ ଭୁଞ୍ଜିଲେ
ଲୋଭ ପରରାଜ୍ୟ ପ୍ରତି ।
ସ୍ୱଧର୍ମ ତାଙ୍କର      ପରରାଷ୍ଟ୍ର ଗ୍ରାସ
ବଳେ ଛଳେ କଉଶଳେ,
ପ୍ରବଳେ ରାସନା (୧)      ନୀତି ଆଚରଣ
ଦାଶନା(୨) ନୀତି ଦୁର୍ବଳେ ।
ପୁଣ୍ୟଶ୍ଳୋକ ଚୋର—      ଗଙ୍ଗର ଅଙ୍ଗଜ
ହୋଇ ହେଲେ ଏଡ଼େ କ୍ରୂର,
ମଦେ ମତ୍ତ ହୋଇ      ନିତ୍ୟ ମଣନ୍ତି, ଯା
ସ୍ୱଭାବେ କ୍ଷଣ-ଭଙ୍ଗୁର ।
କେହି ରହି ନାହିଁ      ରହିବ ନାହିଁଟି
ଭବ-ରଙ୍ଗଭୂମି-ତଳେ,
ସର୍ବେ ନିଜ ନିଜ      ଅଭିନୟ ସାରି
ବାହୁଡ଼ିବେ କାଳବଳେ ।
ସ୍ମୃତି-ତୀର୍ଥେ ଯାର      ନାମ ହୋଇଅଛି
ଅମର ବର୍ଣ୍ଣେ ଅଙ୍କିତ,
ପୁଣ୍ୟଶ୍ଳୋକ ଐର(୩)      ନରପତି ହେଲେ
କାଳ-ତୁଣ୍ଡେ କବଳିତ ।
କାହିଁ ଗଲେ ଇନ୍ଦ୍ର—      ଦ୍ୟୁମ୍ନ ମହୀପତି
ଉତ୍କଳ-ଗୌରବ-ରବି
ନୀଳାଚଳେ ସ୍ଥାପି      ଏହି କୀର୍ତ୍ତି କଳ—
କଳୁଷ—ପର୍ବତ-ପବି ।
କାଳଗର୍ଭେ ଭବେ      ଲୀନ ହେଲେ କେତେ
ମହୀପତି ମହାଯଶା,

(୧) ରାସନା – ରସନାସମ୍ବନ୍ଧୀୟ । (୨) ଦାଶନା—ଦଶନସମ୍ବନ୍ଧୀୟ । ରସନା ଦଶନର ସର୍ବଦା ଉପକାର କରେ । ମାତ୍ର ଦଶନର ଧର୍ମ ସମ୍ପୂର୍ଣ୍ଣ ବିପରୀତ ।
(୩) ଖଣ୍ଡଗିରିରେ ଐର ରାଜାଙ୍କର କୀର୍ତ୍ତି ଅଛି ।

ହୋଇଅଛୁ ଯାଙ୍କ ଜୀର୍ଣ୍ଣ ସୌଧ ଏବେ
ବ୍ୟାଘ୍ର ଭଲ୍ଲୂକର ବସା !
ଶୈବାଳ ପାଷାଣ— ଭେଦରେ ସଉଧ
ହୋଇଛୁ ନୀଳବରଣ,
କୃମି-ତନ୍ତୁ-ଜାଲ ହୋଇଅଛୁ ଏବେ
ଗବାକ୍ଷର ଆସ୍ତରଣ !
ସ୍ୱର୍ଣ୍ଣଦୀପାଲୋକେ ଉଠୁଥିଲା ଯହିଁ
ଅଗୁରୁ ଧୂପର ଘଟା,
ତିମିରକୁ ତହିଁ ବଜନ୍ତ ବଜନେ
ପକ୍ଷବାତେ ଚମଚଟା !
ତୋଳଲେ ଅତୁଳ ଦୁର୍ଗ(୧) ଯେଉଁ ବୀର
ବିରୂପା-ତଟିନୀ-ତୀରେ,
ବିରୂପା-ତରଙ୍ଗେ ବୁଦ୍‌ବୁଦ ସଦୃଶେ
ମିଶିଗଲେ କାଳନୀରେ !
ଏବେ ସେହି ଦୁର୍ଗୁଁ ଭୀଷଣ ନିର୍ଘୋଷେ
ପାଷାଣ ହୋଇ ସ୍ଖଳିତ
ଦୂର ଜନପଦେ ସୁପ୍ତ ଜନେ କରେ
ନିଶୀଥେ ଭୀତ ଚକିତ ।
ମହୀ-ଅବତଂସ ଉତ୍କଳ କେଶରୀ-
ରାଜବଂଶ କାହିଁ ଗଲା ?
ବେଢିଛୁ ଉତ୍କଳ— କଳେବରେ ଯାର
ଅମଳ କୀର୍ତ୍ତି-ମେଖଳା ।
"ସେହି ବଂଶ କାହିଁ ?" ଏହି କଥା ଯେବେ
ଏକାମ୍ରେ ପୁଚ୍ଛିବ ଯାଇ,
ପ୍ରତିଧ୍ୱନି ଛଳେ କାନନେ ଦେଉଳ
ପ୍ରତିବାଣୀ ଦେବ "କାହିଁ ?"
ଚିରଦିନ ପାଇଁ କାହାର ନୁହନ୍ତି
କର୍ମଭୂମି ବସୁନ୍ଧରା,
ପାଞ୍ଚିଛନ୍ତି ଯିଏ ଭୁଜବଳେ ଭବେ
ଚିରସ୍ଥାୟୀ ହେବେ ସିଏ !
ନିଜ ନଶ୍ୱରତା ଗଙ୍ଗେଶ୍ୱର କେବେ
ସ୍ମରିଲେ ନାହିଁ ସ୍ୱପନେ,

---

(୧) ଚଉଦ୍ୱାର ଗଡ଼ ।

ଛଦ୍ମ-ଧର୍ମ-ବଶେ     ଅନୁକ୍ଷଣ ରତ
କେବଳ ପର-ପୀଡ଼ନେ,
ଦିଗ୍‌ବିଜୟ-ବ୍ୟାଜେ     କେତେ ଭୂପାଳଙ୍କୁ
କଲେ ରାଜା ରଣେ ହତ,
ଥୋକେ ରାଜ୍ୟ ଛାଡ଼ି     ଦୂରେ ପଳାଇଲେ
ଥୋକେ ହେଲେ ପଦାନତ,
ଗଙ୍ଗେଶ୍ୱର ଦମ୍ଭ —     ଭରେ ଥରହର
କମ୍ପଇ ଆଜି ଉତ୍କଳ,
କେତେକାଳ ଧର୍ମ     ସହିବ ଅନୀତି,
ଦିନେ ଦେବ ପ୍ରତିଫଳ !
ବୃଥା ଦମ୍ଭେ ମାତି     ଦିଗ୍ବିଜୟୀ ବୀର
ଭ୍ରମୁଥାନ୍ତି ଦେଶେ ଦେଶେ,
ଜେତା ବିଜିତଙ୍କୁ     କରାଳ କୃତାନ୍ତ
ପେଷିଦିଏ ନିର୍ବିଶେଷେ !
ଇଚ୍ଛନ୍ତି ଦାମ୍ଭିକେ     ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ-ଡୋରି,
ନିଜ ଭାଗ୍ୟ-ଡୋରି     କାଳହସ୍ତେ ଏହା
ପକାନ୍ତି ହେଲେ ପାସୋରି !
ଅଜ୍ଞାନେ କଳ୍ପନା —     ଉଦ୍ୟାନେ ଦାମ୍ଭିକ
ଗଢ଼େ ଆଶାକୁଞ୍ଜମାନ,
ତା ଦେଖି ଅଲକ୍ଷେ     ପାଖେ ପାଖେ ଥାଇ
ହସୁଥାଇ ଜନ୍ତୁରାଣ !
କ୍ରୂର କାଳଚକ୍ର     ଘୂରୁଛି ମସ୍ତକେ
ଜାଣି ଲୋକେ ହୋନ୍ତି ବଣା,
କପାଇଁ ଲୋଡ଼ନ୍ତି     ରଣଭୂମିରୂପ
କୃତାନ୍ତ-ରଙ୍ଗ-ଅଗଣା ?
ଅଗ୍ରେ ବାତ୍ୟା ଦେଖି     ଜଳେ ଜଳ-ଦସ୍ୟୁ
ଆକ୍ରମେ ବଣିଜ-ତରୀ,
ଦିଗ୍ବିଜୟ-ବ୍ୟାଜେ     ସେହିରୂପେ ପର-
ରାଜ୍ୟ ଆକ୍ରମେ ମସ୍ତରୀ,
ଦସ୍ୟୁ ବଣିକକୁ     ମାରେ ବାତ୍ୟା ଯଥା
ବୁଡ଼ାଇ ଜଳଧି ଜଳେ,
କାଳ ସେହିରୂପେ     ଜେତା ବିଜିତଙ୍କୁ
ପୂରଇ ନିଜ କବଳେ !

ଏ ଭବସାଗରେ ସର୍ବଗ୍ରାସୀ କାଳ-
ବାତ୍ୟା ବହେ ଅବିରତ,
ଏହା ଜାଣି ଲୋକେ କେଉଁ ଲାଭ ଆଶେ
କଳହେ ହୁଅନ୍ତି ରତ ?
ଗଜ କଚ୍ଛପର କଳ ପ୍ରାୟେ ମହା-
ଦମ୍ଭେ କରୁଥାନ୍ତି ଲୀଳା,
ମନେ ନାହିଁ ଦିନେ କାଳ-ପକ୍ଷିରାଜ
ଉପରୁ ମାରିବ ଚିଲା !
ନାନା ଦୁର୍ନିମିତ୍ତ ନିତି ନିତି ଦେଖି
ମନେ ଲାଗେ ବଡ଼ ଡର,
ଆସ୍ଥାନ-ମଣ୍ଡପେ ଉଡ଼ି ଆସି ଗୃଧ୍ର
ବସୁଛନ୍ତି ଥରକୁ ଥର,
ପ୍ରତି ରାତ୍ରେ କେତେ ଉଲ୍କାପିଣ୍ଡ ନଭୋ-
ମଣ୍ଡଳୁ ପଡୁଛନ୍ତି ଖସି,
ଆଜ ରାତ୍ରେ ପୁଣି ପେଚକ ରାବିଲା
ଚନ୍ଦ୍ରଶାଳାଚୂଳେ ବସି,
ନିଶାନ୍ତେ ନଅରେ ଶୁଭୁଛି ଶବଦ
ଅବଳା ରୋଦନ ଭଳି,
କାହୁଁ ଆସୁଅଛି ସେ ବିକଳ ଧ୍ୱନି
କେହି ନ ପାରିଲେ କଳି,
ଅଲକ୍ଷଣ ଦେଖି ପୁରବାସିଙ୍କର
ହୃଦୟ ସଦା ସଭୟ,
ଏତେଦିନେ ଅବା ରାଜାଙ୍କର ହେଲା
ପୂର୍ବ ତପୋବଳ କ୍ଷୟ,
ରତ୍ନପୁରପତି— ସଙ୍ଗେ ଅକାରଣେ
କୁକ୍ଷଣେ କଳି ଭିଆଇ
କେ ଜାଣେ କା ଭାଗ୍ୟ ଭାଙ୍ଗିଲେ ସମର—
ରଙ୍ଗଭୂମେ ନର-ସାଇଁ ?
ଭବିତବ୍ୟ ଯାହା ଅବଶ୍ୟ ଘଟିବ,
କିଏ ତା କରିବ ଆନ ?
କିଏ ଅବା ଏହି ଜ୍ୟୋତିଶ୍ଚକ୍ର-ଗତି
ରୋଧିବାକୁ ବଳବାନ ?
ସ୍ୱାତି ଚନ୍ଦ୍ରା ବେନି ତାରକୁ ଭୁଲାଇ
ବିରାଜେ ନଭୋମଣ୍ଡଳେ,

ଏହି ଦଣ୍ଡେ ଧାତା ତଉଲନ୍ତି ଅବା
ନରଭାଗ୍ୟ ମହୀତଳେ ।
କାହା ଭାଗ୍ୟ ଗୁରୁ, କାହା ଭାଗ୍ୟ ଲଘୁ
ହେବ ଏ କାଳ-ସମରେ—
ଅଛି ଏକା ସେହି ବ୍ରହ୍ମାଣ୍ଡଠାକୁର
ଅନନ୍ତ ଜ୍ଞାନ-ଗୋଚରେ,
ସେହି ସାଇଁ ସିନା ଶ୍ରୀହସ୍ତେ ରଖନ୍ତି
ଅଜ୍ଞେୟ ଅଦୃଷ୍ଟ କର୍ଣ୍ଣ,
ଯା ଭେଦ ନ ପାଇ ଭାବି ଭାବି ବଶୀ
ହୁଅନ୍ତି ଶିବ ବିରଞ୍ଚି ।"
ଏହିରୂପେ ଭାଳୁଁ ଉତ୍ତରାଶା-ମୂଳେ
ପୁଣ୍ୟ ଧ୍ରୁବତାରା ତଳେ
ସହସା କର୍ଣ୍ଣୁକୀ ଜ୍ୟୋତିପୁଞ୍ଜ ହେଇ
ନରେଖିଲା ଲୁଚିହଲେ,
କ୍ରମେ କ୍ରମେ ଶିଖା ବଢ଼ନ୍ତେ ଜାଣିଲା
ଅନଳୁଁ ନୁହେ ସେ ଆନ,
ଆନନ୍ଦେ ଗଦ୍ଗଦ ହୋଇ ବୃଦ୍ଧ କହେ,
"ଧନ୍ୟ ଧନ୍ୟ ଭଗବାନ !
ସ୍ୱାଗତ ହେ ବହ୍ନି— ଶିଖା ତୋତେ, ତୁ ଯା
ଆଣିଲୁ ଶୁଭ ସନ୍ଦେଶ
ଉଜଳ ମାର୍ଗରେ ଅଯୁତ କନ୍ଦର
ଗିରି ନଦୀ ବନଦେଶ ।
ଆଦ୍ୟ ଆବର୍ଭାବ ଅଗ୍ନିଦେବଙ୍କର
ହୋଇଥିବ ମେଘାସନେ, (୧)
ରଶ୍ମିରେଖା ତହୁଁ ଧାଇଁ ଆସିଥିବ
ପଲକେ ଗନ୍ଧମାଦନେ,(୨)
ଦଣ୍ଡଦେବୀ(୩) ଅଧି— ଷ୍ଠିତ ସେହି ଶୈଳେ
ସାଲକାଷ୍ଠ କରି ଗଦା
ଅନଳ ଲଗାଇ ହୋଇଥିବେ ମତ୍ତ
ସଙ୍ଗୀତେ ଭୂୟାଁ(୪) ପ୍ରମଦା,
ବିମ୍ବିତ ହେବାରୁ ସେହି ଛବି ଆଦ୍ୟ
ବୈତରଣୀ ପୂତ ନୀରେ

---

(୧) ମୟୂରଭଞ୍ଜର ଉଚ୍ଚତମ ପର୍ବତ । (୨) କେନ୍ଦୁଝରର ଉଚ୍ଚତମ ପର୍ବତ ।
(୩) କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବତା । (୪) ଆରଣ୍ୟ ଆଦିମ ଜାତିବିଶେଷ ।

ଉଲ୍ଲାସେ ଜୁଆଙ୍ଗେ(୧)   ବହ୍ନି ଜାଳିଥିବେ,
ଗୋନାସା-ଶୈଳ-ଶିଖରେ,
"ଜୟ ଗଙ୍ଗେଶ୍ୱର"   ବୋଲି କ୍ଷଣେ କ୍ଷଣେ
ଉଲ୍ଲାସେ ମାରି କୁହାଟ
ରାତିଯାକ ବସି   ଶିଖରେ ଜୁଆଙ୍ଗେ
କରୁଥିବେ ଶୃଙ୍ଗନାଟ,
ଖଣ୍ଡାଧାର(୨) ଚଣ୍ଡ —   ପ୍ରପାତ ଶବଦେ
ଝଙ୍କାରିତ ଗର୍ଭ ଯାର,
ଅଟଇ ଯେ ସ୍ଥଳୀ   ବୈତରଣୀଙ୍କର
ନିର୍ଜନ-ସୂତିକାଗାର,
ସ୍ତରେ ସ୍ତରେ ନୀଳ —   ଶୃଙ୍ଗମାନ ନଭେ
ଠେକିଛନ୍ତି ଗିରି ଯହିଁ,
ଯାର ଭୃଙ୍ଗ-ତଟେ   ବନସ୍ପତି-ପଙ୍କ୍ତି
ଛାୟାପୁଞ୍ଜ ସଞ୍ଚରଇ,
ସେହି ସ୍ଥଳୀ ଛାଡ଼ି   ମହାରଣ୍ୟମୟ
ଉପତ୍ୟକା ଲଙ୍ଘି ପଥେ
ମନୋରଥ-ଗତି   ଆସିଥିବ ରଶ୍ମି
ମାଲ୍ୟଗିରି ପରବତେ, (୩)
ଶିଳୁଳା-ଦୁର୍ଗମ   ଅଭ୍ରଂକଷ ସେହି
ଶିଖରଚୂଳେ ବାହର
ଜାଳିଥିବେ ଶୁଷ୍କ —   ଧନ୍ୱନ୍ତର-ତୃଣେ
ଅନଳ ଗଣ୍ଡ-ସୁନ୍ଦରୀ,(୪)
ଶୁଣିଥିବ ତହିଁ   କନ୍ଦରେ କନ୍ଦରେ
ସଘନେ ପ୍ରତିଶବ୍ଦକ
ମର୍ଦ୍ଦଳର ତାଳେ   ପଲ୍ଲବମଣ୍ଡନା-
ଗଣ୍ଡବାଳା-ହଲ୍ଲୀଷକ,
ବାଲଭାନୁ ପରି   କୃଶାନୁ ସ୍ଫୁରିବ
ଏ ଅନ୍ତେ ବାରି ଅଚଳେ,(୫)
ପ୍ରକ୍ଷାଳଇ ଚକ୍ର —   ବାରୁଣୀ ବ୍ରାହ୍ମଣୀ
ପାଦ ଯାର କଳକଳେ,

---

(୧) ଆରଣ୍ୟ ଜାତିବିଶେଷ । (୨) କେନ୍ଦୁଝର ଅନ୍ତର୍ଗତ ଜଳପ୍ରପାତ ।
(୩) ଲହଡ଼ାର ଏବଂ ଓଡ଼ିଶାର ଉଚ୍ଚ ପର୍ବତ । (୪) ଗଣ୍ଡ— ଆଦିମ ଜାତିବିଶେଷ ।
(୫) ତାଳଚେର ଅନ୍ତର୍ଗତ ପର୍ବତ ।

ହିଙ୍ଗୁଳା(୧) ପୀଠରୁ    ଉଡ଼ି ଆସିଥିବା
ଅଙ୍ଗାର ସଙ୍ଗେ ମିଶି ତ
ଖଦିର-ଇନ୍ଧନ—    ଜାତ ବୈଶ୍ୱାନରେ
ଗିରି ହେବ ସୁରଞ୍ଜିତ,
ରଥାଙ୍ଗଦମ୍ପତି    ମାନସେ କ୍ଷଣିକ
ସୁଖ-ଭ୍ରମ ଉପୁଜାଇ
ଅଭ୍ରଗର୍ଭ-ଗିରି    କପିଳାସେ(୨) ରଶ୍ମି
ତହୁଁ ଆସିଥିବ ଧାଇଁ,
ସ୍ଫଟିକ-ପାବଚ୍ଛ    ପର୍ ଏ ଯେ ଶୈଳେ
ଶୋଭେ କଳନାଦୀ ଝର,
ରକ୍ତାଶୋକ-କୁଞ୍ଜେ    ବିରାଜନ୍ତି ଯାର
ମେଖଳେ ଚନ୍ଦ୍ରଶେଖର, (୩)
ନଶୀଥେ ଓଙ୍କାର    କନ୍ଦରୀ ଏ ଯହିଁ
ଗାଆନ୍ତି ମହିମ୍ନସ୍ତବ,
ଉତ୍କର୍ଣ୍ଣେ ଶୁଣନ୍ତି    ହରିଣୀ ଏ ମୁଗ୍ଧ
ହୋଇ ସେ ସଙ୍ଗୀତ ରବ,
ଯୋଗିଜନେ ତହିଁ    ବହ୍ନି ଜାଳଥିବେ
ବଜାସ୍ତୃ ସଂକେତ ପାଇଁ,
ତା ଦେଖି ହରଣେ    ଦାବାନଳ ଭ୍ରମେ
ରୌଦ୍ରଗେ ଯିବେ ପଳାଇ,
ତଳେ ମହାରଣ୍ୟେ    କୃଷି-କ୍ଷେତ୍ର-ମଧ୍ୟେ
କୃଷୈରକ୍ଷୀ କୃଷୀବଳ—
ନେତ୍ରେ ଜଳାଇବ    ଚମକ ଚପଳା-
ସନ୍ନିଭ ଜ୍ୟୋତି ଚପଳ,
ଏ ଅନ୍ତେ ଜାଳବେ    ରକ୍ଷଭୀତି-ପ୍ରଦ
ଅନଳଶିଖା ଉଜ୍ଜ୍ୱଳା
ଝର ଉପକୂଳ—    ଧାଉ ସପ୍ତଶଯ୍ୟା-
ଶିଖର-ଶୃଙ୍ଗେ ତଅଁଲା, (୪)
ଭଲ୍ଲୁକ ଇନ୍ଧନ—    ଜଳା ବିଭାବସୁ-
ସ୍ଫୁଲିଙ୍ଗ-ମାଳା ଆକାଶେ

(୧) ହିଙ୍ଗୁଳା ତାଳଚେର ରାଜ୍ୟରେ ପ୍ରତିଷ୍ଠିତ । ଏହାକୁ ଉତ୍କଳର ଜ୍ୱାଳାମୁଖୀ ବୋଲିଯାଇ ପାରେ । (୨) କପିଳାସରେ କୃଷ୍ଣାଭ୍ର ମିଳେ । (୩) କପିଳାସପ୍ରତିଷ୍ଠିତ ମହାଦେବ । (୪) ସପ୍ତଶଯ୍ୟା ପର୍ବତ ଢେଙ୍କାନାଳର ଅନ୍ତର୍ଗତ । ତଅଁଲା— ଆରଣ୍ୟ ଜାତିବିଶେଷ ।

ଦେଖି ଝର ଝଡ଼    ଜଳାର୍ଚ୍ଚି କରନ୍ତେ
ଦୂରେ ପଳାଇବେ ତ୍ରାସେ,
ବନସ୍ପତି ଡାଳେ    ସୁଖେ ସୁପ୍ତ ଗିରି-
ନଦୀ-ବିହାରୀ ବରଟା
ତ୍ରାସେ ନୀଡ଼ ତ୍ୟଜି    ପଳାଇବେ ଶୁଣି
ସେ ଅନଳ ଚଟଚଟା,
ଏ ପରେ ଶରଣ୍ଡା(୧)—    ମୁଣ୍ଡେ ପରଚଣ୍ଡେ
ଉଠିବ ବହ୍ନି ମୟୂଖ
ଅଂଶୁପା-ସରସେ(୨)    ମୁହୂର୍ତ୍ତେ ଉଜଳ
କମଳଙ୍କ ମ୍ଳାନମୁଖ
ମହାନଦୀ ନୀଳ—    ସଲିଳ-ଦର୍ପଣେ
ତଦନ୍ତେ ହୋଇ ବିମ୍ବିତ
ଦଶୁଥିବ ରଶ୍ମି    ଧୂମକେତୁ-ପୁଚ୍ଛ
ପ୍ରାଏ ଦୀର୍ଘ ପ୍ରସାରିତ,
ତଣ୍ଡିପଠା-ଶୃଙ୍ଗ    ମହିଷୀଏ ଦୂରୁଁ
ଗୃହିଁଥିବେ ଏକଧାନେ,
ଦେହୁରିଏ ହର୍ଷେ    ପକାଇବେ ହୁରି
ଚର୍ଚ୍ଚିକା-ଶୈଳ-ସୋପାନେ, (୩)
ତହୁଁ ବହ୍ନି ସ୍ଫୁରି    ସାଲ ମହାରଣ୍ୟେ
ଦ୍ୱିଶିର ମହା ପର୍ବତେ (୪)
ଶୋଭିବ ଅଚଳ    ଦୀପସ୍ତମ୍ଭ ପ୍ରାଏ
ନୀଳ-ପାରାବାର-ପଥେ,
ଶବର-ଯୁବାଏ    ସେ ବହ୍ନିରେ ଦଗ୍ଧ
କରଣ ବନ୍ୟ ଶିକାର
ଶୀତେ ମଦ୍ୟ ସଙ୍ଗେ    ସୁଖେ ତପ୍ତ ମାଂସ
କରୁଣଥିବେ ଆହାର,
ହାଟକେଶ୍ୱରର (୫)    ତପ୍ତ ପ୍ରସ୍ରବଣ
ରଖି ବାମେତର ହକେ

---

(୧) ବାଙ୍କି ଅନ୍ତର୍ଗତ ମହାନଦୀର ଉତ୍ତରତୀରବର୍ତ୍ତୀ ପର୍ବତ । (୨) ଶରଣ୍ଡା ପର୍ବତର ପାଦଦେଶରେ ଅବସ୍ଥିତ । (୩) ଚର୍ଚ୍ଚିକା—ବାଙ୍କିର ରାଜଧାନୀ । ଏଠାରେ କ୍ଷୁଦ୍ର ଶୈଳୋପରି ଚର୍ଚ୍ଚିକା ଦେବୀ ପ୍ରତିଷ୍ଠିତ । (୪) ବାଙ୍କିର ସର୍ବପ୍ରଧାନ ପର୍ବତ । (୫) ଖୋର୍ଦ୍ଧାରୁ ୫ କ୍ରୋଶ ଦୂରରେ ଅବସ୍ଥିତ ଉଷ୍ଣପ୍ରସ୍ରବଣ । ହାଟକେଶ୍ୱର ମହାଦେବ ଏଠାରେ ପ୍ରତିଷ୍ଠିତ ।

ରଶ୍ମି-ରେଖା ମହା—          ଖରେ ଅସିଥିବ
ବରୁଣୀ ଶିଖର-ଶିଖେ, (୧)
ଲତା-ଦୋଳା-ଶେଯେ          ବନଦେବତାଙ୍କୁ
କେଳି-ଦୀପ-ରୂପେ ଖଣ୍ଟି
ତହୁଁ ଉଜଳବେ          ବିଭାବସୁ ଦେବୀ-
ଅଧିଷ୍ଠିତ-ଶୈଳ-କଣ୍ଠ,
ଦଗ୍ଧାଙ୍ଗରେ ତରୁ—          ହୀନ ଠଙ୍କ ଯହିଁ
ନିଦାଘେ ମଧ୍ୟାହ୍ନ କାଳେ
ମାର୍ତ୍ତଣ୍ଡ-ମୟୂଖେ          ନୀଳ ମରୀଚିକା
ସଦା ଖେଳେ ଚକ୍ରବାଳେ,
ଭରିତଆ ରୁଚେ          ମୁଖର ସେ ଠଙ୍କ-
ଭୂମି ଅତିକ୍ରମି ପଥେ
ଆସିଅଛି ରଶ୍ମି          ଗୁଲୁଜଣ୍ଠାଧର
ବଣନାଥ ପରବତେ,(୨)
ଚନ୍ଦ୍ରଚୂଡ଼ବଡ଼—          ଶୃଙ୍ଗାର-ରଚନା
କାଳେ ସେ ଶୈଳେ ସେବକେ
ଆନନ୍ଦେ ଅନଳ          ଜାଳିଲେ ଦେଉଳ-
କଣ୍ଠେ — ଗିରି-ମସ୍ତକେ,
ପୁନ୍ନାଗ-ଖର୍ଜୁର—          ନାରିକେଳପୂର୍ଣ୍ଣ
ଲଙ୍ଘି ନାନା ଜନପଦ
ଶଙ୍ଖ-କ୍ଷେତ୍ରେ(୩) ଆଣୁ—          ଅଛୁ ରଶ୍ମି ରେଖା
ଏ ବାରତା ସୁଖପ୍ରଦ ।
ଜଳ ଉଠିଲାଣି          ବହ୍ନିଶିଖା ପୁଣି
ସଘନେ କମ୍ପି ଅନଳେ
ସୁନୀଳ ଚିଲିକା—          ତରଙ୍ଗ-ତାଡ଼ିତ
ତାରାଦେବୀଙ୍କ ଶଇଳେ । (୪)
ବିଜୟ-ସଙ୍କେତ          ଏହି ବହ୍ନି ଶିଖା
ଏଥିରେ ନାହିଁ ସଂଶୟ,

---

(୧) ବରୁଣୀ ପର୍ବତ ଖୋର୍ଦ୍ଧା ନଗରର ନିକଟବର୍ତ୍ତୀ । ଏହି ପର୍ବତର ମେଖଳାରେ ବରୁଣୀଦେବୀ ପ୍ରତିଷ୍ଠିତ । (୨) ତେଲିଙ୍ଗ ନିକଟବର୍ତ୍ତୀ ସ୍ୱନାମପ୍ରସିଦ୍ଧ ପର୍ବତ । ଏହି ପର୍ବତର ଶିଖରଦେଶରେ ବଣନାଥଙ୍କ ଦେଉଳ ବିରାଜିତ । (୩) ଶଙ୍ଖକ୍ଷେତ୍ର—ଶ୍ରୀକ୍ଷେତ୍ର । (୪) ଚିଲିକା ତୀରବର୍ତ୍ତୀ ଗୋଟିଏ ପର୍ବତର ପାଦଦେଶରେ ତାରାଦେବୀଙ୍କ ଦେଉଳ ଅବସ୍ଥିତ ।

ଖରେ ନରପତି ପରବାସୁଁ ଏବେ
ବାହୁଡ଼ିବେ ନିଜାଳୟ ।
ଅଲକ୍ଷଣ ଦେଖି ମହାଭୀତ ଜାତ
ହୋଇଥିଲା ଲୋକ ମନେ,
ଏହି ରଶ୍ମି ଦୂର କଲା ସେ ଭୀତିକି
ଶ୍ରୀକ୍ଷେତ୍ରେ ଅସି ସୁକ୍ଷଣେ,
ରାଜାଙ୍କ କୁଶଳେ ରାଜ୍ୟର କୁଶଳ
ରାଜା ରାଜ୍ୟ-କର୍ଣ୍ଣଧାର,
ରାଜ-ଯନ୍ତ୍ରୀ ବିନୁ ରାଷ୍ଟ୍ର-ଯନ୍ତ୍ର କ୍ଷଣେ
ହୁଅଇଛି ନାରଖାର ।
ନୀଳାଚଳସାଇଁ ପ୍ରସାଦେ ନରେଶ
ଗଙ୍ଗେଶ୍ୱର ସର୍ବଜୟୀ,
ପଦାନତ ଆଜ ଦେବରାଜଙ୍କର
ସମଗ୍ର ଉତ୍କଳ ମହୀ,
ଏ ସମ୍ବାଦ ମୁହିଁ ନିବେଦିବି ଯାଇଁ
ମହାଦେବୀଙ୍କ ଛାମୁରେ,
ଦୋଳୋତ୍ସବ ସହ ବିଜୟ-ଉତ୍ସବ
ମିଶିବ କାଲି ଏ ପୁରେ ।"

———— ——

( ୮ )

## ଚିଲିକା ।

ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା,
ଉତ୍କଳର ତୁହି ଚିରୁ ଅଲଙ୍କାର,
ଉତ୍କଳ-ଭୁବନେ ଶୋଭାର ଭଣ୍ଡାର,
ସ୍ୱଭାବେ ଭାବୁକ-ମାନସ-ଉଲ୍ଲାସୀ
ଦିଗନ୍ତ-ବିସ୍ତାରୀ ତୋର ବାରିରାଶି,
ପ୍ରସନ୍ନବଦନା ଉଜ୍ଜ୍ୱଳବରଣୀ,
ମୁଖଶ୍ରୀ ଦେଖନ୍ତି ଯହିଁ ଦିଗଙ୍ଗନା,
ନୀଳ ଅଙ୍ଗ ତୋର ଚିତ୍ର ଅନ୍ତରାଳେ
ନାଶି, ନଳବନ, ଶୈଳ, ଦ୍ୱୀପମାଳେ,
ଦକ୍ଷିଣେ ମିଶିଛୁ ତୋର ଗର୍ଭେ ଆସି
ସୌରକରୋଭାସୀ ନୀଳ ରମ୍ଭାନାସି, (୧)
ବିମାନ-ଆକାରେ ଭାସେ ଶତ ଶତ
ନୀଳୋରସେ ତୋର ଶୈଳ ମାରକତ,
ପକ୍ଷଚ୍ଛେଦ-ଶକ୍ର-ଭୟେ କି ଶଇଲେ
ଲୁଚି ରହିଥିଲେ ତୋହର ସଲିଳେ ?
ସନ୍ନିଧି ଲଭଣ ଭଗବତୀଙ୍କର (୨)
ତୋଳନ୍ତି ଗୁଳ୍ମ-ଜଟିଳ ଶିଖର ?
ଦେଉଳକିରୀଟୀ କାଳୀଜୟୀ ଗିରି, (୩)
ମାରକତ-ସେତୁ ପ୍ରାନ୍ତେ ଯାର ଶିରୀ,
ଶ୍ୱେତାଙ୍ଗ ଚଡ଼ାଇଗୁହା (୪) ସମୁନ୍ନତ,
ନୀର ଭେଦ କିବା ଉଠେ ଐରାବତ ?
ତରଙ୍ଗବେଷ୍ଟିତ କାଙ୍କଣଟିଖରୀ, (୫)
ଆଦ୍ୟଫଳେ ଯାର ତଟୀ ପୂର୍ଣ୍ଣ କରି

---

(୧) ରମ୍ଭା ଗଞ୍ଜାମ ଅନ୍ତର୍ଭୁକ୍ତ ସ୍ୱନାମପ୍ରସିଦ୍ଧ ପର୍ବତ । (୨) ଚିଲିକାତୀରସ୍ଥ ବାଣପୁରରେ ଶ୍ରୀ ଭଗବତୀ ଦେବୀଙ୍କ ମନ୍ଦିର ଅଛି । (୩) କାଳୀଜୟୀ—ଚିଲିକାମଧ୍ୟସ୍ଥିତ ପର୍ବତ । ଏହି ପର୍ବତଶୃଙ୍ଗରେ ପାରିକୁଦ ରାଜାଙ୍କ ପ୍ରତିଷ୍ଠିତ କାଳୀଜୟୀ ଦେବୀଙ୍କ ମନ୍ଦିର ଅଛି । (୪) ଚିଲିକାନୀରୋନ୍ନତ ଶ୍ୱେତବର୍ଣ୍ଣ ଶୈଳ । (୫) ଚିଲିକାମଧ୍ୟସ୍ଥିତ ସ୍ୱନାମପ୍ରସିଦ୍ଧ ପର୍ବତ । ଏଠାରେ ଅପର୍ଯ୍ୟାପ୍ତ କାଙ୍କଣ ଫଳ ଜାତ ହୁଏ ।

ବର୍ଷେ ବର୍ଷେ ହ୍ରଦବକ୍ଷାଣ୍ଟି ଧୀବରେ
ଆଦରେ ପ୍ରେରନ୍ତି ଲକ୍ଷ୍ମୀ ବେଷଧରେ;
ସ୍ଥାନେ ସ୍ଥାନେ ନୀର ଭେଦନ୍ତି ସୈକତ,
ଶାରଦ-ଆକାଶେ ଯେସନେ ଛାୟାପଥ,
ତାରାପୁଞ୍ଜେ ଯଥା ଶୋଭେ ହରତାଳୀ,
ପୁଳିନ ତେସନ ଶୁଭ୍ର-ଶୁକ୍ତି-ଶାଳୀ,
ଗୁରୁ ଗିରି ତୋର ଶୋଭାର ଆଶ୍ରମ,
ଶୈଳ, ଟଙ୍କ, ବନେ ମଧୁର ବିଷମ;
ଗିରିଖୋଲ, ନାସି, କାନ୍ତାର, କନ୍ଦର,
ସୁରମ୍ୟ ତଟିନୀ ଜନମନୋହର,
ବିକଟ ସଙ୍କଟ, ତୁଙ୍ଗ ଶୈଳସାନୁ,
ଗତିପଥେ ଯାହା ପରଶନ୍ତି ଭାନୁ,
ନୀଳଗଣ୍ଡ ଯାର ଗମ୍ଭୀର ବିବର
ଫଣିପତି-ଫଣା-ମଣିରେ ଭାସ୍ୱର,
ଭଗ୍ନ ଦୁର୍ଗ, ଜରାଜର୍ଜର ଦେଉଳ
ଶୈବାଳ-ଅରଣ୍ୟ-ଲତା-ଗୁଳ୍ମାକୁଳ,
ମୂର୍ତ୍ତିମତୀ ହୋଇ ଭବଭଙ୍ଗୁରତା
ପ୍ରତିଧ୍ୱନି ଛଳେ କହେ ଯହିଁ କଥା,
କୁରଙ୍ଗ କୁରଙ୍ଗୀ ଚିର-କ୍ରୀଡ଼ା-ସ୍ଥଳ
ନବଦୂର୍ବାଦଳ-ଶ୍ୟାମଳ ଶାଦ୍ୱଳ,
ବିଶାଳ ପୁଳିନ ମନୋମୋହକାରୀ,
ମକ୍ଷିକା ଯାର ଚିର ସହଚରୀ,
ଦ୍ୱୀପମାଳା ଶସ୍ୟେ ହରିତାୟମାନ,
ଏମାନ ତୋହର ଶୋଭା-ଉପାଦାନ;
ଏତେ ଛବି ଯେଣୁଁ ଏକାଧାରେ ଠୁଳ,
ଛବିଲ-ଉତ୍କଳେ ତୋ ଛବି ଅତୁଳ ।
ବହୁଦିନ ଭ୍ରମି ଭ୍ରମି ଅବିରତେ
ଦେଖିଲଇଁ ନାନାସ୍ଥାନ ଭୂଭାରତେ;
କି ଉତ୍ତରାଖଣ୍ଡ କି ଦକ୍ଷିଣାପଥ
ଭ୍ରମିଲି ମୁଁ ଭାଗ୍ୟବଶେ ଚକ୍ରବତ;
ଭାରତର ଉତ୍ତ-ସୀମନ୍ତ-ଅଚଳ
ଦେଖିଲି ହିମାଦ୍ରି ହିମ-ଉର୍ଦ୍ଧ୍ୱସ୍ଥଳ,
ପାଦେ କୋଟି କୋଟି ଶିଖରସମାଜ,
ସକୋଳେ ଶୋଭନ୍ତି ଶୁଭ୍ର ଶୈଳରାଜ,

ଶୃଙ୍ଗୋପର ଶୃଙ୍ଗ ଶୃଙ୍ଗ ତଦୁପର
ନୀଲ ବ୍ୟୋମପଟେ ଚଢ଼ ହେଲା ପର,
ନୀହାର-ମୁକୁଟେ ମସ୍ତକ ମଣ୍ଡିତ,
ସ୍କନ୍ଧେ ଶୋଭେ ଶୁଭ୍ର ଗଙ୍ଗା-ଉପବୀତ,
ନିସ୍ତବ୍ଧ ନୀରବ ସେ ମହାବିଜନେ
ସନାତନ ଶ୍ୱେତ-ତୁଷାର-ଆସନେ
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି,
ପଡ଼ିଲା ସେ ରୂପେ ଚିତ୍ତବୃତ୍ତି ଥକି,
ମନେ ମନେ କହି ନମିଲି ନୀରବେ —
"ନମୋ ଦେବାତ୍ମନେ ଶ୍ରୀ ଗୌରୀଗୁରବେ !"
ରାଜସ୍ଥାନେ ଭ୍ରମି ଭୀମ ମରୁସ୍ଥଳୀ
ଦେଖିଲି ଭୀଷଣ ରୁକ୍ଷଶୈଳାବଳୀ,
ନୀର-ତରୁ-ହୀନ, ବନ୍ଧୁର କର୍କଶ,
କଙ୍କାଳ ଯେସନ କାଳ ସର୍ବଂକଷ,
ଚଣ୍ଡାଂଶୁକିରଣେ ଖର ଅତିଶୟ,
ଦହିଶାୟି-ଭୋଗି-ଶ୍ୱାସେ ବିଷମୟ,
ତପ୍ତବାୟୁ ଯହିଁ ପ୍ରଚଣ୍ଡେ ସଞ୍ଚର
ପାନ୍ଥ-ଆୟୁ ନଏ ପ୍ରତିପଦେ ହର,
ସ୍ତନ୍ୟଦାନେ ଦକ୍ଷ ଯହିଁ ନାଗଫେଣୀ,
ନୀରଦାନେ ପୁଣି ମରୀଚିକା-ବେଣୀ,
ତୃଷାତୁର ରୋଗୀ ସ୍ୱପ୍ନେ ଯଥା ବସି
ଦୂରେ କମଳିନୀ-ହସିତ-ସରସୀ,
ସେହି ରୁକ୍ଷ-ଦୃଶ୍ୟେ ସ୍ନିଗ୍ଧ-ଛବି ତୋର
ନେତ୍ରାଗ୍ରେ ସ୍ଫୁରିତ କରୁଥିଲା ମୋର;
ଭ୍ରମିଲି ଭୀଷଣ ବିନ୍ଧ୍ୟାଦ୍ରିକାନ୍ତାର,
ଧୂଆଁ ଧାରେ* ଯହିଁ ହୋଇ ଶତଧାର
ଭୈରବ ଆରବେ ରେବା ଦେଇ ଲମ୍ଫ
ଜନମାଏ ଜନ-ମାନସେ ପ୍ରକମ୍ପ,
ଶୁଭ୍ର ସ୍ୱଚ୍ଛ ପୟଃ-ପ୍ରପାତ-ସୁଭଗା
ହରଜଟାଭ୍ରଷ୍ଟା ଯଥା ତ୍ରିପଥଗା,
ଶୀକର ଜଳଦେ ବିଭାବସୁକର
ସୃଜେ ଯହିଁ ଶକ୍ରଚାପ ମନୋହର,

* ନର୍ମଦାପ୍ରପାତର ନାମ ଧୂଆଁ ଧାର ।

ଶୁଣିଲ ଶ୍ରବଣେ ସେ ଭୈରବ ରବ,
ଊର୍ଦ୍ଧ୍ୱେ ଦେଖିଲ ସେ ଜଳର ତାଣ୍ଡବ;
ଭ୍ରମିଲ ଦକ୍ଷିଣାପଥେ ଉପତ୍ୟକା,
ଝିଲ୍ଲି ଝଙ୍କାରିତ ଅଟବୀ ଦଣ୍ଡକା,
ତୀର୍ଥାଶ୍ରମ, ଗିରି, ତଟିନୀ, କନ୍ଦରୀ—
ମହାରଣ୍ୟମାଳେ ଚିତ୍ର-କଳେବରୀ,
ଦୂଷଣ-ତ୍ରିଶିରା-ଖର-ଅଧ୍ୟାସିତ
ଜନସ୍ଥାନ ଯାର ଥିଲା ସନ୍ନିହିତ,
ଧାରାସ୍ରାବୀ, ଭୀମରାବୀ, ଚିତ୍ତଦ୍ବନ୍ତ –
ପର୍ଜନ୍ୟ ଗର୍ଜନେ କମ୍ପିଲେ ଦିଗନ୍ତ,
ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର,
ମୈଥିଳୀପାଳିତ କେକବଂଶଧର,
ନାଚେ ନୃତ୍ୟକାରୀ, ନୀଳକଣ୍ଠ-କେକା
ଅଦ୍ୟାପି ସୂଚଇ ରାମାଶ୍ରମରେଖା;
ଭୀଷଣ କନ୍ଦରା ମଧ୍ୟେ ବସି ତହିଁ—
ଗଦ୍ଗଦ ଶବଦେ ଗୋଦାବରୀ ଯହିଁ
ଲୁହରେ ପଡ଼ୁଛି ଭଗ୍ନ ଦେହେ ଝରି,
ତହିଁ କି ଲୋ ତୋତେ ନ ଥିଲ ସ୍ମରି ?
ବାତ୍ୟା-ଆନ୍ଦୋଳିତ ମହାମ୍ଭୁଧିଙ୍କର
ଭ୍ରମିଲ ଭୀଷଣ-ରାଜ୍ୟେ ବରୁଣର,
ଯହିଁ ଚକ୍ରବାଳେ ଆପୃଷ୍ଠକପ୍ରଭ
ନୀଳାର୍ଣ୍ଣବ-ଦେହେ ଲଗ୍ନ ନୀଳନଭଃ,
ଊର୍ମି ପରେ ଊର୍ମି, ଊର୍ମି ତଦୁପରେ
ଯୋଡ଼ି ଗ୍ରାସିବାକୁ ଆସୁଥାଇ ଖରେ,
ସ୍ତବ୍ଧଭାବେ ଏହି ମହାଦୃଶ୍ୟମାନ
ଦେଖିଲ ଭାରତେ ଭ୍ରମି ନାନାସ୍ଥାନ,
ଭୀଷଣ, ବିରାଟ, ବିକଟ, ଉଦାର
ଦୃଶ୍ୟ ଦେଖି ହେଲା ବିସ୍ମୟ ଅପାର,
ଚିତ୍ତବୃତ୍ତି ଗଲା ନିଜ ପଥ ହୁଡ଼ି,
ସତ୍ତା ଗଲା ସେହି ମହାଭାବେ ବୁଡ଼ି,
ଖର ସୌରକରେ ତାରକା ଯେସନ
ଅସ୍ମିତା* ବିସ୍ମୟେ ହେଲା ନିମଗନ;

* ଅସ୍ମିତା—ମୁଁ ଅଛି ଏହି ଜ୍ଞାନ। ( *Self—Consciousness* )

ଗୁରୁ ପ୍ରାପ୍ତେ ତାଙ୍କୁ ଦୂରୁଁ କରି ଭୀତ
ସଖୀ ପ୍ରାପ୍ତେ ତୋତେ ସ୍ମରୁଥିଲ ନିତ;
ଛତର ଜନର ଅବସାଦକର
ଯୋଗୀ ଋଷିଙ୍କ ସେ ସ୍ଥାନ ମନୋହର,
ରବିକରେ ମୁଦ କମଳ ଲଭଇ,
ଝାଉଁଳ ପଡ଼ନ୍ତି ଅନ୍ୟ ପୁଷ୍ପ ତହିଁ;
ସେହି ପୁଷ୍ପ ପୁଣି ସ୍ନିଗ୍ଧ-ଶଶିକରେ
ପିଅନ୍ତି ପୀୟୂଷ ପ୍ରଫୁଲ୍ଲ-ଅନ୍ତରେ;
ତୋ ଛବି ଦର୍ଶନେ ସେହିରୂପେ ମନ
ଲଭେ ସୁମଧୁର ଶାନ୍ତି ଆସ୍ୱାଦନ,
ବିରାଟ ନୋହି ତୁ ଯେଣୁ ସୁବୃହତ,
ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ;
ଅବସାଦେ ଅବା ଆତ୍ମବିସ୍ମୃତିରେ
ବୁଡ଼େ ନାହିଁ ମନ ତୋର ରମ୍ୟତାରେ,
ସ୍ନିଗ୍ଧ ରୂପ ତୋର ଚିତ୍ତ-ଉଲ୍ଲାସକ
ସୁମଧୁର ଦ୍ୱୈତ-ଭାବର ଦ୍ୟୋତକ ।
ସଙ୍ଗୀତ ତୋହର ଚିରସହଚର,
ନୀଳବକ୍ଷ ତୋର ସଙ୍ଗୀତେ ମୁଖର,
ଭାସମାନ ଶ୍ୱେତ-ପ୍ରାସାଦ ଆକାରେ
ଗାଆନ୍ତି ବିହଙ୍ଗେ ତରଙ୍ଗ-ଦୋଳାରେ,
ନୀଳତର କରି ଛାୟାରେ ତୋ ଅଙ୍ଗ
ଊର୍ଦ୍ଧ୍ୱେ ମେଘାକାରେ ଉଡ଼ନ୍ତି ବିହଙ୍ଗ,
ପକ୍ଷ ଝାଡ଼ି ଶୂନ୍ୟୁଁ ସ୍ଥିରଲକ୍ଷ୍ୟ ହୋଇ
ଚଲ-ମତ୍ସ୍ୟେ ଚଞ୍ଚୁ ମାରନ୍ତି ଗାଙ୍ଗୋଇ;
କଳା, ନୀଳ, ପୀତ, ହରିତ, ଲୋହିତ
ବିହଙ୍ଗମେ ଊର୍ମି କାହିଁ ବିମଣ୍ଡିତ,
ଜଳଦେବୀ-କଳ-କିଙ୍କିଣୀ-ନିକ୍ୱଣ
ପ୍ରାପ୍ତ ଶୁଭୁଥାଇ ଚିରକଳନିଃସ୍ୱନ,
ଯୂଥେ ଯୂଥେ ମତ୍ସ୍ୟ ନିଜ ଶୁଭ୍ରକାନ୍ତି
ନୀଳ-ନୀରେ ତେଇଁ ଉଲ୍ଲାସେ ଦେଖାନ୍ତି,
ଧିକ୍କାରି ମୁକୁତା-ଶୁକ୍ତି-ବର୍ଣ୍ଣ-ଛଟା
ଶଲ୍କାବୃତ ବପୁ ପ୍ରକଟେ ଭେକଟା; *

---

* ଏହି ମତ୍ସ୍ୟ ନିମନ୍ତେ ଚିଲିକା ପ୍ରସିଦ୍ଧ ।

ବିଷଦଷ୍ଟ୍ର-ଶଙ୍କୁ ପ୍ରାପ୍ତେ ବହି ପୁଚ୍ଛ
ଶଙ୍କା ଉପୁଜାଏ ବିକଟ ଆକୃତି,
ଶିଶୁମାର ଖେଳେ ତରଙ୍ଗେ ଓଲଟି,
ଉଠି ବୁଡ଼ଇ ନ ପଡ଼ୁଁ ନେତ୍ରେ ପଟି,
କଳାମୁଣ୍ଡ ଜଳେ ଛଟକେ ଦେଖାଇ
ବୁଲଇ ମଗର ଏଣେ ତେଣେ ଧାଇଁ,
କୋଟି କୋଟି ଜୀବେ ଲଭନ୍ତି ଜୀବିକା
ତୋ ଦେହେ ଏରୂପେ ବିଚରି, ଚିଲିକା,
କୋଟି କୋଟି ଜୀବେ ଯୋଗାଇ ଆହାର,
ନ ସରଇ ତୋର ଅକ୍ଷୟ ଭଣ୍ଡାର !
କି ଆଶ୍ରିତ, କିବା ଆଗନ୍ତୁକଚୟ
ନିର୍ବିଶେଷେ ସର୍ବେ ପୂରାନ୍ତି ଆଶୟ,
ଏହି ଯେ ତୋ ନୀଳ-ବକ୍ଷ ତାରକିତ
କରି ବିହରନ୍ତି ହଂସ ଅଗଣିତ,
କେବଣ ଦେଶୁଁ ଏ ବର୍ଷେ ବର୍ଷେ ଆସି
କ୍ରୀଡ଼ନ୍ତି ତୋ ଅଙ୍ଗେ ନାନାରଙ୍ଗେ ଭାସି ?
କଳୁଷିତ-ବାରି-କଳୁଷହାରକ,
କାସାରେ କୁମୁଦ-ହାସ-ପ୍ରକାଶକ,
ଦକ୍ଷିଣାଶା ବଧୂ-ଅବତଂସ-ମୋତି
ମହୋଜ୍ଜ୍ୱଳ କୁମ୍ଭ-ସମ୍ଭବ ଜ୍ୟୋତି
ଉଇଁଲେ ଆକାଶେ, ଆସି ଦଳେ ଦଳେ
ପୂରନ୍ତି ଜଳ ଏ କଳ କୋଳାହଳେ,
ଏମାନେ କି ସହଚର ଶରତର,
ଶରତ ସଙ୍ଗତେ ହୁଅନ୍ତି ଅନ୍ତର ?
ଉଜ୍ଜ୍ୱଳ-ଶରତ-ଲକ୍ଷ୍ମୀ-ପରିଜନ
ପ୍ରାୟ ଦେଶେ ଦେଶେ କରନ୍ତି ଭ୍ରମଣ;
ଶଶାଙ୍କଧବଳା ନିଶା ଜ୍ୟୋତିଷ୍ମତୀ,
କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱତୀ,
ମାଲତୀ-ବିଶଦ ନିବିଡ଼-ନିକୁଞ୍ଜ,
କୁମୁଦ-ଧବଳ ସରୋବରପୁଞ୍ଜ,
ଲଭି ସ୍ଥିରତର ଶରତପ୍ରସାଦ
ଏ ସମ୍ପଦର ଏ ଅଚିନ୍ତ୍ୟଦାୟାଦ;
ନିଜେ ଶୁଭ୍ର ଶୁଭ୍ରେ କରନ୍ତି ବିହାର,
ଶୁଭ୍ରମୟ ସଦା ଏହାଙ୍କ ସଂସାର,

ଶୁଭ୍ର ଶରତର ଜୟ-ବୈଜୟନ୍ତୀ
ପ୍ରାୟେ ପନ୍ତି ବାନ୍ଧି ନଭେ ବିହରନ୍ତି ।
କମଳା-ବିଳାସ-ଭୂମି ତୋର ତଟ,
ଫଳ ମୂଳ ଶସ୍ୟେ ସଦା ସୁରୁଚିର,
ନାରିକେଳ, ପୂଗ, ପନସ, ରସାଳ,
ମୁଚୁକୁନ୍ଦ, ଚମ୍ପା, କେଶର, ତମାଳ,
ଅଶୋକ ବସନ୍ତ-ବିଭବ-ବିକାଶୀ,
କଦମ୍ବ ଜଳଦ-ଡମ୍ବର-ବିଳାସୀ,
ସଦାଶିବପ୍ରିୟ ପବିତ୍ର ଶ୍ରୀଫଳ,
ସଦା ଚଳଦଳ ପବିତ୍ର ପିପ୍ପଳ,
ପ୍ରବୀଣ ଶାଲ୍ମଳୀ, ସୁବିଶାଳକାୟ,
ଶ୍ୟେନ ଶ୍ୟେନୀ ଯହିଁ ରଚନ୍ତି କୁଳାୟ;
ଗ୍ରାମଦେବତାଙ୍କ ମଣ୍ଡପ-ବିତାନ
ସିନ୍ଦୂରିତ ପୁଷ୍ପଗୁଚ୍ଛେ ଶୋଭବାଣ;
ଶିବାଳୟ ଉପକଣ୍ଠେ କନିଅର
ସୁବର୍ଣ୍ଣ ଚଷକ-ଧର ମଧୁପର,
କର୍ଣ୍ଣପୂରରୂପେ ପୁଷ୍ପ ଯାର ଦୋଳେ
ପଲ୍ଲି-ବିଳାସିନୀ-ଅମଳ-କପୋଳେ;
ବୈଦୂର୍ଯ୍ୟ-କଣ୍ଠ-ଧାରୀ ଭୃଙ୍ଗ ତାଳ
ସରୋବର ତୀରେ ଶୋଭେ ମାଳ-ମାଳ,
ମନ୍ଦାନନ୍ଦେ ଯାର ବାହୁଛାୟାଶ୍ରୟେ
ବାୟା ବାୟାବଧୂ ବସନ୍ତି ନିର୍ଭୟେ,
ମୂଳେ କାଳରୂପୀ ଭୀଷଣ ଭୁଜଙ୍ଗ—
ଭ୍ରୂକୁଟି ନ ଗଣି କରୁଥାନ୍ତି ରଙ୍ଗ,
ତାଙ୍କଁ ବିଲମ୍ବିତ ସ୍ୱର୍ଣ୍ଣବର୍ଣ୍ଣ ଦୋଳେ
ଦୋଳାନ୍ତି ଶାବକକୁଳେ ସ୍ନେହଭୋଳେ,
ସଦାଶ୍ରିତ ଜୀବେ ଛାୟାପ୍ରଦାୟକ,
କଷ୍ଟ ସହି, ପରକଷ୍ଟସଂହାରକ,
ବଟଦ୍ରୁମ, ଯାର ଯୋଗ୍ୟ ପୁତ୍ରବତ
ଭୂ-ସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ,
ମରକତ ପର୍ଣ୍ଣେ, ପଦ୍ମରାଗଫଳେ
ଯା ବିଗ୍ରହ ଗ୍ରାମସୀମାନ୍ତ ଉଜ୍ଜଳେ,
ମଧ୍ୟାହ୍ନେ ଝୁରଇ ଯହିଁ କଳଗିର
ହଳଦୀବସନ୍ତ ସଙ୍ଗେ ଗୁଣ୍ଡୁଚିର,

ଏ ଆର୍ଦ୍ର ପାଦପମାଳେ ଅନ୍ଧାରିତ
ତୀର-ପଲ୍ଲି ତୋର ସ୍ନିଗ୍ଧ ସୁଲଳିତ;
ବୃତିରେ ପୁଷ୍ପିତ କେତକୀକ ଯହିଁ
ସମୀରଣ ତୋର ନିରତେ ସେବଇ;
କେତେ ଥର ଦେଖିଅଛୁ ଏହିମାନ,
ମାତ୍ର ପ୍ରତି ଥର ଦିଶେ ଆନ ଆନ !
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତ
ସୁନ୍ଦରପଣର ଚିରନ୍ତନ ରୀତ;
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ ।
ତୋ ପଶ୍ଚିମତୀର ଶୋଭାର ନିଳୟ,
ଦେଖି ନ ରହିବ ଲାଖି କା ହୃଦୟ ?
ଶ୍ୟାମଳରୁ କ୍ରମେ ନୀଳ, ନୀଳତର
ସୋପାନସ୍ୱରୂପେ ଦିଶେ ଶୈଳସ୍ତର;
ଅଭ୍ରଙ୍କଷ ତୁଙ୍ଗ ପ୍ରତୀଚୀ-ପାଟେଳୀ
ଶୋଭେ ଶୋଭାମୟ ଭୂଧର ଭାଲେରି,(୧)
କ୍ରମନିମ୍ନ ହୋଇ ନୀଳ ଜଳରାଶି
ଭେଦିଅଛି ଯାର ସୁଶ୍ୟାମଳ ନାସି,
ତୋଳି ତୋଳି ହୋଇ ପଶିଛି ଶିଙ୍ଘ
ଠାବେ ଠାବେ ଯାର ମାର୍ଗ ଗଇରିକ;
ସୁଶ୍ୟାମଳ ଗୁଳ୍ମ-ଜଟିଳ ଜଟିଆ (୨)
ତୀରୁଁ ନୀରେ ଯାଇ ହୋଇଅଛି ଠିଆ,
ତିନ ଆଡ଼ୁ ଯାକୁ ତର୍ଜି ବୀଚୀଦଳ
ପ୍ରହରନ୍ତି ନିଜ କ୍ଲୀବତ୍ୱ କେବଳ,
ତଟବନେ ଯାର ରଚେ ଅନ୍ଧାରୁଆ
ଜଳଦେବୀଙ୍କର କେଳିଯୋଗ୍ୟ ଗୁହା,
ପାଷାଣଭେଦରେ (୩) ମଣ୍ଡିତ ତୋରଣ,
ଶଇବାଳ ସ୍ତରେ ଉତ୍ତ ସୁଚିକ୍କଣ,
ବସି ଯହିଁ ହ୍ରଦବାସିନୀ ଅମରୀ
ସ୍ୱଚ୍ଛ ମୁକ୍ତାଫଳେ ବାନ୍ଧନ୍ତି କବରୀ.

---

(୧) ସ୍ୱନାମପ୍ରସିଦ୍ଧ ପ୍ରାଚୀରାକୃତି ବିଶାଳ ପର୍ବତ । ଚିଲିକାକୂଳରେ ଏହାର ଅବସ୍ଥିତି ଅତି ସୁନ୍ଦର । (୨) ସ୍ୱନାମପ୍ରସିଦ୍ଧ ପର୍ବତ । (୩) ପାଷାଣଭେଦୀ — Ferns.

ବୃକ୍ଷହୀନ, ଶିଳାରୁକ୍ଷ-କଳେବର
ସିଂହେଶ୍ୱରଙ୍କର (୧) ଯାମଳ ଭୂଧର,
ବହଇ ସାଳନ୍ଦୀ ପ୍ରସନ୍ନସଲିଳା, (୨)
ତଟଦେଶେ ଯାର ଶୈଳ ଘଣ୍ଟଶିଳା;
ଇନ୍ଦ୍ରନୀଳକାନ୍ତ ବିଶାଳ ଶୋଲଗ୍ରୀ,(୩)
ଦେଖି ମୋ ମନକୁ ଆସଇ ଏପରି,
ଊର୍ଦ୍ଧ୍ୱେ ଉଠନ୍ତି କି ଭେଦିଣ ଅବନୀ
ମୟୂର-ରଚିତ ଯାନେ ବୈରୋଚନି ?
ଅପରାଜିତାର ନୀଳମାତସ୍ପର
ଦୂରେ ଗିରିରାଜି ରାଜେ ମନୋହର,
କଚମୁଣ୍ଡ୍ରାକୃତି ଗିରି ଖଣ୍ଡ୍ରାହଣା, (୪)
କାନ୍ତାରେ ହୁଅନ୍ତି ପାନ୍ଥେ ଯହିଁ ବଣା,
ମଧ୍ୟାହ୍ନେ ଅନ୍ଧାର ଜଣଇ ଅଳନ୍ଧୁ,
କନ୍ଦସୀମନ୍ତିନୀ-ବିଭ୍ରମର ବନ୍ଧୁ;
ନୀରନ୍ଧ୍ର-ନିବିଡ଼ କୀଚକବଣିଆ,
ଅଭ୍ରଙ୍କଷଶିଖ ଗିରି ଗଉଣିଆ, (୫)
ଫଣାଧରାକୃତି ମୈନାକଶିଖରୀ (୬)
ଯା ଶିରେ ବସନ୍ତି ରଣପୁରେଶ୍ୱରୀ;
ବାରୁଣୀବଦନେ ଏ ଗିରିପଟଳୀ
ଶୋଭେ ଯେହ୍ନେ ମୃଗମଦ-ପତ୍ରାବଳୀ;
ପୂର୍ବ ତୀରୁଁ ଦୋର ଆରୋହି ତରଣୀ
ଆସୁଥିବାବେଳେ, ଏ ତୀର-ଅବନୀ
ଏହି ଦୃଶ୍ୟାବଳୀ ନିଜ ଚିତ୍ରପଟେ
ଦର୍ଶକ-ନୟନେ କ୍ରମଶଃ ପ୍ରକଟେ,

---

(୧) ସ୍ୱନାମପ୍ରସିଦ୍ଧ ପରସ୍ପରସଂଲଗ୍ନ ଯୋଡ଼ିଏ ପର୍ବତ । ମହାଦେବ ସିଂହେଶ୍ୱରଙ୍କ ନାମାନୁସାରେ ନାମିତ । (୨) ବାଣପୁରର ନିକଟବର୍ତ୍ତୀ ପର୍ବତ । ଏହାର ପାଦଦେଶରେ ସାଳନ୍ଦୀ ନଦୀ ପ୍ରବାହିତ । (୩) ଓଡ଼ିଶା ମଧ୍ୟରେ ଏପରି ସୁଦୃଶ୍ୟ ପର୍ବତ ବିରଳ । ବାସ୍ତବ ଏହା ଗୋଟିଏ ବିରାଟ ନୀଳକାନ୍ତମଣିଗଠିତ ବିମାନ ପ୍ରାୟ ବୋଧ ହୁଏ । (୪) ମୌଗଲବନ୍ଦର ସର୍ବୋଚ୍ଚ ପର୍ବତ । ଏ ଅଞ୍ଚଳରେ ଅନେକ କନ୍ଦପଲ୍ଲି ଅଛି । (୫) ରଣପୁର ଅନ୍ତର୍ଗତ ସ୍ୱନାମପ୍ରସିଦ୍ଧ ଶୈଳ । ଏହାର ଶୃଙ୍ଗ ଗଉଣି ପରି ଦିଶେ । (୬) ରଣପୁର ରାଜଧାନୀର ନିକଟବର୍ତ୍ତୀ ବିଶାଳ ପର୍ବତ । ବିରାଟ ସର୍ପାକୃତି ଏହି ପର୍ବତ ତାଳୁରେ ରଣପୁରର ଅଧିଷ୍ଠାତ୍ରୀ ଦୁର୍ଗାଦେବୀଙ୍କ ମନ୍ଦିର ବହୁ ଦୂରରୁ ଦୃଶ୍ୟ ହୁଏ ।

କୁହେଳିକା ଭେଦ ଯେହ୍ନେ ଶୈଳକୂଟ
କ୍ରମେ ହେଉଥାନ୍ତି ନଭେ ପରିଷ୍ଫୁଟ;
ଜଳୋଚ୍ଛ୍ରିତ ଇନ୍ଦ୍ରନୀଳର ଗୁମ୍ବଜ
ପ୍ରାୟେ ଦିଶୁଥାଇ ଦ୍ୱୀପଶୈଳବ୍ରଜ,
ଯେତେ ହେଉଥାଇ ତରୀ ଅଗ୍ରସର,
ଅଲଗା ଦିଶନ୍ତି ଲଗ୍ନ ପରସ୍ପର,
ସୂକ୍ଷ୍ମ ହେଉଥାଏ କ୍ରମେ କ୍ରମେ ସ୍ଫୀତ,
ଏକ ବର୍ଣ୍ଣ ନାନା ବର୍ଣ୍ଣେ ବିଭାସିତ,
ପଲକେ ପଲକେ ହୁଅଇ ପ୍ରକାଶ
ଛାୟା ଆଲୋକର ଅପୂର୍ବ ବିଳାସ,
ସାୟଂତନ-ଘନ ଖେଳଇ ଗଗନେ
ସୂର୍ଯ୍ୟାସ୍ତର ଐନ୍ଦ୍ରଜାଳିକ ବରଣେ,
ଠାବେ ଠାବେ ଅଭ୍ରଖଣ୍ଡ ସ୍ୱର୍ଣ୍ଣକାନ୍ତି
ଶିର ତୋଳ ଶୈଳ-ଶିଖେଁ ଝାଙ୍କୁଥାନ୍ତି,
ଶୋଭାରାଶି ଫୁଟି ଅନ୍ତରୀକ୍ଷେ, ସ୍ଥଳେ,
ତହୁଁ ତୋ ତରଳବକ୍ଷେ ପ୍ରତିଫଳେ;
ଆହା, ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ, ମର୍ତ୍ତ୍ୟେ ଅଗୋଚର;
ପାସୋରିବ ଦେଖି କହ, କେଉଁ ଜନ
ଏ ଶୋକ-ପାସୋରା ଅସ୍ୱର୍ଗଭୁବନ ?
ଭାରତୀ-ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧାୟି ?
ବଚନବିଷୟ ନୁହଇ ଏ ଛବି,
ହୃଦ ସେ କେବଳ ପାରେ ଅନୁଭବି ।
ନାନା ତୀର୍ଥଜଳ ଆସି ଦିବାନିଶି
ପୂତ କରେ ତୋର ଅଙ୍ଗ ତହିଁ ମିଶି,
ସର୍ବ-ଦେବ-ଦେବୀ ସ୍ନାନେ ପବିତ୍ରିତ
ନୀଳାଚଳପାଦେ ବହେ ଯେ ସତତ,(୧)
ପୁନ୍ନାଗ-ଅରଣ୍ୟ-ଲକ୍ଷ୍ମୀ-ଦରପଣ,
ତେଜଃପୁଞ୍ଜ-ଭୃଗୁ-ପ୍ରଭାବେ ପାବନ, (୨)

---

(୧) ଅଠରନଳା ନଦୀ । (୨) କମ୍ବଦନ୍ତୀ ଅଛି ଯେ ଭୃଗୁ ମୁନି ଏହି ନଦୀ-କୂଳରେ ତପସ୍ୟା କରିଥିବାରୁ ଏହାର ନାମ ଭାର୍ଗବୀ ହୋଇଅଛି । ଏହି ନଦୀତୀରରେ ଅନେକ ପ୍ରସିଦ୍ଧ ବ୍ରାହ୍ମଣ-ଶାସନ ପ୍ରତିଷ୍ଠିତ । ଏହାର ଉଭୟ ତୀର ପୁନ୍ନାଗବନାକୀର୍ଣ୍ଣ ।

ଭାର୍ଗବୀ, ସ୍ୱର୍ଗର ସୁଗମ ନିଃଶ୍ରେଣୀ,
ମନୋହର ଯାର ନୀଳ ନୀରବେଣୀ
ସ୍ନାନ-କାଳେ ଦ୍ୱିଜକୁମାରୀନିଚୟ—
ମୁଖେ ଦିଶେ ହେମତାମରସମୟ,
ମଞ୍ଜୁ-କୁରିଅନା-କୁଞ୍ଜ-ବିହାରିଣୀ,
ସାକ୍ଷୀ ଗୋପୀନାଥ-ହୃଦୟହାରିଣୀ,
ଦ୍ୱିଜକନ୍ୟା ଲକ୍ଷ୍ମୀ-ସ୍ନାନେ ପୁଣ୍ୟନୀର
ସୌଗନ୍ଧିକ ଗନ୍ଧେ ଗୃରୁ ରହିଚିର; (୧)
ଦୟା-ତୀର ଧୀର ମୁନୀନ୍ଦ୍ର ଦଧୀଚି -
ଅଭିଷେକଫଳେ ପୂତ ଯାର ବୀଚି, (୨)
ଭବତଳେ ବିଭୁ-ଦୟା ମୂର୍ତ୍ତିମତୀ,
ଧଉଳୀଦର୍ପଣ ଦୟା-ସ୍ରୋତସ୍ୱତୀ;
ଭୁବନେଶ୍ୱରୀଙ୍କ କେଳି-ଉପବନ,
କିଶଳୟ-ତାମ୍ର ଏକାମ୍ର-କାନନ—
ଦ୍ରୁମରାଜି-ଛାୟା-ଅନ୍ଧାରେ ଯାହାର
ମୃଦୁ କଳନାଦେ ବହେ ସ୍ୱଚ୍ଛଧାର, (୩)
ନଦୀ-ମନ୍ଦାକିନୀ ଅମନ୍ଦଗାମିନୀ,
ରଣପୁର-ରାଷ୍ଟ୍ର-ବନ-ବିହାରିଣୀ;
ଏ ଆଦି ବିବିଧ ପୁଣ୍ୟତୀର୍ଥ ସଙ୍ଗ
ଲଭି ପରିପୁଷ୍ଟ ତୋର ନୀଳ ଅଙ୍ଗ,
ନିଜେ ତୀର୍ଥେଶ୍ୱର ସର୍ବ-ତୀର୍ଥାଶ୍ରୟ
ତୋ ସଙ୍ଗେ କରନ୍ତି ନୀର-ବିନିମୟ;

---

(୧) ଏହି ନଦୀ ସ୍ରୋତସ୍ୱତୀ ନ ହେଲେହେଁ ଏହି ଅଞ୍ଚଳର ଗୋଟିଏ ପ୍ରଧାନ ପୟଃପ୍ରଣାଳୀ ଅଟେ । ସତ୍ୟବାଦୀନିବାସୀ ଜଣେ ପଣ୍ଡିତର ଲକ୍ଷ୍ମୀନାମ୍ନୀ ଗୋଟିଏ ପରମସୁନ୍ଦରୀ କନ୍ୟା ଥିଲା । ସ୍ୱୟଂ ଗୋପୀନାଥ ଏହି ସୁନ୍ଦରୀର ପ୍ରେମରେ ଆସକ୍ତ ହୋଇଥିବାର କିମ୍ବଦନ୍ତୀ ଅବଧି ପ୍ରଚଳିତ ଅଛି । ରାଧିକାଙ୍କ ସୁବର୍ଣ୍ଣପ୍ରତିମା ଗଠନାରମ୍ଭ ଦିନଠାରୁ ଲକ୍ଷ୍ମୀ ପୀଡ଼ିତା ହେଲା ଏବଂ ଯେଉଁ ଦିନ ସେହି ପ୍ରତିମାର ଜୀବନ୍ୟାସ ହେଲା, ସେହି ଦିନ ଲକ୍ଷ୍ମୀର ପ୍ରାଣ ବିୟୋଗ ହେଲା । ସତ୍ୟବାଦୀରେ ଅନେକ କୁରିଅନା ଗଛ ଅଛି । (୨) ଦଧୀଚି ମୁନି ଦୟା କୂଳରେ ତପସ୍ୟା କରିବାରୁ ନଦୀର ନାମ ପ୍ରଥମେ ଦଧିଭଦ୍ରା ହୋଇଥିଲା । ଦଧିଭଦ୍ରାର ଅପଭ୍ରଂଶ "ଦହିଆ" ଏବଂ "ଦହିଆ"ର ଅପଭ୍ରଂଶ "ଦୟା" ହୋଇଅଛି । ଐତିହାସିକ ଧଉଳୀ ପର୍ବତ ଦୟାତୀରରେ ଅବସ୍ଥିତ । (୩) ଗନ୍ଧବତୀ ନଦୀ—ଦୟାର ଗୋଟିଏ ଉପନଦୀ ।

ପବିତ୍ର ସୁନ୍ଦର, ସୁନ୍ଦର ପାବନ,
ତୋଠାରେ ହୋଇଛି ଏହା ସଂଘଟନ;
ତେଣୁ ସିନା ତୋର ତୀରଦ୍ୱୀପାବଳୀ
ଦେବଦେବୀଙ୍କର ପ୍ରିୟ-ବାସସ୍ଥଳୀ
ତେଣୁ ସିନା ତାରା, ଚଣ୍ଡୀ, ଭଗବତୀ (୧)
ସଗର୍ବେ ତୋ ତୀରେ ବାନ୍ଧିଲେ ବସତି,
ତେଣୁ ନାଗେଶ୍ୱର-ନଳିଙ୍ଗ-ବିଳାସୀ (୨)
ପ୍ରଭୁ ଚନ୍ଦ୍ରେଶ୍ୱର ତୋ ତୀରନିବାସୀ ।
ତୋ ଦର୍ଶନେ କ୍ଷୁଦ୍ର ମନୁଷ୍ୟର ଚିତ୍ତ
ଦେଶେ କାଳେ ହୁଏ ଦୂର-ବିସ୍ତାରିତ,
ଅତୀତର ତୁହି ସାକ୍ଷୀ ପୁରାତନ,
ଦେଖିଲୁ ନରର ଉତ୍ଥାନ ପତନ,
କେତେ ରାଜଧାନୀ ତୋ ତୀରେ ଉତ୍ଥିତ
ହୋଇ ତହିଁ ପୁଣି ହେଲେ ଅସ୍ତମିତ,
ଧୋଉଅଛୁ ତୋର ନୀଳ ଊର୍ମିମାଳ
ଏବେ ତାଙ୍କ କାଳ-ଚର୍ବିତ କଙ୍କାଳ;
କେତେ ରାଜା, କେତେ ଦିଗ୍ବିଜୟୀ ବୀର
ଆଲୋଡ଼ିଲେ ତୋର ସ୍ନିଗ୍ଧ-ନୀଳ ନୀର,
ତୋ ଆକାଶ ପୂରି ଜୟ-ବାଦ୍ୟ-ରୋଳେ,
ଉଡ଼ାଇ ବାନା ତୋ ପବନ-ହିଲ୍ଲୋଳେ,
ସଦମ୍ଭେ ବାହିଲେ ତୋର ବକ୍ଷେ ତରୀ
ଅକ୍ଷୟ ଯଶର ଆଶା ବକ୍ଷେ ଧରି,
ଅଭିଯାନେ ତାଙ୍କ ତରୀ-ମେରୁଦଣ୍ଡେ
ଯେ ରେଖା ପଡ଼ିଲା ତୋର ନୀଳଗଣ୍ଡେ,
ସେହି ରେଖା ପ୍ରାୟେ ତାଙ୍କ ଯଶମାନ
ଜାତ ମାତ୍ରେ ସିନା ହେଲା ଅନ୍ତର୍ଦ୍ଧାନ ।
ବୃଥା ହାଣି, ଆହା, ଲକ୍ଷ ଲକ୍ଷ ମଥା
କେତେ ଦିନପାଇଁ କଲେ କେତେ କଥା !

---

(୧) ଚିଲିକାତୀରସ୍ଥ ପର୍ବତ ତଳେ ତାରା ଦେବୀ ପ୍ରତିଷ୍ଠିତ । ଶ୍ରୀକ୍ଷେତ୍ରରୁ ୭କ୍ରୋଶ ଦୂରରେ ଗୋଟିଏ ଉଚ୍ଚ ବାଲୁକାସ୍ତୂପ ଉପରେ ହରଚଣ୍ଡୀ ଦେବୀଙ୍କର ଦେଉଳ ଅବସ୍ଥିତ । ଭଗବତୀ ବାଣପୁର ଅଧିଷ୍ଠାତ୍ରୀ । (୨) ଏହି ମନ୍ଦିର ସ୍ରଷ୍ଟା ଭୁବନେଶ୍ୱର ଏବଂ କୋଣାର୍କ ମନ୍ଦିରର ଚତୁର୍ଥସ୍ଥାନୀୟ ଅଟେ । ଏଠାରେ ଅସଂଖ୍ୟ ନାଗେଶ୍ୱର ବୃକ୍ଷ ଦେଖାଯାଏ ।

ଯଶରଙ୍କ ହୋଇ ପଦାଙ୍କ ସେ ଖରେ
ରଖି ପାରିଲେ କି ଯଶ-ପଦଖରେ ?
ସୁଲଭ ଯେ ଲାଗେଁ ବନ୍ଧ-କୁଳଯଶଃ,
କାଳ କି ସେ ଲାଗେଁ କେବେ ହୁଏ ବଶ ?
ଇତିହାସ-ରଙ୍ଗସ୍ଥଳୀ ତୁ ଚିଲିକା,
ତୋର ତୀରେ ପରା ଶ୍ରୀମତୀ ମାଣିକା —
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତଚିନ୍ତାମଣି;
ଦିନେ ତୋର ତଟରେ ବସି ନିକାଞ୍ଚନେ
କାଞ୍ଚି-ଯାତ୍ରା କଥା ପଡ଼ିଗଲା ମନେ,
ସ୍ୱପ୍ନେ ଭାସି କାଳସ୍ରୋତ-ପ୍ରତିଲୋମେ
ଦେଖିଲି ଅମରୀ ବିରାଜିତ ବ୍ୟୋମେ;
ଧରନ୍ତି କଳ୍ପନା ନାମ ସେ ସୁନ୍ଦରୀ,
ବୀଣାପାଣିଙ୍କର ଚିରସହଚରୀ,
ଭକ୍ତିଭାବେ ତାଙ୍କୁ କଲି ଆରାଧନା,
ଦିବ୍ୟ-ଚକ୍ଷୁ ମୋତେ ଦେଲେ ଚନ୍ଦ୍ରାନନା,
ଦେଖିଲି ଦୃଶ୍ୟ ମୁଁ ବସି ତୋର ତଟେ,
ଲିଖି ରହିଛି ଯା ସଦା ସ୍ମୃତି-ପଟେ,
ସମୀରେ ଅଟ୍ଟାଳ-ମାଳା ସ୍ଫୀତ କରି
ଦକ୍ଷିଣୁ ଆସିଲା ଶତ ଶତ ତରୀ,
ତରୀରେ ଆସୀନ ସୈନିକନିକର,
ସୌର କରେ ବର୍ମ ଆୟୁଧ ଭାସ୍ୱର,
ସ୍ୱର୍ଣ୍ଣ-ସୁଦର୍ଶନ- ଲାଞ୍ଛନେ ଲାଞ୍ଛିତ
ଲୋହିତ ପତାକା ବାତେ ଆନ୍ଦୋଳିତ,
ତାଳେ ତାଳେ ପଡ଼ି ତୋ ବକ୍ଷେ କ୍ଷେପଣୀ
ଉଠଇ ଗମ୍ଭୀରେ ଜୟ ଗୀତଧ୍ୱନି,
ମଧ୍ୟେ ଶୋଭେ ତରୀ ଅତି ମନୋହର,
ଗଜଦନ୍ତେ ଗଢ଼ା ଯାର କଳେବର,
ରଙ୍ଗ ଚନ୍ଦ୍ରାତପ ସ୍ୱର୍ଣ୍ଣ-ତାରକିତ
ସ୍ଫଟିକ ଯଷ୍ଟିରେ ଉର୍ଦ୍ଧ୍ୱେ ବିଲମ୍ବିତ,
ଚନ୍ଦ୍ରାତପ-ତଳେ ଝୁଲଇ ମଞ୍ଜୁଳ —
ଝାଲର ପରାଏ ପତ୍ର ସଙ୍ଗେ ଫୁଲ,
ତହିଁ ସିଂହାସନେ ସୁନ୍ଦରୀ ଆସୀନା,
ଜଗତେ ତୁଳନା ସେହ୍ନ ତାର ବିନା,

ପାରିଜାତ କୁଞ୍ଜେ ଇନ୍ଦିରା ସୁନ୍ଦରୀ,
ସମୁଦ୍ର-ମନ୍ଥନୁ ବାହାରିଲା ପରି,
ମ୍ଳାନ ମୁଖଚ୍ଛବି ବିଷାଦ-ରେଖାରେ,
ଭ୍ରୂଲତା ଅଙ୍କା କି ଲଜ୍ଜା-ତୁଳିକାରେ ?
ଭ୍ରୂମଧ୍ୟେ କୁଙ୍କୁମ-ବିନ୍ଦୁ ସୁମଧୁର,
ବେନି କର୍ଣ୍ଣେ ଶୋଭେ ମଣିକର୍ଣ୍ଣପୂର,
ବୈପରୀତ୍ୟେ ଦ୍ୟୁତି ବଢ଼ାଇ ବିଶେଷେ
କୃଷ୍ଣକେଶପାଶ ଦୋଳେ ପୃଷ୍ଠଦେଶେ,
ଗନ୍ଧାମୋଦେ ଅନ୍ଧ ହୋଇ ଅଳିକୁଳ
ଗୁଞ୍ଜରି ବାମାକୁ କରନ୍ତି ଆକୁଳ,
ବରଭୁଜେ ଶୃଳ ଲୀଳା-ଅରବିନ୍ଦ
ସମ୍ମୁଖେ ସୁନ୍ଦରୀ ତଡ଼ାଇ ମିଳିନ୍ଦ
ମଣ୍ଡାଇ ସୁନୀଳ ନେତ୍ର ପଙ୍କଜାସ୍ୟେ
ଅଯତ୍ନ-ମଣ୍ଡନ ଚଳଭ୍ରୂ-ଲାସ୍ୟେ,
ବରଭୁଜେ ଧରି ରଜତ କ୍ଷେପଣୀ
ତରୁଣୀଏ ମିଳି ବାହାନ୍ତି ତରଣୀ,
କ୍ଷେପଣୀ-କ୍ଷେପଣେ ତୋହର ସଲିଳେ
ହୀରକର ବୃଷ୍ଟି ଉଠିଲା ସଲିଳେ,
ସୁନ୍ଦରୀର ନେତ୍ର-ଶୋଭା ଅନୁକରି
ତୋ ଜଳେ ଝୁରିଲେ ରଜତ ସଫରୀ,
ନୀଳିମାରେ ବାମା ଶିରୁ କେଶପାଶ
ତୋ ନୀଳ-ବୀଚିକି କଲା ଉପହାସ,
ତେଣୁ କି ତରଙ୍ଗ ଅପମାନଭରେ
ଶିର ପିଟୁଥିଲେ ତରଣୀ-ପଞ୍ଜରେ ?
କାମିନୀ ଚିକୁରେ କୁସୁମ-ମୁକୁଟେ
କମଳପାଖୁଡ଼ା ବାତେ ପଡ଼େ ଉଠେ,
ସୁନ୍ଦରୀର ତନୀ-ସମ ବିଭୂଷିତ
ଗଜଦନ୍ତେ ଗଢ଼ା ଅପର ବୋଇତ,
ସମସଂଖ୍ୟା ଯୁବା ବର୍ମୋଜ୍ଜ୍ୱଳ-ଅଙ୍ଗ
ତନୀଦନ୍ତେ(୧) ରଙ୍ଗେ କାଟନ୍ତି ତରଙ୍ଗ,
ତଥିପରେ ମଣ୍ଡିଛନ୍ତି ସିଂହାସନ
ଯୁବା ଦେବାକୃତି, ସିଂହ-ସଂହନନ;

---

(୧) ତନୀଦନ୍ତ—କ୍ଷେପଣୀ ।

ବଦନଶ୍ରୀ ତେଜ-ଗାମ୍ଭୀର୍ଯ୍ୟବ୍ୟଞ୍ଜକ,
କୃପାଣ ପାଣିରେ କରେ ଜକଜକ,
ମୂର୍ତ୍ତି ପରିଗ୍ରହି ଉଦେ କି ସାହସ ?
କିମ୍ବା କ୍ଷାତ୍ର-ଧର୍ମ କିମ୍ବା ବୀରରସ ?
ଋଷିକୁଲ୍ୟା ତଟୁ ସୁବର୍ଣ୍ଣତଟିନୀ—
ଯାଏ ଛାୟା ଯାର ବ୍ୟାପଇ ମେଦିନୀ,
ଶିର ପରେ ଶୋହି ସେହି ସ୍ୱର୍ଣ୍ଣ-ଛତ୍ର,
ଚହ୍ଲାଇ ଦେଉଛି ଉତ୍କଳର ପତ୍ର;
ଗିରେ ଦୁର୍ଗ ଶିରେ ଶସ୍ତ୍ର କରେ ଧରି
ଦେଖୁଥିଲେ ଦୃଶ୍ୟ ସମ୍ଭ୍ରମେ ପ୍ରହରୀ,
ଗିରିବାସୀ ଯେତେ ସାମନ୍ତ ପ୍ରଧାନ
ଜଗତ୍ ସମ୍ବାଦେ ଆଗୁଁ ସାବଧାନ
ହୋଇ ଦଳେ ଦଳେ ଥିଲେ ଉପସ୍ଥିତ;
ଦେଖି ନାନା ବସ୍ତୁ-ଆୟୁଧ-ଲାଞ୍ଛିତ,
ମସ୍ତକ ନୁଆଇଁ ସର୍ବେ କଲେ ନତ,
ପାଶେ ଆସିବାରୁ ଚରଣୀପଙ୍କଜ,
ଗାଇଲେ ମଧୁର କଣ୍ଠେ ବନ୍ଦିଦଳେ,
"ହେ ବିଶ୍ୱସୁନ୍ଦର ! ସ୍ୱାଗତ ଉତ୍କଳେ,
ଜୟ କାଞ୍ଚନେମା ବିଶ୍ୱମନୋରମା,
ବିରିଞ୍ଚିସୃଷ୍ଟିରେ ଶୋଭିତ ଉପମା,
ତୁମ୍ଭ ଆଗମନେ ପବିତ୍ର ଉତ୍କଳ,
ଜାହ୍ନବୀ ପରଶେ ଯେହ୍ନେ ଧରାତଳ,
ଶୋଭିବ ଉତ୍କଳସଦ୍ମେ ସଦାଶୟା,
ସରେ ଯଥା ପଦ୍ମ, ପଦ୍ମେ ପଦ୍ମାଳୟା ।
ଜୟ ଅରିନ୍ଦମ ଶ୍ରୀପୁରୁଷୋତ୍ତମ,
ବିଶ୍ୱେ ତୁମ୍ଭେ ବିଶ୍ୱ-ରକ୍ଷା-ବ୍ରତ-କ୍ଷମ,
ଲଭିଲ ଦେଖାଇ ଜଗତେ ଯୋଗ୍ୟତା
ସତ୍କ୍ରିୟାରୂପେ ଏ ରୂପ-କଳ୍ପଲତା,
ସୁନ୍ଦର ମଧୁର ଦୋହିଙ୍କ ମିଳନ,
ଶୌର୍ଯ୍ୟ ସଙ୍ଗେ, ଆହା, ସୌନ୍ଦର୍ଯ୍ୟ ଯେସନ;
ତାରା ସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା,
ଶ୍ରୀପତି ସହିତେ ଲୋକମାତା ରମା;
ଦୋହିଙ୍କ ସୃଜନେ ବିରିଞ୍ଚି କୌଶଳ
ହେଲା ଦୋହିଙ୍କର ମିଳନେ ସଫଳ ।"

ବନ୍ଦାପନା ଅନ୍ତେ ବାଦିତ୍ର ଶବଦ
ଉଠିଲା କମ୍ପାଇ ମହୀ, ବକ୍ଷୁପଦ,
ଯାରେ ଗିରିଗୁହା ଯୋଗ ଦେଲେ ତହିଁ,
ସମୀର ନେଲା ତା ଦିଗେ ଦିଗେ ବହି,
ସେ ଉତ୍ସବେ ହୋଇ ହରଷେ ଉତ୍ତାଳ
ଚିଲିକା ! ତୋ ବାରି ତହିଁ ଦେଲେ ତାଳ,
ସେ ଘୋର ଆଘାତେ ଭାଙ୍ଗି ଗଲା ଧ୍ୟାନ,
ଧ୍ୟାନ ସଙ୍ଗେ ଦୃଶ୍ୟ ହେଲା ଅନ୍ତର୍ଦ୍ଧାନ,
ଜାଣିଲି ସେ ସବୁ କଳ୍ପନାକୌଶଳ;
ଫେଡ଼ିନେତ୍ରେ ନୟନ ଦେଖିଲି କେବଳ
ଅନନ୍ତ-ନୀଳିମା-ଦ୍ୟୁତି-ବିଭୂଷିତ
ତୋ ଅମର ସତ୍ତା ଅଗ୍ରେ ବିରାଜିତ ।
ରୁଦ୍ର ମୂର୍ତ୍ତି ତୋର ରଖୁ ଭୁ ଘୋଡ଼ାଇ
ଦୁରନ୍ତ ଉତ୍କଳ-ପରପନ୍ଥୀପାଇଁ .
ସୂର୍ଯ୍ୟକାନ୍ତ ଯଥା ପରଶେ ଶୀତଳ,
ତେଜସ୍ୱି ଦର୍ଶନେ ହୁଏ ଉର୍ଜସ୍ୱଳ,
ଶତ୍ରୁ ଦେଖି ତୁହି ସେରୂପେ, ଚିଲିକା,
ପ୍ରକଟୁ ପ୍ରଚ୍ଛନ୍ନ ଶକ୍ତି ମାତୃସ୍ନେହିକା,
ସେହି ମୂର୍ତ୍ତି ତୋର ଉତ୍କଳେ ଚଢ଼ାଉ
କର ଦେଖିଥିଲା ଦୈତ୍ୟ ରକ୍ତବାହୁ,
ତମୋଗୁଣେ ଭଜ ଆସୁରିପିଶାଚୀ
ମନୁଷ୍ୟଙ୍କୁ ଯେହୁ ମଣୁଥିଲା ମାଛି;
ଉତ୍କଳପତ୍ତନ କରି ଭସ୍ମୀଭୂତ,
ନରରକ୍ତେ ଧରା କରି ପରପ୍ଳୁତ,
ସର୍ବ ରତ୍ନପ୍ରସୂ ଭାରତର ସାର
ହରେ ଲୁଣ୍ଠି କରି ଶ୍ରୀ କୋଠଭଣ୍ଡାର.
ବିଜୟ-ଉଲ୍ଲାସ-ମଦେ ବାହି ତରୀ
ବାହୁଡିଲା ଯେବେ ସ୍ୱଦେଶେ ମସ୍ତରୀ,
ତା ଉଲ୍ଲାସ-ଗୀତ ତୋହର ପ୍ରତାପେ
ପରିଣତ ହେଲା ପଲକେ ବିଳାପେ !
ଉତ୍ତରଲେ ଯାଇ ଓଗାଳିଲୁ ବାଟ,
ଆକାଶ ପାତାଳ ଘୂରିଲେ କୂହାଟ,
କାଳୀଜୟୀ ଶୈଳେ ଦେଖା ହୈମବତୀ
ଉଗ୍ରା ହୋଇ କଲେ ସଙ୍କେତ ତୋ ପ୍ରତି

ମିଶି ତୋ ତରଙ୍ଗେ ସୁବର୍ଣ୍ଣଦ୍ରି ଶୂଳ,
ସେ ସଙ୍କେତେ ଫେନଚୂଡ଼ ଊର୍ମିକୂଳ
ଉତ୍କେଶର ଦେବୀ-ବାହନ କେଶରୀ
ପ୍ରାୟେ ଦଉଡ଼ିଲେ ଗ୍ରାସିବାକୁ ତରୀ;
ତୋ ଲଙ୍ଘିତେ ସଙ୍ଗେ ଯେନ ଊର୍ମିଥାଟ
ଦଉଡ଼ି ଆସିଲେ ନୀଳାମ୍ବୁ-ସମ୍ରାଟ,
ବିଶ୍ୱ-ଧ୍ୱଂସି-ରୁଦ୍ର—ପ୍ରଖର-ନିଶ୍ୱାସ
ପରାୟେ ବହିଲା ବାୟୁ ଅଣଞ୍ଚାଶ;
ଦୈତ୍ୟହନ୍ତା ବଜ୍ରୀ ଭୀମ ବଜ୍ର କରେ
ଜୀମୂତ-ବାହନେ ଉଇଁଲେ ଅମ୍ବରେ,
ଦମ୍ଭୋଳି ସେକାଳେ କଲା ଘୋରଧ୍ୱନି,
ଥରହର ହୋଇ କମ୍ପିଲା ଅବନୀ,
ଥରହର କମ୍ପି ଅବନୀ ସଙ୍ଗତେ
ପର୍ବତଙ୍କୁ ଡକା ଛାଡ଼ିଲେ ପର୍ବତେ,
ଭାଲେଶ କହିଲା ଶୋଲଞ୍ଚିକ ରାଇ,
ଗଲା ସେ ଆରାବ ଶୃଙ୍ଗୁ ଶୃଙ୍ଗେ ଧାଇଁ,
ତୋ ଉରଦର୍ପଣେ ସଘନେ ବିମ୍ବିତ
ହୋଇ ଚମକିଲା ଜୀମୂତେ ତଡ଼ିତ,
ଦେଖାଇ ଦେଲା ତୋ ସଂହାର ମୂରତି
ପ୍ରକୃତିର ସେହି କରାଳ ଆକୃତି; (୧)
ଯା ଦେଖି ଆତଙ୍କେ ଦୈତ୍ୟ-ଆଖଣ୍ଡଳ
ବିଫଳ ମଣିଲା ନିଜ ଭୁଜବଳ;
ତା କୃପାଣୁଁ ଅଛି ଶକ୍ତି ବଳବାନ,
ଅକାଳେ ଏ ଜ୍ଞାନ ଲଭିଲା ଅଜ୍ଞାନ,
ଜାଣିଲା ତୋହର କଶାଘାତେ ଶିଖି,
ଦୈବ ନ ଡରଇ ନର-ଭ୍ରୂକୁଟିକି;
ତରୀ ଧରି ଊର୍ମି ଫେନ-ଅଟ୍ଟହାସେ
କନ୍ଦୁକ ପରାୟେ ଫିଙ୍ଗିଲେ ଆକାଶେ;
ତ୍ରାହି ତ୍ରାହି ଡକା ପାଡ଼ି ଧର୍ମଦ୍ରୋହୀ
କେ କାହିଁ ପଡ଼ିଲେ ଛିନ୍ନଭିନ୍ନ ହୋଇ,

---

(୧) ଲେଖକ ସ୍ୱୟଂ ଥରେ ନିଶୀଥ ସମୟରେ ଚିଲିକାର ଗମ୍ଭୀରତମ ଏବଂ ବିପଦସଙ୍କୁଳ ଅଂଶ କାଳୀଜୟୀ ଗଣ୍ଡରେ ନୌକାଯୋଗେ ଯାଉଁ ଯାଉଁ ଭୟଙ୍କର ଝଟିକାନିବନ୍ଧନ ପ୍ରାଣସଂଶୟରେ ପଡ଼ିଥିଲେ ।

ସର୍ବେ ହୋଇଗଲେ ନିର୍ମୂଳ ନିଃଶେଷ,
କେହି ନ ରହିଲେ ଦେବାକୁ ସନ୍ଦେଶ !
କାହିଁ ଗଲା ସେହି ବିଜୟ-ଉତ୍ସବ ?
ଭାସିଲା ତୋ ବକ୍ଷେ ବିଜୟୀଙ୍କ ଶବ !
ଆସିଥିଲେ ଲୋଡ଼ି ଉତ୍କଳର ବିତ୍ତ,
ବହିଲେ ଉତ୍କଟ ତାର ପ୍ରାୟଶ୍ଚିତ୍ତ !
ଭ୍ରୂ-ଭଙ୍ଗରେ ଯାଙ୍କ କମ୍ପିଲା ଭୂତଳ,
ମକ୍ଷି ତଡ଼ିବାକୁ ଏବେ ନାହିଁ ବଳ !
ଦ୍ୱିସପ୍ତ-ଭୁବନ ଯେ ମଣିଲେ ଅଳ୍ପ,
ଆଶ୍ରିଲେ ସେ ସପ୍ତ-ଗୃଖଣ୍ଡର ତଳ୍ପ ।
ପାରିଲେଣି ଏବେ ଦେବ ବିକର୍ତ୍ତନ
ଭାଲେରି-ଶିଖରେ ସ୍ୱର୍ଣ୍ଣ-ସିଂହାସନ,
ଠାବେ ଠାବେ ଛାୟା ପଡ଼ିଣ ଶଇଳେ
ହରିତ ହେଲାଣି ପରିଣତ ନୀଳେ;
ଗଳ-ଘଣ୍ଟେ ନାଦି ଗିରି-ତଟଦେଶ
ବାହୁଡ଼ନ୍ତି ପଲେ ପଲେ ଛାଗ ମେଷ,
ମହିଷ-ଝପାର ଗୁରୁ ଗୁରୁଧ୍ୱନି—
ଘୋଷେ ମୁଖରିତ ଅରଣ୍ୟ-ସରଣୀ,
ଗୋଷ୍ଠୁଁ ଧୂମରେଖା ଉଠି ଗିରି-ପାଦେ
କୁଣ୍ଠିତ-ଗତିରେ କାନନ ଆଚ୍ଛାଦେ,
କଳରବେ ଏଗ୍ରି (୧) ଉଡ଼ିଣ ହ୍ରଦରୁ
ଅରଣ୍ୟେ ଲୋଡ଼ନ୍ତି ଯେଝା ନୀଡ଼-ତରୁ,
ପୀତ-ଅସ୍ତ କର ହେବାରୁ ପତିତ
ଡେଣା ଦିଶେ ଯେହ୍ନେ ସୁବର୍ଣ୍ଣମଣ୍ଡିତ,
ରଶ୍ମିରାଜି ବୁଣି ବର୍ମ୍ମ ଅନ୍ତରାଳେ
ବୁଡ଼ିଲେ ମିହିର ଭାଲେରି ଉଡ଼ାଳେ,
କେତେ ଯତ୍ନେ, ଆହା, କାଦମ୍ବିନୀ ଧନୀ
ବାସାଞ୍ଚଳେ ବାନ୍ଧି ନେଉଛି ସେ ମଣି !
ଧରିତ୍ରୀ ବଦନେ ପୀତ ଅସ୍ତରାଗ
ବୋଳି ଦେଇଛି କି ସୁବର୍ଣ୍ଣପରାଗ,

---

(୧) ଚିଲିକାବାସୀ ପକ୍ଷିବିଶେଷ । ଏହାର ଶୁଭ୍ର ପକ୍ଷକୁ ପାଏକମାନେ ଭୂଷଣସ୍ୱରୂପ ଟୋପରରେ ସଂଲଗ୍ନ କରନ୍ତି ।

ଶାରଦ-ଦିନାନ୍ତ-ଲକ୍ଷ୍ମୀ ଲୀଳାମୟୀ
ପ୍ରକାଶନ୍ତି କେତେ ନବ ନବ ଛଳ,
ବିଶାଳ ଭୂଲେର ଛାୟା ଜଳ ସ୍ଥଳ
ଆବରଇ କ୍ରମେ ବ୍ୟାପି ପୂର୍ବାଞ୍ଚଳ,
ପୀତ ଅସ୍ତାତପ ଦ୍ୱୀପ ଶୈଳମାଥେ
ଲିଭିଗଲା ସେହି ମହାଶୂନ୍ୟପାତେ,
ପଡ଼ିଲା ଚିଲିକା-ବକ୍ଷେ ସନ୍ଧ୍ୟାଲୋକ,
ଶୋକେ ବଧୂ ଛାଡ଼ି ଦୂରେ ଗଲା କୋକ,
ସନ୍ଧ୍ୟାରାଗ ହେଉ ହ୍ରଦ-ହିଲୋରସେ
ଆସଇ ଏ ଭାବ ଭାବୁକ ମାନସେ;
ପ୍ରଚେତା-ପ୍ରବାଳ-ପ୍ରସାଦର ରୁଚି
ନୀଳ-ନୀରୁ ଅବା ପୁଞ୍ଜି ବାହାରୁଛି,
କୂଳେ, ଦ୍ୱୀପେ, ଶୈଳପାଦପେ ବିହଙ୍ଗେ
ଉଡ଼ି ଯାଇ ବସୁଛନ୍ତି ନାନାରଙ୍ଗେ,
ପଶ୍ଚିମା ସନ୍ଧ୍ୟାର ବନ୍ଦାପନାପାଇଁ
ଯତଏ ଅସନ୍ତି ଶଇଳୁଁ ଓହ୍ଲାଇ,
ପୂର୍ଣ୍ଣ ପ୍ରାଚେତସୀ (୧) ବର୍ଣ୍ଣ-ବଇଭବେ
ମିଶେ ଦିବା ଯହିଁ ଭୂତ-ମହାର୍ଣ୍ଣବେ,
ଏଣେ କରେ ବୋଲ ଅମର-ସରଣୀ
ବିରାଜନ୍ତି ଚନ୍ଦ୍ର-ଚୂଡ଼-ଚୂଡ଼ାମଣି,
ତାରିଟିଏ ରାଜ ତାରାପତି ପାଶେ
ବେନିଏ କରନ୍ତି ରାଜ୍ୟ ଅର୍ଦ୍ଧାକାଶେ;
ବାଲ-ଜ୍ୟୋତ୍ସ୍ନା-ଯୋଗେ ଧୌତ ପୌରନ୍ଦରୀ(୨)
ହିମରଜ ମୁଖେ ବୋଲ ହେଲା ପରି;
ଯେଝା ରୂପ ଶୋଭା ବିପରୀତେ ବସି
ଦେଖାନ୍ତି ଗରବେ ପ୍ରାଚୀ ପ୍ରାଚେତସୀ,
ଚନ୍ଦ୍ରାଲୋକେ ଧୌତ ପୂର୍ବାକାଶ, ପୁନଃ
ବାରୁଣୀ ଆକାଶ କୁଙ୍କୁମେ ଅରୁଣ,
ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ
ପ୍ରାପ୍ତେ ଦଶେ ଚନ୍ଦ୍ର ବ୍ୟୋମର ମୂରତି,

---

(୧) ପ୍ରାଚେତସୀ - ପ୍ରଚେତା ଅର୍ଥାତ୍ ବରୁଣାଧିଷ୍ଠିତ ପଶ୍ଚିମଦିଗ ।
(୨) ପୌରନ୍ଦରୀ— ପୂର୍ବଦିଗ ।

ଦିଗ୍‌ବଳୟବ୍ୟାପି-ନୀଳ-ଜଳାରଣ୍ୟେ
ରଞ୍ଜିଲା ଚନ୍ଦ୍ରିକା ନିଜ ଶୁଭ୍ରବର୍ଣ୍ଣେ;
ପ୍ରାଚୀ-ମୂଳ ଏବେ ମୀନଜୀବି-ନାବେ
ଖଦ୍ୟୋତାକାରେ ଚଢ଼ି ଦିଶେ ଠାବେ ଠାବେ,
ମତ୍ସ୍ୟ ଧରି ସେହି ସମୁଦ୍ରମୁହାଣେ
ନିଜ ଗୃହ କଥା ଭାବି ଏକଧ୍ୟାନେ
ଭିଲେଇ-ଶିଖରେ ସନ୍ଧ୍ୟା-ତାରା ଦେଖି
ଆସନ୍ତି ପଚ୍ଛିକା (୧) ମନ୍ଦୋଲ୍ଲାସେ ଠେକି;
ତାଙ୍କ କଣ୍ଠୁଁ କବିସୂର୍ଯ୍ୟ-ଗୀତାମୃତ (୨)
ଦୂରୁଁ ବହି ଆଣେ ଚିଲ୍‌କା-ମାରୁତ,
ଉଲ୍ଲାସର ଆତ୍ମା ପ୍ରାପ୍ତେ ଗୀତ-ତାନ
ହୃଦ ନୀଳ-ବକ୍ଷେ କରେ ଅଧିଷ୍ଠାନ,
ହସନ୍ତି ଚୌଦିଗେ ମଧୁର-ହାସିନୀ
ଦିଗଙ୍ଗନା ଜ୍ୟୋତ୍ସ୍ନା-ଦୁକୂଳ-ବାସିନୀ,
ଭାବାନ୍ତର ପୁଣି କ୍ଷଣେ କରେ ଜାତ
"ଗଲାଣି ତ ଗଲା କଥା ରେ ସଙ୍ଗାତ;"
ସଙ୍ଗୀତ ଆବେଶେ ନାନାରୂପେ ମନ
ଅତୀନ୍ଦ୍ରିୟ ଦେଶେ କରେ ବିଚରଣ,
ଚାଲିଯାଏ ଶୂନ୍ୟେ ଶୂନ୍ୟେ କେଉଁ ସ୍ଥାନେ
କି ଲୋଡ଼ିବା ଆଶେ ସେହି ତା ନ ଜାଣେ,
ଧନ୍ୟ ସେହି ଯାର ଆଜ୍ଞା ଶିରେ ଧରି
ଏ ଲୀଳା ରଚନ୍ତି ଦେବୀ ବାଗୀଶ୍ୱରୀ;
ଧନ୍ୟ ରଥେ ! ତୁମ୍ଭ ଜନ୍ମ ଶୁଭକ୍ଷଣେ,
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ,
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ,
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ !
ମୀନ-ଆକର୍ଷଣ ଆଶେ ପୋତପାଳ
ତରଣୀରେ ଜାଳି ଦେଲାଣି ମଶାଲ,

---

(୧) ପଚ୍ଛିକା — ପାଲ । (୨) କବିସୂର୍ଯ୍ୟ ବଳଦେବ ରଥ । ଉତ୍କଳସାହିତ୍ୟ-ବିତ୍‌ମାନଙ୍କଠାରେ ଏ ମହାତ୍ମା ସୁପରିଚିତ । ଏହାଙ୍କର ଗୀତାବଳୀ ଏ ଅଞ୍ଚଳରେ ପ୍ରାୟ ସର୍ବତ୍ର ଗୀତ ହୁଏ । ବଳଦେବ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ଏହାଙ୍କର ରଚନା ଅତି ବିଶୁଦ୍ଧ ଏବଂ ସୁରୁଚିସମ୍ପନ୍ନ । ବଳଦେବ ଅନ୍ୟାନ୍ୟ ଉତ୍କଳ କବିଙ୍କ ପରି ବ୍ୟାକରଣର ଅବମାନନା କରି ନାହାନ୍ତି । "ଗଲାଣି ତ ଗଲା କଥା ରେ ସଙ୍ଗାତ" ଏହା ବଳଦେବଙ୍କର ଗୋଟିଏ ସୁନ୍ଦର କରୁଣରସାତ୍ମକ ଗୀତର ଘୋଷା ।

ତବେ ପାପମୂର୍ତ୍ତି ପର ଅଟଇ ସେ,
ସ୍ୱର୍ଗେ ମାରାତ୍ମକ, ରୂପେ ରମ୍ୟ ଦିଶେ,
ପାପଗର୍ତ୍ତେ ଯେସନେ ପଡ଼ଇ ଅଜ୍ଞାନ,
ଜାଲ-ଗର୍ଭେ ମୀନେ ଡେଇଁ ଦେବେ ପ୍ରାଣ;
ତରଙ୍ଗେ ଦୋହଲି ଦୋହଲି ବୋଇତ
ଥରେ ଦିଶେ, ଥରେ ହୁଏ ଅନ୍ତର୍ହିତ;
ଦୁଃଖିମନେ ଆଶା ଉତ୍ଥାନ ପତନ
ପ୍ରାପ୍ତେ ଶିଖା ଉଠେ ପଡ଼େ ଘନ ଘନ;
ନିଶାଗମେ କ୍ରମେ ଲୋକକୋଳାହଳ
ନିବର୍ତ୍ତି ଆବସା ହେଉଛି ନିଶ୍ଚଳ;
ଜଳ ସ୍ଥଳ ନଭଃ ଜ୍ୟୋତ୍ସ୍ନାପରିପ୍ଳୁତ,
ସୃଷ୍ଟି ଦିଶେ ଯେସନେ ପାରଦଧଉତ;
ପ୍ରତିବିମ୍ବିତ ଦ୍ୱୀପ-ଶୈଳ-ତଳେ
ସ୍ପଷ୍ଟାକାରେ ଶୋଭେ ହ୍ରଦ-ଅନ୍ତସ୍ତଳେ;
କ୍ଷୀରୋଦ-ସୋଦର-ଜ୍ୟୋତ୍ସ୍ନାର୍ଣ୍ଣବେ ଭାସି
ଦିଶନ୍ତି ବିଶଦ ଗିରି, ବନ, ନାସୀ,
ସ୍ନିଗ୍ଧ ତରୁପତ୍ରେ, ମସୃଣ ଉପଳେ
ଜକଜକ ହୋଇ ଜ୍ୟୋତ୍ସ୍ନା ପ୍ରତିଫଳେ,
ସର୍ପେ ଯଥା ଚନ୍ଦ୍ରଚୂଡ଼ ତନୁ ଭଳ
ଛାୟା-ମିଶ୍ର-କରେ ଶୋଭେ ବନସ୍ଥଳୀ,
ପ୍ରଶାନ୍ତ, ନୀରବ ଗିରି ବନଦେଶ,
ନାହିଁ ଏଥି ନର ଚହଳର ଲେଶ,
ଦୂର ଝରନାଦ, ଝିଙ୍କାରି ଝଙ୍କାର
କରେ ନିଶୀଥିନୀ-ପ୍ରଭାବ ପ୍ରଚାର,
କଳ ଉପଦ୍ରବେ ତ୍ୟଜି ଲୋକାଳୟ
ଶାନ୍ତି କି ଏ ସ୍ଥଳେ ଲଭିଲେ ଆଶ୍ରୟ ?
ଚିଲିକା ! ତୋହର ଏହି ଶୋଭାବନ (୧)
ବର୍ଣ୍ଣୋତ୍ସବମୟ ଦୃଶ୍ୟ ସାୟନ୍ତନ
ଅଟେ ସର୍ବଶୋଭା-ସୀମନ୍ତର ଟୀକା,
ପ୍ରକୃତିର ଚାରୁ-ଆଲେଖ୍ୟ-ଶାଳିକା,
ଏ ସୁଖର ମୁହିଁ ନୁହଇ ଭାଜନ,
ମୋ ଭାଗ୍ୟେ ଏ ସିନା ଭଙ୍ଗୁର ସ୍ୱପନ,

(୧) ଶୋଭାବନ — [illegible]

ସଂସାର-ନଗରେ ସଂସାର-କାରାରେ,
ଯାପିବି ଜୀବନ ସଦା ହାହାକାରେ,
ବନ୍ଦୀ କାରାଗୃହେ ସ୍ମରୁଥାଇ ଯଥା
ଚିରହୃତ ତାର ପୂର୍ବ ସ୍ୱାଧୀନତା,
ସଂସାର-ନିରୟେ ଅଙ୍ଗ ଦେଇ ଢାଳି
କରିବି ଏହାକୁ ସ୍ୱର୍ଗର ସମାନ !
ମାଗୁଛି, ଚିଲିକା, ମେଲାଣି ତୋଠାରେ,
ବାହୁଡ଼ିବି ଏବେ ଦାରୁଣ ସଂସାରେ,
କରିଥିଲି ଆଶା, କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ,
ବିନା ପ୍ରୟାସରେ ସୌନ୍ଦର୍ଯ୍ୟ-ପିପାସା
ମେଣ୍ଟିବାର ଥିଲା ତୋହଠାରେ ଆଶା,
ଭାଗ୍ୟ ହୋଇଥିଲେ ରୁଚି-ଅନୁକୂଳ,
ଆଣିଥାନ୍ତି ମୁହିଁ ତୋର ରମ୍ୟକୂଳ,
କୁଟୀର ବିରଚି ଜଟିଆ-ଚରଣେ
କାଟିଥାନ୍ତି ଆୟୁ-ଶେଷ ନିକାଞ୍ଚନେ,
ମାତ୍ର ପରିଣାମେ ଛାୟାବାଜିବତ
ଆଶାରେ ସେ ଆଶା ହେଲା ପରିଣତ,
ସଂସାରେ ଥାଇ ମୁଁ ସଦା ଉଦାସୀନ,
ଉଦାସୀନ ପ୍ରାୟେ କଟାଇଲି ଦିନ,
ସଂସାର ସଙ୍ଗତେ ସଙ୍ଗୀ ହେବାପାଇଁ
କେବେହେଁ ମୋହର ମନ ବଳେ ନାହିଁ,
ହସି ଖେଳି ସେହ୍ନୁ ଗମନ୍ତି ସମୟ,
ଜୀବନ ମରଣ ମହୋତ୍ସବମୟ,
ଛାର ଭାଗ୍ୟ ମୋର ଲିଖିତ ପାଷାଣେ,
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ,
ଚିର ହାହାମୟ ଏ ଛାର ଜୀବନ,
ଜୀବନ ନୁହଇ, ଜୀବନ୍ତ-ମରଣ !
ଚିରଦିନ ଦୁଃଖପ୍ରହାରେ ଜର୍ଜର,
ପଟ୍ଟଶିଷ୍ୟ ମୁହିଁ ଦୁଃଖ-ଗୁରୁଙ୍କର,
ଦୁଃଖଦତ୍ତ ଜ୍ଞାନ-ଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ,
ସୁଖ ବୋଲି ଯାକୁ ବୋଲଇ ସଂସାର,
କରୁଥାଇ ତାକୁ ଦୂରୁଁ ମୁଁ ଜୁହାର;

ସୁଖରୂପେ ଯାହା ଜନନେତ୍ରେ ଦିଶେ,
ହାତେ ଆସେ, ହାତୁଁ ପଡ଼ିବାପାଇଁ ସେ,
ବସ୍ତୁ ନୁହଇ ସେ ଅଟଇଟି ଧୂମ,
ଅନ୍ୟ ନାମ ତାର ଆକାଶକୁସୁମ,
ତୋହର ସ୍ଥଳନେ ମୃଗ-ତୃଷା ପ୍ରାୟେ
ମନୋମୃଗକୁ ସେ ଜଗତେ ଭ୍ରମାଏ
ସେ ସୁଖେ ନ ଥିଲା କେବେ ମୋର ସ୍ପୃହା,
ଲକ୍ଷ୍ୟ ଥିଲା ମାତ୍ର ତୋର ଗିରଗୁହା,
ଶାନ୍ତ-ରସାସ୍ୱଦ ସେହି ଦେବୀ କୋଳେ
ବାଗ୍‌ଦେବୀ-ଚରଣ ପୂଜିବି ନରୋଳେ,
ପୂଜିଲେ ଯେସନେ ମଞ୍ଜି ନରଜନେ
ତୋ ମଧୁର-ରୂପ-ମଧୁ ଆସ୍ୱାଦନେ
ଭାଗ୍ୟବାନ ବେନି ବାଣୀଙ୍କ କୁମର—
କବି ବଳଦେବ, ଭଞ୍ଜ ବୀରବର; (୧)
କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ ?
ଦେଖୁଥିଲି ସିନା ଜାଗ୍ରତ-ସ୍ୱପନ !
ଆଶାମଦେ ମତ୍ତ ହୋଇ କେତେ ଥର
ପୂରାଇଲି ମନ-ମୋଦକେ ଉଦର,
ନ ଦେଖି ମୋହର ଜୀବନ-ପଞ୍ଜିକା
ଗଢ଼ୁଥିଲି ବସି ମନ-ଅଟ୍ଟାଳିକା,
ତୋଳୁଥିଲି ହିନା ବ୍ୟୋମ-ପୁଷ୍ପମାନ,
କରୁଥିଲି ମୃଗତୃଷା-ଜଳେ ସ୍ନାନ,
ଅଗ୍ରେ ପଡ଼ି ଭୀମ ଭବିତବ୍ୟ-ଛାୟା
ପଲକେ ଭୁଟିଲା ସେ ମୋହନ-ମାୟା,
ସେ ଛାୟା ଅନ୍ଧାରେ ଦେଖିଲି ଭୀଷଣ
ନୈରାଶ୍ୟ-ପ୍ରେତର ବିକଟ-ନର୍ତ୍ତନ,
ଗିରୁ ଛବି ତୋର ସେହି ବଶୀଷିକା
ଚଡ଼ି ଦେଲା ମନୁ ନିମିଷେ, ଚଳିକା !

(୧) ବଳଦେବ ରଥ ଚିଲିକାକୂଳସ୍ଥିତ ଖଲ୍ଲିକୋଟନିବାସୀ ଥିଲେ । ଉପେନ୍ଦ୍ର ଭଞ୍ଜ ଚିଲିକାକୂଳସ୍ଥିତ ବାଣପୁରରେ ବିବାହ କରି ସେଠାରେ କିଛିକାଳ ଅତିବାହିତ କରିଥିଲେ । ବାଣପୁର ରାଜକନ୍ୟା କାବ୍ୟଶାସ୍ତ୍ରବିନୋଦିନୀ ଥିଲେ ଏବଂ କାବ୍ୟ ରଚନାରେ ଭଞ୍ଜ କବିଙ୍କର ପ୍ରଧାନ ସହାୟ ଥିଲେ ।

ଦେଖ ବୀଣାପାଣି ! କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ୱଭାବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ
ବିନୁ ହିନା ମାତା ହୋଇଛି ବିବଶା,
ଭଜୁଛି ଅରଣ୍ୟ-ପ୍ରସୂନର ଦଶା,
କ୍ଷୁଦ୍ର ଶିପ୍ରା-ସ୍ରୋତ ବିଖ୍ୟାତ ଜଗତେ, (୧)
ମହାନଦୀ ନାମ ରହିଲା ଗୁପତେ !
ସୁରୂପା ଅଂଶୁପା ଲୋକେ ଅଗୋଚର ! (୨)
ପୂଜାସ୍ପଦ ହେଲା ଗୋଷ୍ପଦ-ପୁଷ୍କର ! (୩)
ତୋର କୃପ ବଳେ କ୍ଷୁଦ୍ର ମହାସ୍ଥାନ,
ତୋ କୃପା ବିହୁନେ ବଡ଼ ହୁଏ ସାନ,
ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ, (୪)
ମହାତୀର୍ଥରୂପେ ଲୋକେ ପୂଜା ପାଏ,
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭ ନାହିଁ ଗିରି-ସମାଜେ ଆସନ !
ତୋ କୃପା ବିହୁନେ ଉତ୍କଳମାତାର
ନାମେ ଖ୍ୟାତଗ୍ରନ୍ଥେ ପଡ଼ ନାହିଁ ଗାର,
ଭାଗ୍ୟ ଦୋଷେ ଅଙ୍ଗ ଅଜ୍ଞାନ-ଶର୍ବରୀ -
ଅନ୍ଧାରେ ଅଭାଗୀ ରହିଛି ଆବରି ।
ପାହିଲାଣି ଘୋର ତାମସୀ-ଯାମିନୀ,
ଫୁଟିବ ଉତ୍କଳ-ଭାଷା-କମଳିନୀ,
ଏ ଘୋର-ଯାମିନୀ-ଅବସାନ-ଶଂଶୀ
କାବ୍ୟତାରାରୂପେ ବୀର ଗଙ୍ଗବଂଶୀ (୫)
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ-କଲ୍ୟାଣ-ଭାଜନ
ରଖିଲେ ସୁନାମ ଯେହ୍ନୁ କାଳେ କାଳେ
ଗୁଣଯନ୍ତ୍ରେ ଖୋଳ ଯଶୋଗିରିଭାଳେ,

---

(୧) ଶିପ୍ରା—ଉଜ୍ଜୟିନୀର ନିକଟବର୍ତ୍ତୀ ନଦୀ । ଏ ନଦୀ ସଂସ୍କୃତ ସାହିତ୍ୟରେ ପ୍ରସିଦ୍ଧ । (୨) ବାଙ୍କି ଅନ୍ତର୍ଗତ ସୁରମ୍ୟ ହ୍ରଦ । ଓଡ଼ିଶାରେ ଏହାର ସୌନ୍ଦର୍ଯ୍ୟ ଅତୁଳନୀୟ । (୩) ଆଜମିର ନିକଟବର୍ତ୍ତୀ ହ୍ରଦ—ଆକୃତିରେ ଏହା ଅଂଶୁପାର ଦଶମାଂଶ ସୁଦ୍ଧା ହେବ ନାହିଁ । (୪) ମଥୁରାର ନିକଟବର୍ତ୍ତୀ ଗୋବର୍ଦ୍ଧନ ଓଡ଼ିଶାର କୌଣସି କୌଣସି ପୁଷ୍କରିଣୀର ହୁଡ଼ା ଅପେକ୍ଷା ଅଧିକ ଉଚ୍ଚ ନୁହେ । (୫) ବାମଣ୍ଡାର ମହାରାଜ ସୁଢ଼ଳ ଦେବ ଗଙ୍ଗବଂଶୀୟ ଅଟନ୍ତି ।

ତମ ପଳାଉଛି ହୋଇ ତରତର
ପ୍ରାଚୀନତଃ ନବ-ବଲ୍ଗରେ ଭାସ୍ୱର,
ରବିରୂପେ ଏବେ ଉଦୟ-ଅଚଳେ
ରବି-ବଂଶ-ମଣି ଉଦିତ ଉତ୍କଳେ, (୧)
ଶ୍ରୀମାନ ଶ୍ରୀରାମଚନ୍ଦ୍ର ଆଖ୍ୟାଧାରୀ,
ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ,
ସୌଦାମିନୀ-ଲାସ୍ୟେ ସମୁଜ୍ଜ୍ୱଳଶିଖ —
ମେଘାସନ-କୁଞ୍ଜ-ବିହାର-ରସିକ,
ଅଶ୍ୱ-ସଞ୍ଚାଳନେ ଅଦ୍ଭୁତ-କୌଶଳୀ,
ଦୃଷ୍ଟି-ଭେଦୀ ଯାର ବଜ୍ରନାଦୀ ନଳୀ,
ବୀଣାପାଣି-ପୂଜାଯୋଗ୍ୟ-କଞ୍ଜକୁଳ,
ଫୁଟିବାର ଏହି କାଳ ଅନୁକୂଳ,
ସେ ପଦ୍ମ ଫୁଟିବ କବି-ହୃଦ-ସରେ
ନବୋଦିତ ଏହି ଭଞ୍ଜ-ରବି-କରେ,
ପୂଜିବେ ତୋ ପଦ ଉତ୍କଳସନ୍ତତି
ସେହି ପଦ୍ମେ, ପଦ୍ମବାସିନି ଭାରତି !
ଚିଲିକା, ତୋ ତୀର ବନ୍ଧୁର ଲଳିତ
ସେହି ରବି କରେ ହେବ ଆଲୋକିତ,
ବାଣୀ-ଆବିର୍ଭାବ-ଯୋଗ୍ୟ ସ୍ଥଳ ଜାଣି
ଆଶ୍ରିବେ ତୋ ତୀର ବୁଧ କବି ଜ୍ଞାନୀ,
ହୋଇ ତୁ ତାଙ୍କର ବିହାର-ତଡ଼ାଗ
ଲଭିବୁ ଅଖିଳ-ଜନ-ଅନୁରାଗ !

---

(୧) ମୟୂରଭଞ୍ଜର ରାଜବଂଶ "କୌଶେୟ" ଅର୍ଥାତ୍ ରାମଚନ୍ଦ୍ରଙ୍କ ଜ୍ୟେଷ୍ଠପୁତ୍ର କୁଶଙ୍କ ବଂଶୋଦ୍ଭୂତ ଅଟନ୍ତି ।

( ୯ )

## ମହାଯାତ୍ରା ।



### ପ୍ରଥମ ସର୍ଗ ।

ପଙ୍କଜବାସିନୀ ଦେବି, ଉତ୍କଳ ଭାରତୀ
ସାରଳେ, କି କଲେ, କହ, କୁରୁଚୂଡ଼ାମଣି, (୧)
ଶୁଣିଲେ ଯେକାଳେ ବୀର ବାର୍ତ୍ତାହର ମୁଖେ
ପ୍ରଭାସେ ଯାଦବଙ୍କର ଜ୍ଞାତି-କ୍ଷୟକାରୀ (୨)
ମହାହବ, ଧୀରମଣି ଧୈର୍ଯ୍ୟ ଧରି, ଆହା,
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?
କି କଲେ ଶୁଣିଣ ଚିର-ବିପଦ-ବାନ୍ଧବ
ଯଦୁବଂଶ-ଅବତଂସ ଯାଦବପତିର (୩)
ତ୍ରିଦିବ-ପ୍ରୟାଣ-ବାର୍ତ୍ତା, କହ କୃପା ବହି ।
ଯଦୁବଂଶ ଧ୍ୱଂସ ଶୁଣି କୁରୁକୁଳମଣି
ଯୁଧିଷ୍ଠିର, କନିଷ୍ଠଙ୍କି କହିଲେ ସମ୍ବୋଧି,
"ହେ ବୀର, ଦୁସ୍ତର କୁରୁସମର-ସାଗରେ
( ତିମି ତିମିଙ୍ଗିଳ-ରୂପେ ଭ୍ରମିଲେ ଭୈରବେ
ଯହିଁ ମହାରଥିପତି ଭୀଷ୍ମ ଦ୍ରୋଣ ଆଦି ) (୪)
ଯେ ମହାପୁରୁଷ ନିଜ କୃପା-ତରଣୀରେ
ପାରି କଲେ ପାଣ୍ଡବଙ୍କୁ କର୍ଣ୍ଣଧାରରୂପେ,
ଚଳୁଥିଲେ ଅନୁକ୍ଷଣ ଶ୍ରୀକରେ ଯାଙ୍କର
ନ୍ୟାୟବଳ-ବଳରୂପେ କୋଟି କୋଟି ପ୍ରାଣୀ, (୫)
ଗଲେ ମର୍ତ୍ତ୍ୟଧାମ ତେଜି ନିଜ ଧାମେ ସେହି
କେଶବ, କି ସୁଖେ ଆଉ ରହିବା ସଂସାରେ ?
ସଂସାରର ଲୀଳା ଖେଳା ସରିଲା ଆମ୍ଭର,
ସଂସାର-ବିଷୟ-ବିଷେ ଜରଜର ହୋଇ

---

(୧) ସାରଳା ଦେବୀଙ୍କ ମନ୍ଦିର ମହାନଦୀର ଅଦୂରବର୍ତ୍ତୀ ଝଙ୍କଡ଼ ଗ୍ରାମରେ ଅବସ୍ଥିତ । ଓଡ଼ିଶାରେ ଏହି ଦେବୀ ବିଦ୍ୟାର ଅଧିଷ୍ଠାତ୍ରୀରୂପେ ପ୍ରତିଷ୍ଠିତ । କୁରୁଚୂଡ଼ାମଣି—ଯୁଧିଷ୍ଠିର । (୨) ପ୍ରଭାସ—ଦ୍ୱାରକାର ଅଦୂରବର୍ତ୍ତୀ ସମୁଦ୍ରକୂଳସ୍ଥିତ ତୀର୍ଥ । ଋଷି-ଅଭିଶପ୍ତ ଯଦୁବଂଶୀୟମାନେ ଏହିଠାରେ ସୁରା ପାନରେ ମତ୍ତ ହୋଇ ପରସ୍ପର ଯୁଦ୍ଧ କରି ନିହତ ହୋଇଥିଲେ । (୩) ଯାଦବପତି - ଶ୍ରୀକୃଷ୍ଣ । (୪) ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଦୁର୍ଯ୍ୟୋଧନ-ପକ୍ଷୀୟ ପ୍ରଧାନ ଯୋଦ୍ଧା ଥିବାରୁ ରଣସମୁଦ୍ରର ତିମି ତିମିଙ୍ଗିଳରୂପେ ବର୍ଣ୍ଣିତ ହୋଇଅଛନ୍ତି । (୫) ନ୍ୟାୟବଳ—ଶତରଞ୍ଜ ଖେଳର ପୁତ୍ତଳିକା ।

ସାରସତ୍ତ୍ୱ ପାସୋରିଣ ସାରିଲୁଁ ଆୟୁଷ;
ଦୁଃଖମୟ ଭବ ହିନା, ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜଡ଼ିତ ସେ ସଦା
ମହାଦୁଃଖେ, ଆଲୋକ ସେ ଜଡ଼ିତ ତମସେ,
ହତ ହେଲେ ସୁଯୋଧନ କୁରୁକ୍ଷେତ୍ର ରଣେ, (୧)
ଜୟୀ ହୋଇ ଆମ୍ଭେ ତହିଁ ହେଲୁଁ ଜୀବନ୍ମୃତ; (୨)
ପୁତ୍ର-ମିତ୍ର-ରକ୍ତ-ସ୍ରୋତେ ସନ୍ତରି ସନ୍ତାପେ
ସନ୍ତାପର ସିଂହାସନ ହେଲା ସିନା ଲାଭ;
ଭଙ୍ଗୁର ଭବରି, ଭାଇ, ସୁଖ ଏହିପରି !
ଧନ୍ୟ ସେହି ଅତନ୍ଦ୍ରିତ ଋଷିବୃନ୍ଦ ଭବେ, (୩)
ବିଷୟବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖବୃଦ୍ଧି ତୃଷ୍ଣାକ୍ଷୟେ ତୃଷ୍ଣା-ଲୟେ ପୁଣି
ସୀମାତୀତ-ସୁଖରାଜ୍ୟେ ବିହରନ୍ତି ମୁଦେ, (୪)
ନିରୁଦ୍ବେଗେ ରହନ୍ତି ସେ କାଳକୁ ଅନାଇ
ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ,
ମାଟିର ଏ ଘଟ ନଷ୍ଟେଁ ମିଶିବ ମାଟିରେ,
ସର୍ବହର କାଳ ମହାବଳଠାରୁ ବଳୀ !
କଠୋର ଏ ଧନୁ ତୋର, କଠୋର ଭୀମର
ମହାଗଦା, ଗ୍ରାସଇ ସେ ପକ୍ୱ-ରମ୍ଭା ପରି !
ଲଗାଇଛି ଫାଶ ସେହୁ ସମସ୍ତଙ୍କ ଗଳେ—
କି ରାଜା, କି ପ୍ରଜା, କିବା ବୀର, କିବା ଭୀରୁ,
ଗୁଣୀ, ଗୁଣହୀନ ଅବା ସୁନ୍ଦର, କୁତ୍ସିତ,

---

(୧) ସୁଯୋଧନ— ଦୁର୍ଯ୍ୟୋଧନ । (୨) ପାଣ୍ଡବପକ୍ଷ ଜୟୀ ହୋଇଥିଲେ ସତ୍ୟ, ମାତ୍ର ସେ ଜୟ ମଧ୍ୟ ଶୋଚନୀୟ ହୋଇଥିଲା । ପାଣ୍ଡବମାନଙ୍କର ପ୍ରଧାନ ଆତ୍ମୀୟ ଯଥା— ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଅଭିମନ୍ୟୁ ଘଟୋତ୍କଚ, ଦ୍ରୌପଦୀଙ୍କ ପଞ୍ଚପୁତ୍ର ପ୍ରଭୃତି କୁରୁକ୍ଷେତ୍ରରେ ହତ ହୋଇଥିବାରୁ ଜୟୀ ପାଣ୍ଡବମାନେ ସୁଦ୍ଧା ଜୀବନ୍ମୃତ ପ୍ରାୟ ହୋଇଥିଲେ । ତେଣୁ ଯୁଧିଷ୍ଠିରଙ୍କ ସିଂହାସନ "ସନ୍ତାପର ସିଂହାସନ" ହୋଇଥିଲା । (୩) ଅତନ୍ଦ୍ରିତ— ଜାଗରୁକ, ସଂସାରମାୟାରେ ଯେଉଁମାନେ ମୁଗ୍ଧ ନୁହନ୍ତି ।

(୪) ବିଷୟୀ ଲୋକମାନେ ବିଷୟବୃଦ୍ଧି ଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ଋଷିମାନେ ବାସନାକ୍ଷୟଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ବାସନା ଲୟ ହେଲେ ସୀମାବଦ୍ଧ ସୁଖ ଅସୀମ ହୁଏ । କ-ରାଶି ଶୂନ୍ୟଦ୍ୱାରା ବିଭକ୍ତ ହେଲେ ତାହାର ଭାଗଫଳ ଅସୀମ, ଏହି ଗାଣିତିକ ସୂତ୍ର ସହିତ ଏହି ଭାବର ସାଦୃଶ୍ୟ ଅଛି ।

ଧନିକ, ନିର୍ଧନ, ଅବା ପ୍ରବଳ, ଦୁର୍ବଳ,
ସେ ଗୁପତ ଫାଶୁ କେହି ନୁହନ୍ତି ମୁକତ,
ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଲେ
ଭୂମିଷ୍ଠ ହୁଅଇ ଜୀବ ଜନନୀ-ଜଠରୁ;
ନିଜ ଦିନ କ୍ଷଣ ଦେଖି ଦୁରନ୍ତ ସଂହାରୀ
ଅତର୍କିତେ ସହାରିବ ଓଟାରି ସେ ଫାଶ, (୧)
କାହାରି ବେଳକୁ କାଳ ଅନାଇଁ ନ ବସେ,
ପାସୋରିଲେ ତାକୁ ସେହି କେବେ ନ ପାସୋରେ,
ଅଭୂତ ସେ ଶତ୍ରୁ; ତାକୁ ରୋଧିଲେ ତୋରଣ,
ପାଚେରି ଲଙ୍ଘି ଶ ପୁରେ ପଶେ ଅନାୟାସେ,
ତାଳକ-କୀଳିତ ଗୃହେ ପଶେ ଅଳକ୍ଷିତେ (୨)
ନ ଫିଟାଇ ସେ ତାଳକ, କ୍ଷତ୍ରଶିରୋମଣି,
ସେ ଆସି ଖୋଜିବା ଆଗୁଁ ଏ ଭବର ମାୟା
ତେଜ, ହେ ନରେନ୍ଦ୍ର, ଚାଲ ଖୋଜିବା କାଳକୁ ।"
ବୋଇଲେ କନିଷ୍ଠ ତାହୁଁ ଅଗ୍ରଜ ସମ୍ମୁଖେ,
"ହେ ଗୋସାଇଁ, ଶୁଣ ନାହିଁ କାଳ କାହାରିକ,
ସମସ୍ତଙ୍କୁ ଲୋଡି ନଏ ଯଥାକାଳେ ସେହୁ,
ମୁଁ ଯାଇଁ ଲୋଡିବ ତାକୁ ତୁମ୍ଭର ସଦନେ ।"
ଭୀମ, ବେନି ମାଦ୍ରୀସୁତେ କନିଷ୍ଠ-ବଚନେ
ଜଣାଇଲେ ଅଭିମତ ପରମ ଆଗ୍ରହେ,
ହିମାଦ୍ରି-ପ୍ରୟାଣେ ସର୍ବେ ବଳାଇଲେ ମନ ।
ଶୁଣି ଏ ସଙ୍କଳ୍ପ ଦେବୀ ଦ୍ରୁପଦନନ୍ଦିନୀ
ସହଚରୀ ହେବାପାଇଁ ବାନପ୍ରସ୍ଥବ୍ରତେ
କଲେ ନାନାମତେ ଅଳି ଭୂପତି-ସମ୍ମୁଖେ;
କାନ୍ଦିଣ କହିଲେ ଦେବୀ ଗଦଗଦଭାଷେ—
"ପାଣ୍ଡବର ବନ୍ଧୁ ବୋଲି ବାନ୍ଧିଥିଲେ ନାନା
ଭୁବନେ ଯେ ମହାପ୍ରଭୁ, ସେ ପ୍ରଭୁ ବିହୁନେ
କେଉଁ ଲୋଡ଼ା ପାଣ୍ଡବର, ନାଥ, ଏ ସଂସାରେ ?
କେଉଁ ଲୋଡ଼ା ଏ ସଂସାରେ ପାଣ୍ଡବ ବିହୁନେ
ପାଣ୍ଡବ-ଶରଣା ଦୀନା ଦ୍ରୁପଦକନ୍ୟାର ?

---

(୧) କାଳ କାହାରି ସୁବିଧା ଅସୁବିଧା, ସମୟ ଅସମୟ ପ୍ରତି ଦୃକ୍‌ପାତ କରେ ନାହିଁ । ନିଜର ସମୟ ବୁଝି ପ୍ରାଣୀମାନଙ୍କୁ କବଳିତ କରେ । (୨) ତାଲିକ-କୀଳିତ — ତାଲାଦ୍ୱାରା ବନ୍ଦ ।

କି ଲୋଡ଼ା ମୋହର ଅଶ୍ରୁ ଚିକ୍ତ-ରାଜଭୋଗେ ?
କି ସୁଖ ହେ ପାଣ୍ଡୁନାଥ, ଏ ଦଗ୍ଧପର୍ଣ୍ଣେ
ଗୃହେ ଥାଇ ? ଥାଉ ଗୃହ ଗୃହ-ସୁଖ ନେଇ,
ରାଜ୍ୟ ରାଜସୁଖ ନେଇ, ଏ ବେନଙ୍କି ଛାଡ଼ି
ଛାୟା ପ୍ରାୟ ତୁମ୍ଭ ସଙ୍ଗେ ବିଚରିବି ବନେ,
ସୁଖୀ ଥିଲି ବନେ, ଦୁଃଖୀ ହେଲି ସିଂହାସନେ,
ଦୁଃଖୀ ପାଇଁ ସ୍ଥାନ କାହିଁ ସଂସାର-ଗହ୍ୱରେ ? (୧)
ଦୁଃଖୀ ଲୋଡ଼େ ନକାଞ୍ଚନ, ଦୁଃଖିର ନୟନେ
ସଂସାର-ସମ୍ପଦ ସିନା ମହାବିଡ଼ମ୍ବନା !
ନଳଳିନୀ-ନୟନେ, ନାଥ, ଯେସନ ଚନ୍ଦ୍ରିକା,
ଅକ୍ଷମ ସମ୍ପଦ ଦୁଃଖ ମେଣ୍ଟାଇବା ପାଇଁ;
ପକାଏ କେବଳ ମାତ୍ର କଣ୍ଟକ ସେ ପଥେ
ସମବେଦନାର, ନାଥ, ଏହି ତାର ଖ୍ୟାତି ! (୨)
ଭେଦାଭେଦ ବାଛିବାର ପ୍ରାସାଦେ କୁଟୀରେ
ସରିଛି ସେ ଦିନ ମୋର ଚିରଦିନଲାଗି;
ନୁହଇ କେବଳ ମୁହିଁ ସମ୍ପଦ-ସଙ୍ଗିନୀ
ପାଣ୍ଡବର, ପୂର୍ବେ ଯଥା ସେବୁଥିଲି ବନେ
ଚରଣେ ତୁମ୍ଭର, ଏବେ ସେବିବି ସେମନ୍ତେ,
ଏହି ଭିକ୍ଷା ମାଗେ ଦାସୀ ଶ୍ରୀପାଦେ ଗୋସାଇଁ ।"
ରୁକ୍ମିଣୀ ଯୁଧିଷ୍ଠିର ଯାଜ୍ଞସେନୀ-ବାଣୀ
ଶୁଣି ଯିବାପାଇଁ ତାଙ୍କୁ ଦେଲେ ଅନୁମତି ।
ତହୁଁ ରାଜସିଂହାସନେ ପରୀକ୍ଷିତଙ୍କର (୩)
ଅଭିଷେକ-ବିଧି ରାଜା ଯତନେ ସମ୍ପାଦି,
ବୈଶ୍ୟାଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ରସୁତ
ଯୁଯୁତ୍ସୁଙ୍କୁ ନିଯୋଜିଲେ ପ୍ରତିନିଧିପଦେ (୪)
ସାମ୍ରାଜ୍ୟଶାସନପାଇଁ ଶୈଶବେ ତାଙ୍କର,

---

(୧) ସଂସାରରେ ସମସ୍ତେ ସ୍ୱାର୍ଥସଂଗ୍ରାମରେ ବ୍ୟତିବ୍ୟସ୍ତ । ଦୁଃଖିର ଦୁଃଖରେ ସହାନୁଭୂତି ଦେଖାଇବାକୁ କାହାର ଅବସର ନ ଥାଏ ।

(୨) ଯେଉଁମାନଙ୍କର ସମ୍ପଦ ଅଛି, ସେମାନେ ନିଜ ଦୁଃଖରେ ଅନ୍ୟର ସହାନୁଭୂତି ପାଆନ୍ତି ନାହିଁ । (୩) ପରୀକ୍ଷିତ ଅଭିମନ୍ୟୁ ପୁତ୍ର । (୪) ଯୁଯୁତ୍ସୁ— ଧୃତରାଷ୍ଟ୍ରଙ୍କ ପୁତ୍ର । କୁରୁଯୁଦ୍ଧ ଆରମ୍ଭ ସମୟରେ ଯୁଧିଷ୍ଠିର ଧର୍ମଡାକ ଦେବାରୁ ଧର୍ମଭୀରୁ ଯୁଯୁତ୍ସୁ ଦୁର୍ଯ୍ୟୋଧନଙ୍କ ପକ୍ଷ ପରିତ୍ୟାଗ କରି ନିଜ ଦଳ ସହିତ ପାଣ୍ଡବ ଦଳରେ ମିଶିଥିଲେ ।

ତହୁଁ ବୃଦ୍ଧା ସୁଭଦ୍ରାଙ୍କୁ ଚାହିଁ କରଯୋଡ଼ି
କହିଲେ, "ଏ ଶିଶୁ, ଦେବ, ହେବ ଦଣ୍ଡଧର
ମୋର ଅନ୍ତେ ହସ୍ତିନାର ରାଜସିଂହାସନେ,
ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ !
ଗୋଟିଏ ପ୍ରସୂନ, ଆହା, ବଞ୍ଚେ ବଶ-ରାଜି-
କାଳ-ଦାବାନଳ-ମୁକ୍ତ କୁରୁବଂଶବନେ ! (୧)
ଭବତଳେ ଜୀବନ୍ତ ଏ ଦୟା-ନିଦର୍ଶନ
କାଳଦର୍ପହାରୀ ଦେବ ଦୀନବନ୍ଧୁଙ୍କର !
ପତି-ପିତୃ-ଭ୍ରାତୃ-ଶୋକେ ଆତୁରା ଉତ୍ତରା
ଅଶ୍ୱତ୍ଥାମା-ଅସ୍ତ୍ରାନଳେ ତ୍ରସ୍ତ ହୋଇ ଯେବେ
ପଶିଲେ ଶରଣ ଗଲା ଶରଣ-ବତ୍ସଳ-
ପାଦପଦ୍ମେ, ଚକ୍ରାୟୁଧ ଚକ୍ରର ତଡ଼ାଳେ
ଝଟିତି ଆଚ୍ଛାଦି ସେହି ଦୁଃଖିନୀ ଗରଭ
ବଞ୍ଚାଇଲେ ଶିଶୁ ସହ ଜନନୀ-ଜୀବନ;
ପାଳିବ ଏ ଶିଶୁ, ଦେବ, ପରମ ଯତନେ
ଗୃହାଶ୍ରମେ, ମୋର ଏହି ଅନ୍ତିମ ନିୟୋଗେ । (୨)
ସୁଭଦ୍ରାଙ୍କୁ ଏହିରୂପେ ଆଦେଶି ନୃମଣି
ଆଚରିଲେ ଶ୍ରାଦ୍ଧବିଧି ମାତୁଳବଂଶର,
ଉଗ୍ରସେନ ବସୁଦେବ ଆଦି ଗୁରୁଜନେ
ବିହିତ-ବିଧାନେ ଦେଇ ପ୍ରେତ-ଜଳାଞ୍ଜଳି ; (୩)
ଅସ୍ତ୍ରଗୁରୁଙ୍କର ଗୁରୁ ବୃଦ୍ଧ ଭରଦ୍ୱାଜ, (୪)
ବଦରିକାଶ୍ରମବାସୀ ଋଷି ଦ୍ୱୈପାୟନ, (୫)
( ଭାରତ-ଭାରତୀ ଯାଙ୍କ ରସନା-ନର୍ତ୍ତକୀ )
ସୂର୍ଯ୍ୟ-ଶିଷ୍ୟ ଯାଜ୍ଞବଲ୍କ୍ୟ ସଂହିତା-ପ୍ରଣେତା,
ଯଜ୍ଞରତ ଜନକର ଗୁରୁ ପୁରାତନ, (୬)
ମାର୍କଣ୍ଡେୟ କଳ୍ପଜୀବୀ, ଦେବର୍ଷି ନାରଦ,

---

(୧) ଯୁଦ୍ଧରେ ସମସ୍ତେ ନିହତ ହୋଇଥିବାରୁ ଏକମାତ୍ର ପରୀକ୍ଷିତ ହସ୍ତିନା ସିଂହାସନର ଉତ୍ତରାଧିକାରୀ ଥିଲେ । (୨) ଅନ୍ତିମ ନିୟୋଗେ— ଶେଷ ଆଦେଶରେ । (୩) ଯୁଧିଷ୍ଠିର ଯଦୁବଂଶୀୟ ବସୁଦେବ ପ୍ରଭୃତିଙ୍କର ଭଣଜା ଥିଲେ । (୪) ଭରଦ୍ୱାଜ ପାଣ୍ଡବମାନଙ୍କ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଗୁରୁ ଅର୍ଥାତ୍ ପିତା । (୫) ଦ୍ୱୈପାୟନ— ବ୍ୟାସ । ମହାଭାରତପ୍ରଣେତା । (୬) ଜନକଙ୍କ ଦୀକ୍ଷାଗୁରୁ ଯାଜ୍ଞବଲ୍କ୍ୟ ଭାରତବର୍ଷର ଜଣେ ପ୍ରଧାନ ସ୍ମୃତିକାର ।

ଅନନ୍ତେ ଅନନ୍ତ-ନାମ-କୀର୍ତ୍ତନ-ରସିକ, (୧)
ଯା ସଙ୍ଗୀତେ ପ୍ରେମୋଲ୍ଲାସେ ପ୍ରସ୍ଫୁରଣ ଛଳେ
ବ୍ୟୋମାଙ୍ଗେ ଲଭନ୍ତ ନବେ ଜ୍ୟୋତିଷ୍କ-ମଣ୍ଡଳୀ,
ଜ୍ଞାନୀନ୍ଦ୍ର ବାଦରାୟଣି ଆଦି ମୁନିଗଣେ (୨)
ମହାଦରେ ଡାକି ରାଜା ଦେଲେ ନାନା ଦାନ—
ଗୋ, ଭୂମି, କାଞ୍ଚନ, ରତ୍ନ, ବସ୍ତ୍ର, ଆଭରଣ,
ଗଜ, ବାଜି, ମହୋଜ୍ଜ୍ୱଳ ସ୍ୟନ୍ଦନାଦି କରି
ସ୍ୱର୍ଗତ ଶାରଙ୍ଗଧର କେଶବ ଉଦ୍ଦେଶେ; (୩)
କୁଳଗୁରୁ କୃପାଚାର୍ଯ୍ୟ-ପଦେ ପରୀକ୍ଷିତେ (୪)
ସମର୍ପି କହିଲେ, "ଗୁରୋ, ଦାସ-ଅନୁଦାସ
ଏ କୁମର, ଦୟା ବହି ବାଲ୍ୟେ ଯଥା ମୋତେ
ଶିଖାଇଲ ଧନୁର୍ବେଦ, ଏହାକୁ ସେପରି
ଶିଖାଇବ, ଏହି ଭିକ୍ଷା ମାଗୁଛି ପଦ୍ମରେ।
ଆହେ ରଣବିଶାରଦ ସେନାପତିଦଳ,
ତୁମ୍ଭ ବାହୁ-ଛାୟା-ତଳେ ବଢ଼ୁ ଏ କୁମର
ମଣ୍ଡିବାକୁ ହସ୍ତିନାର ଶୂନ୍ୟ ସିଂହାସନ,
ରଣମୁଖେ ଅଗ୍ରଯାୟୀ ଥିଲା ଯେ ତୁମ୍ଭର,
ଯା ବିକ୍ରମେ ବିଚଳିତ ହୋଇ ରଣସ୍ଥଳେ
ଲଙ୍ଘିଣ ସମର-ଧର୍ମ ଆଚାର୍ଯ୍ୟ ଆପଣେ
ଅସମ ସମରେ ଯାର ସାଧିଲେ ନିଧନ,
କୁରୁସେନାବିମର୍ଦ୍ଦନ, ପରବ୍ୟୂହଭେଦୀ
ମହାରଥୀ ଅଭିମନ୍ୟୁ-ହୃଦୟ-ଶୋଣିତ
ବହୁଛି ଏ ଶିଶୁ ଦେହେ, ଏହା ନ ବିସୋରି
ରଖିବ ଶିଶୁକୁ ନିଜ ଦେହ ଆବରଣେ,
ନେତ୍ରେ ନେତ୍ର-ପତ୍ର ଯଥା, ପ୍ରମାଦେ ସଙ୍କଟେ;
ସାଙ୍ଗ ହେଲା ଆଜଠାରୁ ରାଜପଣ ମୋର,
ସମସ୍ତଙ୍କୁ କର ଯୋଡି ମାଗୁଛି ମେଲାଣି,
ବନେ ରହି ଆଚରିବି ଆରଣ୍ୟକ-ବ୍ରତ।"
ବିଷଣ୍ଣ ସରବେ ହେଲେ ରାଜାଙ୍କ ବଚନେ,
"ରାଜ୍ୟ ତେଜି ଯିବେ ରାଜା" ଏ ବାର୍ତ୍ତା ନଗରେ

---

(୧) ଆକାଶରେ ଈଶ୍ୱରଙ୍କ ନାମକୀର୍ତ୍ତନରେ ରତ। (୨) ବାଦରାୟଣି—ଶୁକଦେବ।
(୩) ପରଲୋକଗତ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ। କୃଷ୍ଣଙ୍କ ଧନୁର ନାମ 'ଶାର୍ଙ୍ଗ' ଥିଲା।
(୪) କୃପାଚାର୍ଯ୍ୟ—ଦ୍ରୋଣଙ୍କ ଶ୍ୟାଳକ। ପାଣ୍ଡବମାନଙ୍କର ଅନ୍ୟତର ଅସ୍ତ୍ରଗୁରୁ।

ନବରୁ ନଗରେ, ତହୁଁ ବ୍ୟାପି ଜନପଦେ,
ବୁଡ଼ାଇଲା ଶୋକୋଚ୍ଛ୍ୱାସେ ସମଗ୍ର-ମେଦନୀ,
ବୋଲିବୋଲି ହେଲେ ଲୋକେ, "ଯାର ଛତ୍ର-ତଳେ
ଜାଣୁ ନ ଥିଲେଟି ଜନେ, ନିର୍ଦ୍ଦୋଷ ଯାବତ,
ରାଜଦଣ୍ଡ ଅଛି ବୋଲି; ଦୋଷୀ ଦେଖି ପୁଣି
ନ ସଂହାର ବହୁଥିଲା ସଂସ୍କାର ମାତର
କରୁଣା-କୋମଳ-ନ୍ୟାୟ ଯାର ଏ ଜଗତେ,
ତନଲୋକେ ପୁଣ୍ୟଶ୍ଳୋକ ସେହି କୁରୁମଣି
ଯିବେ କି ଆମ୍ଭଙ୍କୁ ଛାଡ଼ି ? ଆହା ରେ ଦଇବ !
ସତେ କି ସାଧିବୁ ଦାଉ ତୁହି ଏତେଦିନେ ?
ହେ ଧର୍ମ, ହେ ସତ୍ୟ, ତୁମ୍ଭେ ହେଲଟି ଅନାଥ !
କେ ଆଉ ନିଷ୍କାମେ ଧନ ପ୍ରାଣ ମାୟା ତେଜି
ତୁମ୍ଭଙ୍କୁ ତୁମ୍ଭର ଲାଗି ଭଜିବ ଏ ଭବେ ?
ଦୟା, କ୍ଷମା, ତୁମ୍ଭେ ଏବେ ହେଲଟି ଅଧୀର !
ଅଧୀରା ମା ବସୁନ୍ଧରା !—ଅନାଥା-ସନ୍ତତି
ହେଲେ ସିନା ଏତେଦିନେ ଦୀନହୀନ ପ୍ରଜା !"
ଚଉଦିଗୁଁ ପ୍ରଜାପୁଞ୍ଜ ଆସି ଦଳେ ଦଳେ
( ଚଉପାଶୁଁ ହ୍ରଦମୁଖେ ଗିରିସ୍ରୋତ ଯଥା )
ନବର-ପ୍ରାଙ୍ଗଣ-ପ୍ଲାବୀ ଲୋତକ-ପ୍ଲାବନେ
ନୃପଙ୍କ ଛାମୁରେ କଲେ ରହିବାକୁ ଅଳି;
ଭବର ଭଙ୍ଗୁର ଭାବ ଜାଣି ଯୁଧିଷ୍ଠିର
ନିବେଶିଣ ଥିଲେ ଚିତ୍ତ ସୁଚେତା ଶାଶ୍ୱତେ, (୧)
ତେଣୁ ପ୍ରଜାଙ୍କର ମାୟା ତୁଟିଲେ ସହଜେ ।
ସମାଦରେ ଯଥାବିଧି ଆମନ୍ତ୍ରି ଭୂପତି
ସାମନ୍ତ-ରାଜନ୍ୟ-ଦଳେ, ପୌର, ଜାନପଦେ,
ମହାଯାତ୍ରା ଲାଗି ତହୁଁ ହେଲେ ସଜ୍ଜୀଭୂତ
ଚାରି ଭାଇ କୃଷ୍ଣା ସହ; ବରାଙ୍ଗୁ ଉତାରି
ରତ୍ନମୟ ଶିରସ୍ତ୍ରାଣ, ସାରସନ, ଭୂଷା,
ବସନ ଭାସ୍ୱର ଯେତେ ଗଢ଼ା ସୌରକରେ,
ପିନ୍ଧିଲେ ବଲ୍କଲ ରାୟେ; ଭୀମ, ସବ୍ୟସାଚୀ,
ଯାମଳ ସୋଦରେ ବେନି, ପାଟମହାଦେଇ
ଦ୍ରୁପଦଦୁଲଣୀ ପଦ୍ମପଲାଶ-ଲୋଚନା,

---

(୧) ଶାଶ୍ୱତେ — ଭଗବାନଙ୍କ ପ୍ରତି ।

ବଲ୍କଲୀ ରାଜାଙ୍କୁ ଦେଖି ସର୍ବେ ହୃଷ୍ଟମନେ
ସଜ ହେଲେ ସେହିକ୍ଷଣି ଆରଣ୍ୟକ-ବେଶେ,
ପୂର୍ବେ ଦ୍ୟୁତେ ପରାଜିତ ହୋଇ ପଞ୍ଚଭାଇ
କୃଷ୍ଣା ସଙ୍ଗେ ଯେଉଁ ବେଶେ ବାହାରଣ ଥିଲେ
ପୁରୁଁ, ପୁରନାରୀବ୍ରଜ ପୁଣି ସେହି ବେଶେ
ଦେଖି ସର୍ବେ ଜରଜର ହେଲେ ମହାଶୋକେ,
ମର୍ମଭେଦୀ ହାହାକାରେ ପୂରିଲା ନଗର,
ମାତ୍ର ଏ ବିଷାଦେ ଭାଗୀ ନୋହିଲେ ଯାତ୍ରିକେ,
ଥୋଇଥିଲେ ମନ ଯେଣୁ ମାୟା-ମୋହ-ପାରେ
ତାମସ-ପ୍ରପଞ୍ଚାତୀତ ଅନାମୟ ଧାମେ;
ଆଚରି ସେ କାଲୋଚିତ-ଯଜ୍ଞ ପାଣ୍ଡୁସୁତେ
ଶୋଭନା-ହସ୍ତିନା-ସ୍ୱୈର୍ଯ୍ୟରସନା-ଜାହ୍ନବୀ –
ଜଳେ ଯଜ୍ଞାନଳ ତହିଁ କଲେ ଜଳସାତ;
କୃଷ୍ଣା ସଙ୍ଗେ ପଞ୍ଚଭାଇ ବାହାରିଲେ ପୁରୁ,
ଦିଶିଲା ଅନାଥା ପ୍ରାୟ ହସ୍ତିନାନଗରୀ
ବିକଳା, ଯେସନ ରାହୁଗ୍ରସ୍ତ-ଶଶିକଳା;
ରୌଦ୍ରବେଗେ ଉଠିଲା ମହାଶୋକର ତହଲ;
ଉଦ୍ବେଳ ସାଗର ପ୍ରାୟେ ଲକ୍ଷ ଲକ୍ଷ ପ୍ରଜା
ଗଳଦଶ୍ରୁ ନେତ୍ରେ, ପୁଣି ଦୀନହୀନ ବେଶେ
ଉଚ୍ଚୈଃସ୍ୱରେ କାନ୍ଦି ସର୍ବେ ଗୃଲିଲେ ପଛରେ,
ପାଦଚାରୀ ବଲ୍କଳୀ ଦ୍ରୌପଦୀଙ୍କି ଦେଖି
ବକ୍ଷେ କର ମାରି ଉଚ୍ଚେ କାନ୍ଦିଲେ ଅଙ୍ଗନା
ଅଳିନ୍ଦେ, ଗବାକ୍ଷେ, ଦ୍ୱାରେ, ପ୍ରାସାଦଶିଖରେ ।
ଚାରି ସହୋଦର ପୁଣି ଯାଜ୍ଞସେନୀ ମେଳେ
ଚାଲିଲେ ରାଜେନ୍ଦ୍ର ତେଜି କୁଳ-ରାଜଧାନୀ;
ସ୍ନେହବଶେ ଶ୍ୱାନଟିଏ ଚାଲିଲା ପଶ୍ଚାତେ,
ଚାଲିଲେ ରାଜେନ୍ଦ୍ର ସହ ଲକ୍ଷ ଲକ୍ଷ ପ୍ରଜା,
ପାତ୍ର, ମନ୍ତ୍ରୀ, ସଭାସଦ, ନଗର-ନଯୋଗ,
ବହୁଦୂର ଯାଇ ଗୃହେ ବାହୁଡ଼ି ଯିବାକୁ
ରାଜାଙ୍କ ବିନୟ ବାଣୀ ଶୁଣି ପୁନଃ ପୁନଃ
"ଆଉ ଖଣ୍ଡେ" "ଆଉ ଖଣ୍ଡେ" କହି କଲେ ଅଳି
ବାଷ୍ପାକୁଳ ନେତ୍ରେ, ବାଷ୍ପ ଗଦ୍‌ଗଦବଚନେ;
ପୋଷିଥିଲେ ଆଶା ଅବା ଫେରିବେ ପାଣ୍ଡବେ
କୁରୁପୁରେ, ବୃଥା ଆଶା ! ଫେରଇ କି କେବେ

ସିନ୍ଧୁଗାମୀ ସ୍ରୋତ, ଅବା ରୁକ୍ମଣୀର ରଥ ?
ରବିଙ୍କି ଦନାନ୍ତେ ଦେଖି ଅସ୍ତାଚଳ-ଚୂଡ଼େ
କୃପ ଯୁଯୁତ୍ସୁଙ୍କ ସଙ୍ଗେ ସର୍ବେ ବାହୁଡ଼ିଲେ
ମହାଶୋକେ, ରାଜଶୂନ୍ୟ ପୁରେ ପୁରବାସୀ,
ଉଲୂପୀ ନାଗେନ୍ଦ୍ର-ଜେମା ଜହ୍ନୁସୁତା-ସ୍ରୋତେ
ଝାସିଣ ପଶିଲେ ତହୁଁ ଅତଳ ପାତାଳେ, (୧)
ବାହୁଡ଼ିଲେ ପତିଶୋକେ ବଧୂଗ୍ଣ ସୁନ୍ଦରୀ
ଚିତ୍ରାଙ୍ଗଦା ମଣିପୁରେ ନିଜ ଦଳବଳେ । (୨)

—×—

## ଦ୍ୱିତୀୟ ସର୍ଗ ।

ତେଜି ପ୍ରପଞ୍ଚର ମାୟା ତହୁ ପଞ୍ଚଭ୍ରାତ (୩)
ପାଞ୍ଚାଳୀ ସହିତେ ଆଗେ ଗଲେ ପୂର୍ବାଞ୍ଚଳେ
ତୀର୍ଥାଟନ-ମହାବ୍ରତ ମନାସି ମାନସେ,
ଏକମାତ୍ର ଧର୍ମୋନ୍ମୁଖ ହୃଦୟ ତାଙ୍କର,
ଆତ୍ମା ପରମାତ୍ମା ପ୍ରତି ନିରତେ ଧାବିତ;
ବନବାସରେ ମହାବଳୀ, କ୍ଲେଶ ମଣି ସୁଖ
ଭ୍ରମିଲେ ଅସଂଖ୍ୟ ଗିରି, କାନ୍ତାର, କନ୍ଦର,
ନଦ, ନଦୀ, ମହାରଣ୍ୟ; ଅଗ୍ରେ ଯୁଧିଷ୍ଠିର
ଧର୍ମବୀର, ସତ୍ୟଗୁଣେ ଅଗ୍ରଣୀ ଜଗତେ
ବୟୋଜ୍ୟେଷ୍ଠ, ଗୁଣଜ୍ୟେଷ୍ଠ, ଶିଷ୍ଟ, ଶାନ୍ତମତି,
ତାଙ୍କ ପଛେ ଭୀମ, ଭୀମ ପଛେ ଧନଞ୍ଜୟ
ଧନୁଷ୍ପାଣି, ଚିର-ପୂର୍ଣ୍ଣ-ଦିବ୍ୟ-ତୂଣ-ଧାରୀ.
ଯେଣୁ ସେହି ସର୍ବଜୟୀ ଧନୁତୂଣମାୟା
ତୁଟି ନ ପାରିଣ ସଙ୍ଗେ ଆଣିଥିଲେ ବଳୀ
ସେହି ଧନୁ, ସେ ତୂଣୀର ବୈରାଗ୍ୟ-ବିରୋଧୀ,
ଚଳନ୍ତି ଫାଲ୍‌ଗୁନି ପଛେ ମାଦ୍ରୀସୁତ ବେନି,
ତାଙ୍କ ପଛେ ଯାଜ୍ଞସେନୀ ଗଜେନ୍ଦ୍ର-ଗାମିନୀ,
ରମଣୀସୀମନ୍ତ-ରେଖା ରମା ମହୀତଳେ,
ସ୍ନେହଗୁଣେ ବନ୍ଧ ସ୍ଥାନ ଗ୍ଭଲେ ସର୍ବ ପଛେ,
ମଥୁରା କଳଙ୍କିନୀ-ହରା ଜଗତୀରୁ ଯହିଁ (୪)

---

(୧) ଉଲୂପୀ— ନାଗକନ୍ୟା, ଅର୍ଜ୍ଜୁନପତ୍ନୀ । (୨) ଚିତ୍ରାଙ୍ଗଦା—ମଣିପୁର-ଜେମା, ଅର୍ଜ୍ଜୁନପତ୍ନୀ । (୩) ପ୍ରପଞ୍ଚ — ସଂସାର । (୪) ଜଗତୀ -- ଚନ୍ଦ୍ରଶାଳା ।

ଦେଖୁଥିଲେ କୁତୂହଳେ ଯାଦବୀ ଯୁବତୀ,
ଘନ-ନୀଳଦ୍ୟୁତି ଚକ୍ରବାକିନୀ ଯମୁନା,
ହେମ-ଭକ୍ତିମତୀ କି ସେ ଅବନୀର ବେଣୀ; (୧)
ପ୍ରୟାଗ, ପାବନ ଗଙ୍ଗା-ଯମୁନା ସଙ୍ଗମେ,
କଳ୍ପସ୍ଥାୟୀ କଳ୍ପବଟ ଛାୟାରେ ଶୀତଳ,
ପତିଙ୍କ କୁଶଳ-ଭିକ୍ଷା ପତିପ୍ରାଣା ସୀତା
କରିଥିଲେ ଯାର ମୂଳେ ବନଯାତ୍ରା-କାଳେ;
ହରଶୂଳଶିଖୋପରି ପୁରୀ ବାରାଣସୀ,
ହର-ଶୈଳୋପମ ଯହିଁ ତୁଙ୍ଗ ସୌଧପନ୍ତି
ଦେଖନ୍ତି ବିମ୍ବିତ ମୁଖ ଜାହ୍ନବୀ-ଦର୍ପଣେ; (୨)
ସରଯୂର ସ୍ରୋତେ ପୂତ ସାକେତ ନଗରୀ
ରଘୁକୁଳ-ରାଜଧାନୀ ଧନ୍ୟା ଧନ୍ୟ ଗୀତେ; (୩)
ବରେଣ୍ୟ ନୈମିଷାରଣ୍ୟ, ପର୍ଣ୍ଣାଶନ-ବ୍ରତୀ (୪)
ଯତୀନ୍ଦ୍ରେ ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ, ହୃଦ୍ ବେଦି ଯହିଁ,
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ,
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍ଗାତା,
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଜେ;
ଗୟାପୁରୀ ପ୍ରତିଷ୍ଠିତ ଗୟାସୁର-ଶିରେ,
ଯହିଁ ବହେ ଫଲ୍ଗୁ, ଅନ୍ତଃସଲିଲା ତଟିନୀ;
ରାଜଗିର ବିରାଜିତ ଶତ ପ୍ରସ୍ରବଣେ, (୫)
ଜରାସନ୍ଧେ ବଧିଥିଲେ ଗିରିଦୁର୍ଗେ ଯହିଁ
ବାୟୁସୁତ ବୃକୋଦର କେଶବ କୌଶଳେ;
ମହାଶକ୍ତିପୀଠ ପୂତ ଭାଗୀରଥୀତୀରେ,
ବିରାଜନ୍ତି ଯହିଁ ଦେବୀ ନୃମୁଣ୍ଡମାଳିନୀ; (୬)
ଲୌହିତ୍ୟ-ତରଙ୍ଗେ ଧୌତ ପ୍ରାଗ୍‌ଜ୍ୟୋତିଷପୁରୀ,

---

(୧) ନୀଳ ଯମୁନା ଅବନୀର ବେଣୀ ପରି, ପୀତ ଚକ୍ରବାକମାଳା ସେହି ବେଣୀର ସୁବର୍ଣ୍ଣ ରଚନା ପରି । (୨) କାଶୀ ହରଶୂଳଶିଖା ଉପରେ ଅବସ୍ଥାପିତ ବୋଲି ପୌରାଣିକ କିମ୍ବଦନ୍ତୀ ଅଛି । (୩) ସାକେତ—ଅଯୋଧ୍ୟା, ରାମାୟଣରୂପୀ ଧନ୍ୟ ଗୀତଦ୍ୱାରା ଯାହା ଧନ୍ୟା ଅର୍ଥାତ୍ ପ୍ରତିଷ୍ଠିତା । (୪) ନୈମିଷାରଣ୍ୟ ଆଧୁନିକ ନାମ ନିମଖାର । (୫) ରାଜଗିର—ବେହାରର ଅନ୍ତର୍ଗତ । ଜରାସନ୍ଧଙ୍କ ଗଡ଼ ଏହିଠାରେ ଥିବାର କିମ୍ବଦନ୍ତୀ ଅଛି । (୬) କାଳୀଘାଟ — କଲିକତାର ନିକଟବର୍ତ୍ତୀ ।

ଲଭନ୍ତି ଅଭୀପ୍ସା ଯେଣୁ କାମାଖ୍ୟା-ପ୍ରସାଦେ; (୧)
ପାଣ୍ଡୁ-ଜଳାରଣ୍ୟ ମଧ୍ୟେ କପିଳ-ଆଶ୍ରମ, (୨)
ମହର୍ଷିଙ୍କ ରୋଷାନଳେ ହୋଇ ଭସ୍ମୀଭୂତ
ମୁକତି ଲଭିଲେ ଯହିଁ ସଗରସନ୍ତତି
ଭଗୀରଥତପଫଳେ ଅବନୀପ୍ରବଣା
ତ୍ରିଲୋକପାବନୀ ଗଙ୍ଗା ପାବନ-ପରଶେ;
ବର୍ଗଭୀମା-ଅଧିଷ୍ଠିତ ମହାସ୍ୱର୍ଗୋପମା,
ଇନ୍ଦ୍ରଶୃପ-ଗୁରୁ-ପୋତ-ପତାକା-ମାଳିନୀ,
ଗଙ୍ଗାମୁଖେ ପୋତଧାତ୍ରୀ ତାମ୍ରଲିପ୍ତି ପୁରୀ, (୩)
ବିପଣିବୀଥିକା ଯାର ସମୁଜ୍ଜ୍ୱଳ ସଦା
ଦ୍ୱୀପାନ୍ତରାଗତ-ମଣି-ମୌକ୍ତିକ-ପ୍ରବାଳେ;
ପଞ୍ଚାଳେ, କୋଶଳେ, ପୁଣି ବିଦେହେ, ମଗଧେ,
ଅଙ୍ଗେ, ବଙ୍ଗେ, ଏହିମତେ ନାନାସ୍ଥାନେ ଭ୍ରମି,
ନାନାତୀର୍ଥ ସେବି, ଶୂରେ ଆସିଣ ମିଳିଲେ
ଉତ୍କଳର ପ୍ରାଚ୍ୟ-ନୀର-ପ୍ରାଚୀର-ଆବୃତ, (୪)
ନୀଳ-ଫେନାକୁଳ-ତୁଙ୍ଗ-ତରଙ୍ଗ-ଭଙ୍ଗୁର,
ନୀଳାଚଳତଟେ, ଯହିଁ ଲୋଟେ ବାରିନିଧି (୫)
ଗମ୍ଭୀର ନିର୍ଘୋଷେ ଘୋଷି ବିଷ୍ଣୁ ଚରଣରେ,
ଗର୍ଜଇ କି ନିଜ ବିଷଜ୍ୱାଳା ଅସମ୍ଭାଳେ
ଫଣୀନ୍ଦ୍ର ବାସୁକି ଅବା ଫଣାଶ୍ରେଣୀ ତୋଳି !
ଅନନ୍ତ-ନୀଳମାମୟ ସେ ଜଳକାନ୍ତାରେ (୬)
ଉତ୍କ୍ଷୋଳକଲ୍ଲୋଳଲୀଳା ହେରି କୁତୂହଳେ
ବୀରବୃନ୍ଦ ସର୍ବେ ହେଲେ ସ୍ତବଧ ବିସ୍ମୟେ ?
ସହସା ତରଙ୍ଗ ଭେଦି ଉଠିଲେ ଅଗ୍ରତେ
ଦିବ୍ୟବପୁଷ୍ମନ୍ତ ଜ୍ୱାଳାମାଳାବିଭୂଷିତ
ଭୀମର ପୁରୁଷ ଏକ ସାଗର ଉଭାସି,
ଯା ଦର୍ଶନେ ବେଳାଭୂମିଶୃଙ୍ଗୀ ମୃଗଯୂଥେ
ସଚକିତେ ମହାତ୍ରାସେ ପଳାଇଲେ ଦୂରେ ।

---

(୧) ଲୌହିତ୍ୟା—ବ୍ରହ୍ମପୁତ୍ର । ପ୍ରାଗ୍‌ଜ୍ୟୋତିଷ—ଆସାମ, କାମାଖ୍ୟାଦେବୀଙ୍କ ମନ୍ଦିର ଏହି ପ୍ରଦେଶରେ ଅବସ୍ଥିତ । ଅଭୀପ୍ସା—ଶୋଭା । (୨) ଗଙ୍ଗାସାଗର ଦ୍ୱୀପ । (୩) ତାମ୍ରଲିପ୍ତିର ଆଧୁନିକ ନାମ ତମଲୁକ । ଏଠାରେ ବର୍ଗଭୀମା ଦେବୀଙ୍କ ମନ୍ଦିର ପ୍ରତିଷ୍ଠିତ । (୪) ଓଡ଼ିଶାର ପୂର୍ବଦିଗସ୍ଥ ଜଳପ୍ରାଚୀରରୂପୀ । (୫) ନୀଳାଚଳ—ଶ୍ରୀକ୍ଷେତ୍ର । (୬)କାନ୍ତାର - ଅରଣ୍ୟ ।

ମଧ୍ୟମପାଣ୍ଡବେ ଚାହିଁ ସେ ଦିବ୍ୟପୁରୁଷ (୧)
ବୋଇଲେ, "ହେ ବୀର, ଚିହ୍ନି ପାରିଲଟି ମୋତେ,
ଦହନେ ଖାଣ୍ଡବବନ ବାସବପାଳିତ
ତୋଷି ମୋତେ ଲଭିଥିଲ ଦେବ ଦୈତ୍ୟ ନରେ
ଦୁର୍ଜୟ, ହେ ଜିଷ୍ଣୁ, ଏହି କୋଦଣ୍ଡ ଗାଣ୍ଡୀବ,(୨)
ଏ ଅକ୍ଷୟ ତୂଣଯୁଗ୍ମ, କର୍ଣ୍ଣରୂପେ ଯାହା
କର୍ଣ୍ଣଧାରରୂପେ ତୁମ୍ଭେ ଧରି ବରଭୁଜେ
ପାଣ୍ଡବର ଆଶା-ତରୀ ପାରି କଲ ହେଲେ
ଅକୂଳ ଅତଳ କୁରୁସମରସାଗରେ,
ପ୍ରଚେତା ଆୟୁଧାଗାରୁଁ ଅଚ୍ୟୁତ-ଆଦେଶେ (୩)
ଆଣି ଦେଇଥିଲି ମୁହିଁ ଏହି ମହାଧନୁ
ତୂଣ ସଙ୍ଗେ ଯେଉଁ କାର୍ଯ୍ୟେ, ସାଙ୍ଗ ସେ ଭୂତଳେ,
ଏବେ, ମହାବାହୁ, ଆଉ ବହିବ କି ଲାଗି
କରେ ଏହା ? ଉଚିତ ତା ଦେବାର ଫେରାଇ,
ଫିଙ୍ଗିଦିଅ ପାରାବାରେ ତୂଣ ସଙ୍ଗେ ଧନୁ ।"
ଅଗ୍ନିଙ୍କି ନମିଲେ ସର୍ବେ ପୟୋଧି-ପୁଳିନେ,
ଅଗ୍ରଜସଙ୍କେତେ ତହୁଁ ପାର୍ଥ ମହାମତି
ଫିଙ୍ଗିଲେ ସାଗରେ ଧନୁ ବେନିତୂଣ ସହ,
ଆଦରେ ନୀଳାମ୍ବୁସ୍ୱାମୀ ପ୍ରସାରି ଅମ୍ବରେ
ଉତ୍ତୁଙ୍ଗ-ତରଙ୍ଗ-ବାହୁ ନେଲେ ତା ତକ୍ଷଣେ,
ବୁଡିଗଲା ଜଳେ ସେହି ଆତ୍ମୀୟ ଧନୁ,
ମିଶିଯାଏ ମେଘେ ଯେହ୍ନେ ତ୍ରିବର୍ଣ୍ଣରଞ୍ଜିତ
ଶକ୍ରଚାପ, ତଡିଲ୍ଲତା-ଶିଞ୍ଜିନୀସଂଯୁତ;
ବିନୟେ ଅନଳଦେବେ ବିନୟଭୂଷଣ
ପୁଚ୍ଛିଲେ ପାଣ୍ଡବପତି କୃତାଞ୍ଜଳିପୁଟେ,
"ଭୋ ଦେବ, ଏ କେଉଁ ସ୍ଥଳୀ ? କି ଲାଗି ଏଠାରେ
ସିନ୍ଧୁଗର୍ଭେ ହୋଇଥିଲା ତୁମ୍ଭ ଆବିର୍ଭାବ ?"
ଉତ୍ତରିଲେ ଅଗ୍ନି, "ଏହା ନୀଳାଚଳ ଧାମ,
ସୃଷ୍ଟିଦିନୁ ଅପ୍ରସିଦ୍ଧ ଥିଲା ମହୀତଳେ,
ମୁଁ ଥାଏଁ ଗୁପତେ ଯେହ୍ନେ ଭସ୍ମ ଆବରଣେ;

(୧) ଦିବ୍ୟପୁରୁଷ—ଦେବପୁରୁଷ । (୨) ଅଗ୍ନିଦେବ ଖାଣ୍ଡବଦହନ ସମୟରେ ଅର୍ଜୁନଙ୍କୁ ଗାଣ୍ଡୀବଧନୁ ଏବଂ ଅକ୍ଷୟତୂଣ ଦେଇଥିଲେ । (୩) ପ୍ରଚେତା—ବରୁଣ । ଅଚ୍ୟୁତ—ଶ୍ରୀକୃଷ୍ଣ ।

ପ୍ରଭାସେ ଯେ ଦିନେ ହେଲା ଯଦୁବଂଶ କ୍ଷୟ,
ଚତୁର୍ଭୁଜ ରୂପ ପ୍ରଭୁ ଧରିଲେ ସେକାଳେ
ଯୋଗବଳେ ଯୋଗେଶ୍ୱର, ଯାଙ୍କ ଦେଖି ଭବେ
ଭୂଭାରହରଣେବ୍ରତ ହେଲେ ପୁଲକିତ,
ଏକମାତ୍ର ନିଜ କୁଳେ ପ୍ରଦ୍ୟୁମ୍ନେ ନିରେଖି
ଜୀବିତ, ଭକତବାକ୍ୟ ଫଳାଇବାଲାଗି
ପେଷିଲେ ଆୟୁଧ ତାର ନିଧନ ମନାସି,
ସଂହାର ଶମ୍ବରରିପୁ, ନ ବାହୁଡ଼ ଆଉ (୧)
ଶ୍ରୀକରେ ତାଙ୍କର ଚକ୍ର, ଅମ୍ବର ଉଭାସି,
ଦିଗପାଳେ, ବ୍ୟୋମଚରେ ହୋଇ ନମସ୍କୃତ,
ମହାବେଗେ ଆସିଲା ସେ ରତ୍ନାକରକୂଳୁଁ
ପୂର୍ବମୁଖେ, ହୀନପ୍ରଭ କରି ଦିନନାଥେ,
(ହୀନାଂଶୁ ତାଙ୍କର ତେଜେ ସୁଧାଂଶୁ ଯେସନ)
ଏହିଭଳି ଦୃଶ୍ୟ ବିଶ୍ୱେ ଦେଖିଥିଲେ ଥରେ
ତ୍ରେତାଯୁଗେ ବିଶ୍ୱବାସୀ, ବିଶ୍ୱମ୍ଭରାସୁତା
ସୁନ୍ଦରୀ-ସୀମନ୍ତମଣି ସତୀଶିରୋମଣି
(ପୂତ ହେଲ ମୁହିଁ ଯାଙ୍କ ଶ୍ରୀଅଙ୍ଗ ପରଶେ (୨)
ଲଙ୍କାପୁରେ) ସୀତା ସଙ୍ଗେ ଯେବେ ରଘୁବୀର
ଅଯୋଧ୍ୟାକୁ ବିଜେ ହେଲେ ଉଜ୍ଜ୍ୱଳ ପୁଷ୍ପକେ
ନୀଳାମ୍ବରେ, ଦିଗ୍‌ବଳୟ ପ୍ଲାବି ପ୍ରଭାପୂରେ ; (୩)
ବିଶ୍ୱେ ତେଜସାର ଚକ୍ର-ଆଲୋକେ ସେକାଳେ
ଆଲୋକିତ ହେଲା କ୍ଷଣେ ଦୃଷ୍ଟିସୀମା ପାରେ
ଆଦିମ-ତମସଗର୍ଭ, ତେଜୋରୂପୀ ଯେତେ (୪)
ରବି, ଶଶୀ, ଗ୍ରହ, ତାରା, ମୁହିଁ ଆଦି କରି
ଅନ୍ଧ ହୋଇଗଲୁଁ ସର୍ବେ ସେହି ତେଜପୂରେ;
ସ୍ଫୁଲିଙ୍ଗ ତାଙ୍କର ସିନା ମୁହିଁ ରାଜର୍ଷି,
ପ୍ରସରଣ ଥିଲା ଆଗେ ଅଶରୀରୀ-ବାଣୀ
ଦେବଲୋକେ, କୃଷ୍ଣ କରୁଁ ଆସି ଚକ୍ରବର
ପଡ଼ିବ ଯେଠାବେ, ତହିଁ ହେବ କଳିଯୁଗେ
ଭାବଗ୍ରାହି-କେଶବର ଭାବ-ଅବତାର,

---

(୧) ଶମ୍ବରରିପୁ— କାମଦେବ । (୨) ଲଙ୍କାରେ ସୀତାଦେବୀଙ୍କ ଅଗ୍ନିପରୀକ୍ଷା ଏହି ଉକ୍ତିର ଲକ୍ଷ୍ୟ । (୩) ପ୍ରଭାର ପ୍ଲାବନରେ ଦିଗ୍‌ବଳୟ ପ୍ଲାବିତ କରି । (୪) ଆଦିମ-ତମସଗର୍ଭ—ଆଦିମ ଅନ୍ଧକାରର ଗହ୍ୱର ।

ପତିତପାବନବାନା ଉଡ଼ିବ ଭୂତଳେ ;
ଅବତର ଏହିଠାରେ ତେଜକୁଳପତି
ସୁଦର୍ଶନ ବିଶ୍ୱଦ୍ରୋହି-ଦନୁଜ-ଧର୍ଷଣ,
ସିନ୍ଧୁଗର୍ଭେ ପ୍ରବେଶିଲେ ସଙ୍କୋଚି ସ୍ୱବପୁ,
ତଥାପି ଉଚ୍ଛୂଳି ହୋଇ ବାରି ଅସମ୍ଭାଳେ
ପ୍ଲାବିଲା ଭୂଖଣ୍ଡ. ଖଣ୍ଡପ୍ରଳୟ ଆକାରେ,
ଘୋରନାଦେ ଚରାଚରେ ଉପୁଜାଇ ତ୍ରାସ,
ମହାୟାସେ ପାଶୀ ତହୁଁ ଊର୍ମି-ପାଶଯୋଗେ
ଫେରାଇଲେ ନିଜ ରାଜ୍ୟେ, ରହିଗଲା ଯାହା,
ହ୍ରଦାକାରେ ପରିଣତ ବେନି ଦିଗେ ଏବେ
ନିମ୍ନଭୂମେ, ସର, ପୁଣି ଚିଲିକା ଆଖ୍ୟାତ, (୧)
ସେ ଦିନୁ, ହେ ପୁଣ୍ୟଶ୍ଳୋକ, ଲୋକେ ଏହି ସ୍ଥଳୀ
ହିନ୍ଦୁ ଭାରେ ବୋଲଉଛି ଚକ୍ରତୀର୍ଥ ନାମେ (୨)
ସଚେତନ ହରି-ହେତି ରହିବେ ସନ୍ନିହିତ (୩)
ପାଶିପାଶେ. ଅବତୀର୍ଣ୍ଣ ହେଲେ ବିଶ୍ୱମ୍ଭର,
ପୂର୍ବ ବିଧିମତେ ଯାଇ ଖଣ୍ଡିବେ ଶ୍ରୀପଦେ,
ଆସିଥିଲି ଖଟଣିରେ ଶ୍ରୀଚକ୍ର ସ୍ତମ୍ଭରେ
ଆଜ ମୁହିଁ, ତେଣୁ ହେଲା ତୁମ୍ଭ ସଙ୍ଗେ ଭେଟ,
ଭାଗ୍ୟଫଳେ ତୁମ୍ଭେ ଆସି ମିଳିଲ ଏଠାବେ,
ପୁଣ୍ୟତମ ଏ ସୈକତ ବିଶ୍ୱ-ଚରାଚରେ, (୪)
ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ
ପୁଣି ମର୍ତ୍ତ୍ୟଲୀଳାଲାଗି ଅଖିଳ ଭାରତେ ;
ପଣ୍ଡିଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ,
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରୀୟସୀ,
ଯାମ୍ୟେ ଯାର ଋଷିକୁଲ୍ୟା, କପିଶା ଉତ୍ତରେ, (୫)
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ରଶିଖରୀ, (୬)
ତରକୋଳାହଳମୟ ପୂର୍ବେ ପୟୋନିଧି,

(୧) ପୁରୀର ଏକ ପାର୍ଶ୍ୱରେ ଚିଲିକା, ଅନ୍ୟ ପାର୍ଶ୍ୱରେ ସର ହ୍ରଦ ଅବସ୍ଥିତ । (୨) ଚକ୍ରତୀର୍ଥ—ପୁରୀସ୍ଥିତ ସ୍ୱର୍ଗଦ୍ୱାରର ଅଦୂରବର୍ତ୍ତୀ । (୩) ହରିହେତି—ବିଷ୍ଣୁଙ୍କର ଆୟୁଧ । (୪) ସୈକତ—ଶ୍ରୀକ୍ଷେତ୍ର ସିକତାମୟ । (୫) ଯାମ୍ୟ—ଦକ୍ଷିଣଦିଗ । କପିଶା—ସୁବର୍ଣ୍ଣରେଖା । (୬) ଉତ୍କଳର ପଶ୍ଚିମାଂଶସ୍ଥିତ ପର୍ବତମାଳାର ସାଧାରଣ ନାମ ମହେନ୍ଦ୍ର । ମଞ୍ଜୁଷାଗଡ଼ ନିକଟରେ ଏହି ପର୍ବତମାଳାର ସର୍ବୋଚ୍ଚ ଶୃଙ୍ଗ ଅଦ୍ୟାପି ମହେନ୍ଦ୍ର ନାମରେ ଅଭିହିତ । ମହେନ୍ଦ୍ର ପର୍ବତରେ ଯାମଦଗ୍ନ୍ୟଙ୍କ ଆଶ୍ରମ ଥିଲା ।

ପୁଷ୍ପକୁଣ୍ଡେ ଶ୍ରେଷ୍ଠ ତାର କେଶର ଯେସନେ,
ଶ୍ରେଷ୍ଠ ଏ ନୀଳାଦ୍ରିଧାମ ସମଗ୍ର ଉତ୍କଳେ, (୧)
ନବସନ୍ତ ନାନା ସ୍ଥାନେ ଦେବ ଦେଖା ଯେତେ,
ଭାରତ, ଭାରତଖଣ୍ଡେ, ଆସି ଏ ପ୍ରଦେଶେ
ବିହରବେ ଠାବେ ଠାବେ ନିଜ ରୁଚିମତେ,
ଠୁଳ ହେବେ ଅବଶେଷେ ପୁଣି ଏ ପୁଳନେ,
ଅଖିଳ ଭାରତ-ତୀର୍ଥ-ଭ୍ରମଣ-ସୁକୃତ
ଲଭବେ କଳରେ ଲୋକେ ଏହି ସ୍ଥଳେ ଭ୍ରମି;
ମାନସୁଁ କଳୁଷ-ମଳ ଯିବ ଅପସରି,
ମୋ ଯୋଗେ ସ୍ୱର୍ଣ୍ଣର ଯଥା, ଏ ତୀର୍ଥସେବନେ;
ସ୍ଫୁରିବ ଅମଳ ଜ୍ଞାନ, ଲଭି ପୂର୍ଣ୍ଣାହୁତି
ହୋମକୁଣ୍ଡେ ଜଳ ଉଠେ ଯଥା ମୋର ଶିଖା;
ଶଙ୍ଖ, ଚକ୍ର, ଗଦା, ପଦ୍ମ ହୋଇ ପ୍ରତିଷ୍ଠିତ
ଚାରି ସ୍ଥଳେ, ବିରାଜିବ ଚାରି କ୍ଷେତ୍ରବର (୨)
ଏ ଉତ୍କଳକଳେବରେ ଏବେ ଦେବାଦେଶେ,
ଆସିଲେଣି ସୁଦର୍ଶନ, ଶଙ୍ଖ ପଦ୍ମ ଗଦା
ରଖିଛନ୍ତି ରତ୍ନାକର ମହାଦରେ ଯାହା, (୩)
ଦେବାଦେଶମତେ ମୁହିଁ ତାଙ୍କ ପାଶେ ଯାଇ.
ଆଣି, ହେ ପାଣ୍ଡବଗ୍ରଣ, ନିହିବ ଉତ୍କଳେ;
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, ମହାବାହୁ
ଦେଖିବ ଅଶେଷ ତୀର୍ଥ ଗିରି ନଦ ନଦୀ,
ଦେବଙ୍କ ବଚନେ ସର୍ବେ ପ୍ରସନ୍ନମାନସେ
ଅବଗାହି ସିନ୍ଧୁଜଳେ ଉଦ୍ଦେଶେ ନମିଲେ
ଭାବି-ମର୍ତ୍ତ୍ୟବଇକୁଣ୍ଠସାଇଁ-ପଦ୍ମପାଦେ, (୪)
ଅହୋରାତ୍ର ରହି ତହିଁ, ଭାସିଲା ଯେ କାଳେ
ଉଷାର ସୀମନ୍ତମଣି ତାମ୍ର ପାଦାନ୍ତିଆ
ପ୍ରାଚୀକୂଳେ ଊର୍ମିଶିରେ (ଛତବଦଏ ଯେବେ
ଗଜପଲ ମହିଷାଳ ସିନ୍ଧୁତୀରବାସୀ,
ଚଉବାଲୁ ବର୍ମ୍ମଶୂନ୍ୟ ବେଣାପୂର୍ଣ୍ଣ ପାଟେ

---

(୧) ନୀଳାଦ୍ରିଧାମ — ଶ୍ରୀକ୍ଷେତ୍ର । (୨) ପୁରୀ ଶଙ୍ଖକ୍ଷେତ୍ର, କୋଣାର୍କ ପଦ୍ମକ୍ଷେତ୍ର, ଭୁବନେଶ୍ୱର ଚକ୍ରକ୍ଷେତ୍ର, ଯାଜପୁର ଗଦାକ୍ଷେତ୍ର । (୩) ରତ୍ନାକର — ଆରବ୍ୟସାଗର । (୪) ମର୍ତ୍ତ୍ୟବୈକୁଣ୍ଠ — ଶ୍ରୀକ୍ଷେତ୍ର ।

ପୁଣ୍ୟନୀରା ଭାର୍ଗବୀର) ନୀଳାଚଳ ତେଜି (୧)
ଗ୍ରହିଲେ ମହେନ୍ଦ୍ର ମୁଖେ ଅନଳ ସହିତେ ।

## ତୃତୀୟ ସର୍ଗ ।

ହେମଗୌରବପୁ ଯୁବା ବସ୍ତ୍ରବେଶଧାରୀ
ଅଗ୍ନି ସଙ୍ଗେ ପଞ୍ଚଭାଇ ବାୟୁକୋଣେ ଯାଇ
ମହେନ୍ଦ୍ର କାନ୍ତାର ପଥେ, ମିଳିଲେ ବହ୍ନାନ (୨)
କଲ୍ଲୋଳିନୀକୁଳେଶ୍ୱରୀ ମହାନଦୀକୂଳେ;
ଗଗନପରଶୀ ବେନଦଗେ ତୁଙ୍ଗଶୃଙ୍ଗ—
ସଙ୍କଟେ ସଙ୍କୋଚ ବପୁ, ବାହାରଇ ଯହିଁ
ପୁଣି ଦୂର୍ବାକାରେ ସ୍ରୋତ ପୂର୍ବସିନ୍ଧୁଗାମୀ (୩)
ବିଜନ ଭୀଷଣ ସ୍ଥଳୀ, ବନଗଜବ୍ରଜ—
କଣ୍ଡୁଳକପୋଲପିଣ୍ଡଘର୍ଷଣେ କମ୍ପିତ
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନଦେବୀଙ୍କର କି ସେ ଅର୍ଘ-ଲାଜାଞ୍ଜଳି ? (୪)
ଦିନ ଥାଉଁ ଥାଉଁ ତହିଁ ମହାଶୈଳଛାୟା
ବ୍ୟାପି ଜଳେ, ସ୍ଥଳେ, ନଦୀପୁଳିନେ, କାନନେ,
ଉପୁଜାଏ ମନେ ସନ୍ଧ୍ୟା-ଆଗମର ଭ୍ରମ,
ତୁଟଇ ଯେ ଭ୍ରମ ଦେଖି ଦୂରେ ପୃଷ୍ଠଭାଗେ
(ଅସୁଖିର, ଆହା, ପୂର୍ବସୁଖସ୍ମୃତି ପରି !)
ଅସ୍ତାତପେ ଉଦ୍ଭାସିତ ତୁଙ୍ଗ ଶୃଙ୍ଗାବଳୀ; (୫)
ପାନ୍ଥ-ଶେଷେ ତହିଁ ନିଶି ଯାପି ବଟମୂଳେ

---

(୧) ଭାର୍ଗବୀ—ଶ୍ରୀକ୍ଷେତ୍ରର ଅଦୂରବାହିନୀ ନଦୀ । ପୂର୍ବକାଳରେ ଏହାର ତୀର ବେଣାପାଟରେ ପରିପୂର୍ଣ୍ଣ ଥିଲା । (୨) ମହେନ୍ଦ୍ର କାନ୍ତାର— ଓଡ଼ିଶା ଗଡ଼ଜାତର ଦିଗନ୍ତବ୍ୟାପୀ ମହାରଣ୍ୟ । (୩) ସାତକୋଶିଆ ଗଣ୍ଡର ପୂର୍ବସୀମା ବଡ଼ମୂଲ ଘାଟ ଦଶପଲ୍ଲା ରାଜ୍ୟର ଅନ୍ତର୍ଗତ । ସାତକୋଶିଆ ଗଣ୍ଡ ଅଂଶତଃ ଦଶପଲ୍ଲାରେ ଏବଂ ଅଂଶତଃ ବୌଦରେ ଅବସ୍ଥିତ । ଏପରି "ଭୀମକାନ୍ତ" ଦୃଶ୍ୟ ଉତ୍କଳରେ ବିରଳ । ଏଠାରେ ମହାନଦୀର ଶଯ୍ୟା ଉଭୟପାର୍ଶ୍ୱସ୍ଥିତ ପର୍ବତମାଳାଦ୍ୱାରା ଅତ୍ୟନ୍ତ ସଙ୍କୁଚିତ । (୪) ଲାଜାଞ୍ଜଳି— ଖଇର ଅଞ୍ଜଳି । (୫) ପଥିକର ପୃଷ୍ଠଭାଗରେ ଦୂରସ୍ଥିତ ଅସ୍ତକିରଣୋଜ୍ଜ୍ୱଳ ଶୃଙ୍ଗଦର୍ଶନ ସହିତ ଅସୁଖୀ ବ୍ୟକ୍ତିର ପୂର୍ବସୁଖସ୍ମୃତିର ଉପମା ।

(ଯେ ନାମେ ଅଦ୍ୟାପି ସ୍ଥଳୀ ବୋଲାଏ ଜଗତେ) ୧
ପଶିଲେ ଯାତ୍ରିଏ ସେହି ବିକଟ ସଙ୍କଟେ
ଛାୟାମୟ, ଅନୁକ୍ଷଣ ପୂର୍ଣ୍ଣ ଝିଲ୍ଲି ରବେ,
କୁହେଳୀରେ ନୀଳବର୍ଣ୍ଣ ଭୃଗୁମାନ ଗିରି (୨)
ଧାଡ଼ି ହୋଇ ବେନି ତୀରେ, ଏକ ପରେ ଏକ
ଶିଖା ତୋଳି କଲନ୍ତି କି ଗଗନର ସୀମା ?
ଦିଗ୍‌ବାରଣଶୁଣ୍ଡାକାରେ କାହିଁ ଅବା ନୀରେ
ମିଶିଛି ତିର୍ଯ୍ୟକେ ଆସି ଶ୍ୟାମ ଶୈଳନାସି, (୩)
ଛାୟାଲୋକେ ଶବଳିତ ହୋଇ ଠାବେ ଠାବେ;
କାହିଁ କଳକଳ ରବେ ଗିରି-ନିର୍ଝରଣୀ
(ସୃଷ୍ଟିକାଳୁଁ ପଡ଼ି ନାହିଁ ସୌରକର ଯହିଁ)
ସୁଚିକ୍କଣ କୃଷ୍ଣଶିଳାସୋପାନଶ୍ରେଣୀରେ
ତମୋମୟ କନ୍ଦରରୁ ଆସଇ ଓହ୍ଲାଇ
ଅପ୍ରଗଲ୍‌ଭେ, ଅପ୍ରଗଲ୍‌ଭେ ଦୀନ ସାଧୁ ଯଥା
ସାଧେ ପରହିତ ହୋଇ ବୀତସ୍ପୃହ ଯଶେ;
ନିବିଡ଼-କୀଚକକୁଞ୍ଜେ ଭିନ୍ନାଞ୍ଜନପ୍ରଭ —
ତିମିରେ ଆଚ୍ଛନ୍ନ ମହାଘୋର ଶୈଳଖୋଲେ (୪)
ଲୁଚି ଏକାକିନୀ କାହିଁ ଝୁରଇ କରୁଣେ
କୁରଙ୍ଗୀ, କି ଦୁଃଖେ ତାହା ଜାଣେ ସେ ଦୁଃଖିନୀ;
ଶୃଙ୍ଗଯାଏ ଶୈଳତଟେ ପରେ ପରେ ଉଭା
ବନଦେବୀସୌଧାକୃତି ବନସ୍ପତିଶାଖେ
ଧରି ସେ ବିଜନ ବୀଣାଜିଣା କଣ୍ଠରବେ
ଗାଉଛନ୍ତି ଅଷ୍ଟକାଳେ କଷ୍ଟଫେଡ଼ା ଶୁଆ, (୫)
ନଦୀକୂଳବନ୍ଧୁ, ଶ୍ୟାମା, ସାରି, ଚଷାପୁଅ । (୬)
ଯାଉଁ ଯାଉଁ ସେହି ରମ୍ୟ ଭୀଷଣ ସଙ୍କଟେ
ବିସ୍ମୟେ ଉତ୍‌ଫୁଲ୍ଲନେତ୍ରେ ପାଣ୍ଡୁପୁତ୍ରେ ଦେଖି,
ଦେବ ବୈଶ୍ୱାନର ତହୁଁ କହିଲେ ସସ୍ମିତେ,

---

(୧) ବଡ଼ମୂଳ ଘାଟି ସାତକୋଶିଆ ଗଣ୍ଡର ତୋରଣ ସ୍ୱରୂପ । ଏହିଠାରୁ ମହାନଦୀ ପୁନର୍ବାର ପୂର୍ବ ପ୍ରଶସ୍ତତା ଲଭିଅଛି । (୨) ଭୃଗୁମାନ ଅତଟଯୁକ୍ତ । (୩) ପର୍ବତର ନାସିକାକୃତି କୋଣୀ । ପର୍ବତନାସି ଦୂରରୁ ବିରାଟ ହସ୍ତିଶୁଣ୍ଡ ପରି ଦିଶେ । (୪) ଭିନ୍ନାଞ୍ଜନପ୍ରଭ ତିମିର ଦଳିତକଜ୍ଜ୍ୱଳ ପରି କୃଷ୍ଣବର୍ଣ୍ଣ ଅନ୍ଧକାର । (୫) କଷ୍ଟ-ଫେଡ଼ା — ମଧୁରନିନାଦୀ ବନପକ୍ଷିବିଶେଷ । ବଙ୍ଗୀୟ ନାମ 'ବଉକଥାକଓ" । (୬) ନଦୀକୂଳବନ୍ଧୁ—ପକ୍ଷିବିଶେଷ । ଚଷାପୁଅ—ପକ୍ଷିବିଶେଷ ।

"ହେ ସ୍ୱଜନ, ଦେଖ ଏଥି ବହନ୍ତି କେସନେ
ମହାନଦୀ ନାମେ ପୂର୍ବସାଗରଗାମିନୀ
ହରମୌଳିମାଳା ଦେଖା କ୍ଷିପ୍ରୋତା ଜାହ୍ନବୀ,
ସୁକାନ୍ତି-ମହର୍ଷି-ତପେ ପତିତପାବନୀ (୧)
ତୁଷ୍ଟ ହୋଇ ଏହି ମୁଖେ ଆସିଲେ ଯେ କାଳେ
ଅର୍ଦ୍ଧପଥେ ତାଙ୍କ ଗତି ରୋଧିଲେ ଏଠାରେ
ନୀରନ୍ଧ୍ର-ପ୍ରାଚୀରାକୃତି ଏହି ମହାଗିରି,
ତହୁଁ କୂଳଶିଳି ଋଷି ତୋଷି ତପୋବଳେ
ଏ ବର୍ତ୍ମ ଛେଦିବା ଲାଗି କଲେ ଅନୁରୋଧ,
ବଜ୍ରକରେ ଅବତର ଏହି ଶୈଳମୂଳେ
ଛେଦି ଏ ଶଇଳ ବର୍ତ୍ମ ରଚିଲେ କୌଶଳେ
ଉତ୍କଳର ମୁକ୍ତିଦ୍ୱାରରୂପୀ ଏ ତୋରଣ
ସପ୍ତକୋଶବ୍ୟାପୀ, ଶୈଳକୁଞ୍ଜେ ଅନ୍ଧାରିତ,
ଛିନ୍ନ ଶିଳାପୁଞ୍ଜ ଯାର ବିଷମି ଏକାଳେ
ନଦୀଶଯ୍ୟା ଉତ୍ପୁଜାନ୍ତି ଅସଂଖ୍ୟ ପ୍ରପାତ (୨)
ଠାବେ ଠାବେ, କଳରବେ ଘୂରଇ ଅହୋରି;
ମହେନ୍ଦ୍ରର ଅଧିଷ୍ଠାନ ଦନୁ ଏ ଶିଖରୀ
ବୋଲାଏ ମହେନ୍ଦ୍ରନାମେ କୁଳାଚଳକୁଳେ, (୩)
ପରମପବିତ୍ର ଗିରି ସେବନ୍ତି ଆଦରେ
ଦେବ ଋଷି ସିଦ୍ଧେ ଯାର ଶୃଙ୍ଗ ଅଗଣିତ,
ମେଘାସନ ମେଘାସନ ମଘବାବାଞ୍ଛିତ (୪)
ସ୍ୱର୍ଣ୍ଣରୁଚପଳାଲାସ୍ୟେ ନରତେ ଭାସ୍ୱର,
ନରତେ ମୁଖର କେଳକଳକେକାରବେ;
ପୂତ-ବୈତରଣୀସ୍ରୋତପ୍ରଭବ ଗୋନାସା, (୫)
ଋଷିସଭା ମଧ୍ୟେ ଯହିଁ ଭାର୍ଗବମୁଖରୁ
ଝରେ ପୂତତର ପୁଣ୍ୟଶ୍ଳୋକକଥାମୃତ;

(୧) ସୁକାନ୍ତି— ସୁକାନ୍ତି ଋଷିଙ୍କ ତପଃପ୍ରଭାବରେ ଗଙ୍ଗା ମହାନଦୀରୂପରେ ମଧ୍ୟ-ଭାରତବର୍ଷରୁ ଉତ୍କଳକୁ ଆସିଥିବାର କିମ୍ବଦନ୍ତୀ ଅଛି । (୨) ସାତକୋଶିଆର ପଶ୍ଚିମ ଦିଗରେ ମହାନଦୀର ଶଯ୍ୟା ବିଷମପୂର୍ଣ୍ଣ । ପ୍ରସ୍ତରମୟ ହେବାରୁ ସ୍ରୋତରେ ନୌଚାଳନ ନିତାନ୍ତ ବିପତ୍‌ସଙ୍କୁଳ । (୩) ମହେନ୍ଦ୍ର—ସପ୍ତକୁଳାଚଳର ଅନ୍ୟତର । (୪) ମେଘାସନ- ଶୃଙ୍ଗ ମୟୂରଭଞ୍ଜରେ ଅବସ୍ଥିତ । ସ୍ୱଚ୍ଛନୀରା ସାଳନୀ ଏହି ପର୍ବତରୁ ନିଃସୃତ । (୫) ଗୋନାସା —କେନ୍ଦୁଝରରେ ଅବସ୍ଥିତ । ବୈତରଣୀର ପ୍ରଭବସ୍ଥାନ । ଏହିଠାରେ ପର୍ବତଦେହରେ ଦେବନାଗରାକ୍ଷରରେ 'ଆଦ୍ୟବୈତରଣୀ" ଏହି ଶବ୍ଦ ଅଙ୍କିତ ଅଛି । ଏହି ପର୍ବତର

ଗିରି ମାଲ୍ୟବନ୍ତ ଗିରିମାଳେ ମଧ୍ୟମଣି, (୧)
ସ୍କନ୍ଧେ ଶୁଭ୍ର-ଝରଣାର-ଉତ୍ତରୀୟଧାରୀ;
ମୈନାକ ପିନାକପାଣିପ୍ରିୟା ପ୍ରିୟସ୍ଥଳୀ; (୨)
ଝର-ଉପବୀତଧର, କପର୍ଦ୍ଦିସେବିତ
କପିଳାସ ଅଭ୍ରଗର୍ଭ ଅଭ୍ରଂକଷ ଗିରି, (୩)
ପଞ୍ଚଧାର ଜଳଦର କେଳିମଞ୍ଚରୂପୀ (୪)
କେତକୀକୁଞ୍ଜେ ଯାର ଝରଇ ଅଦୂରେ
ତପ୍ତ ପୂତ ପ୍ରସ୍ରବଣ ରୁଦ୍ର-ଅଧିଷ୍ଠାନେ;
ଏ ଆଦି ବିଶାଳ ଶୃଙ୍ଗକୁଳେ ବିଭ୍ରାଜିତ
ଉତ୍କଳ-କଳିଙ୍ଗବପୁ ମଣ୍ଡିତ୍ତି ଶିଖରୀ,
ମଧ୍ୟେ ଦ୍ୱିଖଣ୍ଡିତ ହୋଇ ଏହି ଦେବଖାତେ ।
ଅଗ୍ନିଙ୍କ ବଚନେ ସର୍ବେ ସେହି ପୂତନୀରେ
ଅବଗାହି ଭକ୍ତିଭାବେ ଦେଲେ ଜଳାଞ୍ଜଳି
ପିତୃଲୋକେ, ସେ ବିକଟ ସଙ୍କଟୁ ବାହାରି
ଗୃଳିଲେ ଗନ୍ତବ୍ୟପଥେ ପଶ୍ଚିମାଶାମୁଖେ,
ଦେଖିଲେ କୌତୁକେ ପାନ୍ଥେ ସେ କାନ୍ତାରପଥେ
ଅନନ୍ତ-ବୈଚିତ୍ର୍ୟମୟୀ ଅରଣ୍ୟ-ପ୍ରକୃତି,
କି ଅବା ସେ ମାର୍ଗରେଖା ଗୈରିକେ ଅରୁଣ

---

ପାଦଦେଶରେ "ଋଷିସଭା" ନାମକ ପ୍ରସ୍ତରମୟୀ ସ୍ଥଳୀ ବୈତରଣୀର ସ୍ରୋତଦ୍ୱାରା ଧୌତ ହେଉଅଛି । ଏହି ନିବିଡ଼ ପର୍ବତାକୀର୍ଣ୍ଣ ସ୍ଥଳୀରେ ଭଗବାନ୍ ଗୋନାସିକେଶ୍ୱରଙ୍କ ଦେଉଳ ଅବସ୍ଥିତ । ଦେଉଳର ପାଦବାହିନୀ ବୈତରଣୀ କୂଳରେ ଯୋଡ଼ାଏ ବିରାଟ ଚମ୍ପକ ବୃକ୍ଷ ଅଛି । ସେଭଳି ଚମ୍ପକ ବୃକ୍ଷ ଓଡ଼ିଶାର ଅନ୍ୟତ୍ର ଦୁର୍ଲଭ ।ଭଗବାନ୍ ଭାର୍ଗବଙ୍କ ଆଶ୍ରମ ଏହିଠାରେ ଥିବାର କିମ୍ବଦନ୍ତୀ ଶୁଣାଯାଏ ।

(୧) ମାଲ୍ୟବନ୍ତ—ଲହଡ଼ାର ମାଲ୍ୟଗିରି । ଏହାର ବିଶାଳ ନୀଳଦେହରେ ଶୁଭ୍ର ନୀରାସ୍ତରଣ ଦୂରରୁ ଅତି ମନୋହର ଦିଶେ । ଏ ମାଲ୍ୟବନ୍ତ ରାମାୟଣର ମାଲ୍ୟବନ୍ତ ନୁହେ । ଆଧୁନିକ ରାଜନୈତିକ ଓଡ଼ିଶା ମଧ୍ୟରେ ମାଲ୍ୟଗିରି ସବୁଠାରୁ ଉଚ୍ଚ । (୨) ମୈନାକ ରଣପୁର ଅନ୍ତର୍ଗତ ଦୁର୍ଗାଦେବୀ-ଅଧିଷ୍ଠିତ ପର୍ବତ । ରଣପୁରର ରାଜଧାନୀ ଏହି ପର୍ବତର ପାଦଦେଶରେ ଅବସ୍ଥିତ । (୩) କପିଳାସ—ଢେଙ୍କାନାଳର ଅନ୍ତର୍ଗତ । ଝରଣା ଏବଂ ଅଭ୍ର ସକାଶେ ଏହା ପ୍ରସିଦ୍ଧ । ଓଡ଼ିଶାର ଏହା ଗୋଟିଏ ପ୍ରସିଦ୍ଧ ଶିବକ୍ଷେତ୍ର । (୪) ପଞ୍ଚଧାର—ଆଠମଲ୍ଲିକ ରାଜ୍ୟର ଅନ୍ତର୍ଗତ । ଏହାର ଅଦୂରରେ "ଦେଉଳଝରି" ନାମକ ସୁପ୍ରସିଦ୍ଧ ତପ୍ତପ୍ରସ୍ରବଣ । ଗଡ଼ଜାତ ମଧ୍ୟରେ ଏହା ଗୋଟିଏ ଶିବକ୍ଷେତ୍ରରୂପେ ପ୍ରତିଷ୍ଠିତ । ଆଠମଲ୍ଲିକାଧୀଶ୍ୱର ମହାରାଜ ଶ୍ରୀ ମହେନ୍ଦ୍ର ଦେଓଙ୍କ ପୂର୍ବ-ପୁରୁଷମାନେ ଏଠାରେ ଅନେକ କୀର୍ତ୍ତି ସ୍ଥାପନ କରିଥିଲେ ।

ସୀମନ୍ତେ ସିନ୍ଦୂରଲେଖା ବନଲକ୍ଷ୍ମୀଙ୍କର ?
କାହିଁ ଊର୍ଦ୍ଧ୍ୱେ ଉଠି ମାର୍ଗ ମିଶିଛି ଆକାଶେ,
(ଯହିଁ ଚକ୍ରାକାରେ ଦଶେ ବନାବୃତ ଧରା
ଗୌଦଗେ, ବାରଧି ପ୍ରାନ୍ତେ ଦିଗନ୍ତ-ବସୁଧା )
କାହିଁ ଅବା ତଳେ ଯାଇ ମିଶିଛି ପାତାଳେ;
ଏହିରୂପେ ଯାଉଁ ଯାଉଁ ନାନା ଦୃଶ୍ୟରାଜି
ପାନ୍ଥଙ୍କର ପଥେ ହେଲା ନୟନ-ଅତିଥି,
ନୀଳବନସ୍ଥଳୀ ମଧ୍ୟେ ଦୂରପ୍ରସାରିତ
ସୌରକରେ ଭାସୀ ଶୁଭ୍ର ନଦୀବାଲିରେଖା;
ସ୍ନିଗ୍ଧଛାୟା ଦ୍ରୁମରାଜି ଭୀମ ମହାଟବୀ,
ଆବରିଛି ମହୀନଭଃ ପଲ୍ଲବଗହଳେ,
ଶୁଭ ନାହିଁ କେବେ ଯାର ନସ୍ତବ୍ଧ ଗରଭେ
ସୃଷ୍ଟିଦିନୁ କାଷ୍ଠଜୀବି-କୁଠାରଶବଦ;
କାହିଁ ମୁଖରିତ ସ୍ଥଳୀ ଶ୍ୱାପଦନିର୍ଘୋଷେ,
ପ୍ରତିଘୋଷେ ପ୍ରତିବାଣୀ ଦିଅଇ ଯା ଶୁଣି
ପ୍ରତିଧ୍ୱନି ଗିରିଗୁହାକ୍ରୋଡ଼ପ୍ରଣୟିନୀ;
ଶିଳାଶଯ୍ୟାପ୍ରବାହିନୀ ଶୈଳସ୍ରୋତସ୍ୱତୀ,
ଉପଲେ ସ୍ଖଳିତ ହୋଇ ଯାର ବାରିଧାରା
ମିଶାଏ ଝର୍ଝରରବେ ଘୋର ଝିଲ୍ଲିରବେ;
ପ୍ରପାତ, ମଣ୍ଡିତ ଇନ୍ଦ୍ରକୋଦଣ୍ଡ-କଣ୍ଠିରେ,
ବାଢେ ଫରଫର ରୂପାଜରିର ପାଛୁଡ଼ା—
ପରାଗ୍ରେ ଯା ଶୋହେ ପର୍ଣ୍ଣଶ୍ୟାମଶୈଳଦେହେ,
ଉଗ୍ରରୁ ଉଗ୍ରକୁ ଡେଇଁ ଗମ୍ଭୀରଗର୍ଜନେ;
ଗିରି-ଦରପଣରୂପୀ ଗିରିପାଦଦେଶେ
ସ୍ୱଚ୍ଛହ୍ରଦ, ଅଳଂକୃତ ଫୁଲ୍ଲ-କୋକନଦେ,
ସ୍ନିଗ୍ଧଗନ୍ଧ ସୌଗନ୍ଧିକେ, କୁମୁଦେ, କହ୍ଲାରେ,
ସରାଳ, ଗାଙ୍ଗୋଇ, ହଂସ, କୋକ ପାଣିକୁଆ,
ଆଦି ଜଳବିହଙ୍ଗମେ ସଦା ଝଙ୍କାରିତ,
ଶଙ୍କାହୀନେ ଯୂଥେ ଯୂଥେ ଚରନ୍ତି ଯା ତୀରେ
ଶୃଙ୍ଗଧର କୃଷ୍ଣସାର ସଙ୍ଗେ କୁରଙ୍ଗିନୀ;
ଧରଣୀସୀମାନ୍ତସେତୁ ସମ ଟଙ୍କଭୂମି, *

---

* ଟଙ୍କଭୂମି—ଟାଙ୍ଗୀ । ଗୁଳ୍ମଶ୍ୟାମଳ ଟାଙ୍ଗୀ ଦୂରରୁ ଦୀର୍ଘସେତୁ ପରି ଦିଶେ । ଖୋର୍ଦ୍ଧା ଅଞ୍ଚଳରେ ଏଭଳି ଅନେକ ଟାଙ୍ଗୀ ଦେଖାଯାଏ ।

ଦିଗନ୍ତେ ଶ୍ୟାମାୟମାନ ବିଶାଳ ଆଭୋଗେ,
ଦନ୍ତୁରରେଖାରେ ଯାର ପୃଷ୍ଠେ ଦିଗପଟେ
ଟୋଳିଛନ୍ତି ନୀଳଶିଖା ଦୂରଗିରିମାଳା
ଗଜାବଉଦର ଭ୍ରମ ଚିତ୍ତେ ଉପୁଜାଇ, (୧)
କାହିଁ ଅବା ଶିଶୁଶୈଳ ଆବରେ ଉଢ଼ାଳେ
ପୃଷ୍ଠେ ସୁବିଶାଳ ଗିରି, ଜୀବନେ ଯେସନ
ଉପସ୍ଥିତ ଦୁଃଖ, ଆହା, ଆବରେ ନୟନୁ
ଭାବି-ଘୋରତର-ଦୁଖ-କରାଳମୂରତି;
ଝୁଣାଲାଗି ହତ ହୋଇ ପୁଳନ୍ଦକୁଠାରେ (୨)
ଦୀନହୀନବେଶେ କାହିଁ ଶୈଳତଟେ ଉଭା
ସୁବିଶାଳ ଶାଳତରୁ କଙ୍କାଳର ମାଳା;
ବାଟେ ତରଙ୍ଗିତ ଶସ୍ୟକେଦାର ଶ୍ୟାମଳ,
ମଧ୍ୟେ ଶୋହେ ମଞ୍ଚ, ଯହିଁ ଜଗି ନିଶିଯୋଗେ
ଶାଳଗୋପେ, ଜରଜର ନିଦାରୁଣ ଶୀତେ, (୩)
ବରାହ, ଶମ୍ବର, କପି ଆଦି ଶସ୍ୟହାରୀ
ଜୀବଙ୍କୁ ତଡ଼ନ୍ତି ଯେତୁଁ ବିକଟ-କୁହାଟେ;
ସଶର-କମାଣଧର କାହିଁ ଗୋପଶିଶୁ
ଜଗିଛନ୍ତି ଧେନୁପଲ ବିଜନ-ପ୍ରାନ୍ତରେ;
କାହିଁ ଶସ୍ୟ କାଟୁଁ କାଟୁଁ କ୍ଷେତ୍ରେ କୃଷୀବଳେ
ଭାଲେ କର ଦେଇ ଦୂରୁଁ ଦେଖନ୍ତି କୌତୁକେ
ମୁଣ୍ଡାଇ ଇନ୍ଧନବୋଝ କାହିଁ ଅବା ବନୁ
ଗୁଞ୍ଜାମାଳେ ବିମଣ୍ଡିତା କିରାତସୁନ୍ଦରୀ (୪)
ଆସୁଛନ୍ତି ଦଳେ ଦଳେ ଆଳାପି ମଧୁରେ;
ଏହିରୂପେ ନାନା ଦେଶ, ବନ, ଜନପଦ—
ତୀର୍ଥାଶ୍ରମଗିରିପୂର୍ଣ୍ଣ ମହାନଦୀଦ୍ରୋଣି (୫)

---

(୧) ଗଜାବଉଦ — ମେଘାଙ୍କୁର । ବର୍ଷାର ଆଗମସୂଚକ ଦିଗ୍ବଳୟଭେଦୀ ବୃକ୍ଷାକାର ନୀଳମେଘ । (୨) ପୁଳନ୍ଦ — ବନ୍ୟଜାତି । ଝୁଣା ପ୍ରାପ୍ତି ନିମନ୍ତେ କନ୍ଧ ଭୂଇଆଁ ପ୍ରଭୃତି ଜାତିମାନେ ଶାଳତରୁର ମୂଳଦେଶରେ ଚକ୍ରାକାରରେ ତ୍ୱକ୍ କାଟି ଦେଇ ଅଗ୍ନି ଜାଳି ଦିଅନ୍ତି । ଏହି ସାମାନ୍ୟ ଉପାୟଦ୍ୱାରା ବୃହତ୍ ଶାଳଗଛମାନ ଅତି ଅଳ୍ପ ସମୟରେ ଝାଉଁଳି ମରିଯାନ୍ତି । ମହାରଣ୍ୟମାନଙ୍କରେ ଏହିପରି ମୃତ ଶାଳଗଛ ଅନେକ ଦେଖାଯାଏ । (୩) ଶାଳଗୋପ — ଯେଉଁମାନେ କ୍ଷେତ୍ରରେ ଶସ୍ୟ ଜଗନ୍ତି । (୪) ଗୁଞ୍ଜାହାରାଭରଣା ବନ୍ୟନାରୀ । (୫) ଦ୍ରୋଣି — ଉପତ୍ୟକା ।

କ୍ରମେ କ୍ରମେ ଅତିକ୍ରମି, ପ୍ରବେଶିଲେ ଧୀରେ .
ଦକ୍ଷିଣାପଥର ଦ୍ୱାରଦେହଲୀରୂପିଣୀ
ମାଳଭୂମି, ତିନ ମହାସ୍ରୋତର ପ୍ରସୂତି, (୧)
ଝର ପ୍ରସ୍ରବଣେ ପୁଷ୍ଟି, ଯହୁଁ ପ୍ରବାହିତ—
ଅସଂଖ୍ୟ-ଶଇଳସ୍ରୋତୁଁ ବାରି-କର ଘେନି,
ଉତ୍ତରେ ବହିଣ ଶୋଣ ମିଶେ ଗଙ୍ଗାଦେହେ,
ପଶ୍ଚିମେ ବହଇ ରେବା, ପୂର୍ବେ ମହାନଦୀ; (୨)
ସ୍ଥାନେ ସ୍ଥାନେ ଗିରିପାଦେ କୁଞ୍ଜତଗଡ଼ରେ
( ତରୁଦେହେ ପୁଞ୍ଜୀଭୂତ ପାରିବତଚ୍ଛବି )
ଉଠୁଛି ତ୍ରେତାଗ୍ନି-ଧୂମ ତପସ୍ୱି-ଆଶ୍ରମେ; (୩)
ଦୂର୍ବାଦଳେ, ଦେବାର୍ଚ୍ଚନକୁସୁମେ, ଅକ୍ଷତେ
ସ୍ଥଳେ ସ୍ଥଳେ ବିଚ୍ଛୁରିତ ନିମ୍ନଗାସୈକତ;
ବିଚରନ୍ତି ମୃଗଶିଶୁ ନିରୁଦ୍‌ବେଗେ ବନେ
ଦଳେ ଦଳେ, କୁଶାଙ୍କୁରକବଳଲାଳସୀ;
ବିରାଜିତ ଠାବେ ଠାବେ ଛାୟାତରୁମୂଳେ
ଶିଳାଖଣ୍ଡ, ମସୃଣିତ ଇଙ୍ଗୁଦୀତଇଳେ; (୪)
କାହିଁ ବନସ୍ପତିଡାଳେ ବାଳାତପପ୍ରଭ
ଜଳାର୍ଦ୍ର ବଲ୍କଲ ଦୋଳେ ମୃଦୁବନବାତେ;
ପାନ୍ଥେ କୌତୂହଳୀ ଜାଣି ଦେବ ବିଭାବସୁ
କହିଲେ ସମ୍ବୋଧି ତହୁଁ—"ମହାସ୍ଥଳୀ ଏହୁ,
ମହିମା ଏହାର ଜାଣି ବସନ୍ତି ଏ ଦେଶେ
ନାନାସ୍ଥାନେ ଋଷିବୃନ୍ଦ; ତ୍ରେତାରେ ଏ ପଥେ
ଚିତ୍ରକୂଟୁଁ ପଞ୍ଚବଟୀ ବିଜେ ହେବା କାଳେ,
ପର୍ଣ୍ଣଶାଳା ରଚି ଏଥି ଥିଲେ ଦାଶରଥି, (୫)
ପ୍ରସ୍ତରେ ଅଙ୍କିତ ତାଙ୍କ ପଦାଙ୍କ ଏ ବନେ
ବନପୁଷ୍ପାଞ୍ଜଳି ଦେଇ ପୂଜନ୍ତି କିରାତେ,

---

(୧) ମାଳଭୂମି— ଉଚ୍ଚଭୂମି । (୨) ରେବା ନର୍ମ୍ମଦା । ରେବା, ମହାନଦୀ ଏବଂ ଶୋଣ ଏମାନେ ଏକ ମାଳଭୂମିରୁ ଭିନ୍ନ ଭିନ୍ନ ଦିଗରେ ପ୍ରବାହିତ । (୩) ତ୍ରେତାଗ୍ନି— ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନି ଅଗ୍ନି । (୪) ତପସ୍ୱିମାନେ ଜଠାରେ ଇଙ୍ଗୁଦୀତୈଳ ବ୍ୟବହାର କରୁଥିଲେ । (୫) ଚିତ୍ରକୂଟ - ପ୍ରୟାଗର ଦକ୍ଷିଣରେ ଅବସ୍ଥିତ । ମନ୍ଦାକିନୀ ନଦୀ ଏହିଠାରେ ପ୍ରବାହିତ । ବନଯାତ୍ରା ସମୟରେ ରାମଚନ୍ଦ୍ର ଚିତ୍ରକୂଟରେ ଅବସ୍ଥାନ କରିଥିଲେ ।

ଶିଖିପୁଚ୍ଛତାଳବୃନ୍ତ ଚାଳ ଭକ୍ତିଭାବେ;
ଦାଶରଥି ଶରେ ହତ ହୋଇ ଏହିସ୍ଥଳେ
ଲଭିଣ ବିରାଧ ମୁକ୍ତି ଗଲା ଦିବ୍ୟଲୋକେ, (୧
ଅଶୋକ, ମାଧବୀ, ନାଗକେଶରବଲ୍ଲରୀ --
ଦୋଳନେ ଦୋଳନ୍ତି ଏଥି ନଉଡେ ଅପ୍ସରୀ
ମଧୁମାସେ, ରାମାୟଣ ଗାଇ ମଧୁ ତାନେ,
ଫଗୁଖେଳ ରଚ ବନପ୍ରସୂନପରାଗେ;
ନବକଶଲୟେ, ଦେଖ, ବିରାଜେ କେସନେ
ରୌଦ୍ରଗେ ଅରଣ୍ୟଭୂମି ଦିଗ୍ବଲୟଯାଏ;
ମୈଥିଳୀ ସୁନ୍ଦରୀ ଯେବେ ତୋଳୁଥିଲେ ଏଥି
ବନପୁଷ୍ପ, ଝରି ତାଙ୍କ ଶ୍ରୀକରୁ ଅଲତା
ରଞ୍ଜିଲା କି ତରୁ ଲତା ଏ ମଞ୍ଜୁଳ ରାଗେ ?
ତାଙ୍କ ବିରେ ସେହି କାଳୁଁ ଅଛି ମୋତେ ମନା
ଦାବାନଳରୂପେ ଏଥି ସଞ୍ଚରିବା ପାଇଁ;
ଦୟାବତୀ ମୈଥିଳୀର ଶ୍ରୀହସ୍ତଲାଳିତ
ଅଦ୍ୟାପି ଏ ବନେ ଛନ୍ତି ବୃଦ୍ଧ କୃଷ୍ଣସାର
ଜରାଜୀର୍ଣ୍ଣ, ଶୁଣି ଯେହ୍ନେ ଜଳଦ-ଆଗମେ
ସୁଗମ୍ଭୀର ଘନଘୋଷ ସ୍ମରନ୍ତି ବିଷାଦେ
ବ୍ରହ୍ମାଣ୍ଡବିବରବ୍ୟାପୀ କୋଦଣ୍ଡଟଙ୍କାର
ଲଙ୍କାପତି-ଅରାତିର, ତୃଣାହାର ତେଜି
ନିର୍ନିମେଷେ ଏକଧ୍ୟାନେ ମୁଦିନ୍ତି ଲୋଚନ;"
ଏହି କଥା ଶୁଣି ତହୁଁ ପଞ୍ଚପାଣ୍ଡୁସୁତେ
ପାଞ୍ଚାଳୀ ସହିତେ ଭ୍ରମି ଆଶ୍ରମେ ଆଶ୍ରମେ
ଋଷି-ଋଷିପତ୍ନୀପଦ ବନ୍ଦିଲେ ଆଦରେ,
ତହୁଁ ପଥ ଅତିବାହି, ରଖି ବାମଭାଗେ
ନିଷଧ, ବିଦର୍ଭଦେଶ, ଗଲେ ପଶ୍ଚିମେ, (୨;
ଲଙ୍ଘି ପଥେ ଇନ୍ଦ୍ରାଦ୍ରି, ଯାର ତଟବନେ (୩)
ଭବାନୀଭବନ ଶୋହେ ମହାଶକ୍ତିପୀଠେ,

(୧) ବିରାଧବଧ ବୃତ୍ତାନ୍ତ ରାମାୟଣରେ ଅନୁସନ୍ଧେୟ । (୨) ନିଷଧ ଏବଂ ବିଦର୍ଭ ଦେଶ ମଧ୍ୟଭାରତବର୍ଷରେ ଅବସ୍ଥିତ ଥିଲା । ବିଦର୍ଭର ଆଧୁନିକ ନାମ ବେଦର । (୩) ଇନ୍ଦ୍ରାଦ୍ରି—ଅନ୍ୟ ନାମ ସାତପୁରା ପର୍ବତ । ଏହି ପର୍ବତର ଉପତ୍ୟକାରେ ଖଣ୍ଡବା ନାମକ ସ୍ଥାନରେ ଭବାନୀଦେବୀଙ୍କର ମନ୍ଦିର ଅବସ୍ଥିତ । ଖଣ୍ଡବା ଭାରତବର୍ଷର ଅନ୍ୟତର ଶକ୍ତିପୀଠ । ମଧ୍ୟଭାରତବର୍ଷର 'ଠଗ' ମାନେ ଏହି ଦେବୀଙ୍କର ଉପାସକ ଥିଲେ ।

କେତେଦିନ ଅନ୍ତେ ପାଣ୍ଡେ ମିଳିଲେ ପ୍ରଦୋଷେ
ତପତୀ ତଟଘାଟରେ ଅଗ୍ନିଦେବ ସହ; (୧)
ତପତୀର ପୂତସ୍ରୋତେ ତର୍ପଣ ବଢ଼ାଇ
ବସନ୍ତେ ପାଣ୍ଡବେ, ଦେବ ବୈଶ୍ୱାନର ତହୁଁ
ବୋଇଲେ ବାରୁଣୀ ଦିଗେ ଅଙ୍ଗୁଳି ନିର୍ଦ୍ଦେଶି,
"ସନ୍ଧ୍ୟାଭ୍ରେ ଅରୁଣ ଏହି ବାରୁଣୀ-ଅମ୍ବରେ
ସନ୍ଧ୍ୟାତାରା ଚୁମ୍ବେ ଯାର ଜୀଲୋଜ୍ଜ୍ୱଳଶିଖା,
ବୋଲିଏ ସହ୍ୟାଦ୍ରି ଏହୁ ଅଚଳସମାଜେ, (୨)
ମହାପ୍ରଭାବନ୍ତ ଗିରି, ଦକ୍ଷିଣାପଥର
ପଶ୍ଚିମପ୍ରାଚୀରରୂପେ ରାଜେ ମହୀତଳେ,
ବିସ୍ତୃତ ଦକ୍ଷିଣେ ଏହୁ ସେତୁବନ୍ଧଯାଏ,
ଏହା ଦେହୁ ବହି ତିନି ମହାପ୍ରବାହିଣୀ
ପୂର୍ବେ ଯାଇ ମିଶିଛନ୍ତି ପୂର୍ବ ପାରାବାରେ,
ଜନସ୍ଥାନଦଣ୍ଡକାରଣ୍ୟ-ଧାତ୍ରୀସ୍ୱରୂପିଣୀ (୩)
ସରିଦ୍ୱରା ଗୋଦାବରୀ, କୃଷ୍ଣା କୃଷ୍ଣବେଣୀ, (୪)
ମଳୟସ୍ତବଳୟରୂପା ବିମଳା କାବେରୀ, (୫)
ଚନ୍ଦନକାନନ ଯାର ଗିରୁ ତୀରଭୂମେ
ସମୁଜ୍ଜ୍ୱଳ କୁମ୍ଭଯୋନିମୁନିପ୍ରଣୟିନୀ
ସତୀଶିରୋମଣି ଧନ୍ୟା ଲୋପାମୁଦ୍ରାରୂପେ;
ଏହି ଗିରିପ୍ରାନ୍ତବନୁ ନେଇଥିଲା ହରି
ରକ୍ଷୋଭାଗ୍ୟ-ବନରାଜି-ଦାବାନଳଶିଖା—
ସୀତାଙ୍କୁ ତ୍ରେତାରେ, ଛଳି ରାମେ, ରାମାନୁଜେ,
ତ୍ରିଦଶବୀର୍ଯ୍ୟନିକଷ ନୈକଷେୟ ବଳୀ; (୬)
ସୁଗ୍ରୀବପ୍ରମୁଖ-ପଞ୍ଚବୀର-ଅଧ୍ୟାସିତ,

(୧) ତପତୀ—ଏହି ନଦୀ ପଶ୍ଚିମମୁଖରେ ପ୍ରବାହିତ ହୋଇ ଆରବ୍ୟସାଗରରେ ପତିତ ହୋଇଅଛି । (୨) ସହ୍ୟାଦ୍ରି—ପଶ୍ଚିମଘାଟ ପର୍ବତ । ଗୋଦାବରୀ ପ୍ରଭୃତି ନଦୀ ଏହି ପର୍ବତରୁ ପ୍ରବାହିତ । (୩) ଜନସ୍ଥାନ—ଦଣ୍ଡକାରଣ୍ୟର ଅଂଶବିଶେଷ । ଗୋଦାବରୀ ଜନସ୍ଥାନ ମଧ୍ୟରେ ପ୍ରବାହିତ । (୪) କୃଷ୍ଣବେଣୀ—ସ୍ୱନାମପ୍ରସିଦ୍ଧ ନଦୀ, ପୂର୍ବମୁଖରେ ପ୍ରବାହିତ ହୋଇ ମହୋଦଧିରେ ପତିତ ହୋଇଅଛି । ଅଧୁନିକ ନାମ କୃଷ୍ଣା । (୫) କାବେରୀ ମଳୟପର୍ବତର ପାଦଦେଶରେ ପ୍ରବାହିତା । ଅଗସ୍ତ୍ୟାଶ୍ରମ ଏହିଠାରେ ଉପସ୍ଥିତ ଥିଲା । ଲୋପାମୁଦ୍ରା ଅଗସ୍ତ୍ୟପତ୍ନୀ । ମଳୟପର୍ବତ ଚନ୍ଦନ ନିମନ୍ତେ ପ୍ରସିଦ୍ଧ । ଅଗସ୍ତ୍ୟ କଳସରୁ ଜାତ ହୋଇଥିବାର ପୌରାଣିକ କିମ୍ବଦନ୍ତୀ ଅଛି । (୬) ନିକଷାପୁତ୍ର ଲଙ୍କେଶ୍ୱର ଦେବବୀର୍ଯ୍ୟର ନିକଷ ପ୍ରାୟ ଥିଲେ ।

ଏହି ଗିରିପାଦଗିରି ଶୈଳ ଋଷ୍ୟମୂକେ (୧)
ପିଙ୍ଗିଥିଲେ ଅଙ୍ଗୁ ଦେଖି ନିଦର୍ଶନ ଲାଗି,
ସେକାଳେ ଆକାଶଗାମୀ ପୁଷ୍ପକବିମାନୁ
ଚଉଲ୍ଲତା-ତାରାପୁଞ୍ଜ-ଗଞ୍ଜୀ ବାସଭୂଷା;
ଲୋହେନ୍ଦ୍ର ଏ ଗିରିପାଦେ ନୀଳରତ୍ନାକର, (୨)
ଯିବି ନିଜ କାର୍ଯ୍ୟେ ମୁହିଁ ତାଙ୍କର ସଦନେ,
ପ୍ରଭାତେ ବାୟବ୍ୟମୁଖେ ଦ୍ୱାରାବତୀପୁରେ
ଯିବ ତୁମ୍ଭେ ଏହିଠାରୁ;— କାଲିଠାରୁ ଆଉ
ତୁମ୍ଭ ସଙ୍ଗେ ଭେଟ ମୋର ନୋହିବ ମରତେ,
ଦ୍ୱାପରର ଶେଷ ଆଜ, ଏହି ନିଶାଯୋଗେ
ଓହ୍ଲାଇବେ ଦଳବଳେ କଳି ଭବଧାମେ,
ନଭିବ କଳରେ ଦେବ ମାନବର ଭେଟ,
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, କୁରୁମଣି,
ଏହି ଶୈଳଶୃଙ୍ଗେ ବସି ଦେଖିବ କୌତୁକେ
ତବେ କଳି ଅବତାର ମୋର ଦିବ୍ୟାଲୋକେ,
ସତ୍ତ୍ୱଗୁଣୋଜ୍ଜ୍ୱଳ ଏକା ତୁମ୍ଭର ଲୋଚନେ
ସହିବ ସେ ଦିବ୍ୟଜ୍ୟୋତି, ଚାଲ ବେଗକରି ।

## ଚତୁର୍ଥ ସର୍ଗ ।

ସନ୍ଧ୍ୟାଦ୍ରି ଶିଖରେ ବସି, ଦିବ୍ୟାଲୋକଯୋଗେ
ଦେଖିଲେ ପାଣ୍ଡବଶ୍ରେଣୀ ଅନଳପ୍ରସାଦେ
ବିସ୍ମୟେ ଅଭୁତ ଦୃଶ୍ୟ, ଦକ୍ଷିଣ ଆକାଶେ
ତାରକାଖଚିତ-ଚାରୁ-ଚନ୍ଦ୍ରାତପତଳେ
ସ୍ୱର୍ଣ୍ଣମେଘେ ଦେବସଭା, ବିରାଜନ୍ତି ତହିଁ
ଦେବଗଣ, ଚିନ୍ତାମଗ୍ନ ସର୍ବେ ଏକମନେ,
ଚକ୍ରାକାରେ ବେଢିଅଛି ସର୍ବଦେବଦେହେ
ସୁନ୍ଦର ପ୍ରଭାମଣ୍ଡଳ, ବିଧୁଙ୍କୁ ଯେସନ
ବେଢ଼ଇ ବିବିଧବର୍ଣ୍ଣେ ଉଜ୍ଜ୍ୱଳପରିଧି
ନିଶାକାଳେ, ନିରକ୍ଷାର ଆଗମସୂଚକ, (୩)

---

(୧) ସନ୍ଧ୍ୟାଦ୍ରିର ପାଦପର୍ବତ, ପମ୍ପାସରୋବରରେ ସନ୍ନିହିତ । ସୁଗ୍ରୀବାଦି ପଞ୍ଚ-ମହାବୀର ବାଳିଙ୍କ ଭୟରେ ଏହି ପର୍ବତରେ ଆଶ୍ରୟଗ୍ରହଣ କରିଥିଲେ ।(୨) ରତ୍ନାକର—ଅରବ୍ୟସାଗର । (୩) ଚନ୍ଦ୍ରମଣ୍ଡଳକୁ ଲୋକେ ବର୍ଷାର ସୂଚକ ବୋଲି ବିଶ୍ୱାସ କରନ୍ତି ।

ଏକ ଏକ କରି ଦେବ ସ୍ୱର୍ଣ୍ଣଦୀଧିତି (୧)
ପୌରବେ ଚିହ୍ନାଇ ଦେଇ କହିଲେ ଏସନ, (୨)
"ଶୁଷାରଧବଳକାନ୍ତି, ଦେଖ, ସିଂହାସନେ
ବିରାଜନ୍ତି 'ଧର୍ମ'ଦେବ ଅମଳବସନେ,
କରେ ଜ୍ୟୋସ୍ନାଶୁଭ୍ର ଦଣ୍ଡ, ବଦନମଣ୍ଡଳେ
ବିରାଜେ ଅପୂର୍ବ ଜ୍ୟୋତି ପ୍ରଶାନ୍ତ ପାବନ;
ସ୍ଫୀତବକ୍ଷ ଅନୁଚର ଧର୍ମଙ୍କ ସମ୍ମୁଖେ
ଉଭା ଯେହୁ, ଦିବେ ସେହି 'ସାହସ' ଆଖ୍ୟାତ;
ଧର୍ମପାଶେ 'ସତ୍ୟ' ମହାତେଜସ୍ୱୀ ନିର୍ଭୀକ,
ସ୍ୱଚ୍ଛବତ ଦିଶେ ଯାଙ୍କ ସମସ୍ତ ବିଗ୍ରହ,
ହେଲେହେଁ ଭୂଷଣହୀନ ନୈସର୍ଗିକରୂପେ
ଦିଶଇ ସୁନ୍ଦର ଅତି ସେ ଦିବ୍ୟମୂରତି;
ସତ୍ୟଙ୍କ ଅଦୂରେ ଦେଖ ତୁଳାଦଣ୍ଡଧାରୀ,
ନିସ୍ତରଙ୍ଗ ହ୍ରଦ ପରି ଗମ୍ଭୀରମୂରତି
'ନ୍ୟାୟ' ଦେବ, ନେତ୍ର ବନ୍ଧ ଘନକୃଷ୍ଣବାସେ,
ସାନ ବଡ଼, ନିଜ ପର ଜ୍ଞାନର ରୋଧକ; (୩)
ତାଙ୍କ ପାଶେ 'ତପଃ' କ୍ଷୀଣବପୁ ଜଟାଧାରୀ,
ମୁଞ୍ଜ ମେଖଳାରେ ବନ୍ଧ ଶୋଭେ କଟିଦେଶେ (୪)
ବଲ୍କଲ, ଲମ୍ବିତ ଲମ୍ବ ଶ୍ମଶ୍ରୁ ବକ୍ଷସ୍ଥଳେ,
ତପଃ ପାଶେ 'କ୍ଷମା' ହସ୍ତେ ଆବରଣ ପଟ,
ବ୍ୟସ୍ତ ସଦା ପରଦୋଷ ଆବରିବା ପାଇଁ;
ତାଙ୍କ ପାଶେ 'ଦୟା' ଦେବୀ ସ୍ନିଗ୍ଧଜ୍ୟୋତିର୍ମୟୀ,
ମୁକ୍ତାଫଳଗଞ୍ଜି-ଅଶ୍ରୁ ଝରେ ନେତ୍ରଯୁଗେ
ପରଦୁଃଖେ, ବାହୁ ଟେକି ଡାକୁଛନ୍ତି କି ସେ
ଦୁଃଖିଜନେ ଆଶ୍ରା ଦେବା ପାଇଁ ନିଜ କୋଡ଼େ !
ପୂର୍ଣ୍ଣକୁମ୍ଭ ଜଳ ଇତି ପ୍ରକ୍ଷାଳନ୍ତି ଦେହ
'ଶୌଚ'ଦେବ, ସଙ୍କୁଚିତ ସଦା ଅନାଗ୍ରହେ;
ବିରାଗଙ୍କୁ କାଢ଼ନ୍ତି ଯେହୁ, ବସ୍ତ୍ର, ଆଭରଣ,
ନିୟୋଜିତ-ଦେହମନ ପରସେବା ଲାଗି,
'ତିତିକ୍ଷା' ସେ ରତ ସଦା ମହାତ୍ୟାଗବ୍ରତେ; (୫)

(୧) ସ୍ୱର୍ଣ୍ଣଦୀଧିତି — ଅଗ୍ନି । (୨) ପୌରବ — ଯୁଧିଷ୍ଠିର । (୩) ସାନ ବଡ଼, ନିଜ ପର ଏହି ଜ୍ଞାନର ରୋଧକ ଘନକୃଷ୍ଣବସନରେ 'ନ୍ୟାୟ' ଦେବଙ୍କ ନେତ୍ର ବନ୍ଧ । (୪) ମୁଞ୍ଜ — ତୃଣବିଶେଷ । (୫) ମହାତ୍ୟାଗବ୍ରତେ — ଆତ୍ମୋତ୍ସର୍ଗବ୍ରତରେ ।

ସାଧୁଜନସେବ୍ୟ ଏହି ପବିତ୍ର 'ଆର୍ଜବ' (୧)
ଶାଳସମ ଋଜୁ ଦେହ, ଋଜୁ ଦୃଷ୍ଟିରେଖା;
ବଣଶୋଭାରାଣୀ, ଦେଖ, ଦେବୀ 'ପଦ୍ମାଳୟା'
ଆବରଣପ୍ରଭାଜାଲେ ନଭଃ ଉଦ୍ଭାସିନୀ,
ଫୁଲ୍ଲ ରଙ୍ଗଶତଦଳ ଶୋଭେ ଦକ୍ଷକରେ;
ଦକ୍ଷେତରେ ଧାନମେଣ୍ଟି, ଦେବୀଙ୍କ ପ୍ରସାଦେ (୨)
ମେଘେ ରାଜେ ଇନ୍ଦ୍ରଧନୁ, ପୁଷ୍ପରାଜି ବନେ,
ଜଗତଜୀବନଯଷ୍ଟି ଶସ୍ୟ ଶସ୍ୟକ୍ଷେତ୍ରେ,
ନାରତେ ଅସ୍ଥିର ଦେବୀ, ଆସନୁ ଆସନେ
ନାରତେ କରନ୍ତି ସ୍ଥିତି, ସ୍ୱଭାବେ ଚପଳା; (୩)
ଶ୍ୱେତପଦ୍ମାସୀନା ଏହି ଦେବୀ 'ସରସ୍ୱତୀ'
କୁନ୍ଦେନ୍ଦୁ-ତୁଷାର-ପ୍ରଭା, ଶୁଭ୍ରବସ୍ତ୍ରାବୃତା,
ଏକହସ୍ତେ ଗ୍ରନ୍ଥ, ଆନେ ବୀଣା ସପ୍ତସ୍ୱରା,
ଅସାଧ୍ୟ ସାଧନାଫଳେ ତୁଷ୍ଟ ହୋଇ ଥରେ
ଦେଇଥିଲେ ଏହି ମୃତସଞ୍ଜୀବନୀବୀଣା
ନବତାନେ ବାଇବାକୁ ବଲ୍ମୀକପ୍ରଭବ—
ମୁନିବରେ, ପୁଣି ଥରେ କୃଷ୍ଣଦ୍ୱୈପାୟନେ, (୪)
ସେଭଳି ସେବକ ଆଉ ନ ଦେଖି ଭାରତେ
ଭାରତୀ ସେ ବୀଣା ଏବେ ଧରନ୍ତି ଶ୍ରୀକରେ;
ଏ ଆଦ୍ୟ ଯାବନ୍ତ ଦେବଦେବୀ ଭାରତର
କଳି ଆଗମନଭୟେ କରନ୍ତି ମନ୍ତ୍ରଣା
କେ କାହିଁ ଲୁଚିବେ, କେଉଁ ବିଜନପ୍ରଦେଶେ;
ବିଳମ୍ବ ତ ନାହିଁ ଆଉ ! ଭାରତବଦନେ
ବିରାଜିଲ ଯେଉଁ ଶିରୀ, ଯିବ ସିନା ଲିଭ
ଅଳ୍ପକ୍ଷଣେ, ଗଳ୍ପେ ମାତ୍ର ରହିବ ତା ସ୍ମୃତି !
ଧର୍ମର ଏ ଉପବନ ହେବ ପରିଣତ
ପାପ-ମରୁଭୂମେ ଏବେ, ଲକ୍ଷ୍ମୀଲୀଳାସରଃ
ଶୁଖିଯିବ, ଆହା, ଏହି କ୍ରୂର-ଅବଗ୍ରହେ !" (୫)

(୧) ଆର୍ଜବ—ସରଳତା । (୨) ଲକ୍ଷ୍ମୀ ଶୋଭା ଏବଂ ସମୃଦ୍ଧିର ଅଧିଷ୍ଠାତ୍ରୀ । ଶତଦଳ ଶୋଭାବ୍ୟଞ୍ଜକ, ଧାନମେଣ୍ଟି ସମୃଦ୍ଧିବ୍ୟଞ୍ଜକ । (୩) ଲକ୍ଷ୍ମୀଙ୍କର ଚଞ୍ଚଳା ନାମ ପୁରାଣପ୍ରସିଦ୍ଧ ଏବଂ ତାହାଙ୍କର ଚଞ୍ଚଳତା ଅନୁଭବସିଦ୍ଧ ଅଟେ । (୪) ସରସ୍ୱତୀ ବାଲ୍ମୀକି ଏବଂ ବ୍ୟାସଙ୍କୁ ତାହାଙ୍କର ଯୋଗ୍ୟ ଭକ୍ତ ଜାଣି ସ୍ୱକୀୟ ବୀଣା ନବତାନରେ ବଜାଇବା ସକାଶେ ଦେଇଥିଲେ । ଭାରତରେ ଏମାନଙ୍କ ସମକକ୍ଷ ସରସ୍ୱତୀଭକ୍ତ ଆଉ ନାହାନ୍ତି । (୫) ଅବଗ୍ରହ—ଅନାବୃଷ୍ଟି ।

ଏହା କହୁଁ କହୁଁ ନଭଃ ଭୀଷଣ ତମସେ
ଗଲା ପୂରି, ବିକଟାଳ-କରାଳ-ଆକୃତି
ଊର୍ଦ୍ଧ୍ୱୁଁ ଉହ୍ଲାଇଲେ କଳି ନିଜ ଦଳବଳେ,
ଲୋହିତ ମଙ୍ଗଳ ଗ୍ରହ ପ୍ରାୟେ ଭୟାବହ
ଅମଙ୍ଗଳ ବେନିଚକ୍ଷୁ, ନିଃସରଇ ଯହୁଁ
ଭୀମଧୂମକେତୁପୁଚ୍ଛସମ ଜ୍ୟୋତିରେଖା,
କୃତାନ୍ତର କରପତ୍ର ପ୍ରାୟେ ତ୍ରାସପ୍ରଦ (୧)
ଆବର୍ତ୍ତସନ୍ନିଭଭୂଶ୍ରେ ତୀକ୍ଷ୍ଣଦନ୍ତାବଳୀ; (୨)
ଆସୁଛନ୍ତି ଯେଝା ବେଶେ କଳି ପଛେ ପଛେ
କଳି-ଅନୁଚରବୃନ୍ଦ, ସଦା ଧର୍ମଦ୍ରୋହୀ,
ଲଳିତଲଲନାଭୂରୁ-ଗୃରୁଗୃପଧାରୀ
ଅଗ୍ରେ ବିଶ୍ୱଜୟୀ 'କାମ', ପୁଷ୍ପର ମୁକୁଟ
ଶୋହେ ଶିରେ, ପୁଷ୍ପମାଳା ଲମ୍ବିତ ଉରସେ;
ଆସୁଛନ୍ତି ଚଉପାଶେ ବେଢି ନାରୀସ୍ୱରୀ
କୁରଙ୍ଗତରଙ୍ଗେକ୍ଷଣୀ, ଚମ୍ପକବରଣୀ,
ବିମ୍ବାଧରୀ, ଘନଲମ୍ବକେଶୀ, ସ୍ମେରାନନା
ବାରାଙ୍ଗନାଦଳ ରତିଜିଣି ରୂପବତୀ;

× × ×

କାମ ପ୍ରତି ବୈଶ୍ୱାନର ଅଙ୍ଗୁଳି ନିର୍ଦ୍ଦେଶି
କହିଲେ ପୌରବେ, "ମହାଦୁଷ୍ଟମତି ଏହୁ !
ଥରେ ମୁହିଁ ଚନ୍ଦ୍ରଚୂଡ଼ନୟନୁ ବାହାରି (୩)
ଦହିଥିଲି ଏ ଦୁରନ୍ତେ, ତାଙ୍କୁ ସେହି ହେତୁ
ଡରେ ଦୁଷ୍ଟ, ତାଙ୍କ ଭକ୍ତପାଶୁଁ ରହେ ଦୂରେ ।"
ଆକ୍ରୋଶେ ଗର୍ଜ୍ଜି 'କ୍ରୋଧ' ଆସେ କାମପଛେ
ରକ୍ତଚକ୍ଷୁଃ, ସତେ କି ସେ ଦହିବ ଜଗତ !
ବଜ୍ରର ଔରସେ, ବାତ୍ୟାଗର୍ଭେ ଜାତ ହୋଇ
ବଡ଼ବାର ସ୍ତନ୍ୟେ ବଢିଥିଲା ଯେ ସାଗରେ, (୪)
ଭୂକମ୍ପ ଦୋଳରେ ସୁଖେ ଦୋହଲି ଶୈଶବେ,
ମହାଭୟଙ୍କର ବପୁ ! ରକ୍ତିମା ଜନ୍ମାଇ
ଉପୁଜାଏ ବିରକ୍ତିକି, ବହ୍ନିଶିଖା ଜାଳି

---

(୧) କରପତ୍ର—କରତ । (୨) ଆବର୍ତ୍ତ—ଭଉଁରି । (୩) ହରକୋପାନଳରେ ମଦନ ଦଗ୍ଧ ହୋଇଥିବାର କଥା ପୁରାଣରେ ଅନୁସନ୍ଧେୟ । (୪) ବଡ଼ବା—ସମୁଦ୍ର-ଗର୍ଭସ୍ଥିତ ବାଡ଼ବାନଳର ପ୍ରସୂତିରୂପା ଘୋଟକୀ । ସମ୍ଭବତଃ ଜଳମଗ୍ନ ଆଗ୍ନେୟଗିରିମାଳା ।

ଉପୁଜାଏ ତମଃ, ଜ୍ଞାନବିବେକବିଲୋପୀ; (୧)
ସହଚରରୂପେ ତାର ଆସଇ ସଙ୍ଗତେ
'ହତ୍ୟା', କରବାଳହାତେ, ରକ୍ତଲିପ୍ତବାସେ;
ତାମ୍ବ ପ୍ରାୟେ ଫଁଫଁସ୍ୱନେ ନିଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାର ନିଜ ଦନ୍ତେ ନିଜକୁ କାମୋଡ଼ି,
କଳାଭୁଜଙ୍ଗିନୀ ପ୍ରାୟେ ଭ୍ରୂକୁଟି ଲଲାଟେ,
ଶୃଙ୍ଗହୀନ ହୋଇ ସ୍ପର୍ଦ୍ଧା ଏକଲି ଆରେକ
ବିକ୍ରମେ ଉଦ୍ୟତ, ଯେହ୍ନେ ସବତ୍ସା-ଧେନୁକା; (୨)
କଥାକେ କଥାକେ ଯୋକେ ଯାଉଛନ୍ତି ରୁଷି,
ରସ ବହ୍ନିଯୋଗେ ଯଥା, କଥାକେ କଥାକେ (୩)
ବାଡ଼ଆବାଡ଼େଇ ହୋଇ ମରନ୍ତି ପାମରେ;
କ୍ରୋଧ ପଛେ 'ଲୋଭ' ସଦା ପ୍ରସାରିତପାଣି
ଭିକ୍ଷାଲାଗି, କାକୁବାଣୀ ନିରତେ ବଦନେ, (୪)
ସକଳ ଇନ୍ଦ୍ରିୟେ ଯେହ୍ନୁ କଲେହେଁ ବସତି
ଶ୍ରଦ୍ଧା ସମଧିକ ତାର ରସନାନିବାସେ,
ଗୋଡ଼ାନ୍ତି ସଙ୍ଗତେ ଯାର ଜ୍ଞାପଟୁ ବଟୁଦଳ,
ଅତ୍ୟାହାରେ ରୋଗୀ, ପୁଣି ରୋଗେ ଅତ୍ୟାହାରୀ !
ରସନାରୁ ଅହର୍ନିଶ ସ୍ରବୁଅଛି ଲାଳା,
ଗୋଡ଼ାନ୍ତି ଏ ଦଳ ସଙ୍ଗେ ଧନଲୋଭୀ ମୂଢ଼େ,
ଧନ ଯାଙ୍କ ପିତା ମାତା ଅଭୀଷ୍ଟ ଦେବତା,
ଅକାତର କନ୍ୟା, କିବା ବନିତା, ଭଗିନୀ
ଦେବାକୁ ଧନକେ ତୁଚ୍ଛ ଧନ ବିନିମୟେ !
ଏ ଦଳ କରନ୍ତି ବୃଦ୍ଧି ବନ୍ଧ ବାର୍ଦ୍ଧୁଷିକେ
ଅଧମର୍ଣ୍ଣ-ମକ୍ଷିଙ୍କର ଊର୍ଣ୍ଣନାଭରୂପୀ,
କୁବେରଙ୍କ ବରପୁତ୍ରେ, ବଢ଼ଇ ନିରତେ
(ମଦ୍ୟପର ତୃଷା ଯଥା ମୁହୁର୍ମୁହୁଃ ପାନେ)
ଧନବୃଦ୍ଧି ସଙ୍ଗେ ଯାଙ୍କ ଧନର ଲାଲସା,
ମହାରଙ୍କ, ମିଷ୍ଟବାକ୍ୟଦାନେ ମହାଦାତା ! (୫)

---

(୧) କ୍ରୋଧ ରକ୍ତିମା ଜନ୍ମାଏ, ଅଥଚ ସେଥି ସଙ୍ଗେ ବିରକ୍ତି ଜାତ କରେ । ଅଗ୍ନି ଜାଳ ଦିଏ ଅଥଚ ଅଗ୍ନି ଦ୍ୱାରା ଆଲୋକ ନ ଜନ୍ମାଇ ତମ ଜାତ କରେ । (୨) ଧେନୁକା—ଗାଈ । (୩) ରସ—ବାରୁଦ । (୪) କାକୁ—ଦୈନ୍ୟୋକ୍ତି । (୫) କୃପଣମାନେ ପ୍ରାୟ ଅତିରିକ୍ତ ମିଷ୍ଟଭାଷୀ ହୁଅନ୍ତି ।

ଭବଦୁଃଖହର-ମୋକ୍ଷପଥର ବିରୋଧୀ,
ଶୂନ୍ୟକୁ ଆକାଟେ ଧରି ନିବଡ଼ ଆଶ୍ଳେଷେ,
ଆସେ 'ମୋହ', ଶିଷ୍ୟବୃନ୍ଦ ଆସନ୍ତି ଗହଣେ,
କୁଟୁମ୍ବ-ଜମ୍ବାଳେ ମଗ୍ନ, କୁଣ୍ଠିତ ଯେ ସଦା (୧)
ଘଟାନ୍ତରକାଳେ ସୁଦ୍ଧା ଈଶ୍ୱରସ୍ମରଣେ !
ଶାସ୍ତ୍ରଜ୍ଞାନସତ୍ତ୍ୱେ ଜଡ଼ ! ଅନ୍ଧ ଚକ୍ଷୁ ଥାଇ !
ହେଲେହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତ !
ଦରାଣ୍ଡି ହୁଅନ୍ତି, ଆହା, ମହାଘୋରତମେ
ଦୀପସତ୍ତ୍ୱେ, ମମତାର ଦୁଶ୍ଛେଦ୍ୟ ବନ୍ଧନେ !
ଆସେ 'ମଦ', ଉଚ୍ଚଶିର ଲାଗିଛି ଆକାଶେ
ମହାଅହମିକାମତ୍ତ, ହସ୍ତ ବକ୍ଷସ୍ଥଳେ; (୨)
ସଙ୍ଗେ ଉପାସକଦଳ ଗମ୍ଭୀରମୂରତି,
ଊର୍ଦ୍ଧ୍ୱଦୃଷ୍ଟି, ପଦଭରେ ଠେଲେ ବସୁନ୍ଧରା,
ଆପଣାକୁ ବଡ଼ ମଣି ସମସ୍ତେ କୁଣ୍ଠିତ
ମହାର୍ଘବଚନବ୍ୟୟେ ମାନହାନିଭୟେ,
ଅହମିକା-କୂପେ କୂପମଣ୍ଡୂକ ସରବେ,
ଧନମଦେ ମତ୍ତ କେହୁ, କେହୁ ଜନମଦେ,
ଭଜନର ମଦେ କେହୁ, ପଦେ କେହୁ ଅବା,
କେହୁ ରୂପମଦେ, କେହୁ ଆଭିଜାତ୍ୟମଦେ,
ବିଦ୍ୟାମଦେ, ବୁଦ୍ଧିମଦେ ସ୍ଫୀତ ହୋଇ କେହୁ
ନିଜକୁ ଅତୁଳ ମଣି ଧରା ମଣେ ସରା !
ଅନ୍ୟଠାରେ ଅବନତ ହୋଇ ଅନ୍ତରେକେ
ଅତି ବିନମ୍ର ଭାନ କରଇ କେ ପୁଣି, (୩)
ଅହଂକାରଶୂନ୍ୟ ବୋଲି ମନେ ଅହଙ୍କାରୀ !
ମଦ ପଛେ ଆସେ 'ଈର୍ଷା' କୃଶକଳେବରା, (୪)
କରାଳକୁଟିଳଦୃଷ୍ଟି, ପାଣ୍ଡୁରବଦନା,
କ୍ରୂରଶୃହାଣିରେ ଯାର ଯାଉଛି ଝାଉଁଳି
ଚଉଦିଗେ ତରୁ ଲତା, ଯଥା ଉଷ୍ଣବାତେ,

---

(୧) ଜମ୍ବାଳ—ପଙ୍କ । (୨) ଅହମିକା—ମୁଁ ବଡ଼, ମୋହ ପରି ଆଉ କେହି ନାହିଁ, ଏହି ଜ୍ଞାନ । (୩) ଭାନ— ଛଳ । (୪) ପରର ସୌଭାଗ୍ୟ ଦେଖି ଈର୍ଷାନ୍ୱିତ ଲୋକଙ୍କର ଦେହ ଶୁଷ୍କ ହୋଇଯାଏ । "ଈର୍ଷା" ଏମାନଙ୍କର ଅଧିଷ୍ଠାତ୍ରୀଦେବତା ସୁତରାଂ 'କୃଶକଳେବରା' ।

ରୋଗକ୍ଳିଷ୍ଟ ପ୍ରାୟେ ଦୁଷ୍ଟା ଅପ୍ରସନ୍ନା ସଦା,
ଶୁଷ୍କାସ୍ୟେ ଉତ୍ସୁକେ ହାସ୍ୟ ଯଦି କଦାଚିତେ,
ସେ କେବଳ ପରଦୁଃଖେ; ଦୁଃଖେ କାହାରିକି
କାନ୍ଦିବାର ନ ଦେଖିଲେ ପକାଏ ସେ କାନ୍ଦି !
ସ୍ରବେ ରସନାରୁ ତାର ବିଷ ଅହର୍ନିଶ,
ଏ ବଡ଼ ବିଷମ ବିଷ ! ଯାର ତୀବ୍ର ତେଜେ
ଅନ୍ୟେ ଯାଉ, ତହିଁ ଦୁଷ୍ଟା ଆପେ ହୁଏ ଯାଉ !
ପରଦୋଷଦରଶନେ ଦିବ୍ୟଚକ୍ଷୁଷ୍ମାନ
ପରନିନ୍ଦାବାଦିକି, ମୂକ ପରଯଶେ,
ପରହାନିପ୍ରିୟ ଖଳ, କାନକୁହା ଆଦି
ଭକ୍ତଙ୍କର ମୁଖ ଦୁଃଖେ ଯାଉଅଛି ଶୁଖି
ପରସ୍ପର ମୁଖଶିଖୀ ଦେଖି ପରସ୍ପରେ;
ଯାଉ ହେଉଅଛି କେହି ଶୁଣି ଲୋକମୁଖେ
ପରଯଶକଥା, ଯଥା ବୃଶ୍ଚିକଦଂଶନେ,
ପରସଉଭାଗ୍ୟେ କେହି ମହାଖେଦ ବହି
ଲଘୁ କରେ ହୃଦଭାର ଦୀର୍ଘଶ୍ୱାସ ତେଜି,
ମହାଘୋର ଈର୍ଷାନଳେ ଜଳି ନିରନ୍ତରେ
ଜୀବନ୍ତେ ନରକଭୋଗ କରନ୍ତି ପିଶୁନେ !
ଖିନା ପ୍ରାୟେ ରହି ରହି କହି ନାନାକଥା (୧)
ଆସୁଅଛି 'ମିଥ୍ୟା', ଯାର ବସ୍ତ୍ରଯାକ ତାଳି,
ତାଳିପରେ ତାଳି, ପୁଣି ତାଳି ତା ଉପରେ,
ଏତେ ତାଳିସତ୍ତ୍ୱେ ଫୁଟି ଦିଶୁଛି ତା ଦେହ,
ପୁନଃ ପୁନଃ ତେଣୁ ନୂଆ ନୂଆ ତାଳିମାନ
ଲଗାଉଛି ମହାବ୍ୟସ୍ତେ ସେ ଜୀର୍ଣ୍ଣବସନେ;
ଆସନ୍ତି ପୂଜକଦଳ ଜଳ୍ପି ନାନାମତେ,
ପ୍ରବୀଣ ଖୁମ୍ପୁଆପଣେ, ପାରିଷଦପଣେ,
ପ୍ରଭୁର ଅଳୀକ ଯଶ ରଚନେ କେ ରତ
ଗୃହୁପତି, ପ୍ରଭୁମନତୋଷଣକୌଶଳୀ,
କେହି କରୁଅଛି ନିଜ ବଂଶର ବଡ଼ିମା, (୨)

---

(୧) ମିଥ୍ୟାବାଦୀ ଲୋକେ ଅନର୍ଗଳ ସ୍ପଷ୍ଟବାକ୍ୟ କହି ପାରନ୍ତି ନାହିଁ । ଗୋଟିଏ ମିଥ୍ୟା ଘୋଡ଼ାଇବା ସକାଶେ ଅଉ ଗୋଟିଏ ମିଥ୍ୟା କହନ୍ତି, ତାକୁ ଘୋଡ଼ାଇବାପାଇଁ ପୁଣି ମିଥ୍ୟା କହନ୍ତି । ଏତେ କରି ସୁଦ୍ଧା ଧରା ପଡ଼ନ୍ତି । (୨) ବଡ଼ିମା – ବଡ଼ପଣ ।

କେହି ବିଦ୍ୟା ସମ୍ପତ୍ତିର, ପ୍ରେତାଦିର କଥା
କହେ କେହି, ଦୂରଦେଶପର୍ଯ୍ୟଟକ କେହି
କହଇ, ସେ ଯାଇଥିଲା ମାନସରୋବରେ
ଦେଖିଲା ସେ ତହିଁ ଗଣ୍ଡଭେରୁଣ୍ଡ-ବିହଙ୍ଗ,
ଉର୍ଦ୍ଧ୍ୱେ ଚଲା ମାର ସରଶ୍ୱାର-କରପଲୁଁ
ଛନଗୋଠା କରି ନେଇଗଲା ଚଞ୍ଚୁ ନଖେ;
କେହି କହେ, କିଷ୍କିନ୍ଧାର ମର୍କଟନଗରେ
ଶୁଣିଛି ସେ ନିଜ କର୍ଣ୍ଣେ କର୍ଣ୍ଣରସାୟନ
ମର୍କଟସୁନ୍ଦରୀଙ୍କର ସଙ୍ଗୀତମାଧୁରୀ ;
କେହି କହେ, ବିଭୀଷଣପାଳିତ ସିଂହଳେ
ଦେଖି ଆସିଛି ସେ ରକ୍ଷଃ ଅଦ୍ଭୁତମୂରତି,
ଚତୁର୍ମ୍ମୁଖ, ଅଷ୍ଟଭୁଜ, ଅଷ୍ଟପାଦ ଆଦି ;
କେହି କହେ, "କାଶ୍ମୀରେ ମୁଁ ଦେଖିଲି ମାନବ
ଲମ୍ବ କର୍ଣ୍ଣ, ଏକ କର୍ଣ୍ଣ ଶେଯରୂପେ ପାରି
ଆନ କର୍ଣ୍ଣେ ଘୋଡି ହୋଇ ଶୁଅନ୍ତି ସେ ଶେଯେ",
ଅବିଶ୍ୱାସବ୍ୟଞ୍ଜି-ସ୍ମିତ ଶ୍ରୋତାମୁଖେ ଦେଖି,
ସଦର୍ପେ ପକାଇ ରାଣ କହଇ ସେ ପୁଣି—
"ଆଜନ୍ମ ମୁଁ କହି ନାହିଁ ମିଥ୍ୟା କେଉଁ କାଳେ.
ମିଥ୍ୟାଠାରୁ ପାପ ଆଉ ନାହିଁ ତ୍ରିଜଗତେ ।" (୧)
ସୁବସ୍ତ୍ରେ କୁତ୍ସିତ ବପୁ ଆବରି ଯତନେ,
ହାସ୍ୟେ ମିଷ୍ଟମୁଖ 'ଶାଠ୍ୟ' ଆସଇ ତାପରେ,
କକ୍ଷତଳେ ତୀକ୍ଷ୍ଣଗୁପ୍ତି ଗୁପତେ ପୂରାଇ;
ବିଷଦନ୍ତ, ବାହ୍ୟେ ବଡ଼ ନିରୀହମୂରତି,
ମାତ୍ର ବଡ଼ ଦାଉଦାଉ ଦୁର୍ମତି ଅନ୍ତରେ,
ଆସୁଛନ୍ତି ଅନ୍ତେବାସୀ ଦୁରନ୍ତ ସରବେ, (୨)
କେହି ଚୌର୍ଯ୍ୟେ ରତ, କେହି କୃତ୍ରିମମୁଦ୍ରଣେ
କୃତ୍ରିମଲେଖ୍ୟଲିଖନେ, ସିଦ୍ଧେ କେହି ଅବା (୩)
କେହି ବିଷଦାନେ, କେହି ଗୁପ୍ତମାରଣେ,
ଧର୍ମ୍ମଭେକଧାରୀ କେହି, ଗୈରିକବସନେ,
ଦୀର୍ଘ ଶ୍ମଶ୍ରୁ, ଦୀର୍ଘ ନଖ, ଦୀର୍ଘ ଜଟାଜୂଟେ

---

(୧) "ମୁଁ ଜୀବନରେ କେବେ ମିଥ୍ୟା କହି ନାହିଁ" ଏହିପରି ଉକ୍ତି ମିଥ୍ୟାବାଦୀଙ୍କ ମୁଖରୁ ପ୍ରାୟ ଶୁଣାଯାଏ । ମିଥ୍ୟାବାଦୀ ସାମାନ୍ୟ କଥାରେ ଶପଥ କରେ । (୨) ଅନ୍ତେବାସୀ – ଶିଷ୍ୟ । (୩) କୃତ୍ରିମଲେଖ୍ୟ—ଜାଲ ଦସ୍ତାବିଜ ।

ମଣ୍ଡିତ, କାହାର ଅବା ହସ୍ତେ ବୋଲା ତନ୍ତ୍ର,
କେହି ଅବା ଜପମାଳା ଜପେ ଅବିରତେ;
ନାନା ଗୂଢ଼-ଆବରଣେ ଆବୃତ ସରବେ,
ଭେଦ ନ ପାରଇ ଯାହା ଚକ୍ଷୁ ସାରସ୍ୱତ (୧)
କୃଷ୍ଣଶୁକ୍ଳବେନବର୍ଣ୍ଣ-ଛିନ୍ନବସ୍ତ୍ରଧାରୀ,
ବେନକରେ ବେନ କାଠି ବଜାଇ କୌତୁକେ
ଆସଇ 'କଳହ', ଯାର ଶିରୋରୁହ ଶିରେ
ପରସ୍ପର ଅସଂଲଗ୍ନ, କଣ୍ଟକ ଯେସନ,
ଲେଖ୍ୟ, ନିଦର୍ଶନ, ସାକ୍ଷ୍ୟ, ବ୍ୟବସ୍ଥା, ପ୍ରମାଣ,
ମୀମାଂସା, ବର୍ଣ୍ଣନାପତ୍ର ଆଦି ଲିପି ଯେତେ,
ବଡ଼ା ବଡ଼ା କରି ଦୃଷ୍ଟି ଖୋଦିଛି କଣ୍ଠୀରେ
ଅମୋଘ ଶୋଷଣ-ଅସ୍ତ୍ର ! ଯେ ଅସ୍ତ୍ର ପ୍ରୟୋଗେ
ଶୋଷି ନିଏ ଧନୀଧନ, ଅନ୍ନ ଦରିଦ୍ରର
ଅଲକ୍ଷିତେ, ନାନାମତେ ଅନର୍ଥ ଘଟାଇ;
ସମଦଶାଭାଗୀ କରି ଅର୍ଥୀ ପ୍ରତ୍ୟର୍ଥୀଙ୍କ; (୨)
ସଙ୍ଗେ ସଙ୍ଗେ ଆସୁଛନ୍ତି ବ୍ୟବହାରାଜୀବ, (୩)
କରଣ, ପାଞ୍ଜିଆ, ସାକ୍ଷୀ, ପଦାତିକ ଆଦି, (୪)
ଶିବାଗୃଧ୍ରରୂପୀ ଅଧିକରଣ-ମଶାଣେ ! (୫)
ମୁହୁର୍ମୁହୁ ମାରି ହାଇ, ଫୁଟକି ଫୁଟାଇ
ଅର୍ଦ୍ଧନିମୀଳିତନେତ୍ରେ ଆସୁଅଛି ମଠେ
'ଆଳସ୍ୟ', କମଠଗତି, କୁତ୍ସିତମୂରତି,
ସେବକେ ମଳିନବେଶ, ଧୂଳିରେ ଧୂସର;
କେ ଆଗ୍ରହୀ ପରଛିଦ୍ର ଅନ୍ୱେଷଣେ ସଦା,
ପରନିନ୍ଦା, ପରକୁତ୍ସା କଥନେ, ସର୍ଜନେ
ରତ କେହି, ମତ୍ତ ହୋଇ କେହି ଗଳ୍ପାମୋଦେ
ଫୁତ୍କାରେ ଉଡ଼ାଏ କେତେ ରାଜା, ମହାରାଜା,
ସର୍ବଙ୍କ ପରାସ୍ତେ କେହି, ନ ଦେଖି ନ ଶୁଣି,
କହେ କେତେରଙ୍ଗେ କଥା ବାହାପିଆପଣେ,
କେହି ବା ଠାପୁଆପଣେ, ଧର୍ମଧ୍ୱଜ ଧରି,

---

(୧) ଚକ୍ଷୁ ସାରସ୍ୱତ— ସରସ୍ୱତୀଙ୍କ ଚକ୍ଷୁ । (୨) ମୋକଦ୍ଦମାରେ ବାଦୀ ପ୍ରତିବାଦୀ ଉଭୟପକ୍ଷର ସର୍ବନାଶ ହୁଏ । (୩) ବ୍ୟବହାରାଜୀବ—ଓକିଲ । (୪) କରଣ—ମୋହରିର; ପାଞ୍ଜିଆ—ମହାଫିସ; ସାକ୍ଷୀ – ଗୁହା; ପଦାତିକ— ପେଏଦା । (୫) ଅଧିକରଣ — ବିଚାରାଳୟ । ଏହିଉପମାରେ ଅର୍ଥୀ ପ୍ରତ୍ୟର୍ଥୀ ଶବସ୍ଥାନୀୟ ।

ପରଠାରୁ ସଦା ଅର୍ଥଶୋଷଣପ୍ରୟାସୀ
ଧର୍ମନାମେ, ନଜ ପେଟ ପୋଷଣ ସକାଶେ,
ଗୃହୁଁ ଗୃହୁଁ ମାର୍ଗେ ବସି ପଢ଼ୁଅଛି କେହୁ,
ଦନ୍ତେ କେହୁ କାଟେ ତୃଣ, କେହୁ ମାଟିପରେ
ନଖେ ଲେଖେ ଏଣୁ ତେଣୁ ମନକୁ ଯା ଆସେ,
ପେଣ୍ଡାବାଲ ମୁକୁଳାଇ ବସୁଅଛି କେହ
ପଛେ ବସି ଆନ କେହୁ ମାରଇ ଉକୁଣି !
ଏ ଆଦ ଅଛନ୍ତି ଯେତେ ମହାସେନାପତି
କଳର କଲ୍କିଷଦଳେ, ସମସ୍ତଙ୍କୁ ଯେନ
ପ୍ରଚଣ୍ଡ ବିକ୍ରମେ କଳ ଆକ୍ରମିଲା ଆସି
ଭାରତର ଧର୍ମପୁଞ୍ଜେ, ଦୁର୍ଜ୍ଜୟପ୍ରତାପୀ;
ଚିଲକାର ନୀଳବକ୍ଷେ ଶ୍ୱେତହଂସାଳୀ
ଶରତେ ଯେ କାଳେ ଥାନ୍ତି ରତ ସନ୍ତରଣେ,
କୁଞ୍ଝତଟନୀକାଶୀତପ୍ରହାରେ ଅଟଳ —
ଜହ୍ନିଆଜଠାରୁ ଯେବେ ସହସା ସଞ୍ଚାଣ (୧)
ମହାଖରବେଗେ ଖସି ଆସେ ଅଧୋମୁଖେ
ବଜ୍ରନଖ ଅସ୍ତେ ବ୍ୟସ୍ତେ ପକ୍ଷିପନ୍ତି ଯଥା
ପଳାନ୍ତି ଚୌଦିଗେ ଉଡ଼ି ଜୀବନବିକଳେ,
କମ୍ପି ଯଥା କୋଣାର୍କର ଅନନ୍ତସୈକତେ (୨)
କେତକୀ-କୁନ୍ତଳକୁହୁଁ କ୍ରୁଦ୍ଧ ମହାବଳ (୩)
ଆସିଲେ ତଳକୁ ଖସି, ପଳାନ୍ତି ତ୍ରାସେ
ଦ୍ରୁତପଦେ କୃଷ୍ଣସାର ସଙ୍ଗେ ମୃଗବଧୂ,
ସଦଳେ କଳକ ଦେଖି, ବିକଳେ ତେସନ
ଅସ୍ତେ ବ୍ୟସ୍ତେ ଭାରତର ପୁଣ୍ୟପୁଞ୍ଜ ଯେତେ,
ସଭି ଛାଡ଼ି ପଳାଇଣ ଲୁଚିଲେ କେ କାହିଁ;
ପୃଷ୍ଠରକ୍ଷୀ ଏକମାତ୍ର ଧର୍ମସହଚର
'ସାହସ' ପଛକୁ ରହି, କଳସୈନ୍ୟହାତେ
ହେଲା ବନ୍ଦୀ, ତହୁଁ କାମ କଳ-ଆକ୍ରମତେ

---

(୧) ଜହ୍ନିଆ—ଚିଲିକାତୀରସ୍ଥିତ ପର୍ବତବିଶେଷ । (୨) କୋଣାର୍କ—ଅର୍କକ୍ଷେତ୍ର, ପୁରୀରୁ ୧୧ କ୍ରୋଶ ଉତ୍ତରପୂର୍ବରେ ଅବସ୍ଥିତ । ଏ ଅଞ୍ଚଳରେ ସମୁଦ୍ରବେଳାରେ ସହସ୍ର ସହସ୍ର ହରିଣ ଦେଖାଯାନ୍ତି । ଏ ଅଞ୍ଚଳରେ କେତକୀବନ ବ୍ୟାଘ୍ରସଙ୍କୁଳ । (୩) ମହାବଳ—ପଟୁଆଳିଆ ବାଘ ।

କଙ୍କରସ୍ୱରୂପେ ତାଙ୍କୁ ନେଲା ନିଜବଳେ ।
ବହ୍ନିତ ପୌରବେ, ଶୁଣି ଅନଳ ବିଷାଦେ
କହିଲେ, "ହେ ବୀର ଏବେ ଦେଖ, କି ଦୁର୍ଗତି
'ସାହସ'ର ହେଲା କଳି ଶାସନେ ଭାରତେ !
ଭାରତର ରକ୍ଷାପାଇଁ କ୍ଷତ୍ରିୟର ନେତା
ଥିଲା ଆଜ୍ଞାଯାଏ ଯେଉଁ, ଏବେ ସେହି ସିନା
ଲମ୍ପଟର ସଖା ହେବ ଅଗମ୍ୟାଗମନେ,
ପ୍ରାଚୀର, ପରିଖା,ପୁର ଲଙ୍ଘି ଯିବାବେଳେ ।"(୧)
ପଳାଇବାବେଳେ ଧର୍ମ ଯାଇଥିଲେ ଛାଡ଼ି
ଦିବ୍ୟପରିଚ୍ଛଦ 'ମୌନ' ନାମେ ଅଭିହିତ,
ସାଉଁଟି ସେ ପରିଚ୍ଛଦ 'ଶାଠ୍ୟ' ମହୋଲ୍ଲାସେ
ଅଗ୍ନିଦ, ଗରଦ, କୂଟଲେଖ୍ୟର ଲେଖକ, (୨)
ହତ୍ୟାକାରୀ, ସିନ୍ଧିଆଳ, ଚୌର୍ଯ୍ୟାଦିଙ୍କି ଡାକି
ନିଜଦଳୁଁ, ତାଙ୍କ ମୁଣ୍ଡେ ଦେଲା ଶାଢ଼ୀ ବାନ୍ଧି;
ଶାନ୍ତିରକ୍ଷକଙ୍କ ମାତ୍ର, ତାଙ୍କ ପରିଚ୍ଛଦେ
ନିଜବଳେ ସଜ୍ଜୀଭୂତ କରଇ ଯେସନେ
ଲୋକପ୍ରବଞ୍ଚନାପଟୁ ଦୁଷ୍ଟ ଦସ୍ୟୁପତି ।
ବିଷଣ୍ଣ-ଅନ୍ତରେ ଚାହିଁ କୌନ୍ତେୟ ସ୍ମିତ
କହିଲେ, "ହେ ଦେବ, ବଡ଼ ବିଷମ ଏ କଥା !
ଅସହ୍ୟ ଏ ଦୃଶ୍ୟ ମୋର ! ପବିତ୍ରଭାରତେ,
ବ୍ରାହ୍ମଣର ମନ୍ତ୍ରବଳେ, କ୍ଷତ୍ରବୀର୍ଯ୍ୟବଳେ
ସୁରକ୍ଷିତ ଆର୍ଯ୍ୟଦେଶେ ଘଟିବ ଅଗତି
ଏତେସରି ? ଲାଗେ ବଡ଼ ଅସମ୍ଭବ ମୋତେ !"
ଶୁଣି ହବ୍ୟବାହଦେବ ନିଜ ଦିବ୍ୟତେଜ
ସମ୍ବରଣ, ଦରହାସ୍ୟେ କହିଲେ ପୌରବେ,
"ବ୍ରାହ୍ମଣ କ୍ଷତ୍ରିୟ ଘରେ ସର୍ବ ଅଗ୍ରେ ସିନା
ପଶିବ କୌଶଳୀ କଳି, ବଲ୍ମୀକସ୍ୱରୂପେ
ଅସାଧ୍ୟ ସେ ବ୍ୟାଧି, ଯାହା ଭାରତର ଦେହେ
ଘୋଟିବ, ଜାଣି ନ ଥିବେ ଧାନେ ଧନ୍ୱନ୍ତରି !"(୩)

---

(୧) ଅର୍ଥାତ୍ ଭାରତବାସିମାନେ ଦେଶରକ୍ଷା ବିଷୟରେ ଭୀରୁ ହେବେ ଏବଂ କେବଳ ପାପକାର୍ଯ୍ୟରେ ସାହସୀ ହେବେ । (୨) ଗରଦ—ବିଷପ୍ରୟୋଗକାରୀ । କୂଟଲେଖ୍ୟ—ଜାଲ ଦସ୍ତାବିଜ । (୩) ଧନ୍ୱନ୍ତରି— ଆର୍ଯ୍ୟବୈଦ୍ୟକର ଆଦିପ୍ରଣେତା ।

ସୁଶ୍ରୁତର ଶଲ୍ୟ-ତନ୍ତ୍ର ହାରିବ ସେ ବ୍ରଣେ ! (୧)
ନୁହଇ ଉଚିତ ଆଉ ରହିବାର ଏବେ
ବହୁଦିନ ଏ ଭାରତେ, ତୀର୍ଥାଟନ-ବ୍ରତ
ସାର. ହେ ଭାରତ, ବେଗେ ଯାଅ ହିମାଚଳେ; (୨)
ଧର୍ମେ ଏକତାନମତି, ଧର୍ମ ପକ୍ଷପାତୀ
ତୁମ୍ଭେ, ବୀର, ଅନାଚାର ଦମନେ ଅକ୍ଷମ
ହୋଇ, ଦହି ହେବ ହିନା ଆପେ ଅନୁତାପେ,
ବନ୍ଦୀ ପତି ଯେହ୍ନେ ପତ୍ନୀଲାଞ୍ଛନାଦର୍ଶନେ ;
ଆସୁଛି ପାପର ବନ୍ୟା. ଭାରତଭରସା
ପାପ-ଜଳେ ଦ୍ୱୀପରୂପୀ ମହତ ଯେ ଜନ
ବୁଡ଼ିଯିବ ସିନା, ଆହା, ଏ ଘୋରପ୍ଲାବନେ,
ତୁମ୍ଭ ପରି ସୁଚନ୍ଦନଦ୍ରୁମ ପାଇଁ ଆଉ
ନ ଥିବନ୍ତି ଠାବ ଏହି ବିଷବଲ୍ଲୀବନେ ;
ଧର୍ମ-ଅନୁଷ୍ଠାନବ୍ରତେ ସହାୟ ବିହୁନେ
ସାଧୁର ଜୀବନ ହେବ ମହାବିଡ଼ମ୍ବନା,
ମହାଅନର୍ଥର ହେତୁ ହେବ କାଳବଶେ
ଧୈର୍ଯ୍ୟ, ବୀର୍ଯ୍ୟ, ପ୍ରଭୃତି ମହତ୍ତ୍ୱ ଯା କିଛି
ପୁରୁଷର, କାପୁରୁଷ-ପ୍ଲାବିତ ଭାରତେ ;
କଳିଶିଷ୍ୟ-କୁକ୍ଷିମ୍ଭରି-ଦ୍ୱିଜାତି-ଦୁଷ୍କୃତି- (୩)
ଯୋଗେ ନାରଖାର ହେବ ଅଚିରେ ଏ ମହୀ ;
ସେହି ଦେଶ, ସେହି ଗିରି, ସେହି ନଦନଦୀ,
ନଗର, ନଗରୀ, ତୀର୍ଥ, ଆଶ୍ରମାଦି କରି,
ସର୍ବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି, ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମେ ଭାରତମଣ୍ଡଳେ ।"



(୧) ସୁଶ୍ରୁତ—ଚିକିତ୍ସାଶାସ୍ତ୍ରପ୍ରଣେତା ଋଷି । ଶଲ୍ୟତନ୍ତ୍ରର ( surgery ) ଆଦ୍ୟ-ପ୍ରଣେତା । (୨) ଭାରତ—ଭରତବଂଶୋଦ୍ଭବ, ଯୁଧିଷ୍ଠିରଙ୍କୁ ସମ୍ବୋଧନ । (୩) କୁକ୍ଷିମ୍ଭରି—ସ୍ୱୋଦର ପୋଷଣରେ ବ୍ୟସ୍ତ ।

# ତୁଳସୀସ୍ତବକ

## ବର୍ଷା

ରାଗ — କଳହଂସକେଦାର

ପ୍ରସ୍ରବଣ-ଶଇଳେ କଲେ ବସତି *
ସୌମିତ୍ରି ସଙ୍ଗେ ପ୍ରଭୁ ରାଘବ-ପତି.
ବହଇ ଗୋଦାବରୀ ସେ ଗିରି-ପାଦେ
ଶିଳାବନ୍ଧୁର-ଶେଯେ ଝର୍ଝର ନାଦେ ।

ଏକେ ସୁନ୍ଦର ଗିରି ଝର-ଶୀତଳ,
ଦୁଜେ ମହୀରେ ବଜେ ବରଷାକାଳ;
ମେଘମାଳେ ମେଦୁର ଦେଖି ବିତାନ
କହନ୍ତି ଲକ୍ଷ୍ମଣଙ୍କୁ ଶ୍ରୀ ରଘୁରାଣ —

"ଲକ୍ଷ୍ମଣ, ଘନ ଦେଖି ନାଚଇ କେକୀ,
ଭକତ ଯଥା ଭବମାୟା ଉପେକ୍ଷି;
ବିତରେ ଅକାତରେ ଜୀବନ ଘନ,
ଧନ୍ୟ ଯେ ଦାତା ଜାଣେ ଯାଚକ-ମନ ।

ନୀଳ ନୀରଦମାଳେ ଖେଳେ ଚପଳା,
ଖଳପୀରତି ପ୍ରାୟେ ସଦା ଚପଳା;
ବର୍ଷନ୍ତି ମହୀମୁଖେ ନଇଁ ଅମ୍ବୁଦେ,
ବିଦ୍ୟା-ସମ୍ପଦେ ଯଥା ନମନ୍ତି ବୁଧେ ।

ଦେଖ କୋଟିକ ନହି ଦେଖ ଶିଖରେ,
କି ବର୍ଣ୍ଣ-ଜ୍ୟୋତି-ସ୍ରୋତ ସୃଜି ଅମ୍ବରେ
ମଣ୍ଡେ ଜୀମୂତ-ଭାଲ ଶକ୍ର-କାର୍ମୁକ,
ଆଶା ଉଜଳେ ଯଥା ଆସ୍ତିକ-ମୁଖ ।

ଠାବେ ଠାବେ ଶଇଳ ନୀଳ ବିଗ୍ରହେ
ଧବଳ ଅଭ୍ରଖଣ୍ଡ କି ଶୋଭା ବହେ !
ଚିତ୍ତେ ହୁଅଇ ପ୍ରତେ ପଡ଼ିଛୁଟିକ
କ୍ଷୀରୋଦ-ଫେଣ ବିଷ୍ଣୁ ଅଙ୍ଗେ ଛିଟକ ।

* ପ୍ରସ୍ରବଣ — ଗୋଦାବରୀ ତୀରବର୍ତ୍ତୀ ନିର୍ଝରଶୋଭିତ ସ୍ୱନାମପ୍ରସିଦ୍ଧ ପର୍ବତ ।

ଜଳପ୍ରପାତ ଗର୍ଜି ଗମ୍ଭୀର ରବେ
ଭୃଙ୍ଗ ଭୃଗୁରୁ ଡେଇଁ ପଡ଼େ ଭୈରବେ,
ସେ ରବେ ପ୍ରଭାବ ଦିଅଇ ଦର୍ଶି,
ଧର୍ମଶାସନେ ହୃଦୁଁ ବିବେକ ପରି ।

ସହନ୍ତି ଧାରା-ପାତ ଶଇଳଗଣ,
ଖଳ ବଚନ ଯଥା ସହେ ସୁଜନ;
ଫିଙ୍ଗୁଛି ଝର, ଦେଖ, ଠାଙ୍ଗର-ଅଙ୍ଗେ,
ପାଷଣ୍ଡେ ହରି-ପ୍ରେମ ଯଥା ସୁସଙ୍ଗେ ।

ଗଳନ୍ତି କୂଳ ଲଙ୍ଘି ଗିରି-ସରିତେ,
ମତ୍ତ ପାମର ଯଥା ଅଳପ ବିତ୍ତେ;
ଗୋଦାବରୀଙ୍କ ସଙ୍ଗେ କରନ୍ତି ଗତି,
ମହତ-ଆଶ୍ରା ବିନୁ କାହିଁ ମୁକତି ?

ଆବିଳ ନବଜଳ ପରଶି ମହୀ,
ମାୟାରେ ଜୀବ ଯଥା ଜଡ଼ ହୁଅଇ;
ନିରତେ ନୀର-ପାତେ ପୂରିଲା ସର,
ସାତ୍ତ୍ୱିକ-ଗୁଣେ ଯଥା ସାଧୁ-ଅନ୍ତର ।

ନିମ୍ନଗା-ନୀର ବେଗେ ସାଗରେ ଧାଏଁ
ଶାଶ୍ୱତେ ଭକ୍ତ-ଜନ-ମନ ପରାୟେ; †
ସାଗରେ ନିଜ ଗୋତ୍ର ଯାଏ ବିସ୍ମରି,
ଭକ୍ତ ତନ୍ମୟ ଯଥା ଲଭିଲେ ହରି ।

ଉତ୍ଫୁଲ୍ଲ ପଡ଼େ ତୀର-ବିଟପୀ ନୀରେ,
ବିଟପୀ-ମନ ଯଥା ଲମ୍ପଟ-ଗିରେ,
ମାତ୍ର ଶଇଳ, ଦେଖ, ଉଭା ଅଟଳେ,
କାମି-ଚାଟୁରେ ସତୀ-ମନ କି ଟଳେ ?

ଲଙ୍ଘଇ ନଦୀସ୍ରୋତ ସେତୁ ବନ୍ଧନ,
ରାଜଦ୍ରୋହୀ ଯେସନ ରାଜଶାସନ;
ବହି ଯାଉଛି ବାରି ଭେଦି କିଆରୀ,
ମର୍ଯ୍ୟାଦା ଲଙ୍ଘେ ଯଥା ସ୍ୱତନ୍ତ୍ର-ନାରୀ ।

---

† ଶାଶ୍ୱତେ— ଭଗବାନଙ୍କ ପ୍ରତି ।

ଦର୍ଦ୍ଦୁର-ରବ ଶୁଣି ନୀରବ ପିକ,
ମୂଢ଼-ସଭାରେ ମୂକ ଯଥା ଧାର୍ମିକ;
ଡାହୁକ ବଂଶକୁଞ୍ଜେ ନରହେ ରବେ,
ବହୁଭାଷୀ ଯେସନ ଜଳ୍ପେ ସ୍ୱଭାବେ ।

ହରିତ ଦୂର୍ବାଦଳେ ହୋଇ ମଣ୍ଡନ
ନିଦାଘରୁକ୍ଷ ମହୀ ହସେ ଯତନ,
ସରସ ସାଧୁ-ହୃଦ ହୁଏ ଯେପରି
ଶୁଷ୍କ ବୈରାଗ୍ୟେ ଭକ୍ତିରସ ସଞ୍ଚରି ।

ପଲ୍ଲବ କଅଁଳଲା ବୃକ୍ଷେ ଅନେକ,
ସାଧକ-ହୃଦେ ଯଥା ଉଦେ ବିବେକ;
ଅର୍କ ପାଦପ ହେଲା ପତ୍ର-ବିହୀନ,
ସୌରାଜ୍ୟେ ଖଳେ ଯଥା ହୁଅନ୍ତି ହୀନ ।

କଦମ୍ବ ବିକଶିଲା ଗିରି-କାନନେ
କଦମ୍ବବନ୍ଧୁ ମେଘ ମନ୍ଦ୍ର ନିଃସ୍ୱନେ,
ଭକତବନ୍ଧୁ ହରିନାମ କୀର୍ତ୍ତନୁ
ହର୍ଷେ ପୁଲକେ ଯଥା ଭକତତନୁ ।

* * * * *
* * * * *

ଶସ୍ୟେ ବସୁଧା କେଡ଼େ ଶୋଭା-ଆସ୍ପଦ,
ଉପକାରୀ ଜନର ଯେହ୍ନେ ସମ୍ପଦ ।

ଡୁବେଇ ଗଲେ ନଭୁଁ ଜ୍ୟୋତିଷ୍କଗଣେ,
ଜ୍ୟୋତି ଦେଖାଇ ହେଲେ ଜ୍ୟୋତିରିଙ୍ଗଣେ,
ମୂର୍ଖରାଜ୍ୟେ ଯେସନ ବଢ଼େ ଆଦର
ନିର୍ଗୁଣେ, ଗୁଣି-ଜନେ ହୁଅନ୍ତି ପର ।

କୃଷକେ ଉପାଡ଼ନ୍ତି ବାଳୁଙ୍ଗା କ୍ଷେତୁ,
ସାଧୁ ଯେସନ ଆତ୍ମ-ବଡ଼ିମା ଚେତୁଁ;
ସଲିଳୁଁ ପଲାଇଲେ କୋକେ ତ୍ୱରିତେ,
ଅବୁଝା ରାଜା ରାଜ୍ୟୁଁ ଯଥା ପଣ୍ଡିତେ ।

ନ ଉଠେ ନୀର-ସନ୍ନେ ତୃଣ ଉଷରେ,
ବିକାରେ କାମ ପ୍ରାପ୍ତେ ସନ୍ତ-ଅନ୍ତରେ;

ଜନ୍ତୁ-ସଙ୍କୁଳ ବନସ୍ଥଳୀ ସମ୍ପ୍ରତି,
ସୌରାଜ୍ୟେ ପ୍ରଜା-ପୂର୍ଣ୍ଣ ରାଷ୍ଟ୍ର ଯେମତି ।

ବାଟୋଇ ଠାବେ ଠାବେ ଅଟକ ରହେ,
ଇନ୍ଦ୍ରିୟ ଯଥା ଦିବ୍ୟ-ଜ୍ଞାନ ଉଦୟେ;
ପ୍ରବଳ-ବାୟୁ କେବେ ଉଡ଼େ ଜଳଦ,
କୁପୁତ୍ର ଯଥା କୁଳ-ଧର୍ମ, ସମ୍ପଦ ।

କ୍ଷଣେ ନିବିଡ଼ ତମ ଗ୍ରାସଇ ଧରା,
କ୍ଷଣେ ଉପୁଜେ ପୁଣି ପ୍ରଚଣ୍ଡ ଖରା;
କୁସଙ୍ଗ ଏହିପରି ସୁଜ୍ଞାନ ନାଶେ,
ସୁସଙ୍ଗ ଏହିପରି ଜ୍ଞାନ ପ୍ରକାଶେ ।

ଦେଖ ମଳିନ ହୋଇ ଆଶ୍ରମ-ସର
ନ ବହେ ହୃଦେ ଛବି ତୀର-ବନର,
ମତିକି କଳୁଷିତ କଲେ ଯେସନେ
ଅକ୍ଷମ ଜନେ ପର ଗୁଣ ଗ୍ରହଣେ ।

ଦେଖ ଦେଖ ଅଗ୍ରତେ ସରସୀଜଲେ
ପଡି ମଣ୍ଡୂକ କ୍ରୂର-ଅହି-କବଳେ
ବିକଳେ ରାବୁଁ ରାବୁଁ, ଉର୍ଦ୍ଧ୍ୱେ ଉଡ୍ଡୀନ
ଉହୁଙ୍କି ଶିଶୁ କଙ୍କି ଦେଲା ଗିଳଣ ।

କାଳକବଳେ ଦିନା ଏରୂପେ, ଭାଇ,
ଆରତେ ନର ଧାଉ ହେଉଣ ଥାଇ,
ତେବେହେଁ ମନାସଇ ଲଭି ଏ ଦଶା
ମେଣ୍ଟାଇବାକୁ ଭବ-ଭୋଗ-ଲାଳସା !

ବରଷାକାଳ ଅଟେ ଉଦ୍ଭିଦ-ମିତ୍ର,
ମାତ୍ର ପଙ୍କଜ ମର୍ମ, ନୋହେ ବିଚିତ୍ର !
ଜଳ-ଗହଳ ହେଲା ତା ପକ୍ଷେ ଯମ,
ଅତି-ସମ୍ପଦ, ବାବୁ, ମହାବିଷମ ।"



## ଶରତ୍ ।

ଗିରି-ତଟେ ଶରତ ଶୋଭାକୁ ଚାହିଁ
କହିଲେ ଅନୁଜଙ୍କୁ କୋଦଣ୍ଡସାଇଁ—
"ବର୍ଷାଗତେ ଆସିଲା ଋତୁ ବିମଳ,
ଦିଶନ୍ତି କାନ୍ତି-ବାସେ ଦିଶେ ଉଜ୍ଜ୍ୱଳ

ଜରତୀ ବରଷାର ଧବଳ-ଜଟା—
କାଶକୁସୁମେ ଶୁକ୍ଳ ଚନ୍ଦ୍ରମା-ଘଟା;
ଅଗସ୍ତ୍ୟ ମାର୍ଗୁ ନୀର ଶୁଖାଇ ଦେଲେ, (୧)
ସନ୍ତୋଷ ତତ୍ତ୍ୱେ ଯଥା ଲୋଭକୁ ହେଲେ ।

ଦୁଃସହ ହେଲା ଖରରଶ୍ମି-କିରଣ,
ଦୁଃସହ ଗୁଣି-ଯଶ ଖଳେ ଯେସନ;
ସର-ସରିତ-ନୀର ପ୍ରସନ୍ନ ଅତି,
ମୋହ ଛୁଟିଲେ ଯଥା ସଜ୍ଜନମତି ।

ସର-ସରିତ-ନୀର କ୍ରମେ ହଟିଲା,
ମମତା ଯଥା ସାଧୁ ମନୁ ଛୁଟିଲା;
ଆସିଲା ରମ୍ୟ ଋତୁ ଦେଖି ଖଞ୍ଜନ,
ସୁକୃତ ଫଳେ ଯଥା ପାଇ ସୁକ୍ଷଣ ।

କି ରଙ୍ଗେ ସାର ସ୍ୱର-ତରଙ୍ଗ ତୋଳେ (୨)
ପର୍ଣ୍ଣି-ଶ୍ୟାମଳ ଦୂର ଶଇଳ-କୋଳେ !
ମୁମୂର୍ଷୁ-ସାଧୁ କର୍ଣ୍ଣେ ନାରଦ-ବୀଣା—
ଝଙ୍କାର ପରି ଏହି ସଙ୍ଗୀତ ସିନା !

---

(୧) ଅଗସ୍ତ୍ୟ— ଦକ୍ଷିଣାକାଶରେ ଶରତରେ ଅଗସ୍ତ୍ୟ ତାରାର ଉଦୟ ହୁଏ । ଅଗସ୍ତ୍ୟ ଉଦୟରେ ପଙ୍କମୟ ମାର୍ଗ ଶୁଷ୍କ ଏବଂ ନଦୀ ଓ ପୁଷ୍କରଣୀଜଳ ନିର୍ମଳ ହେବାର ପ୍ରସିଦ୍ଧି ଅଛି । (୨) ସାର—ମଇନା, ଯେଉଁମାନେ ମହାରଣ୍ୟରେ ଭ୍ରମଣ କରି ନାହାନ୍ତି, ସାରର ସ୍ୱରର ମିଷ୍ଟତା ଏବଂ ବିଚିତ୍ରତା ସେମାନେ ଉପଲବ୍ଧି କରି ପାରିବେ ନାହିଁ । ଶରତ୍‌କାଳରେ ମହାନଦୀ ସାତକୋଶିଆ ଗଣ୍ଡରେ ଅସଂଖ୍ୟ ସାରର ମଧୁର ରବ ଶ୍ରୁତିଗୋଚର ହୁଏ । ଗୃହପାଳିତ ସାରର ସ୍ୱରରେ ସେ ମଧୁରତା ଅନୁଭୂତ ହୁଏ ନାହିଁ ।

କର୍ଦ୍ଦମ ରେଣୁ ବିନୁ ଶୋହେ ଧରଣୀ,
ଯେସନ ନୀତି-ପଟୁ-ନୃପ-କରଣୀ; ( ୧ )
ଜଳସଂକୋଚେ ହେଲା ବିକଳ ମୀନ,
ବିବୁଧକୁଟୁମ୍ବୀ ଯଥା ସମ୍ବଳହୀନ ।

ଘନ ବିନୁ ନିର୍ମ୍ମଳ ହେଲା ଆକାଶ,
ଭକତ ଛେଦ ଯଥା ଆଶାର ପାଶ;
ହୁଅଇ ଅଳ୍ପ ବୃଷ୍ଟି କାହିଁ କ୍ୱଚତେ,
ଲକ୍ଷକେ ଭକ୍ତି ଯଥା ଏକର ଚିତ୍ତେ ।

ବଣିକ, ଭିକ୍ଷାଜୀବୀ, ନୃପ, ତାପସ ( ୨ )
ସ୍ୱବାସୁଁ ବାହାରିଲେ ହୋଇ ହରଷ;
ସୁକୃତି-ଫଳେ ଭକ୍ତି ଉଇଁଲେ ମନେ,
ମାୟା-ବନ୍ଧନ ତୁଟି ଯେହ୍ନେ ସୁଜନେ ।

ନିଃଶଙ୍କ ମୀନ ଯହିଁ ନୀର ଅଗାଧ,
ହରି-ଆଶ୍ରିତେ ଯଥା ନାହିଁ ପ୍ରମାଦ;
କମଳ ଫୁଟି ହ୍ରଦ ଶୋହେ ତେସନ,
ନିର୍ଗୁଣବ୍ରହ୍ମ ଗୁଣ ଆଶ୍ରି ଯେସନ ।

ତଡ଼ାଗ ତାରକିତ ଶ୍ୱେତ-କୁମୁଦେ,
ତାମସ-ହୃଦେ ସତ୍ତ୍ୱଗୁଣ କି ଉଦେ ? (୩)
ପଦ୍ମବନେ ଶୁଭଇ ଅଳି-ଝଙ୍କାର,
ବ୍ରହ୍ମବାଦର କି ସେ ନାଦ ଓଁକାର ?

ଅଦୃଶ୍ୟେ ସୋମଫୁଲ ବଢରେ ବାସ,
ସାହିକର ନ ଥାଏ ନାମେ ପ୍ରୟାସ,

---

(୧) ନୀତିନିପୁଣ ରାଜାମାନେ ଏକପକ୍ଷରେ ଅଭାବ ଏବଂ ଅପରପକ୍ଷରେ ଆଧିକ୍ୟ ଏହି ଉଭୟ କୋଠୀର ଅସୁବିଧା ପରିହାର କରିବାରେ ଯତ୍ନବାନ୍ ହୁଅନ୍ତି । (୩) ଶରଦାରମ୍ଭରେ ବଳଦଆମାନେ ଘଣ୍ଟାମଣ୍ଡିତ ବଳଦ ଘେନି ବାଣିଜ୍ୟ ସକାଶେ ଗଡ଼ଜାତକୁ ଯାନ୍ତି । ପୂର୍ବେ ଭାରତୀୟ ରାଜାମାନେ ଶରତ୍‌କାଳରେ ଦିଗ୍‌ବିଜୟ ସକାଶେ ବହିର୍ଗତ ହେଉଥିଲେ । ଅଦ୍ୟାପି ସୁଦ୍ଧା ଦଶହରାରେ ଗଡ଼ଜାତୀୟ ରାଜ୍ୟମାନଙ୍କରେ ସେହି ପୂର୍ବପ୍ରଥା କେବଳ ବିଧିରକ୍ଷାସ୍ୱରୂପ ଅନୁଷ୍ଠିତ ହେଉଅଛି । ତାପସମାନେ ଚାତୁର୍ମାସ୍ୟ ଅନ୍ତେ ତୀର୍ଥାଟନ ସକାଶେ ବହିର୍ଗତ ହୁଅନ୍ତି । (୨) କୃଷ୍ଣବର୍ଣ୍ଣ ହେବାରୁ ତଡ଼ାଗର ତାମସହୃଦୟ ସହିତ ଉପମା । ଶୁଭ୍ର କୁମୁଦ ସତ୍ତ୍ୱଗୁଣ ସହିତ ଉପମିତ ।

ସ୍ଥଳକମଳେ କେଡ଼େ ରୂପର ଭାତି !
ନିର୍ଗୁଣ ହେଲେ ଲୋକ ହୁଏ ଏ ଜାତି !

ଠାବ ଠାବକେ ଦେଖି ଶ୍ୟାମ ଅଟବୀ
ସପ୍ତଚ୍ଛଦ-ପ୍ରସୂନେ ଶବଳ ଛବି,
ଆଘ୍ରାଣ ଯାର ଶିରଶୂଳ ଜନ୍ମାଏ
ଗୁଣଗର୍ବିର ଆତ୍ମଶ୍ଳାଘା ପରିପ୍ରାୟେ !

ସୁନତ ଶାଳି-ତୃଣ ଏବେ କେଦାରେ
ମଞ୍ଜୁଳ ପକ୍ୱ ଫଳଗୁଚ୍ଛର ଭାରେ,
ଏଥୁଁ ଏ ଶିକ୍ଷା ସିନା ଲଭେ ହୃଦୟ,
ପରିପକ୍ୱ ଜ୍ଞାନର ଫଳ ବିନୟ ।

ନିର୍ମଳ ରଜୋହୀନ ରମ୍ୟ ଶରଦେ
ଶୋଭେ ପ୍ରକୃତି ପୂର୍ଣ୍ଣ ଶୋଭା-ସମ୍ପଦେ,
ହୃଦୁଁ ରାଜସଭାବ ହେଲେ ନିଃଶେଷ
ପ୍ରସ୍ଫୁଟେ ଦିଶେ ଯଥା ଅଧ୍ୟାତ୍ମଦେଶ ।

ଗଗନର ନୀଳମା-ଲହରେ ବୁଡ଼ି
ହୃଦୟ ଯାଏ ନିଜ ସତ୍ତାକୁ ହୁଡ଼ି,
ନ ପାଇ ଆଦ୍ୟ ଅନ୍ତ ହୁଏ ସ୍ତବଧ !
ଜୀବନ୍ତେ ଲଭେ କି ସେ ନିର୍ବାଣପଦ ?

ପ୍ରଦୋଷେ କାଦମ୍ବିନୀ ବାରୁଣୀପଟେ
କୁଙ୍କୁମବର୍ଣ୍ଣେ କେତେ ଛବି ପ୍ରକଟେ !
କି ରଙ୍ଗେ ଶୂନ୍ୟେ ବେଗେ ହୁଏ ଉଭାନ !
ଭଙ୍ଗୁର ସୁଖ ଆଶା-ସୌଧ ସମାନ ।

ରଥାଙ୍ଗ ବିଭାବରୀ ଦେଖି ବିରସ,
ପର-ସମ୍ପଦେ ଯଥା ଖଳ-ମାନସ ;
ନିଶା-ଶିଶିର ହରେ ଦିବସ-ତାପ,
ସାଧୁ ସଙ୍ଗମ ଯଥା ବିନାଶେ ପାପ ।

ନିଶାରେ ଉଚ୍ଛୁଳାଏ କେଡ଼େ ଉଲ୍ଲାସ
ଢଳ-ଢଳ-ଚନ୍ଦନ-ଧୌତ ଆକାଶ,
ସେ ଭାବେ ଭୋଳ ହୋଇ ସାଧୁ ହୃଦୟ
ଭାଳେ, ହେଲା କି ନିଜ ବିଶ୍ୱ ଚିନ୍ମୟ !

ଚକୋର ବିଧୁଛବି ହେରି ତୃଷିତ,
ହରିଙ୍କ ଧ୍ୟାନେ ଧରି ଯଥା ଭକତ ;
ଶୀତେ ଉଭେଇ ଗଲେ ମଶକ, ଦଂଶ,
ସଦ୍‌ଗୁରୁ ଯୋଗେ ଯଥା ଅବିଦ୍ୟା ଧ୍ୱଂସ ।

ଉତ୍କଳ ଛାୟାପଥ ନୟନ ରମେ,
ଧରମଦାଣ୍ଡ କି ସେ ପାପ-କର୍ଦ୍ଦମେ ?
ଜ୍ୟୋତିଷ୍କ-ବୀଥି କିବା ଉତ୍କଳ ଦେଶେ ?
ଜ୍ୟୋତିଧାମର କୋଟିଗବାକ୍ଷ କି ସେ ?

ବିଶ୍ୱଦ୍ୟୋତିନୀ, ଦିବ୍ୟଦ୍ୟୁତିମାଳିନୀ,
ମୌକ୍ତିକ-ନନ୍ଦ-ହିମ-ବିନ୍ଦୁ ଶାଳିନୀ,
କେଡ଼େ ସୁନ୍ଦର, ଆହା, ଶରତ-ଉଷା !
ସୁନ୍ଦର ଗୋଦାବରୀ ଶରତ-କୃଶା ।

ଦେଖଇ ନତ ହଇଁ ଏ ଗିରି ଶିରେ
ପ୍ରଭାତି ତାରି ମୁଖ ଗୋଦାବରୀରେ,
ପରଜ୍ୟୋତିର ପ୍ରଭା ଭକ୍ତ-ମାନସେ
ପ୍ରାପ୍ତେ ତା ଛବି ସ୍ୱଚ୍ଛ ସ୍ରୋତେ ବିଲସେ ।

ପୁଲିନୁ କୁହେଳିକା ହୋଇ ପ୍ରକଟ
କ୍ରମେ ଆବରେ ଶ୍ୟାମ-ଶଇଳ-ତଟ,
ବାଳାତପେ ତରଳ ଯାଏ ତା କାୟା,
ତତ୍ତ୍ୱ-ଆଲୋକେ ଯଥା ସଂସାର-ମାୟା !"



( ୧୧ )

## ଶ୍ମଶାନ ଦୃଶ୍ୟ



ଚଣ୍ଡାଳ ପ୍ରଭୁର ଆଜ୍ଞା ଶିରୋଧାର୍ଯ୍ୟ କରି
କ୍ରୀତଦାସରୂପେ ତାର ଭ୍ରମନ୍ତି ମଶାଣେ,
ଧୂଳିରେ ଧୂସରି, ଜୀର୍ଣ୍ଣ ଶୀର୍ଣ୍ଣ କନ୍ଥାଧାରୀ
ମହାମତି ହରିଶ୍ଚନ୍ଦ୍ର, ଏ ମଶାଣେ ଯେତେ
ଦାହଲାଗି ଆସେ ଶବ, ପ୍ରତି ଶବଠାରୁ
ଶୁଳ୍କ ସଂଗ୍ରହର କାର୍ଯ୍ୟେ ନିଯୋଜିତ ହୋଇ;
କି ଘୋର ବୀଭତ୍ସ, ଆହା, ଏ ମଶାଣ-ଭୂମି ?
ପରିକୀର୍ଣ୍ଣ କେଶଜାଲେ ଅଙ୍ଗାରେ ଖପରେ,
ନୀରବେ ଆସୀନ ହୋଇ ଯହିଁ ଭସ୍ମାସନେ
ଭବର ଭଙ୍ଗୁର ଲୀଳା ଦେଖଇ କୌତୁକେ,
କ୍ରୂର ବିକଟାଳ କାଳ ଅସ୍ଥି-ମାଳା-ଧାରୀ;
ସାମ୍ୟଦୀକ୍ଷା ପ୍ରକୃତିର ଏହି ପୀଠସ୍ଥଳୀ,
ସମାନ ସରବେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ,
କି ରତ୍ନପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଷେୟବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ,
ସମ ଦଶା ସଭଙ୍କର, ସମ ପରିଣତି;
ଜୀବନର ସ୍ରୋତ ବହେ ସଦା ଏ ସାଗରେ,
ତରୁକୁଞ୍ଜୁ ପର୍ଣ୍ଣପୁଞ୍ଜ ଉଡ଼ାଇ ଯେସନେ
ଆଣେ ବାତ୍ୟା, ସେହିମତି ନିର୍ମମ ନିୟତି
ଘଉଡ଼ାଇ ଆଣେ ଜୀବେ ଏ ମଶାଣଭୂମେ,
କାଳର ଲାଗିଛି ନାଟ ଏଥି ସବୁକାଳେ,
ମୂରତି ଏହାର କିବା ବିଭୀଷିକାମୟୀ !
ଆକାଶେ ମଣ୍ଡଳାକାରେ ମୁହୁର୍ମୁହୁ ଘୂରି
ପଡୁଛନ୍ତି ଗୃଧ୍ରେ ଆସି କଳକଳାରବେ,
ରକ୍ତ, ଲାଳା, କ୍ଲେଦ ତାଙ୍କ ଚଞ୍ଚୁପୁଟୁ ଝରି
ଝରଇ ଆକାଶ ଘୋଟି ବୃଷ୍ଟିଧାରା ପ୍ରାୟେ;
ଅଶିବ ପଟହ ପ୍ରାୟେ କଣ୍ଠିକଣ୍ଠୁ ରବେ

ଉପୁଜାଇ ପ୍ରଭଞ୍ଜନ ଭୈରବେ ସଘନେ
ରବନ୍ତି ଶୃଗାଳକୁଳ ଭ୍ରମି ଚଉଦଗେ,
ଜଟିଳାଗ୍ର ଚିତାବହ୍ନି ଜଳେ ଠାବେ ଠାବେ
ପ୍ରଦୀପ୍ତ ମସ୍ତିଷ୍କମେଦେ, ଫୁଟାଇ ବିକଟେ
ନୃକରୋଟି, ତୀବ୍ରଗନ୍ଧ ପ୍ରସାରି ପବନେ;
ରୁଣ୍ଡ ହୋଇ କାହିଁ ଅବା କାନ୍ଦନ୍ତି ବିକଳେ
ପରେତର ପରିଜନେ, ଭାଳେ କର ମାରି,
ତିନ୍ତାଇ ଲୋତକଧାରେ ଶ୍ମଶାନ-ଅବନୀ;
ପଡ଼ିଛନ୍ତି ଠାବେ ଠାବେ ଶବ ରାଶି ରାଶି
ବେଷ୍ଟିତ ଶ୍ୱାପଦକୁଳେ, ସଦ୍ୟୋମୃତ କେହୁ,
ଡୋଲ ହୋଇ ଫୁଲି କେହୁ ସଢ଼ଇ ମାଟିରେ,
ପ୍ରକଟାଇ ପୂତି-ଗନ୍ଧ ନାସାରନ୍ଧ୍ର ରୋଧୀ,
ବୀଭତ୍ସ, ବିରୂପ ଘୋର ବିକୃତ ମୂରତି;
ଅଦୂରେ ପତିତ ଏକ ଶବପାଶେ ଯାଇ
ସମ୍ବୋଧି ସେ ଶବେ ରାଜା ଭାଷିଲେ ଏସନ --
"ଆରେ ଶବ, ଧନ୍ୟ ତୁହି, ପ୍ରଚୁର ଅଶନେ
କେତେ ପ୍ରାଣୀ ଲଭୁଛନ୍ତି ତୃପ୍ତି ତୋହଠାରେ,
ଶିରେ ବସି କାକ ତୋର ଚକ୍ଷୁପତା ଟାଣି
ଭାଙ୍ଗଇ ସେ ଚକ୍ଷୁମୁଦ୍ରା, ଲୁଣ୍ଠିତ ବାହାରେ
ଚୋବାଉଛି ଜିହ୍ୱା ତୋର ଶିବା ମହାସୁଖେ,
× × × ×
× × × ×
ସଢ଼ି ମୃଦୁ ହେବାଯାଏ ଅଛନ୍ତି ଅନାଇ
ଡେଣା ମେଲି ଗୃଧ୍ରକୁଳ ତୋର ଚଉକତି,
ରାବି ମୁହୁଃ ଭାବି-ଭୋଗ-ଆଶାରେ ଉଲ୍ଲାସେ;
ସାର୍ଥକ ଏ ପିଣ୍ଡ ତୋର, ଉଆଉ ତୁ ଯେଣୁ ,
ଶବ, ଏହି ମହୋତ୍ସବ ଏହି ପିଣ୍ଡ ଯୋଗେ;
ଆହା, ଏହି ପରିଣାମ ଏ ପିଣ୍ଡର ହିନା !
ଏହି ସେହି ସୂକ୍ଷ୍ମ କଟୀ, ଏହି ସେହି ଉରଃ,
ତୋରି ସୁବିଶାଳ ସ୍ୱର୍ଣ୍ଣକପାଟ ପରାୟେ,
ଏହି ସେ ସୁନ୍ଦର ମୁଖ, ଚନ୍ଦ୍ରେ ଶତଦଳେ
ଘଟୁଥିଲା ପଟାନ୍ତର ଯାର ଶୁଭ୍ରପଣେ,
ଏହି ସେ ଅଧର, ଯାର ଶୃରୁ ଅରୁଣିମା
ଗଞ୍ଜୁଥାଇ ପକ୍ୱ ବିମ୍ବେ, ଫୁଲ୍ଲ ବନ୍ଧୁଜୀବେ,
ଲୀଳାବିଳାସର ଥିଲେ ଉପାଦାନ ଯେତେ,
ଏହିମାନେ ଭକୁଛନ୍ତି, ଆହା, କି ବିକଳ !

ରକ୍ତ ମେଦ ମାଂସ ଅସ୍ଥି ଲୀଳାକାରେ ଏବେ
ଉପୁଜାନ୍ତି ଏ ସରବେ ହାସ ଭୀରୁ ଜନେ,
ବୈରାଗ୍ୟ କରନ୍ତି ଦୃଢ଼ ଜ୍ଞାନଙ୍କର ମନଃ,
ଆହା, ଏହା ଦେଖି ଲୋକେ ହୁଅନ୍ତି କେସନେ
ମତ୍ତ ବିଷୟର ମଦେ ଏହି ଦେହ ବହି ?
ଏ ଶ୍ୱଭକ୍ଷ୍ୟ, ଏ ଭଙ୍ଗୁର ଦେହ ବହି ପ୍ରାଣୀ
ହୁଅନ୍ତି କେସନେ ମତ୍ତ ଆତ୍ମବଡ଼ିମାରେ ?
ଅବସାନ ହୋଇ ଏବେ ଆସିଲାଣି ଦିବା,
ଦିଗଦିଗନ୍ତରୁ ଉଡ଼ି ଆସି ବିହଙ୍ଗମେ
ମୁଖର କଲେଣି ରବେ ନୀଡ଼ଦ୍ରୁମାବଳୀ,
ଦିନ ଯାଇ ଆସେ ରାତି ନିୟତିଶାସନେ,
ନିୟତି ଶାସନେ ଦିନା ପ୍ରଭାହୀନ ହୋଇ
ଗଗନପ୍ରାଙ୍ଗଣଦୀପ, ଅବିରାମଗାମୀ—
କାଳ-ଭୁଜଙ୍ଗର ଶିଖାମଣି ଦିନମଣି
ବୁଡ଼ନ୍ତି ସାଗରଜଳେ ଲୋହିତବିଗ୍ରହେ,
କାହିଁ ସେ ପ୍ରତାପ, କାହିଁ ସେହି ଚଣ୍ଡଦ୍ୟୁତି ?
ଅସ୍ତମିତ ଏବେ ସବୁ ନିୟତିଶାସନେ,
ନିୟତିର ରଙ୍ଗଭୂମି ଏ ମଶାଣିସ୍ଥଳୀ;
ଖାଲି ଏ ମଶାଣି କଆଁ ? ସେହି ସେ ନିୟତି
କାପାଳିକରୂପେ ଖେଳେ ଅଖିଳ ଜଗତେ,
ବିଶ୍ୱଯାକ ତାର ଲୀଳା-ମଶାଣି-ଅଗଣା,
ରକ୍ତରାଶି ତହିଁ ସିନା ଏ ସନ୍ଧ୍ୟା ଲୋହିତା,
ଚିତାବହ୍ନି ତାର ଏହି ଅସ୍ତଗାମୀ ରବି,
ନରାସ୍ଥି ଏ ତାରାମାଳା, ନୃକପାଳ ଶଶୀ,
ଏ ନୈଶ ଅନ୍ଧାର ତାର ଧୂମର ପଟଳୀ,
ଅହୋ, କିବା ଭୟଙ୍କରୀ ଶ୍ମଶାନଶର୍ବରୀ !
ଗମ୍ଭୀର ଭୀଷଣ କେଡ଼େ ଦିଶନ୍ତି ରୌଦ୍ରଗେ
ଶ୍ମଶାନର ଦ୍ରୁମରାଜି, ରଟନ୍ତି ବିକଟେ
କୋଟରର ଦ୍ୱାରେ ଯହିଁ ଉଲୂକେ ସଘନେ,
ମୁହୁଃ ଡେଣା ଝାଡ଼ି, ଶୁଣି କଲକଲା ରଡ଼ି,
ପଡୁଛନ୍ତି ଗୃଧ୍ରକୁଳ ଆସି ତରୁତଳେ,
ମତ୍ତ ହୋଇ ଶାଖାଲମ୍ବି-ଶବମେଦଘ୍ରାଣେ, ※

※ ବଧଦଣ୍ଡାର୍ହ ବ୍ୟକ୍ତିମାନଙ୍କୁ ଶ୍ମଶାନରେ ବଧ କରିବାର ପ୍ରଥା ପ୍ରାଚୀନ ଭାରତରେ ପ୍ରଚଳିତ ଥିଲା ।

'ଫେଏ' 'ଫେଏ' ରବ ଦେଇ ଫେରୁ ଉଲ୍‌କାମୁଖୀ
ଫୁତ୍କାରେ ବିକାଶେ ମୁଖୁଁ ଦୀପ୍ତ ଉଲ୍‌କାଶିଖା,
ଭୈରବୀ ମଶାଣଚଣ୍ଡୀ ଅଧିଷ୍ଠାତ୍ରୀ ଏଥି,
କପାଳମାଳିନୀ ଦେବୀ କପାଳକୁଣ୍ଡଳା,
ଭୀମା, ପ୍ରେତାଶିନୀ, ପ୍ରେତବିମାନଚାରିଣୀ;
ଚନ୍ଦ୍ର ଅସ୍ତ ଯାଇ ଏବେ ନିବିଡ଼ ତମସେ
ଆବୃତ ମଶାଣଭୂମି, ଦିଶୁ ନାହିଁ ରାହା.
ଚକ୍ରବାଳ ଦିଶେ ଯେହ୍ନେ ବୋଲା ଉନ୍ମାଙ୍କନେ,
ସୁଗଭୀର ନିଶୀଥିନୀ ଝାଇଁ ଝାଇଁ ରବେ,
ଉପୁଜେ ଜୀବର ଭୀତି, ଲୁପ୍ତପାଏ ଚେତା;
କି ଦଶା ମୋହର ଆଜି, କି ଥିଲି କି ହେଲି !
କାହିଁ ଗଲେ ଦାର୍ ସୁତ ରାଜପାଟ ଆଦି,
ରାଜସିଂହାସନ ଛାଡ଼ି ଚଣ୍ଡାଳ-ଅଧୀନେ
ଶୁଲ୍‌କଗ୍ରାହୀ ହୋଇ ମୁହିଁ ଭ୍ରମଇ ଏକାକୀ
ଏ ମଶାଣେ, ସୂଚିଭେଦ୍ୟ ଏ ନିଶା ଅନ୍ଧାରେ !
ଏହି ତ ପ୍ରାଣିର ଗତି ଏ ମର୍ତ୍ତ୍ୟ-ମଣ୍ଡଳେ !
କରାଳ ନିୟତି କରେ କନ୍ଦୁକ ପରାଏ
ଉଠନ୍ତି ପଡ଼ନ୍ତି ପ୍ରାଣୀ ଏହିରୂପେ ହିନା !
ଭାଗ୍ୟଚକ୍ର ଆବର୍ତ୍ତନେ ଅଭିନୟ କେତେ
କରନ୍ତି ପ୍ରାଣିଏ ଏହି ଭବରଙ୍ଗଭୂମେ !"
ଏହିରୂପେ ଭାଳୁଁ ଭାଳୁଁ ଶୁଣିଲେ ନୃପତି
ସୁଦୂର ଶ୍ମଶାନପ୍ରାନ୍ତେ ବିଳାପର ଧ୍ୱନି,
ଗୁଳ୍ମ ଆବରିବା ଅଂଶେ ତହୁଁ ଦ୍ରୁତପଦେ
ଗଲେ ସେହି ଦିଗେ ସେହି ଧ୍ୱନି ଅନୁସରି ।



( ୧୨ )

## ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ *

ଟଳିଲା ଡଗଙ୍ଗାସ୍ଥିତା ଲୋହିତ କର୍କର—
ପୁଞ୍ଜେ ଅରୁଣିତ ଯାର ଉଚ୍ଚାବଚ ଭୂମି,
ବିଶ୍ୱନରମେଧ ବେଦି, ବିଶ୍ୱେ ଉର୍ଜସ୍ୱଳ
ଆର୍ଯ୍ୟଭାଗ୍ୟ-ଆବର୍ତ୍ତନ-ଅଭିନୟସ୍ଥଳୀ
କୁରୁକ୍ଷେତ୍ରେ, ଭୀଷ୍ମ, ଦ୍ରୋଣ, କର୍ଣ୍ଣଙ୍କ ଉତ୍ତାରେ
ନରଶର୍ଜ୍ଜର କୁରୁସେନା ଶେଷ ଆଶା,
ଅଦ୍ରିପତି ସମ ରଥୀ ଅଟଳ ସମରେ,
ହତ ମଦ୍ରପତି ଶଲ୍ୟ ଆଜ ରଣାଙ୍ଗନେ,
ପାଣ୍ଡବ ରାଜାର ଖରଶାଣ ବାଣାଘାତେ;
ହତ ପୁଣି ଖଳମତି ଦୁରନ୍ତ ଶକୁନି,
ଅଗ୍ରଣୀ କପଟପାଶା-ପ୍ରପଞ୍ଚ ଭିଆଣେ,
ମାଦ୍ରୀସୁତ-ଖରଶାଣ-କୃପାଣର ଘାତେ;
ଅବଶିଷ୍ଟ କୁରୁବଳେ ଆଉ ତିନ ରଥୀ
କୃପାଚାର୍ଯ୍ୟ, କୃତବର୍ମା, ବୀର ଅଶ୍ୱତ୍ଥାମା,
ବରତି ନ ପାରି ରଣେ ପାଣ୍ଡବପ୍ରତାପେ
ଆତଙ୍କେ ପଳାଇ ଲୁଚିଅଛନ୍ତି କେ କାହିଁ;
ଧ୍ୱସ୍ତ ଛିନ୍ନଭିନ୍ନ ହୋଇ କୌରବବାହିନୀ
ପଡ଼ନ୍ତି ସମରକ୍ଷେତ୍ରେ, ପଡ଼ଇ ଯେସନେ
ପ୍ରଚଣ୍ଡ ବାତ୍ୟାର ବେଗେ ଉନ୍ମୂଳିତ ବୃକ୍ଷ;
କାହୁଁ କାହୁଁ ଆସିଥିଲେ ପଦାତିକ, ରଥୀ,
ଅଶ୍ୱସାଦୀ, ଗଜସାଦୀ, ଉଡ଼ାଇ କୌତୁକେ,

---

* ମହାକବି ଶୂଦ୍ରମୁନି ଶାରଳା ଦାସଙ୍କ ମହାଭାରତର ଶଲ୍ୟପର୍ବରେ ଦୁର୍ଯ୍ୟୋଧନଙ୍କର ବ୍ୟାସ-ସରୋବର ପ୍ରବେଶ ସମୟରେ କୌରବପକ୍ଷୀୟ ଭିନ୍ନ ଭିନ୍ନ ବୀରମାନଙ୍କ ଶବ ଉପରେ ଏବଂ ସର୍ବଶେଷରେ କୁମାର ଲକ୍ଷଣଙ୍କ ଶବ ଉପରେ ରକ୍ତନଦୀ ପାର ହେବାର ଦୃଶ୍ୟ ଅତି କରୁଣ । ସମଗ୍ର ଉତ୍କଳ ସାହିତ୍ୟରେ, କେବଳ ଉତ୍କଳ ସାହିତ୍ୟ କାହିଁକି, ଯେ କୌଣସି ସାହିତ୍ୟରେ ଏହା ଅତୁଳନୀୟ ବିବେଚିତ ହେବ । ଶାରଳା ଦାସଙ୍କର ଏହି ଆଖ୍ୟାନ ଅବଲମ୍ବନ କରି ଏହି ପ୍ରସଙ୍ଗ ଲିଖିତ ।

ପତାକା, ବଜାଇ ମହାଦର୍ପେ ବୀରବାଜା,
ମତ୍ତ ହୋଇ ଯଶ ଆଶା ଜାଗ୍ରତ-ସ୍ୱପନେ;
ସେତୁବନ୍ଧଠାରୁ—ଯହିଁ ଶୈଳ ବେନି ପାଶେ
ବନ୍ଦନ୍ତି ଜଳଦେବୀଏ କୃତାଞ୍ଜଳିପୁଟେ
ରାଘବପଦାଙ୍କ ଭେଦି ସାଗର-ଲହରୀ
ଫେନିଳ, ନୀଳାମ୍ବୁମାନ ଆଶାଚକ୍ରବାଳେ.
ବଦରିକାଶ୍ରମଯାଏ, ହିମଗିରି ଯହିଁ
ଦେବଦାରୁ-ଉପତ୍ୟକା-ମରକତବେଦି—
ପରେ ସ୍ୱଚ୍ଛ ସ୍ଫଟିକର ମେହେରାବ ପରି
ତୋଳନ୍ତି ଗଗନେ ଗଙ୍ଗା-ଶୃଙ୍ଗାରିତ ଶିଖା,
ବିରାଜିତ ପୁର ଗ୍ରାମ ଆବସଥ ଯେତେ,
ସବୁଥିରୁ ଆସିଥିଲେ ଏହି ରଣ-ଯାଗେ.
ଏ ବିରାଟ ନରମେଧେ, ରଣମଦେ ମାତି,
ଯଜ୍ଞ-ପଶୁରୂପେ, ଆହା, କେତେ ମହାପ୍ରାଣୀ !
ଆସିଥିଲେ ମାତ୍ର ସିନା ଲୋଟାଇବା ପାଇଁ
ଶତ୍ରୁଖଣ୍ଡାଘାତେ ମୁଣ୍ଡ ରଣଚଣ୍ଡୀପୀଠେ !
ହତ ଗଜ ବାଜି, ଭଗ୍ନ ରଥ, ଛିନ୍ନ ସେନା,
ଛିନ୍ନ ଅସ୍ତ୍ର ଶସ୍ତ୍ର, ଢାଲ ସଙ୍ଗେ ରୁଣ୍ଡ ହୋଇ
ପଡ଼ିଛନ୍ତି ରଣାଙ୍ଗନେ ପର୍ବତପ୍ରମାଣେ
ଲକ୍ଷ ଲକ୍ଷ ବୀର, ଆହା, ରକ୍ତାକ୍ତବିଗ୍ରହେ,
ଧନିକ ନିର୍ଧନ, ଯୁବା ବୃଦ୍ଧ, ରାଜା ପ୍ରଜା,
କି କୁଳୀନ ଅକୁଳୀନ, ସୁନ୍ଦର କୁତ୍ସିତ,
ଶତ୍ରୁ ମିତ୍ର, ଏକ ତଳ୍ପେ ଗାଢ଼ ଆଲିଙ୍ଗନେ !
ଏକମାତ୍ର ଦୁର୍ଯ୍ୟୋଧନ ଲକ୍ଷଣ ସହିତେ
ଯୁଝୁଥିଲେ ଅଳ୍ପ ସୈନ୍ୟେ ମହାଦମ୍ଭଭରେ
ଶତ୍ରୁ ସଙ୍ଗେ, କୁମାରଙ୍କୁ ବଞ୍ଚାଇବା ଆଶେ
ଗୁପ୍ତ ପଥେ ପେଷିଲେ ସେ ତାଙ୍କୁ ସ୍ୱଶିବିରେ,
ମାତ୍ର ସେ ଲକ୍ଷଣ ପଡ଼ି ଶତ୍ରୁଙ୍କ ହାବୋଡ଼େ.
ଲଭିଲେ ନିଧନ କୁରୁପତିର ଅଜ୍ଞାତେ;
ଅବଶିଷ୍ଟ ସୈନ୍ୟକ୍ଷୟ ଦେଖି କୁରୁନାଥ
ବେନି ହସ୍ତେ ବେନି ଗଦା ଧରି ଅତି ଦ୍ରୁତେ
ପଳାଇଲେ ତ୍ରସ୍ତେ ବ୍ୟାସ-ସରୋବରମୁଖେ;
ବୁଡ଼ନ୍ତେ ଭାସ୍କର, ପଥେ ଆସିଲା ଶର୍ବରୀ,
ଏ ସମସ୍ତେ କାଦମ୍ବିନୀ ଘୋଟି ନଭସ୍ତଳେ

ଭୀମ ପ୍ରଭଞ୍ଜନ ସହ ଅବିରଳ ଧାରେ
ଢାଳନ୍ତି ସଲିଳପୂର ବହାଇ ସମ୍ମୁଖେ
ସୁଗଭୀର ଖରସ୍ରୋତ ଲୋହିତ ଶୋଣିତେ,
ଭାସି ଯାଉଥିଲା ଯହିଁ ଶବ ରାଶି ରାଶି
ନର ଗଜ ବାଜିଙ୍କର ସ୍ୟନ୍ଦନ ସହିତେ,
ଅଗ୍ରେ ରକ୍ତନଦୀ ଦେଖି ବିକଳେ ଭୂପତି
ହାହାକାରେ କରଯୁଗ ମାରି ନିଜ ଭାଲେ
କହିଲେ ଆରତେ. "ପଛେ ଗୋଡ଼ାନ୍ତି ପାଣ୍ଡବେ,
ଶସ୍ତ୍ରପାଣି, ଦଣ୍ଡପାଣି ଦଣ୍ଡଧର ଯଥା,
ସମ୍ମୁଖେ ଭୀଷଣ ନଦୀ ତରଙ୍ଗମାଳିନୀ.
କେବଣ ଉପାୟେ ମୁହିଁ ଯିବି ସରୋବରେ ?
କେ ତାରିବ ମୋତେ, ଆହା, ଏ ଘୋର ସଙ୍କଟେ ?"
ସହସା ଦେଖିଲେ ସ୍ରୋତେ ଯାଉଅଛି ଭାସି
ଦୁଃଶାସନ ଶବ, ଯାଇ ସେ ଶବ ନିକଟେ
ବୋଇଲେ, "ହେ ବାବୁ, ତୋର କ୍ଷତ୍ରିୟସମାଜେ
ଥିଲା ସବୁ ପରେ ଟେକ ବଇରୀ-ବିଭ୍ରାଟେ,
ଅପମାନ ମୋର, ବାବୁ, ନ ସହୁ ରେ କ୍ଷଣେ,
ମୋର ଏ ଜୀବନେ, ବାବୁ, କସ କାର୍ଯ୍ୟ ଆଉ ?
ଜିଇଛି ନିର୍ଲଜ୍ଜ ମୁଁ ଯା ତୁମ୍ଭଙ୍କୁ ମରାଇ !
ତୁ ତ ପହଁରୁଛୁ ଏବେ ରକତଲହରୀ,
ଏ ପ୍ରବାହେ ପାରି କରି ଦେବୁ କି ତୁ ମୋତେ ?"
ଏହା ବୋଲି ଭେଳା କରି ଦୁଃଶା ପରେ ଯାଇ
ପଡନ୍ତେ ବୁଡିଲା ଶବ ନିତାଳ ଗଭୀରେ,
ତାକୁ ଛାଡି କୁରୁବୀର ଦେଖିଲେ ଅଦୂରେ
କର୍ଣ୍ଣଙ୍କର ଶବ ଭାସି ଆସୁଛି ସେ ସ୍ରୋତେ,
ପ୍ରାଣହୀନ ହୋଇ ସୁଦ୍ଧା ଝଟକଇ ଯହିଁ
ବୀରତେଜ ଅଗ ପଛ ବାଲାର୍କ ପରାୟେ,
ପ୍ରାଂଶୁ ସ୍ୱର୍ଣ୍ଣତାଳ ପ୍ରାୟେ ସେହି ଗୌର ତନୁ
ଏବେ ସୁଦ୍ଧା ଦଶେ ଘୋର ମୃତ୍ୟୁର କବଳେ,
କୋଳ କରି କର୍ଣ୍ଣେ ତହୁଁ କହିଲେ ସମ୍ବୋଧି
କୁରୁମଣି, "ଆହା ମିତ୍ର, ପ୍ରିୟ ପ୍ରାଣୁଁ ବଳି
ତୁ ମୋହର, ଦୁଃଖି-ଦୁଃଖ ଦେଖି ତୋର ହିଆ
ଦ୍ରବୁଥିଲା ସଦା, ତେଣୁ ଥିଲୁ ମହାଦାତା,
ଦାନବୀର ବୋଲି ଥିଲୁ ବିଖ୍ୟାତ ଜଗତେ;

ଦ୍ୱିଜବେଶେ ଦାନ ତୋତେ ମାଗନ୍ତେ ମଘବା,
କବଚ କୁଣ୍ଡଳ ତାଙ୍କୁ ଦେଲୁ ଅକାତରେ;
ନିରାଶ ନୋହିଲେ ଅର୍ଥୀ ତୋହଠାରେ କେବେ,
ମେଣ୍ଟି ତୁହି, ମିତ୍ରମଣି, ମାତାଙ୍କର ବାଣୀ
ସୋଦରଗଣଙ୍କୁ ସ୍ୱସ୍ତି ଆଶ କଲୁ ମୋତେ;
ବହୁ କାଳ ମୁହିଁ ତୋତେ ସମ୍ଭାଳଣ ଥିଲି,
ପାର କର ନେବୁ କି ରେ ମୋତେ ଏ ପ୍ରବାହେ ?"
ଏହା କହି କର୍ଣ୍ଣ ଦେହେ ପଡ଼ିଲା ମାତ୍ରକେ
ବୁଡ଼ିଗଲା ସେହି ଦେହ ଅତଳ ସଲିଳେ,
ଦ୍ରୋଣଙ୍କର ପିଣ୍ଡ ଭାସି ଆସନ୍ତେ ତା ପରେ,
"ହା ହା ଗୁରୁ" ବୋଲି ରାଜା ଧଇଲେ ତା ଯାଇ,
"ମୂର୍ତ୍ତିମନ୍ତ ଧନୁର୍ବେଦ ଥିଲୁ ତୁ ଜଗତେ,
ଶିଖିଥିଲି ଶସ୍ତ୍ରବିଦ୍ୟା ତୋହର ପ୍ରଯତ୍ନରେ,
ନ ଥିଲେ ଅଜିହି ତୋତେ ସମରେ ମଘବା,
ବାତ୍ସଲ୍ୟ ତୋହର ଥିଲା ଅଧିକ ଅର୍ଜୁନେ,
ପରାଭବ ସେହି ତୋତେ ଦେଲା ଅବଶେଷେ !
ବେଦଶାସ୍ତ୍ରେ ଥିଲୁ ତୁହି ମର୍ତ୍ତ୍ୟେ ବୃହସ୍ପତି,
ଏପରି ବ୍ରାହ୍ମଣ ଗୁରୁ ମରାଇ ପାଣ୍ଡବେ
ଲଭିଲେ ସାମ୍ରାଜ୍ୟ-ଶିରୀ କେଉଁ ଧର୍ମବଳେ !
ତୋର ଗୁଣ କହିବାକୁ ନାହିଁ ବେଳ ଆଉ,
ବରତିବ ନାହିଁ ମୁହିଁ ଜାଣିଲେ ପାଣ୍ଡବେ;"
ଗୁରୁଙ୍କୁ ଏମନ୍ତ ସ୍ତୁବି, ତାଙ୍କ ଶବ ପରେ
କୋଳ କରି କୁରୁପତି ପଡ଼ିଲାରୁ ମାଡ଼ି,
ବୁଡ଼ିଗଲା ସେହି ପିଣ୍ଡ ଜଳେ ସେହିକ୍ଷଣି;
ଏ ଅନ୍ତେ ଶକୁନି ଶବ ଆସିଲାକ ଭାସି,
ଶକୁନିବକ୍ଷତମୁଖ, ବିକୃତ ଆକୃତି,
ତହିଁ ନେତ୍ର ପଡ଼ିଲାରୁ ଖେଦେ କୁରୁନାଥ
କହିଲେ ଏସନ ବାଷ୍ପଗଦଗଦ ସ୍ୱରେ,
"ହା ହା, ମୋ ମାଉଳ, ତୁହି ପାଣ୍ଡବବିନାଶେ
ଉଆଁଇଲୁ ଯେତେ କୂଟ ସବୁ ହେଲା ବୃଥା !
ବିଷଲଡୁ ଖୁଆଇଲୁ ଭୀମକୁ କୌଶଳେ,
ଜଉ, ଝୋଟ, ଛଣପଟ, ଗୁଆଘୃତ ଯୋଗେ
ଉଆଇ ତୁ ଜତୁଗୃହ, ବଳିଗଲୁ ତହିଁ
ପୁରୋଚନେ ପାଣ୍ଡବର ଦାହନ ଉଦ୍ଦେଶେ,

ଉବୁରଲେ ତହୁଁ ସେହି କେଉଁ ବୁଦ୍ଧିବଳେ ?
କପଟପାଶାର ଥିଲୁ ସୂତ୍ରଧାର ତୁହି
ଜିତିଲୁ ତୁ ରାଜ୍ୟ ଆଦି ସବୁ ବୁଦ୍ଧି କରି,
ମାତ୍ର ବୃଥା ହେଲା ସବୁ ଦଇବ-ଅବଳେ !
ତୋର ଗୁଣ, ମାତୁଳ, ମୁଁ କହିବଇଁ କେତେ ?
କହ, ମାମୁ, କି ବୁଦ୍ଧି ମୁଁ କରିବ ଏ କାଳେ ?
କେମନ୍ତେ ହୋଇବ ପାରି ଏ ରୁଧିରନଦୀ ?"
ଶକୁନି ଉପରେ ରାଜା ପଡ଼ିଲାରୁ ମାତ୍ର,
ବୁଡ଼ିଗଲା ସେହି ପିଣ୍ଡ ଅଗାଧ ପ୍ରବାହେ;
ସେ ଉଦ୍ୟମ ବୃଥା ଦେଖି ତହୁଁ ସେ ଆରତେ
କାନ୍ଦିଲେ ସୁମର ଦୈବେ, ହାହାକାର କରି,
ଦେଖିଲେ ଏକାଳେ ଅଗ୍ରେ ଆସୁଅଛି ଭାସି
ପରମ ସୁନ୍ଦର ଯୁବା ସେହି ଖର-ସ୍ରୋତେ,
କଙ୍କଣ କୁଣ୍ଡଳ ନାନା ଅଳଙ୍କାର ଦେହେ,
ଶତ ଚନ୍ଦ୍ର ଭାସି କି ସେ ଯାଉଛି ସଲିଳେ !
ଜଳଦେବତା କି ଯାଏ ନଦ୍ରାଯୋଗେ ଭାସି
ସେ ଜଳେ, ବିଳାସେ ଆଣି ଲହରୀପ୍ରେଙ୍ଖୋଳା !
ଏହି ମୋତେ ନେବ ପରା ସ୍ରୋତ ପାରି କରି,
ଏହା ପାଖି କୁରୁନାଥ କୋଳ କରି ତାକୁ
ଉପରେ ଥୋଇଲେ ଦୁଇ ଗଦା ଯେ ତଡ଼ିତ,
ଆପେ କୁରୁନାଥ ପରେ ବସିଲେକ ମାତ୍ର,
ଶୋଲ ଜଣି ଭାସେ ଶବ ସେ ରୁଧିରସ୍ରୋତେ,
ପିଠିରେ ବସିଣ ରାଜା ବେନି ହାତେ ବାହି
ଦ୍ୱିଘଡ଼ିରେ ଉପନୀତ ହେଲେ ପରପାରେ,
ପାରି ହୋଇ ମୃତପିଣ୍ଡୁ ଓହ୍ଲାଇ ତ୍ୱରିତେ
ବୋଇଲେ ସେ ଶବ ପ୍ରତି, "ଦୁଃଶା କର୍ଣ୍ଣ ଆଦି
ଯୋଗେ ଯା ନୋହିଲା, ସାଧ୍ୟ ହେଲା ତୋହ ଯୋଗେ,
କିଏ ତୁ ମହାତ୍ମା ? ମୃତ ହୋଇ ଉପକାରୀ-
ହେଲୁ ଏଡ଼େ ତୁହି ମୋର ଏ ଆତଙ୍କ ବେଳେ ?"
ବୁଲାଇ ସେ ଶବ ମୁଖ ନିରେଖନ୍ତେ ପୁଣି
ଚିହ୍ନିଲେ ସଖେଦେ ରାଜା କୁମାର ଲକ୍ଷଣେ,
ଶୋକେ ଅସମ୍ଭାଳ ହୋଇ ବାହୁନି ବାହୁନି
ଶବକୁ ନିରେଖି ତହୁଁ କହିଲେ ଆରତେ,
"ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ,

କୁମାର ଲକ୍ଷଣ, ତୁହି ଥିଲୁ ଯେଣୁକରି,
ତୋର ରକ୍ଷା ଲାଗି ତୋତେ ରଣସ୍ଥଳୁଁ ମୁହିଁ
ପେଷିଲଇଁ ଗୁପ୍ତପଥେ କୌରବ ଶିବିରେ,
ଆହା, ତୋହଠାରେ କଏ କଲା ଏ ଅନୀତ !
ସ୍ଫୁଟୋନ୍ମୁଖ ଏ କୋରକ ଛିଣ୍ଡାଇ ଅକାଳେ
କଏ ଦଳି ଦେଲା, ଆହା, କୁରୁ-ଆଶାଲତା !
ବାଳୁତ ହୋଇ ତୁ ମୋର ଆଗେ ଗଲୁ ଚାଲି
ଛାଡ଼ି ମୋତେ ଏ ଜଗତେ, ମୋର ଯୋଗ୍ୟ ସୁତ,
ସୁଯୋଗ୍ୟ ଦାୟାଦ କୁରୁରାଜସିଂହାସନେ
ଥିଲୁ ତୁହି, ଆରେ ବାବୁ, କି ଗୁଣେ କିରୂପେ,
ସ୍ମରି ତୋ ଗୁଣରାଶି, ଦୟାପୂର୍ଣ୍ଣ ହିଆ
ଝୁରି ହେଉଥାନ୍ତି ପ୍ରଜା ଦେଶଦେଶାନ୍ତରେ !
ଦାନ ଦେବା ପାଇଁ ଦିନ ରାତ୍ରି ତୁ ନ ଜାଣୁ,
ଅହର୍ନିଶ ଭକ୍ତି ତୋର ଦେବତା ବ୍ରାହ୍ମଣେ,
ଧର୍ମ କାର୍ଯ୍ୟ ସଦା ଲାଗିଥାଇ ତୋର ଚିତ୍ତେ,
କେମନ୍ତେ ଛାଡ଼ିଲେ ତୋତେ ସେ ଧର୍ମଦେବତା !
ସଦା ସଦାଳାପୀ, ଦୁଃଖୀ ଜନର ଭରସା,
ସଦା ସତ୍ୟବାଦୀ, ସଦା ରତ ପରହିତେ,
ତୋତେ ଦେଖି 'ସାଧୁ ସାଧୁ' କହୁଥିଲେ ଲୋକେ;
ପୂତସ୍ମିତଶାଳୀ ତୋର ବଦନଚନ୍ଦ୍ରମା
ଦେଖି ହେଉଥିଲେ ଲୋକେ ଆପ୍ଲୁତ ହରଷେ,
ଚହଟୁଣ ଥିଲା ଦେଶ ତୋ ଯଶଃସୌରଭେ;
ସାଧୁ ଯଥା, ଦୁର୍ଜୟ ତୁ ଥିଲୁ ରଣସ୍ଥଳେ,
କମ୍ପୁଥିଲେ ଶତ୍ରୁକୁଳ ତୋର ଧନୁର୍ଘୋଷେ;
ଅଛଇ ତୋହର, ବାବୁ, ସଦଗୁଣ ଯେତେ,
ମୁଖେ ନ ପାରିବେ କହି ସବୁ ଗଣପତି !
ବାବୁ ଲକ୍ଷଣ ରେ, କଲୁ ଅନାଥ ତୁ ମୋତେ !
ବୁଡ଼ାଇଲୁ ଭେଲା ମୋର ଅତଳ ସାଗରେ !
ଅନ୍ଧାର ଏ ସୃଷ୍ଟି ମୋତେ ଦିଶେ ତୋ ବିହୁନେ,
ବିକଳ ହେଉଛି ମୁହିଁ, ନ ଜାରେଖୁ କପାଁ ?
ଉଠ ଉଠ, ବାବୁ, ଯିବା ନଗରେଁ ବାହୁଡ଼ି,
ଚାହିଁଥିବେ ତୋର ବାଟ ଭାନୁମତୀ ମାଏ;
ମାଏ ପୋଏ କଲ ମୋତେ ଅନେକ ଦଇନ,
ବାହୁଡ଼ି ନ ଯାନ୍ତୁ ଯଥା କୃଷ୍ଣ ଅପମାନେ,

ପଡ଼ା ପାଞ୍ଚ ଖଣ୍ଡି ମାଗିଥିଲେ ଯଦୁପତି,
ବେଳନ ପଡ଼ା ଦେବା ଲାଗି ତୁମ୍ଭେ କଲ ଅଳ,
ବିନା ଯୁଦ୍ଧେ ସୂଚ୍ୟଗ୍ରେ ଦେବ ନାହିଁ କ୍ଷିତି,
କର୍ଣ୍ଣ ଶକୁନିଙ୍କ ସଙ୍ଗେ ପାଞ୍ଚ ଏ ମନ୍ତ୍ରଣା,
ପ୍ରତିଫଳ ତାର, ବାବୁ, ପାଇଲି ମୁଁ ଏବେ !
ଏଡ଼େ ବଡ଼ ସମ୍ପଦ ମୁଁ ହେଲେ ବୁଡ଼ାଇଲି !
ଆରେ ପୁତ୍ର, ବୋଲ ତୋର ମାନୁଛୁ ଏକ୍ଷଣି,
ଅଧେ ରାଜ୍ୟ ଦେବି, ଏବେ ଆସ ମୋର କୋଳେ;
ଦେଖି ତୋର ସେହି କାନ୍ତି, ସେହି ମୁଖଶଶୀ
ଧରିବି ପରାଣ କେହି ଏ ବେଶେ ନ ଦେଖି ?
ମୃତ ପିଣ୍ଡ, ବାବୁ, ତୋର ଜଡ଼ାଇ ହୃଦୟେ,
ଏ ମୋହର ଦେହ କାହିଁ ଯାଉ ନାହିଁ ଫାଟି ?
କର୍ପୂର ଚନ୍ଦନ ବୋଲ ହେଉ ଯେଉଁ ଦେହେ,
ସେହି ଦେହ ଏବେ, ଆହା, ଆପ୍ଲୁତ ଶୋଣିତେ !
ଲମ୍ବୁଥିଲା ଯେଉଁ ହୃଦେ ମଣି ଗଜମୋତି,
ମେଦମାଂସ ଏବେ ବୋଳା ହୋଇଛି ସେ ସ୍ଥଳେ !
ଜନ୍ମଠାରୁ ମୁଖ ତୋର ଗୃହେଁ ଅନ୍ତଃପୁରେ
ନ ଦେଖ ହେଲଣି ଏବେ ମୁହିଁ ଭବତଳେ !
କେବେହେଁ ନ ହେଉ ତୋର ମୋହ ପରି ପିତା
ତୋହୋପରି ପୁତ୍ର ହେଉ ଜନମେ ଜନମେ;"
ଏହା କହି ସେହି ଘୋର ରଜନୀ ଅନ୍ଧାରେ
ନବଡ଼ ପଲାଶକୁଞ୍ଜେ ଏକ ଖାତ ଖୋଳି
କୁରୁପତି ଲକ୍ଷଣକୁ ଶୁଆଇ ସେ ଖାତେ,
ସାଶ୍ରୁନେତ୍ରେ ତା ଉପରେ ପକାଇଲେ ମାଟି;
ଖରଗତି ଛଦ୍ମବେଶରେ ପଳାଇ ଗୁପତେ
ସେ ପଳାଶ କୁଞ୍ଜେ କୁଞ୍ଜେ ମହାକ୍ଷ ଡଗରେ
ଭଜିଲେ ଆଶ୍ରୟ ବ୍ୟାସ-ସରୋବରେ ଯାଇଁ ।



# Selections from the writing
OF
# Madhusudan Rao
( B. 1853; D. 1912 )

(୧)

## ସ୍ତବ

( ଶଙ୍କରାଭରଣ ବୃତ୍ତ । )

୧

ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନସ୍ୱାମୀ
ହେ ପରମ ପିତାମାତା ପ୍ରଭୁ ଅନ୍ତର୍ଯ୍ୟାମୀ,
ଧନ୍ୟ କରୁଣା ତୋହର,
ହେ କରୁଣାସିନ୍ଧୁ, କାହିଁ ତାର ପରିମାଣ ।

୨

ବ୍ରହ୍ମାଣ୍ଡର ଆଦିମୂଳ ନିଖିଳ ବିଧାତା,
ସକଳ କଳୁଷହାରୀ ହେ ମଙ୍ଗଳଦାତା,
ତୋର ମଙ୍ଗଳ ସଙ୍ଗୀତ
ନିଖିଳ ଭୁବନ ଗାଏ ହୋଇ ବିମୋହିତ ।

୩

ଦ୍ୟୁଲୋକେ ଭାସ୍କର ଚନ୍ଦ୍ର ନକ୍ଷତ୍ରନିକର,
ଅନ୍ତରୀକ୍ଷେ ସମୀରଣ ସଙ୍ଗେ ଜଳଧର,
ପ୍ରଭୋ, ଭୂଲୋକେ ସାଗର
ଅଚଳ ଗହନ ନଦୀ ପଶୁ ପକ୍ଷୀ ନର,

୪

ସର୍ବେ ତୋ କରୁଣା ସୁଧା କରୁଛନ୍ତି ପାନ,
କୋଟି ବ୍ରହ୍ମାଣ୍ଡର ନାଥ ତୁ ପ୍ରେମନିଧାନ,
ପ୍ରଭୋ, ତୋ ପ୍ରେମକିରଣ
ଉଜଳଇ ବିଶ୍ୱବାସି— ହୃଦୟନିକେତନ ।

୫

ଜନକ ଜନନୀ ସୁତ     ସୁତା ଜାୟା ଧବ,
ସହୋଦର ସହୋଦରୀ     ଆତ୍ମୀୟ ବାନ୍ଧବ,
ପ୍ରଭୋ, ଏ ସର୍ବ ସମ୍ବନ୍ଧ
ତୋର ଦୟାନିଦର୍ଶନ     ଅହେ ଆନନ୍ଦକନ୍ଦ ।

୬

ବିରାଜିତ ତୁହି ନାଥ,     ସକଳ ଜୀବନେ,
ସମ୍ପଦେ ବିପଦେ ସଦା     ଜୀବନେ ମରଣେ,
ପୂର୍ଣ୍ଣ ମଙ୍ଗଳ ଆଳୟ,
ଦେଉଅଛୁ ସର୍ବଜନେ     ଅଭୟ ଆଶ୍ରୟ ।

୭

ବିଶ୍ୱ-ଗୁରୁ ବିଶ୍ୱରାଜ     ବିଶ୍ୱ-ପିତା-ମାତା,
ବିଶ୍ୱଜନ-ପ୍ରାଣସଖା     ଦୁଃଖହାରୀ ତ୍ରାତା,
ଦୀନବନ୍ଧୁ କୃପାସିନ୍ଧୁ,
ସୁର ନର ମାଗୁଛନ୍ତି     ତୋର କୃପାବିନ୍ଦୁ ।

୮

ସଙ୍କଟପୂରିତ ଘୋର     ଭବସିନ୍ଧୁଜଳେ
ଏକମାତ୍ର କର୍ଣ୍ଣଧାର     ତାରୁ ତୁ ସକଳେ,
ତୋର ମଙ୍ଗଳ ବିଧାନ
କରୁଅଛୁ ମରଣକୁ     ଅମୃତସୋପାନ ।

୯

ହେ ଆନନ୍ଦମୟ କୋଟି—     ଭୁବନପାଳକ,
ଅଧମ ଅକ୍ଷମ ମୁହିଁ     ଅବୋଧ ବାଳକ,
ଜ୍ଞାନଦାତା ଭଗବାନ,
ଦିଅ ମୋତେ ଶୁଭବୁଦ୍ଧି     ଦିଅ ଦିବ୍ୟଜ୍ଞାନ ।

୧୦

ସତ୍ୟପଥେ ଧର୍ମପଥେ     ଘେନିଯାଅ ମୋତେ,
ଭସାଅ ପରାଣ ମୋର     ତବ ପ୍ରେମସ୍ରୋତେ,
ପ୍ରଭୋ, ପରମ ଶରଣ,
ଏ ଜୀବନ ଶ୍ରୀଚରଣେ     କଲି ସମର୍ପଣ ।



## (୨)

## ଶ୍ରୀରାମ ବନବାସ



( ରସକୁଲ୍ୟା ବୃତ୍ତ )

ଏକେ ତ ଅଯୋଧ୍ୟା    ନଗରୀଗ୍ରଣୀ,
ଦେବସଭା ମଧ୍ୟେ    ଯେହ୍ନେ ଇନ୍ଦ୍ରାଣୀ,
ସିନ୍ଧୁ-ବକ୍ଷେ ଯଥା    ରମା ସୁନ୍ଦରୀ,
ସରଯୂର ଅଙ୍କେ    ରମ୍ୟ ନଗରୀ,
ବିରାଜିତ ଲୀଳା ରଙ୍ଗେ;
ଲୋଚନ-କୌମୁଦୀ    ତୋହର ପ୍ରତିମା
ଖେଳଇ ଶୋଭା ତରଙ୍ଗେ ।

୨

ସ୍ୱଭାବେ ନଗରୀ    ଆନନ୍ଦମୟୀ,
ଯେଣୁ ତାର ସୁତେ    ବିଶ୍ୱବିଜୟୀ,
ଆଜ ପୁଣି ତାର    ପ୍ରାଣର ରାମ
ସର୍ବଗୁଣାକର    କରୁଣାଧାମ୍
ହେବେ ବୋଲି ଯୁବରାଜ,
ଭବନେ ଭବନେ    ମହାମହୋତ୍ସବ
ଲାଗିଅଛି ଆହା ଆଜ ।

୩

ଉଡ଼ଇ ପତାକା—    ଶ୍ରେଣୀ ଅମ୍ବରେ,
ମଙ୍ଗଳ ବାଜଣା    ବାଜେ ସୁସ୍ୱରେ,
ଶୁଭଇ ଚୌଦିଗେ    ଶୁଭ ସଙ୍ଗୀତ,
ଧୂପ ପୁଷ୍ପ ଗନ୍ଧେ    ପୁରୀ ପୂରିତ,
ମହାନନ୍ଦେ ପୁରବାସୀ
ବିବିଧ ବିଧାନେ    ରତ ନର ନାରୀ
ଶ୍ରୀରାମ ଶୁଭ ମନାସି ।

୪

ବାଳ ବୃଦ୍ଧ ଯୁବା    ରୁଣ୍ଡ ଦାଣ୍ଡରେ,
ଜୟ ଜୟ ରାମ    ଧ୍ୱନି ଭୁଣ୍ଡରେ,
ହିନ୍ଦୁ ନାଦ ପ୍ରାୟେ    ଶୁଭେ ଚହଳ,
ଲହରୀ ପରାଏ    ଲୋକଗହଳ,
ପ୍ରାସାଦ ଶିଖରେ ଠିଳି

ଘନନୀଲକେଶୀ ବିଦ୍ୟୁତନୟନା
ଅଯୋଧା-ରମଣୀକୁଳ ।

୫

ଉଲ୍ଲାସେ ଆକୁଳ ଅଯୋଧା ପ୍ରାଣ,
ପୂର୍ଣ୍ଣିମା ନିଶାନ୍ତେ ସିନ୍ଧୁ ସମାନ,
କିନ୍ତୁ ସହସା କି ଘୋର ବାରତା
ପଶିଲା ଭେଦି ସେ ପୁର ଜନତା,
ରାମ ଯିବେ ବନବାସ ।
ଉଇଁଲା ବେଳକୁ ଦିନକରଶିରୀ
ରାହୁ କବା କଲା ଗ୍ରାସ ।

୬

କେମନ୍ତେ ବର୍ଣ୍ଣିବି ଅଯୋଧା ଦଶା,
ସହସା ବିଷାଦ— ଭରେ ବିବଶା,
କୋଟି କୋଟି ନେତ୍ରୁ ବହଇ ନୀର,
ହାହାକାରେ ପୂର୍ଣ୍ଣ କୋଟି ମନ୍ଦିର ।
ପ୍ରଭାମୟୀ ଏ ପ୍ରଭାତେ
ଅମା-ଅନ୍ଧକାରେ ଘୋଟିଲା ସେ ପୁରୀ
ଦାରୁଣ ଶୋକନିର୍ଘାତେ ।

୭

ଏଣେ ଦେଖ ଆହା ରାଜଭବନେ
ନିଜେ ଦଶରଥ ଭୂମିଶୟନେ,
କ୍ରୂର ବ୍ୟାଧଶରେ କୁରଙ୍ଗ ପ୍ରାୟେ
ଶୋକେ ଅଚେତନ ସେ ନରରାୟେ ।
ସେ ବିଷାଦ କି ବର୍ଣ୍ଣିବି,
ଜୀବନ-ପ୍ରଦୀପ ଶୋକ-ବାତାଘାତେ
ଯାଉଛି କି ଆହା ନିଭି ।

୮

ଅନ୍ତଃପୁରେ ଯହିଁ ରାମଜନନୀ
ପଶିଲା ସେ ଶୋକ ଯେସନେ ଅଶନି,
ପଡିଲେ ମୂର୍ଚ୍ଛିତା ଦେବୀ ଭୂତଳେ,
ମୋ ରାମ ରାମ ରେ ବୋଲି ବିକଳେ ।
ବକ୍ଷେ ରକ୍ଷି ମାତୃଶିର

ଉଠ ମା ଉଠ ମା     ବୋଲନ୍ତି ଶ୍ରୀରାମ
ସୁଖେ ଦୁଃଖେ ସଦା ଧୀର ।

୯

ଯତନେ ପ୍ରବୋଧି     ଜନନୀ ପ୍ରାଣ,
ସମସ୍ତଙ୍କ ପାଶୁଁ     ଗୁଣନିଧାନ
ମାଗିଲେ ମେଲାଣି     ସ୍ନେହବଚନେ,
କାନ୍ଦିଲେ ବିକଳେ     ଆତ୍ମୀୟସ୍ୱଜନେ,
କ୍ରମେ ସେ କ୍ରନ୍ଦନ ରବ
କୋଟି କୋଟି କଣ୍ଠୁ     ବାହାରି ସଘନେ
ଶବ୍ଦେ ଜିଣିଲା ଅର୍ଣ୍ଣବ ।

୧୦

ସାଧ୍ୱୀ ପତିବ୍ରତା —     ମୁକୁଟମଣି,
ଜନକଦୁହିତା     ରାମରମଣୀ
ପ୍ରାଣକାନ୍ତ ପଦେ     ମସ୍ତକ ଥୋଇ,
ପାଦ-ପଦ୍ମ ଅଶ୍ରୁ —     ଶିଶିରେ ଧୋଇ,
କହନ୍ତି "ମୁଁ ଯିବି ବନେ,
ସଙ୍ଗେ ସଙ୍ଗେ ଥିବି     ଶ୍ରୀପଦ ସେବିବି,
ଭିକ୍ଷା ମୋର ଶ୍ରୀଚରଣେ ।"

୧୧

କହନ୍ତି ଲକ୍ଷ୍ମଣ     ପ୍ରାଣର ଭାଇ
ଭକ୍ତିଭରେ ରାମ     ଚରଣେ ଗ୍ରହିଁ,
"ସେ ଚରଣଯୁଗ     ହୃଦରେ ଧରି
ସଙ୍ଗେ ସଙ୍ଗେ ବନେ     ବନେ ବିଚରି
ଆଜ୍ଞା ପାଳିବି ସନ୍ତତ,
ଯାଉ ଅବା ରହୁ     ଲକ୍ଷ୍ମଣ ଜୀବନ
ଲକ୍ଷ୍ମଣର ଏହି ବ୍ରତ ।"

୧୨

ଅବଶେଷେ ରାମ     ସୀତା ଲକ୍ଷ୍ମଣ
ଭକ୍ତିଭରେ ବନ୍ଦି     ଗୁରୁ ଚରଣ
ବାହାରିଲେ ଯହୁଁ     ରାଜଦାଣ୍ଡରେ,
ବିକଳେ ବୋଲନ୍ତି     ଅଯୋଧ୍ୟା ନରେ,
"ହା ରାମ ସୀତା ଲକ୍ଷ୍ମଣ !

ଯାଉଅଛ କାହିଁ,      କେମନ୍ତେ ବଞ୍ଚିବୁଁ
ନ ଦେଖି ତୁମ୍ଭ ବଦନ ।"

୧୩

କର ଯୋଡି ରାମ      କହନ୍ତି ବାଣୀ,
"ପୁରବାସୀ ସର୍ବେ      ଦିଅ ମେଲାଣି ।
ତୁମ୍ଭର ପବିତ୍ର      ସ୍ନେହ ଦର୍ପଣରେ
ରଘୁକୁଳ ଖ୍ୟାତ      ବିଶ୍ୱ ସଂସାରେ ।
ସେହି ସ୍ନେହ ସଦା ସ୍ମରି
ଚତୁର୍ଦ୍ଦଶ ବର୍ଷ—      ଅନ୍ତେ ବାହୁଡିବୁଁ
ପୁଣି ଅଯୋଧ୍ୟା ନଗରୀ ।"

୧୪

"ଲାଗିଲା ତୁମ୍ଭଙ୍କୁ      ଏ ରଘୁକୁଳ
ପୁଣ୍ୟ ଅଯୋଧ୍ୟାର      ଯଶ ବିପୁଳ ।"
ଏହା କହି ରାମ      ସାଶ୍ରୁ ଲୋଚନେ
ଇଷ୍ଟଦେବ ସ୍ମରି      ନିର୍ମଳ ମନେ
ଦୁଃଖୀ ଜାନକୀ ପଛାଏ
ବଲ୍କଳ ବସନେ      ଆବରି ଶ୍ରୀଅଙ୍ଗ
ଗଲେ ବନେ ନରଶ୍ରେଷ୍ଠେ ।



( ୩ )

## ଶୋଭା



( କେଦାର ଚକ୍ରକେଳି ବୃତ୍ତ )

କେ ଦେଖିବ ଦେଖ  ଫେଡ଼ି ନୟନ,
ଶୋଭାର ଭବନ  ଏହି ଭୁବନ ।
ରୌଦ୍ରେ ବିସ୍ତାରି  ବିମଳ ପ୍ରଭା,
ବସିଛି ଶୋଭାର  ଉତ୍ସବ ସଭା ।
ଅନନ୍ତ ଗଗନେ  ସଦା ବିହରି,
ବିଲସଇ ଶୋଭା  ଦିବା ଶର୍ବରୀ ।
ଦିବସ ଯାମିନୀ  ଗଗନପଟେ
କେତେ ନବ ନବ  ଛବି ପ୍ରକଟେ ।
ଅରୁଣ କିରଣ—  ଭୂଲିକା ଧରି
କେତେ ରଙ୍ଗେ ଚିତ୍ରେ  ପ୍ରାଚୀ ନଗରୀ ।
ପୁଣି ସାୟଂକାଳେ  ସେ ଶୋଭାରାଣୀ
ବାରୁଣୀକି କରି  ତା ରାଜଧାନୀ,
ସ୍ୱର୍ଣ୍ଣମୟ ଦିବ୍ୟ  ବେଢ଼ାରଣରେ
ବିରାଜଇ କ୍ଷଣେ  ହରଷଭରେ ।
ଦିବସେ ଭାସ୍କର  ଜ୍ୟୋତି ବସନେ
ଶୋଭା ଦେଖା ବସି  ଗଗନାସନେ,
ଆଲୋକର ଧାରା  ଧରା ଶରୀରେ
ଢାଳୁଥାଏ ସତି  ପ୍ରେମବିଧୂରେ ।
ସେ ଆଲୋକସୁଧା  ଲଭି ବସୁଧା
ଦିଶେ ଶୋଭାମୟୀ  ସ୍ୱଭାବ-ଶୁଦ୍ଧା ।
ଅନ୍ତରୀକ୍ଷେ ମେଘ  ସେ ଜ୍ୟୋତି ପାଇ,
କ୍ଷଣେ କ୍ଷଣେ ନବ  ରୂପ ଦେଖାଇ,
ବିଜୁଳି ପତାକା  ଉଡ଼ାଇ ରଙ୍ଗେ,
ଭ୍ରମେ ଉଦ୍‌ବେଗେ  ପବନ ସଙ୍ଗେ ।
ସେ ଆଲୋକ ପାଇ  ମହାସମୁଦ୍ର,
ବିପୁଳ ଗମ୍ଭୀର  ସୁନ୍ଦର ରୁଦ୍ର,
ଉଚ୍ଛ୍ୱଳ ଚଞ୍ଚଳ  ଲହରୀ-ଛନ୍ଦେ
ତାଳେ ତାଳେ ନାଚ  ଗାଏ ଆନନ୍ଦେ ।

ସେ ଆଲୋକ ପଶି    ଗହନ ବନେ
ତରୁ ଲତା ସଙ୍ଗେ    ଖେଳେ ଗୋପନେ ।
ସୁନ୍ଦର ପଲ୍ଲବ    କୁସୁମ ଫଳେ
ହରଷେ ମଣ୍ଡଇ    ଏ ଭୂମଣ୍ଡଳେ ।
କଠିନ ପାଷାଣ    ଗିରି-ହୃଦୟ
ସେ ଜ୍ୟୋତିପରଶେ    ମାଧୁରୀମୟ ।
ତା ଦେହେ ବିକଶେ    ସହସ୍ର ଛବି,
ଯାର ଦରଶନେ    ମୋହିତ କବି ।
ଗିରିଦେହୁଁ ଝରି    ଶୁଭ୍ର ନିର୍ଝର
ନଦୀ ସଙ୍ଗେ ମିଳି    ଗମେ ସାଗର ।
ସେ ଜ୍ୟୋତି ପରଶି    ସରସୀ ଜଳ
ଫୁଟାଏ କୁସୁମ—    ରାଣୀ କମଳ ।
ଶୋଭା-ରାଣୀର ସେ    ଜ୍ୟୋତି-ସଞ୍ଚାରେ
ବହଇ ଜୀବନ    ସ୍ରୋତ ସଂସାରେ ।
ପଶୁ ବିହଙ୍ଗମ    କୀଟ ପତଙ୍ଗେ
ସର୍ବେ ମତ୍ତ ଶୋଭା—    ରସ ପ୍ରସଙ୍ଗେ ।
ନରନାରୀ ଶୋଭା—    ସମୁଦ୍ରଜଳେ
ସନ୍ତରନ୍ତି ମୀନ—    ସମ ବିହ୍ୱଳେ ।
ପୁରୁଷ-ମୂରତି    ନାରୀ-ପ୍ରତିମା
ବିକାଶଇ କିବା    ଶୋଭା-ମହିମା ।
ପ୍ରଦୋଷରେ ଶୋଭା—    ରାଣୀର ମାୟା
ଆଲୋକ ସଙ୍ଗତେ    ତାମସୀ ଛାୟା
ମିଳାଏ କୌତୁକେ    ବିବାହ ଛଳେ,
ସେ ଗୂଢ଼ ରହସ୍ୟ    ବଚନ ବଳେ ।
ରଜନୀରେ ଶୋଭା—    ଦେବୀ ଗମ୍ଭୀରେ
ନଭେ ଶାନ୍ତ ମନ୍ଦ    ଉଛାର ଧୀରେ,
ନକ୍ଷତ୍ରଖଚିତ    ନୀଳ ଦୁକୂଳେ
ଆବରି ବରାଙ୍ଗ    ଶ୍ରୀ ଆଦ୍ୟମୂଳେ
ପୂଜଇ ପୁଲକେ    ଭକତିଭରେ,
ଅଶେଷ ଆଶିଷ    ଲଭେ ହୃଦରେ,
ଅଥବା ବିମଳ    କୌମୁଦୀସ୍ରୋତେ
ଭୁବନମୋହିନୀ    ପ୍ଲାବି ଜଗତେ,
ଚରାଚରେ କରି    ଶୁଭ୍ର ସୁନ୍ଦର
ପରେ ମହାନନ୍ଦେ    ସର୍ବ ଅନ୍ତର ।

ଜଳେ ସ୍ଥଳେ ନଭେ    ଗିରି-କାନନେ,
ସମୁଦ୍ରେ ସରିତେ    ଜନ-ସଦନେ,
ବସନ୍ତେ ନିଦାଘେ    ବର୍ଷା ଶରତେ,
ହେମନ୍ତେ ଶିଶିରେ    ବିବିଧମତେ,
ବିଜେ ଶୋଭାରାଣୀ    ରୂପବିଭବେ
ସ୍ଥିର ସୌଦାମିନୀ    ପ୍ରାୟେ ଏ ଭବେ ।
ସେ ବିଭବ ଦେଖି    କୋଟି ହୃଦୟ
ପୁଲକେ ହୁଅଇ    ସଙ୍ଗୀତମୟ ।
ପ୍ରଭାତେ ପ୍ରଦୋଷେ    ସଙ୍ଗୀତ ତାନ,
ଦିବା ବିଭାବରୀ    ବନ୍ଦନା ଗାନ,
ଉତ୍କଳ ଉଠୁଛି    ମହାଝଙ୍କାରେ
ଶୋଭାରାଣୀଙ୍କର    ମହାସଭାରେ ।
ବାଳକ ବାଳିକା    ଆସ ସରବେ,
ଭୁବନନନ୍ଦିନୀ    ଶୋଭାବିଭବେ
ଦରଶନ କରି    ପ୍ରେମ ନୟନେ
ସଫଳ କରି ହେ    ନିଜ ଜୀବନେ ।
ସେ ମହାସଭାରେ    ବସି ଆନନ୍ଦେ
ଗାଅ ହେ ବନ୍ଦନା    ମଧୁର ଛନ୍ଦେ ।



( ୪ )

## ଧ୍ୱନି

(ଢଙ୍ଗଲାଗୀ ବୃତ୍ତ)

୧

ଶୁଣୁଅଛୁ ସର୍ବେ ଦିବସ ରଜନୀ
ଜଗତର କୋଳାହଳ ।
କୋଟି କୋଟି ରବ, କୋଟି କୋଟି କଥା
ଶୁଣୁଅଛୁ ଅବିରଳ ।

୨

ଜଳଦର ମନ୍ଦ୍ର ଜଳଧିର ଘୋଷ
ନିର୍ଝରିଣୀ କଳସ୍ୱନ ।
ସମୀର ପରଶେ କାନନ ମର୍ମର
ପ୍ରଭଞ୍ଜନ-ଗରଜନ ।

୩

ମଧୁପ ଗୁଞ୍ଜନ ଝିଲ୍ଲିକା-ଝଙ୍କାର
ବିହଙ୍ଗର କଣ୍ଠସ୍ୱର ।
ଊଷାର ବିମଳ ମାଧୁରୀପୂରିତ
ପୁଣ୍ୟତାନ ଭରତର ।

୪

କପୋତଦ୍ୱନ୍ଦ୍ୱର ବିକଳ କରୁଣ
ବିଳାପ-ପୂରିତ ଗାନ ।
ବସନ୍ତବିଳାସୀ ପିକ ଗାୟକର
ଲଳିତ ପଞ୍ଚମ ତାନ ।

୫

ଘନ ପଲ୍ଲବିତ ବନଗିରି କୁଞ୍ଜେ
ନଦୀ ସିନ୍ଧୁ ହ୍ରଦ ବକ୍ଷେ ।
କୋଟିରେ ବିବରେ ପର୍ବତ କନ୍ଦରେ
କିବା ମୁକ୍ତ ଅନ୍ତରୀକ୍ଷେ ।

୬

ଶୁଣୁଛ ସର୍ବତ୍ର  କୋମଳ କର୍କଶ
ମଧୁର ଭୈରବ ରବ ।
ପଶୁ ପକ୍ଷୀ କୀଟ  ପତଙ୍ଗ ଶବଦେ
ପୂରିତ ବିପୁଳ ଭବ ।

୭

ପୁଣି ଶୁଣୁଅଛ  ଲୋକାଳୟେ ବସି
ତରଳ ମଧୁର ଲୋଳ,
କ୍ରୀଡ଼ା କୌତୁକର  କଲ୍ଲୋଳ ଉଚ୍ଛ୍ୱାସ,
ବାଳକ ବାଳିକା ଖେଳ ।

୮

ବାଜୁଛି କାହିଁ ବା  ଉତ୍ସବ ବାଜଣା,
ଶୁଭୁଛି ଉତ୍ସବ ନାଦ ।
କାହିଁ ବା ଉଠୁଛି  କ୍ରନ୍ଦନର ରୋଳ,
କଳୁଷ କଳହବାଦ ।

୯

ଶିଶୁର ଦନ୍ତୋଷ୍ଠ  ଅମୃତ ବଚନ
ସ୍ଥବିରର କ୍ଷୀଣଭାଷ,
ତରୁଣ ଜନର  ଉତ୍ସାହପ୍ରଫୁଲ୍ଲ
ବଦନେ ଉଦ୍ଦାମ ହାସ ।

୧୦

ଗୁରୁଜନଙ୍କର  ସ୍ନେହାଦରମୟ
ପୁଣ୍ୟ ଉପଦେଶବାଣୀ ।
ଶିଷ୍ୟଜନଙ୍କର  ଭକ୍ତିପୂର୍ଣ୍ଣ କଥା
ଗୁରୁଙ୍କ ଗୌରବ ଜାଣି ।

୧୧

ହଳାହଳମୟ  ଛଳନାପୂରିତ
ନୀଚ ହୀନମତି କଥା ।
କ୍ରୋଧ ବିଦ୍ୱେଷର  ବିକଟ ଗର୍ଜନ
ଶୁଣି ତ ଅଛ ସର୍ବଥା ।

୧୨

ଭକ୍ତ ରସନାର ସୁଧାମୟ ମନ୍ତ୍ର
ବାଜଇ ଯା ପ୍ରାଣଯନ୍ତ୍ରେ ।
କବିର ଅମୃତ ସଙ୍ଗୀତ ଝଙ୍କାର
ଭାରତୀର ବୀଣାତନ୍ତ୍ରେ ।

୧୩

ସ୍ୱଦେଶବତ୍ସଲ ବୀର ପୁରୁଷର
ମନ୍ତ୍ର ବାଣୀପରମ୍ପରା,
ଶ୍ରବଣେ ଯାହାର ଅମୃତ ଉତ୍ସାହେ
ଜାଗି ଉଠେ ମୃତଧରା ।

୧୪

ଏହିମତେ କୋଟି କୋଟି ଶବ୍ଦେ ପୂର୍ଣ୍ଣ
ଅନୁକ୍ଷଣ ଏ ଅବନୀ ।
କିନ୍ତୁ ଶୁଣିଛ କି ସେହି ଆଦିମୂଳ
ଅନାଦି ପରମ ଧ୍ୱନି ?

୧୫

ରୋମାଞ୍ଚପୂରିତ ପୁଲକିତ ଦେହେ
ଶୁଣ ଶୁଣ ବିଶ୍ୱଜନେ,
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଯେ ପରମ ଧ୍ୱନି
ଉଚ୍ଛ୍ୱସିତ ସଂଗୋପନେ ।

୧୬

ବିଶ୍ୱ ଭୁବନର ସୃଷ୍ଟି ସ୍ଥିତି ଲୟେ
ନିତ୍ୟ ଉଚ୍ଚାରିତ ବାଣୀ ।
ଅନାଦି ଅନନ୍ତ ଗମ୍ଭୀର ଅମୃତ
ଦ୍ୟୁଲୋକ ଭୂଲୋକ ରାଣୀ ।

୧୭

ସେ ଅମୃତମୟୀ ବାଣୀର ଶ୍ରବଣେ
ନାଚଇ ଗଗନେ ତାରା ।
ଭୁବନେ ଭୁବନେ ବହଇ ଆନନ୍ଦେ
ଜୀବନ-ଜାହ୍ନବୀ-ଧାରା ।

୧୮

ଶୁଣ ଶୁଣ ଏବେ ସେ ବାଣୀ ତୋହର
ଅନ୍ତରେ ଅଛନ୍ତି ଜାଗି,
ସନ୍ତତେ ତୋ ପ୍ରାଣ— ମନ୍ଦିରବାହିନୀ
ତୋହର ଉଦ୍ଧାର ଲାଗି ।

୧୯

କହନ୍ତି ସେ ବାଣୀ, ଉଠ ଉଠ ବତ୍ସ,
ଅନାଥ ରେ ବାରେ ମୋତେ,
ଅନନ୍ତ ପ୍ରେମର ନିତ୍ୟ ଆଲିଙ୍ଗନେ
ଧରିଅଛି ସଦା ତୋତେ ।

୨୦

କାହିଁ ଯାଉଛୁ ତୁ ? କି ଶବ୍ଦ ପଶ୍ଚାତେ
ବୁଲୁଛୁ ରେ ହୋଇ ବାଇ ?
ଅଶବ୍ଦ ଶବଦ ମୁଁ ତୋ ପ୍ରାଣେ ଅଛି
ଶୁଣ ଶୁଣ ସଦା ଧ୍ୟାଇ ।

୨୧

ପ୍ରାଣର ନିର୍ମଳ ପ୍ରେମ ଦିଅ ମୋତେ
ମୁହିଁ ତ ତୋ ପ୍ରାଣସଖା ।
ମୋ ବାଣୀ ଶ୍ରବଣେ ଭାଜିବ ତୋହର
ବିଷାଦ ଜଞ୍ଜାଳ ଦକା ।



( ୫ )

## ପଦ୍ମ

( କଳହଂସ କେଦାର କୃତ )

୧

କୋଟି ଲାବଣ୍ୟନିଧି     ରେ ପଦ୍ମ ତୁହି
କି ଅମୃତେ ତୋ ତନୁ     ଗଢ଼ିଲା ବିଧି ?
ତୋ ରୂପ-ଦରଶନେ     ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ     ଅମୃତମୟ ।

୨

ଢଳ ଢଳ ସୁନୀଳ     ସରସୀ ଜଳ,
ଢଳ ଢଳ ଶ୍ୟାମଳ     ନଳିନୀ ଦଳ,
ଢଳ ଢଳ ଭାସ୍କର-     ରଶ୍ମି ଉଜ୍ଜ୍ୱଳ,
ତା ମଧ୍ୟେ ଢଳ ଢଳ     ତୁହି କମଳ ।

୩

ହସ ହସ ବଦନେ     ହରଷଭରେ
ଅନାଇ ରହିଅଛୁ     ତୁ ଦିବାକରେ ।
ତୋ ମୁଖେ ଜ୍ୟୋତିଧାରା     ସେ ଦିବାକର
ଢାଳଇ ଅବିରଳ     ଆରେ ପୁଷ୍କର ।

୪

ପିଉ ତୁ କି ଆନନ୍ଦେ     ପୀୟୂଷ ସର
ସେ ଶୁଭ୍ର ଜ୍ୟୋତିଧାରା     ଉକ୍ତ କର ।
ଆହା କି ଦିବ୍ୟଶିରୀ     ତହିଁ ତୁ ଲଭୁ,
ଧନ୍ୟ ଉତ୍ପଳ, ଧନ୍ୟ     ତୋହର ପ୍ରଭୁ ।

୫

ମକରନ୍ଦ-ଅମୃତ     ହୃଦେ ତୋହର,
ତହୁଁ ସ୍ଫୁରଇ ବାସ     କି ମନୋହର !
ସେ ମଧୁପାନେ     ମତ୍ତ ମଧୁପଦଳ,
ସେ ସୌରଭେ ପରାଣ     କେଡ଼େ ଶୀତଳ ।

୬

ଶ୍ୱେତ ସ୍ନେହରେ ରଙ୍ଗା  ତୋ ଶୁଭ୍ର ତନୁ,
ବାରେ ଦେଖିଲେ କେଭେ  ନ ଯିବ ମନୁ ।
ସର୍ବ ଶୋଭାର ତୁହି  ଉପମାସ୍ଥଳ
ଭକତ ପ୍ରେମିକର  ତୁହି-ସମ୍ବଳ ।

୭

ସ୍ନେହ କରୁଣା ଭକ୍ତି  ପବିତ୍ର ରସ
ପୂରିଛି ତୋ ଅନ୍ତର,  ରେ ତାମରସ ।
ନୋହିଲେ କାହିଁ ତୋର  ଦର୍ଶନେ ମନ
ବିମଳ ପ୍ରେମରସେ  ହୁଏ ମଗନ ?

୮

ମଧୁମୟ ପବିତ୍ର  ଯାହା ବିଶ୍ୱରେ,
ତୋ ନାମ ସଙ୍ଗେ ମିଶା  ବିଧାତା ବରେ ।
ପ୍ରିୟ ମୁଖ ନୟନ  କର ଚରଣ
ତୋ ନାମ ସଙ୍ଗେ ସିନା  ସୁଖ କାରଣ ।

୯

ସତ୍ୟ ଶିବ ସୁନ୍ଦର  ପରମେଶ୍ୱର—
ନାମ ସଙ୍ଗତେ ଲଗ୍ନ  ନାମ ତୋହର ।
ତେଣୁ ରେ ଅରବିନ୍ଦ  ଭକ୍ତ ଜନର
ବିଭୁ ପଦାରବିନ୍ଦ  ସୁମନୋହର ।

୧୦

ସର୍ବ ଶୋଭାର ସଦ୍ମ  ରେ ପଦ୍ମ, ତୋର
ସଙ୍ଗେ ନିଗୂଢ଼ ଯୋଗ  ଅଛଇ ମୋର ।
ଜୀବନ ମରଣରେ  ତୋ ସଙ୍ଗେ ମିଶି
ଥାଉ ମୋ ମନପଦ୍ମ  ଦିବସ ନିଶି ।

୧୧

କଳୁଷ ପଙ୍କେ ମୁହିଁ  କେଡ଼େ ମଳିନ !
କେମନ୍ତେ ସର ତୋର  ହେବି ନଳିନ ।
ପଙ୍କଜ ଅଟୁ ତୁହି,  ତେଣୁ ଭରସା,
ତୋ ପରି ଶୁଭ୍ର ହେବି  ଲଭି ସୁଦଶା ।

୧୨

ଅନନ୍ତ ମହେଶ୍ୱରେ ମୋ ପ୍ରାଣସାଇଁ
ବୋଲି ଗାଜୀବ ସଦା ଥିବ ଅନାଇ ।
ଶିଖାଅ ମୋତେ ସଦା ଏ ପୁଣ୍ୟବ୍ରତ,
ତୋର ଆଶିଷେ ପୂରୁ ମୋ ମନୋରଥ ।



( ୭ )

## କର୍ଣ୍ଣବଧ

ମହାଭୟଙ୍କର କୁରୁକ୍ଷେତ୍ର ମହାରଣେ
ସେନାପତି ମହାରଥୀ ଦ୍ରୋଣର ନିଧନେ
ପାଣ୍ଡବ ବିଜୟବାନା ଉଡ଼ିଲା ଆକାଶେ,
କୌରବର ସୈନ୍ୟବୃନ୍ଦ ପଳାଇଲେ ତ୍ରାସେ ।

ଏମନ୍ତ ସମୟେ ଅସ୍ତଗଲେ ଦିନମଣି
ଆଚ୍ଛାଦିଲା ଅନ୍ଧକାର ଆକାଶ ଅବନୀ ।
କୁରୁଶ୍ରେଣ ଦୁର୍ଯ୍ୟୋଧନ ନିମ୍ବଶ ଅନ୍ତରେ
ବାହୁଡ଼ି ଶିବିରେ ବସିଅଛନ୍ତି କାତରେ ।
ଅଧୋମୁଖେ ମହାଦୁଃଖେ କେତେ ମହାରଥୀ
ନୀରବେ ଅଛନ୍ତି ବସି ବେଢ଼ି କୁରୁପତି ।
କେତେବେଳଯାଏ ମୌନେ ରହି ଦୁର୍ଯ୍ୟୋଧନ
ଦୀର୍ଘଶ୍ୱାସ ତେଜି ଦୁଃଖେ କହିଲେ ବଚନ ।

"କି ଦଶା ମୋହର ଏବେ ଦେଖୁଅଛ ଶୂରେ,
କି ଆଶା ରହିଲା ଆଉ ମୋର ମର୍ତ୍ତ୍ୟପୁରେ ?
ଗଲେ ଭୀଷ୍ମ ପିତାମହ. ଦ୍ରୋଣ ମହେଷ୍ୱାସ,
କାହା ମୁଖ ଅନାଇ ମୁଁ ଲଭିବି ଆଶ୍ୱାସ ?
ଏ ସଙ୍କଟେ କି କରିବି, ବୁଦ୍ଧି ଦିଶୁ ନାହିଁ,
କେ ଅଛ ଏ ବୀରବୃନ୍ଦେ କର ମୋତେ ତ୍ରାହି ।"

ଦୁର୍ଯ୍ୟୋଧନ କଥା ଶୁଣି ଅଙ୍ଗ-ମହୀପତି
ମହାତେଜା ମହାଯଶା କର୍ଣ୍ଣ ମହାମତି
କହିଲେ ଗମ୍ଭୀରେ ବୀର, "ଆହେ କୁରୁସାଇଁ,
କାହିଁକି କାତର ତୁମ୍ଭେ, ଭାବନା କପାଇଁ ?
କେ ଅଛି ଏ ବୀରବୃନ୍ଦେ କାପୁରୁଷ ଭୀରୁ,
ଏହିକ୍ଷଣି ପଳାଉ ସେ ଏ ବୀର-ଶିବିରୁ ।
ଚକ୍ରନେମିକ୍ରମେ ଭାଗ୍ୟ ଭ୍ରମେ ଏ ଜଗତେ,
କେବେ ତଳେ, ଉପରେ ବା କେବେ ଏହିମତେ ।
ଭୀଷ୍ମର ଅଗ୍ରତେ ଥିଲେ ଶିଖଣ୍ଡୀ ସ୍ଥାପନେ,
ଅଶ୍ୱତ୍ଥାମା ହତ, ଏହି କପଟ ବଚନେ,

ଭୀଷ୍ମ ଦ୍ରୋଣେ ବଧିଲେ ହେ ଯେ ଭୀରୁ ପାଣ୍ଡବେ,
ଜୟଶ୍ରୀ ଲଭିଲା ତାଙ୍କୁ ଜାଣ ଏ ଆହବେ ।
ପାଣ୍ଡବର ପକ୍ଷପାତୀ ଆବର ସ୍ଥବିର
ଭୀଷ୍ମ-ଦ୍ରୋଣ-ପତନେ ହେ ନ ହୁଅ ଅସ୍ଥିର ।
ରଥିଶୂନ୍ୟ ହୋଇ ନାହିଁ ହେ କୌରବସାଇଁ,
ଶତ ବୀରେ ଛନ୍ତି ପଣେ ପ୍ରାଣ ଦେବା ପାଇଁ ।
ଆସ ହେ କୌରବବୀରେ ନବୋତ୍ସାହେ ମାତି,
ଜୀବନ ମୂରୁଛି ରଣେ ନାଶିବା ଅରାତି ।
ଦେଖିବା ପାଣ୍ଡବ ବୀରେ କେଡ଼େ ବଳୀୟାର,
କାଲି ଅପାଣ୍ଡବ ନିଶ୍ଚେ ହେବ ଏ ସଂସାର ।
ବାଳକାଳୁଁ ତୁମ୍ଭର ମୁଁ ଅହେ କୁରୁସାଇଁ,
ଏ ଜୀବନେ ଆନ ମୋର ପ୍ରୟୋଜନ ନାହିଁ ।
ଯାବତ ଏ ପିଣ୍ଡେ ପ୍ରାଣ, ପ୍ରତିଜ୍ଞା ମୋହର,
ସାଧିବ ତୁମ୍ଭର କାର୍ଯ୍ୟ କରଣ ସମର ।
କୌରବଗୌରବରବି ଅହେ ଦୁର୍ଯ୍ୟୋଧନ,
ମାତି ବୀରମଦେ କର ରଣ-ଆୟୋଜନ ।"

କର୍ଣ୍ଣବାଣୀ ଶୁଣି ସର୍ବେ ହରଷିତମନ,
ସେହିକ୍ଷଣି ମହାହର୍ଷେ ଉଠି ଦୁର୍ଯ୍ୟୋଧନ
ଆଲିଙ୍ଗିଣ କର୍ଣ୍ଣବୀରେ ମହାପ୍ରେମଭରେ
ବୋଇଲେ ବଚନ ତହୁଁ ଗଦଗଦ ସ୍ୱରେ ।

"ଧନ୍ୟ କର୍ଣ୍ଣ ପ୍ରାଣସଖା ଜୀବନସୋଦର,
କି ଅମୃତ ରସାୟନ ଢାଳିଲ କର୍ଣ୍ଣର !
ଅହେ ବଳୀୟାରଭୁଜ, ତୁମ୍ଭ ଭୁଜବଳେ
ସାଧିଛ ଅନେକ ହିତ ମୋର ଭୂମଣ୍ଡଳେ ।
ବିପଦ-ସାଗରେ ତୁମ୍ଭେ ଏକା କର୍ଣ୍ଣଧାର,
ଏ ଘୋର ସଂକଟୁ ମୋତେ କର ହେ ଉଦ୍ଧାର,
ବିବୁଧ ସେନାନୀ ହୋଇ କୁମାର ଯେସନ
ଦୁରନ୍ତ ତାରକାସୁରେ କଲେ ବିନାଶନ,
କୁରୁସେନାପତି ପଦ କରଣ ଗ୍ରହଣ
ନାଶ ପାଣ୍ଡବର ଦର୍ପ କରି ଘୋର ରଣ ।
କାଲି ପ୍ରାତେ ଯଥାବିଧି କରିବି ବରଣ,
ଅନୁମତି ଦିଅ ଏବେ ବୀର ବନ୍ଧୁଗଣ ।"

“ଜୟ କର୍ଣ୍ଣ” “ଜୟ କର୍ଣ୍ଣ” ବୋଇଲେ ସକଳେ,
ପୂରିଲା ଆକାଶ ଜୟ—ନାଦ କୋଳାହଳେ ।
ପଶିଲା ସେ ଜୟରୋଳ ପାଣ୍ଡବ ଶିବିରେ,
ମନ୍ତ୍ରଣାରେ ବସିଥିଲେ ଯହିଁ ସର୍ବ ବୀରେ ।

ଶ୍ରୀକୃଷ୍ଣ ବୋଇଲେ, “ବୀରେ, କର୍ଣ୍ଣ ମହାରଥୀ
କୌରବସେନାର କାଲି ହେବେ ସେନାପତି ।
ଶର୍ବରୀ ପାହିଲେ ହେବ ତୁମୁଳ ସମର,
ପ୍ରସ୍ତୁତ ହୁଅ ହେ ଏବେ ଧର୍ମର କୁମର ।
ସୂର୍ଯ୍ୟ ସମ ତେଜେ କର୍ଣ୍ଣ ସୂର୍ଯ୍ୟର ନନ୍ଦନ
ଭୂମଣ୍ଡଳେ ସର୍ବଜୟୀ ବୀର ଅରିନ୍ଦମ ।
ପଶ୍ଚିମରେ ରତ୍ନାକର ପୂର୍ବେ ମହୋଦଧି,
ଉତ୍ତରେ ହିମାଦ୍ରି ଗିରି ଦକ୍ଷିଣେ ଜଳଧି,
ସର୍ବ ଜନପଦ ଯାର ନାମେ ବିକମ୍ପିତ,
ସେନାପତି ହେବେ କର୍ଣ୍ଣ ଦୁର୍ଯ୍ୟୋଧନମିତ ।”

ଯୁଧିଷ୍ଠିର କହନ୍ତି, “ହେ ପାଣ୍ଡବର ଗତି,
କର୍ଣ୍ଣ ସଙ୍ଗେ ଯୁଝିବାକୁ କାହାର ଶକତି ?
କାହାକୁ ସେନାନୀ କାଲି କରିବା ସମରେ,
କହ ହେ କେଶବ ଆଜ ଏହି ଅବସରେ ।”

ଅର୍ଜୁନେ ଅନାଇ ତହୁଁ ବୋଲନ୍ତି କେଶବ,
“କର୍ଣ୍ଣ ସମ ଯୋଦ୍ଧା ଏକା ମଧ୍ୟମ ପାଣ୍ଡବ ।
ପାର୍ଥେ ସେନାପତି ପଦେ ବର ନରପତି,
ରିପୁକୁଳ କ୍ଷୟ କରୁ ପାର୍ଥ ମହାମତି ।”
ପାଣ୍ଡବ-ଶିବିରେ ତହୁଁ ‘ଜୟ ପାର୍ଥ’ ନାଦ
ଉଚ୍ଛୁଳିଲା, ରିପୁକୁଳ ଗଣିଲେ ପ୍ରମାଦ ।

ନିଶୀଥ ହୋଇଲା ଏବେ, ଉଭୟ ଶିବିରେ
ସ୍ୱପ୍ନ ସହ ନିଦ୍ରାଦେବୀ ବିହରିଲେ ଧୀରେ ।
ଯାମିନୀର ଶେଷ ଯାମେ କୁରୁସ୍କନ୍ଧାବାରେ
ଭାବୀ ଯୁଦ୍ଧ ଭୁଲି ଭୁଲି ମଗନ ନିଦ୍ରାରେ
କ୍ଷଣମାତ୍ର ରବିସୂନୁ କର୍ଣ୍ଣ ମହାବଳୀ,
ସ୍ତିମିତେ ଜ୍ୱଳଇ ଗୃହେ ରତ୍ନଦୀପାବଳୀ ।
ଏସନ ସମୟେ ବୀର ଦେଖିଲେ ସ୍ୱପନେ,
ବିରଥ ହୋଇ ସେ ପଡିଛନ୍ତି ରଣାଙ୍ଗନେ ।

ଗୃହଆଡ଼େ ଶୁଭୁଅଛି 'ଜୟ ପାର୍ଥ' ଧ୍ୱନି,
ବିରସ ବଦନେ କାନ୍ଦୁଛନ୍ତି କୁରୁମଣି ।
କ୍ଷଣକେ ଭାଙ୍ଗିଲା ସ୍ୱପ୍ନ, ଉତ୍କଣ୍ଠ ହୃଦୟେ
ଜାଗିଲେ ସେ ମହାବୀର ନିଶାନ୍ତ ସମୟେ ।
କ୍ଷଣକେ ପୁଣି ସେ ଧୈର୍ଯ୍ୟ ସାହସ ନିର୍ଭରେ
ବୋଇଲେ, 'ରକ୍ଷିବି ମୋର ପ୍ରତିଜ୍ଞା ସମରେ ।
ହେଉ ଯା ହେବାର, କେଭେ ନ ଛାଡ଼ିବି ପଣ,
ଦେଖାଉ କି ଛାର ଭୟ, ଆରେ ରେ ମରଣ !'

ଏହା କହି ଶଯ୍ୟା ତେଜି କର୍ଣ୍ଣ ବୀରବର
ପ୍ରାତଃକୃତ୍ୟ ସାରି ଯୁଦ୍ଧେ ହୋଇଲେ ତତ୍ପର ।
ପ୍ରଭାତିଲା ବିଭାବରୀ, ବାଜିଲା ସଘନେ
ଉଭୟ ଶିବିରେ ଶୁଭ ବାଦ୍ୟ ମହାସ୍ୱନେ,
ବାଜିଲା ଦୁନ୍ଦୁଭି ଶଙ୍ଖ ଶିଙ୍ଗା ଭେରୀ ତୂରୀ,
ଜୟ କୋଲାହଳେ ଦଶଦିଗ ଗଲା ପୂରି ।

କର୍ଣ୍ଣେ କର ଧରି କୁରୁରାଜ ସମାଦରେ
ବସାଇଲେ ତହୁଁ ସ୍ୱର୍ଣ୍ଣ ସିଂହାସନ ପରେ ।
ସେନାପତି ପଦେ ତାଙ୍କୁ ବରିଲେ ଆନନ୍ଦେ,
ବନ୍ଦିଏ ଗାଇଲେ ତାଙ୍କ ସ୍ତୁତି ନାନା ଛନ୍ଦେ ।
"ଜୟ ମହାବୀର କର୍ଣ୍ଣ ଅରାତିମର୍ଦ୍ଦନ,
ଜୟ ରଥୀନ୍ଦ୍ର କୌରବ-ଗୌରବବର୍ଦ୍ଧନ,
ବିନାଶ ସମରେ ଆଜି ପାଣ୍ଡବ-ନିଚୟ,
ଜୟ ଅରିନ୍ଦମ କର୍ଣ୍ଣ ମହାରଥୀ ଜୟ ।"

ଏ ବନ୍ଦନା ଶୁଣି କର୍ଣ୍ଣ ଉତ୍ସାହିତ ମନେ
ସାଜିବାକୁ ଆଜ୍ଞା ଦେଲେ କୁରୁ ସୈନ୍ୟଗଣେ ।
ସମର ସଜ୍ଜାରେ ତହୁଁ କୁରୁକଟକରେ
ସାଜିଲା ଅସଂଖ୍ୟ କୁରୁ-ଆଠ ବେଷଭରେ ।
ଚାହାଇଲେ ମତ୍ତଗଜ, ଲୌହଢାଲ ଶିରେ
ଆସ୍ଫାଳ ପ୍ରକାଣ୍ଡ ଶୁଣ୍ଡ ନାଦନ୍ତି ଗମ୍ଭୀରେ ।
ଗ୍ରୀବାଭଙ୍ଗ କରି କେତେ ତୁରଙ୍ଗମଗଣ
ବାହାରିଲେ ଦର୍ପେ କରି ଖଲୀନ ଚର୍ବଣ ।
ଶତ ଶତ ରଥ ଗୁରୁ ପତାକାଶୋଭିତ
ଗୃହୁଁ ଗୃହୁଁ ରଣାଙ୍ଗନେ ହେଲା ବହିର୍ଗତ ।

ଧନୁ ଶର ଅସି ବର୍ଚ୍ଛା ଆଦି ଶସ୍ତ୍ର ଧରି
ବାହାରିଲେ ପଦାତିକେ ଜୟ ଧ୍ୱନି କରି ।
ଠୁଳ ହେଲା ଥାଟ ଯହୁଁ ସଂଗ୍ରାମ ପ୍ରାଙ୍ଗଣେ,
ସେନାପତି ତୋଷି ସର୍ବେ ଉତ୍ସାହ ବଚନେ,
ମକର ଆକାରେ ବ୍ୟୂହ ରଚିଲେ କୌଶଳେ,
ସମରେ ଆକ୍ରମିବାକୁ ପାଣ୍ଡବର ବଳେ ।

ପାଣ୍ଡବ ଶିବିରେ ଆଜି ପାର୍ଥ ସେନାପତି
ବାସୁଦେବ-ଉପଦେଶ ଲଭି ହୃଷ୍ଟମତି ।
ଅର୍ଦ୍ଧଚନ୍ଦ୍ରାକାରେ ବ୍ୟୂହ କରିଲେ ନିର୍ମାଣ,
'ଜୟ ପାର୍ଥ' କୋଳାହଳେ ପୂରିଲା ବିମାନ ।

ଦୁଇଦଳେ ରଣ-ସଜ୍ଜା ହେଲା ଯେଝାମତେ,
ପୂରିଲା ଚୌଦିଗ ଯୋଦ୍ଧା-ଗଜ-ଅଶ୍ୱ-ରଥେ ।
କମ୍ପେ ମହୀ ଚତୁରଙ୍ଗ ସେନା-ପଦ-ଭରେ
ଧୂଳିର ଝଟିକା ବେଗେ ଘୋଟିଲା ଅମ୍ବରେ ।
ଶଙ୍ଖ ଆଦି ବାଦ୍ୟରୋଳେ, ଗଜ ଗରଜନେ,
ତୁରଙ୍ଗର ହ୍ରେଷାରବେ, ଅସ୍ତ୍ରର ଝଣ୍ଝଣେ,
ସମରସ୍ଥଳର ମହାଘୋର କୋଳାହଳେ,
ମହାତ୍ରାସ ଉପୁଜିଲା ମେଦିନୀମଣ୍ଡଳେ ।

ଦୁର୍ଯ୍ୟୋଧନେ ବୋଲେ ତହୁଁ କର୍ଣ୍ଣ ବୀରବର,
"ମହାରଥୀ ଶଲ୍ୟ ହେଉ ସାରଥି ମୋହର ।
ଆଣ ଏବେ ଶଲ୍ୟେ ସେହି ଚଳାଉ ମୋ ରଥ,
ତାହା ବିନା ଅନ୍ୟ କେହି ନୁହେ ସମରଥ ।"
ଶଲ୍ୟ ପାଶେ ଯାଇ ତହୁଁ ବୀର ଦୁର୍ଯ୍ୟୋଧନ
ବୋଇଲେ, 'ମାତୁଳ ଆଜି ରଖ ମୋ ବଚନ,
କର୍ଣ୍ଣର ସାରଥି ହୁଅ ଆହେ ମହାରଥୀ,
ତୁମ୍ଭ ବିନା ଏ ସମରେ ନାହିଁ ଅନ୍ୟ ଗତି ।'
ମଦ୍ରରାଜ ହେଲେ ତହୁଁ କର୍ଣ୍ଣର ସାରଥି,
ପାର୍ଥର ସାରଥି ସଦା କୃଷ୍ଣ ଯଦୁପତି ।

ଏଥୁଅନ୍ତେ ଦୁଇଦଳେ ଆରମ୍ଭିଲେ ରଣ,
ଲକ୍ଷ ଲକ୍ଷ ଶର ଉଡ଼ି ଛାଇଲା ଗଗନ ।
ରଥେ ରଥେ ଅଶ୍ୱେ ଅଶ୍ୱେ ବାରଣେ ବାରଣେ
ପଦାତିକେ ପଦାତିକେ ଭେଟାଭେଟି ରଣେ ।

ଶୂଳ ଚକ୍ର ଗଦା ଖଣ୍ଡା ବରଛା ପ୍ରହାରେ
ଶତ ଶତ ମୁଣ୍ଡ ଖସି ପଡ଼େ ବସୁଧାରେ ।
ଏକାଳରେ ଭୀମସେନ ଭୀମ ଗଦା କରେ
କୁରୁଥାଟ ପ୍ରତି ଧାଏଁ ମହାରୋଷଭରେ ।
ବୃହତ ବାରଣପୃଷ୍ଠେ ଚଢ଼ି ବୃକୋଦର
ଦିଶୁଥାଏ ତେଜୋବନ୍ତ ଯେସନେ ଦିବାକର ।
ଧାଏଁ ବୀର ଭୀମସେନ ମଥି ରଣାଙ୍ଗନ,
ଭେଟିଲା ତାହାଙ୍କୁ ରୋଷେ କୁଲୁତ ରାଜନ ।
ଗିରିବର ସମ ଦୁହିଙ୍କର କରିବର;
ଆରମ୍ଭିଲେ ଦୁହେଁ ଏବେ ପ୍ରଚଣ୍ଡ ସମର ।
ପରସ୍ପରେ ପ୍ରହାରଣ ଅସ୍ତ୍ର ଘନ ଘନ
ମେଘ ସମ ରଣେ ଦୁହେଁ କରନ୍ତି ଗର୍ଜନ ।
ଭୀମର ପ୍ରଚଣ୍ଡ ଶରଘାତେ ଅସମ୍ଭାଳେ
ପଳାଇଲା କ୍ଷେମମୂର୍ତ୍ତି ହସ୍ତୀ ଏହିକାଳେ ।
ତା ପଛେ ଭୀମର ହସ୍ତୀ ଗଲା ଗୋଡ଼ାଇ,
ମେଘ ପଛେ ମେଘ ଯେସନେ ବେଗେ ଥାଏ ଧାଇଁ ।

କୁଞ୍ଜରେ ସମ୍ଭାଳି ପୁଣି କୁଲୁତ ରାଜନ
ଭୀମର ବାରଣେ ବାଣ ବିନ୍ଧିଲା ବହନ ।
ତହୁଁ ଭୀମ ଗଦାଘାତେ ଶତ୍ରୁର କୁଞ୍ଜରେ
ନାଶି ହେଲେ ପଡ଼ିଲେ ସେ ଡେଇଁ ଭୂମିପରେ ।
କ୍ଷେମମୂର୍ତ୍ତି ଡ଼େଇଁ ପଡ଼ି କଲେ ଘୋର ରଣ,
କିନ୍ତୁ ଶେଷେ ଗଦାଘାତେ ଲଭିଲେ ମରଣ ।

ଏଣେ ଦେଖ ମହାକ୍ରୋଧେ କର୍ଣ୍ଣ ବୀରବର
ପାଣ୍ଡବସେନାଙ୍କୁ ଶରେ କରଇ ଜର୍ଜର ।
ନାଶଇ ନାଗର ବିନ୍ଧ ଅଶ୍ୱ ଶତ ଶତ,
ଭେଟିବାକୁ ତାଙ୍କୁ ଏବେ ନକୁଳ ଆଗତ ।
ହେଲା ଏବେ ଦୁହିଙ୍କର ରଣ ଭୟଙ୍କର,
ପରସ୍ପରେ ବରଷନ୍ତି ଶତ ଶତ ଶର ।
ନକୁଳର ବାଣ କର୍ଣ୍ଣ ଏଡ଼େ ଅନାୟାସେ,
କିନ୍ତୁ କର୍ଣ୍ଣବାଣ ତାର ରଥ ଅଶ୍ୱ ନାଶେ ।
ନକୁଳ ଭୂତଳେ ପଡି ଆକୁଳ ଅନ୍ତରେ
ବସିଲା ପଳାଇବାକୁ ମରଣ ଭୟରେ ।

ହସି ତହୁଁ କର୍ଣ୍ଣବୀର ବୋଇଲେ, 'ରେ ଭୀରୁ,
କି ସାହସେ ଯୁଝିବାକୁ ଆସିଲୁ ଶିବିରୁ !
ଆଜି ତୋତେ ଛାଡ଼ିଦେଲି ପାଣ୍ଡୁ କୁଳାଙ୍ଗାର,
ଭ୍ରାତୃଗଣେ କହ ଯାଇ ଯୁଦ୍ଧ ସମାଚାର ।'

ଏଣେ ଅଶ୍ୱତ୍ଥାମା ଭୀମ ବିଷମ ସମରେ
କୋପେ କରୁଛନ୍ତି ଶରବୃଷ୍ଟି ପରସ୍ପରେ ।
ବିଜୁଳି ପରାଏ ବାଣ ଚମକେ ଗଗନେ,
ଦୁହିଙ୍କର ଦେହୁଁ ରକ୍ତ ବହଇ ସଘନେ ।
ଦୁହେଁ ମହାବଳୀୟାର ମହାକ୍ରୋଧଭରେ
ନୟନ ତରାଟି ଚାହୁଁଥାନ୍ତି ପରସ୍ପରେ
ମହା ହୁହୁଙ୍କାର ନାଦେ ବିନ୍ଧୁଥାନ୍ତି ବାଣ,
ବେନି ମହାରଥୀ ଯୁଦ୍ଧେ ଅଟନ୍ତି ସମାନ ।
ଅବଶେଷେ ଯୁଝି ଯୁଝି ଦୁହେଁ ବହୁକ୍ଷଣ
ନିଜ ନିଜ ରଥେ ପଡ଼ି ହେଲେ ଅଚେତନ ।
ଦୁହିଙ୍କ ସାରଥି ତହୁଁ ସେହି ରଣଦାଣ୍ଡେ
ରଥୀଙ୍କୁ ଘେନିଣ ରଥେ ପଳାଇଲେ ଚଣ୍ଡେ ।

ଏଥି ମଧ୍ୟେ ଧନଞ୍ଜୟ ସଂଶପ୍ତକଗଣେ
ଆକ୍ରମିଲେ ମହାବାହୁ ଭୟଙ୍କର ରଣେ ।
ଶତ ଶତ ବୀର ଏବେ ଅର୍ଜୁନର ଶରେ
ଅକାଳେ ତେଜିଲେ ପ୍ରାଣ ସମରଚତ୍ୱରେ ।
କୁରୁବୀରମାନେ ତହୁଁ ମହାକ୍ରୋଧଭରେ
ବିନ୍ଧିଲେ ଅର୍ଜୁନେ ଶତ ଶତ ତୀକ୍ଷ୍ଣଶରେ ।
ଏକାକୀ ସହସ୍ର ରଥୀ ପ୍ରାୟେ ଧନଞ୍ଜୟ
ସମସ୍ତ ଶତ୍ରୁଙ୍କୁ କଲେ ସମରେ ଅଥୟ ।
ପ୍ରଭଞ୍ଜନ ଦିଏ ଯେସନ୍ତେ ମେଘକୁ ଉଡ଼ାଇ,
ସେହିପରି ଶତ୍ରୁଗଣେ ଦେଲେ ଘଉଡ଼ାଇ ।
ତାହା ଦେଖି ଧାଇଁ ଆସେ ଦ୍ରୋଣର ନନ୍ଦନ,
ଆକ୍ରମଇ ମହାକୋପେ ଅର୍ଜୁନ ସ୍ୟନ୍ଦନ ।
'ରେରେକାର କରି ବୋଲେ କୃଷ୍ଣେ ଧନଞ୍ଜୟେ,
ପେଷିବି ତୁମ୍ଭଙ୍କୁ ଆଜି ଶମନ ଆଲୟେ ।
ପ୍ରଚଣ୍ଡ କୋଦଣ୍ଡ କରେ ଧରି ବୀରବର
ଅର୍ଜୁନେ କେଶବେ ବିନ୍ଧେ ଶତ ଶତ ଶର ।
ଅଶ୍ୱତ୍ଥାମା ବାଣାଘାତେ ବାସୁଦେବ କ୍ଷଣେ
କ୍ଷୀଣବଳ ପ୍ରାୟେ ପଡ଼ିଗଲେ ସେ ସ୍ୟନ୍ଦନେ ।

ତହୁଁ କ୍ରୋଧେ ଗାଣ୍ଡୀବକୁ ଧରି ଧନଞ୍ଜୟ
ମହାବାଣେ ପ୍ରହାରିଲେ ଶତ୍ରୁର ହୃଦୟ ।
ଅଶ୍ୱତ୍ଥାମା ସେ ଆଘାତେ ଛାଡ଼ି ଘୋର ରଡ଼ି
ଅଚେତନ ହୋଇ ନିଜ ରଥେ ଗଲା ପଡ଼ି ।
କିଛିକ୍ଷଣେ ସଂଜ୍ଞା ଲଭି ଦ୍ରୋଣର କୁମର
ଲାଜେ ପଳାଇଲେ ରଣୁ ହୋଇଣ କାତର ।
କପିଧ୍ୱଜରଥେ ଚଢ଼ି ପାର୍ଥ ତହୁଁ ରଣେ
ପୁଣି ଆକ୍ରମିଲେ ସଂଶପ୍ତକ ବୀରଗଣେ ।
ଶୃହୁଁ ଶୃହୁଁ ସଂଶପ୍ତକେ ଗଲେ ଯମପୁର,
କେଶବ ବୋଲନ୍ତି, ଧନ୍ୟ ଧନ୍ୟ ପାର୍ଥ ଶୂର ।

ପାଣ୍ଡବ ପକ୍ଷର ପାଣ୍ଡ୍ୟ ମହାବୀରବର
କୁରୁସେନା ସଙ୍ଗେ ଏବେ କରନ୍ତି ସମର ।
ସମ୍ଭାଳିବ କିଏ ତାଙ୍କ ପ୍ରଚଣ୍ଡ ପ୍ରହାର ?
କରୁଛନ୍ତି ଅବହେଳେ ଅରାତି ସଂହାର ।
ଏ କାଳରେ ଦେଖି କୁରୁଆଠର ଦୁର୍ଗତି
ଭେଟିଲେ ବହନ ତାଙ୍କୁ ଅଶ୍ୱତ୍ଥାମା ରଥୀ ।
ମହାକ୍ରୋଧେ ମହାରଣେ ବୀର ଦୁଇ ଜଣ
ପରସ୍ପରେ ତୀକ୍ଷ୍ଣ ବାଣ କଲେ ବରଷଣ ।
ଦ୍ରୌଣିର ତୁରଙ୍ଗ ପୁଣି ଗୁଣ କୋଦଣ୍ଡର
ହାଣି ପକାଇଲେ ପାଣ୍ଡ୍ୟ ବଳି ତୀକ୍ଷ୍ଣଶର ।
ଶୃହୁଁ ଶୃହୁଁ ଆନ ଗୁଣ ଦେଇ କାର୍ମୁକରେ
ଅଶ୍ୱତ୍ଥାମା ବାଣମାନ ବିନ୍ଧିଲେ କ୍ରୋଧରେ ।
ପାଣ୍ଡ୍ୟଙ୍କ ସାରଥି ଅଉ ତୁରଙ୍ଗମଗଣେ
କ୍ଷଣକେ ବଧିଲେ ଦ୍ରୌଣି ମାତି ଘୋର ରଣେ ।
ଭୈରବ ଗର୍ଜନେ ତହୁଁ ସେ ପାଣ୍ଡ୍ୟରାଜନ
ଖଡ୍ଗରେ କଲେ ଦ୍ରୌଣି କଣ୍ଠ ଛେଦନ ।
ଲାଜେ କ୍ରୋଧେ ଅଶ୍ୱତ୍ଥାମା ଛାଡ଼ିଣ ହୁଙ୍କାର
ପାଣ୍ଡ୍ୟ ଶିରେ ତିନି ଶର କରିଲେ ପ୍ରହାର ।
ଦ୍ରୌଣି ଶରେ ପାଣ୍ଡ୍ୟ ଆହା ତେଜିଲେ ଜୀବନ
"ଧନ୍ୟ ଧନ୍ୟ ଅଶ୍ୱତ୍ଥାମା" ବୋଲେ ଦୁର୍ଯ୍ୟୋଧନ ।

ଉଭୟପକ୍ଷରୁ କେତେ ରଥୀ ଏହିପରି
ପ୍ରଚଣ୍ଡ ସମରେ ମାତି ବନାଟିଲେ ଅରି ।
କ୍ରମେ କ୍ରମେ ଅସ୍ତାଚଳେ ଗଲେ ଦିବାକର
ନିବର୍ତ୍ତିଲା ସେ ଦିନର ଯୁଦ୍ଧ ଭୟଙ୍କର ।

ଏଥିଅନ୍ତେ ଯଥାକାଳେ ପାହିଲା ରଜନୀ,
ପୂର୍ବ ଆକାଶରେ ବିଜେ ହେଲେ ଦିନମଣି ।
କର୍ଣ୍ଣର ଆଦେଶେ ଶଲ୍ୟ ଯୋଚି ଅଶ୍ୱବରେ
ରଙ୍ଗେ ଚଳାଇଲେ ରଥ ସମର-ଦାଣ୍ଡରେ ।
ସଙ୍ଗେ ଚଳେ ରଣରଙ୍ଗେ କୁରୁପତି ଥାଟ,
"ଜୟ କୁରୁପତି ଜୟ" ଗାଉଅଛି ଭାଟ ।

ଏଣେ ଅର୍ଜୁନଙ୍କୁ ଡାକି ରାଜା ଯୁଧିଷ୍ଠିର
ବୋଲନ୍ତି ସେ, "ସାବଧାନ ହୁଅ ପାର୍ଥବୀର,
ଦେଖ ହେ କେମନ୍ତ ବ୍ୟୂହ ରଚିଛି ରାଧେୟ,
ବୃଥା ଦର୍ପେ ମାତି ତାକୁ ନ କର ହେ ହେୟ ।"
କେଶବର ଉପଦେଶେ ତହୁଁ ପାର୍ଥ ରଥୀ
ସଜାଇଲେ ନିଜ ସେନା କୌଶଳେ ତଡ଼ିତି ।

ଦ୍ୱିତୀୟ ଦିବସ ରଣ ମହାଭୟଙ୍କର,
ଏ ମର୍ତ୍ତ୍ୟେ ଜଗତେ କାହିଁ ତାର ପଟାନ୍ତର ?
ବେନି ସେନା ବେନି ପାଶ୍ୱଁ ଗରଜି ଭୀଷଣେ
ଧାଇଁଲେ ପ୍ରଚଣ୍ଡେ ପରସ୍ପର ଆକ୍ରମଣେ ।
କୌରବବାହିନୀ ପ୍ରତି ଧାଇଁ ଧନଞ୍ଜୟ
ପେଷିଲେ ସେ ଶତ ଶତ ବୀରେ ଯମାଳୟ ।
ପାଣ୍ଡବସେନାରୁ କର୍ଣ୍ଣ ବହୁବୀରଗଣେ
କ୍ଷଣକେ ବଧିଲେ, ଇନ୍ଦ୍ର ଅସୁରେ ଯେସନେ ।
ଏ ସମୟେ ଯୁଧିଷ୍ଠିର ମିଳଣ ସମରେ
ଆକ୍ରମିଲେ କର୍ଣ୍ଣବୀରେ ମହାକୋପଭରେ ।
କୋଦଣ୍ଡ ଟଙ୍କାରି ତହୁଁ କର୍ଣ୍ଣ ବୀରବର,
ଭେଟିଲେ ସେ ଯୁଧିଷ୍ଠିରେ ପେଷି ତୀକ୍ଷ୍ଣଶର ।
ଯୁଧିଷ୍ଠିର ବାଣଘାତେ କର୍ଣ୍ଣ ବୀରବର
ମୁହୂର୍ତ୍ତେ ମୂର୍ଚ୍ଛିତ ହୋଇ ପଡିଲେ ରଥର ।
କ୍ଷଣକେ ଚେତନା ଲଭି ରାଧେୟ ଆବର
ଯୁଧିଷ୍ଠିର ବକ୍ଷସ୍ଥଳେ ବିନ୍ଧିଲେକ ଶର ।
ବାଣେ ବାଣେ ପୁଣି ତାଙ୍କ ତୁରଙ୍ଗ ସାରଥି
ଚୂର୍ଣ୍ଣ ଚୂର୍ଣ୍ଣ କରାଇଲେ କର୍ଣ୍ଣ ମହାରଥୀ ।
ରଥଶୂନ୍ୟ ଯୁଧିଷ୍ଠିର ଲଭି ପରାଜୟ
ପଳାଇଲେ ରଣୁ ବେଗେ ବ୍ୟଥିତହୃଦୟ ।

ଦ୍ରୌପଦୀର ପାଶେ ଅଛି ବୀର ବୃକୋଦର,
ପ୍ରତିଜ୍ଞା କରିଣ ଥିଲେ ଧରି ଗଦାବର ।

"ଆଜ ନଶ୍ବେଁ ଅନ୍ଧ ଧୃତରାଷ୍ଟ୍ରପୁତ୍ରଗଣେ
ଗୋଷ୍ଠ ଗୋଷ୍ଠ କରି ଦେବି ବନାଶିବି ରଣେ ।
ଆଜ ଦୁଃଶାସନେ ପେଷିବଇ ଯମପୁର,
ପିଇବି ରୁଧିର ତାର ବିଦାରଣ ଉର ।
ଆଜ ପଞ୍ଚଦଶ ବର୍ଷ ପରେ ଗୋ ପାଞ୍ଚାଳି,
ବାନ୍ଧାଇବି କେଶ ତବ ଦ୍ରୁପଦୁଲାଳି ।"
ଏସନ ବିଷମ ସେହି ପ୍ରତିଜ୍ଞା ଅନ୍ତରେ
ଧରି ଭୀମସେନ ଧାଏଁ ସମର-ଦାଣ୍ଡରେ ।
କୌରବର ରଥ ଅଶ୍ବ ବାରଣ ପଦାତି
ଗଦା ପ୍ରହାରଣେ ଭୀମ ମାରଇ ନପାତି ।
ଏବେ ଧୃତରାଷ୍ଟ୍ରଙ୍କର ବହୁ ପୁଏ ଆସି
ଆକ୍ରମିଲେ ବୃକୋଦରେ ଦମ୍ଭ ପରକାଶି ।
ରେରେକାର, ମାର ମାର ଶବଦେ ସେ ବୀରେ
ଭୀମେ ବେଢ଼ି ପ୍ରହାରନ୍ତି ଗଦା ତାର ଶିରେ ।
ଭାଜିଗଲା ସମସ୍ତଙ୍କ ଗଦା ଭୀମ ଅଙ୍ଗେ,
ମାତିଲେ ମାରୁତି ତହୁଁ ଘୋର ରଣରଙ୍ଗେ !
ପଳାଇଲେ ରଙ୍ଗସ୍ଥଳୁ କୁରୁବୀରଗଣ
ଗୋଡ଼ାଇଲେ ତାଙ୍କ ପଛେ କୁନ୍ତୀଙ୍କ ନନ୍ଦନ ।
ଗଦାବରି ଧରି ରୋଷେ ପିଟଇ ପାବନି,
ଶୋଣିତ ଉଦ୍ଗାରି ସର୍ବେ ଲୋଟନ୍ତି ଅବନୀ ।
ଭ୍ରାତୃବଧ ଦେଖି ଦୁଃଶାସନ ରୋଷଭରେ
"ଆରେ ଭୀମ ମଲୁ ଆଜ" ବୋଲି ଧାଏଁ ଖରେ ।
ପରସ୍ପରେ ଭେଟିଲେ ସେ ମହାବୀର ବେନି,
ଦୁହିଙ୍କର ପଦଭରେ କମ୍ପଇ ଅବନୀ ।
ମଦମତ୍ତ କରୀ ସମ ଯୁଝନ୍ତି ଉଭୟେ,
ପରସ୍ପରେ ବରଷନ୍ତି ଖର ଶରଚୟେ ।
ଦୁଃଶାସନ ସାରଥିକି ଏକ ବାଣେ ମାରି
ଆନେ ଭୀମ ଦୁଃଶାସନେ ପକାଇଲା ଧାରି ।
ତହୁଁ ଦୁଃଶାସନ ବଜ୍ର ସମ ମହାଶରେ
ମହାରୋଷେ ବିନ୍ଧିଲାକ ବୀର ବୃକୋଦରେ ।
ମୂର୍ଚ୍ଛିତ ହୋଇଣ ଭୀମ ପଡ଼ିଲା ସ୍ୟନ୍ଦନେ,
କ୍ଷଣକେ ଚେତନା ଲଭି ପୁଣି ମାତେ ରଣେ ।
ବଜ୍ରନାଦେ ଗର୍ଜି ଭୀମ କହେ ଦୁଃଶାସନେ,
"ଆରେ କୁରୁକୁଳାଙ୍ଗାର ନାହିଁ କି ରେ ମନେ,

କେମନ୍ତେ ତୁ ପାପହସ୍ତେ ଦ୍ରୌପଦୀ କୁନ୍ତଳେ
ଧରି ତାଙ୍କୁ ବିବସନ କଲୁ ସଭାତଳେ !
ଆଜ ତାର ପ୍ରତିଫଳ ଦେବି ରେ ବର୍ବର,
ତୋତେ ରେ ଦାନବ ଆଜ ଛାଡ଼ିବି ପାମର !”
ଏହା କହି ମହାକୋପେ ଗରଜେ ଭୈରବେ,
ଚରାଚର ବିକମ୍ପିତ ଭୀମର ସେ ରବେ ।
ଯମଦଣ୍ଡ ସମ ମହାଗଦା ଭୁଜଦଣ୍ଡେ
ବୁଲାଇ ଧାଇଲା ବାୟୁକୁମର ପ୍ରଚଣ୍ଡେ ।
ହେଲେ ଚଢ଼ି ଗଲା ଦୁଃଶାରଥେ ବୃକୋଦର,
ସିଂହ ଚଢ଼ି ଯାଏ ଯଥା ମହାଗିରିବର ।
ଗଦାର ଆଘାତେ ଦୁହେଁ ହେଲେ ମରମର,
ଗଦା ଚୂର୍ଣ୍ଣ ହୁଅନ୍ତେ ସେ ହେଲେ ଧରାଧରି ।
ପରସ୍ପରେ ଭିଡ଼ାଭିଡ଼ି ହୁଅନ୍ତେ ସେ ବୀରେ
ଦୁଃଶାସନ ଗଡ଼ି ଯାଇ ପଡ଼ିଲା ମହୀରେ ।
ନିମେଷକେ ଉଠି ଦୁଃଶା ଯୁଝଇ ଆବର,
ଅବଶେଷେ ମାଡ଼ି ବସେ ରୋଷେ ବୃକୋଦର ।
ଦୁଃଶାସନ ବକ୍ଷେ ବସି ରେରେକାର କରି
ଚରଣେ ଗୃପଇ ଗଲା ରୁଦ୍ରମୂର୍ତ୍ତି ଧରି ।
ବୁଲାଇଣ ବେନି ଡୋଳା ଦନ୍ତ କଡ଼ମଡ଼ି
ଘଡ଼ଘଡ଼ି ପ୍ରାୟେ ଛାଡ଼େ ମହାଘୋର ରଡ଼ି ।
ଦଶ ନଖେ ଦଶନରେ ରିପୁବକ୍ଷସ୍ଥଳ
ବିଦାରି ପିଅଇ ରକ୍ତ ଭୀମ ମହାବଳ ।
ପୁଣି ସେହିଠାବେ ଭୀମ କୃଷ୍ଣାଙ୍କୁ ଅଣାଇ
ବୋଲେ, ‘ମୋ ପ୍ରତିଜ୍ଞା ପୂର୍ଣ୍ଣ ଏତେ ଦିନେ ଯାଇ ।’
ଏହା କହି ଦୁଃଶାରକ୍ତେ ରଞ୍ଜିତ ହସ୍ତରେ
ବାନ୍ଧାଇ କୃଷ୍ଣାର କେଶ ମହାହର୍ଷଭରେ ।
ଦୁଃଶାର ରୁଧିର ପୁଣି ପିଏ ଅଟ୍ଟହାସେ,
ରାକ୍ଷସ ବୋଲିଣ ଲୋକେ ପଳାଇଲେ ତ୍ରାସେ ।

ଏଥୁଅନ୍ତେ କର୍ଣ୍ଣସୁତ ବୃଷସେନ ରଥୀ
କ୍ରୂରକର୍ମୀ ଭୀମସେନେ ଆକ୍ରମେ ତଡ଼ିତ ।
ଅଶ୍ୱତ୍ଥାମା କୃପାଚାର୍ଯ୍ୟ ଶକୁନି ଆବର
ବରଷିଲେ ଭୀମସେନ ଶତଶତ ଶର ।
ଦୂରେ ଯୁଝୁଥିଲେ କର୍ଣ୍ଣ, ଦୁଃଶାସନ ବଧ—
ବାରତା ପାଇଣ କ୍ଷଣେ ହୋଇଲେ ସ୍ତବଧ ।

ଧାଇଁ ଆସି ଗଜଧ୍ୱଜେ ମିଳିଲେ ସେ ସ୍ଥଳେ,
ଭୀମେ ଉଦ୍ଦେଶିଣ ବାଣ ବିନ୍ଧିଲେ ସବଳେ ।
ତା ଦେଖି ନକୁଳ ବୀର ପୁଣି ଧନଞ୍ଜୟ
ରୋଷଭରେ ସେହିଠାବେ ମିଳିଲେ ଉଭୟ ।
ଲାଗିଲା ତୁମୁଳ ରଣ ଏବେ ଦୁଇଦଳେ,
ଉଲ୍କା ସମ ଶରରାଶି ଉଡ଼େ ନଭସ୍ଥଳେ ।
ମହାବୀର ବୃଷସେନ କର୍ଣ୍ଣର କୁମର
ଜିଣିଲେ ନକୁଳେ କରି ବିଷମ ସମର ।
ନକୁଳ ପଳାଇ ଗଲେ ବୃକୋଦର ପାଶେ,
କୃପ ଦ୍ରୌଣି ଗୋଡ଼ାଇଲେ ବିକଟ ଉଲ୍ଲାସେ,
କିନ୍ତୁ ଭୀମ ବାଣେ ହୋଇ ଉତ୍ପୀଡ଼ିତ ଅତି
ବାହୁଡ଼ିଲେ ଲାଜେ ଦୁଃଖେ ସେହି ଦୁଇ ରଥୀ ।
ଏକ ବାଣ ବିନ୍ଧେ ଭୀମ ଶକୁନି ଉପରେ,
ପଳାଏ ଶକୁନି ରଣୁ ସେହି ବାଣକରେ ।
ଏଣେ ବୃଷସେନ ମହାରଥୀ ପାର୍ଥ ଶରେ
ନିଧନ ଲଭିଲେ ଆହା କର୍ଣ୍ଣ ସମକ୍ଷରେ ।

ଏଥିଅନ୍ତେ ପୁତ୍ରଶୋକେ ଆକୁଳ ହୃଦୟ,
ମହାକୋପଭରେ କର୍ଣ୍ଣ ନିତାନ୍ତ ଅଥୟ,
ଆରକ୍ତନୟନ ବୀର ଆସିଲେକ ଧାଇଁ
ତତ୍ପର ପାର୍ଥ ସଙ୍ଗେ ଯୁଝିବାର ପାଇଁ
ଦୁଇ ବୀରେ ରଥାରୂଢ଼, ଅତୁଲବିକ୍ରମ,
ତେଜୋବନ୍ତ ଦିଶୁଛନ୍ତି ଦିବାକର ସମ ।
ଶଙ୍ଖନାଦେ କର୍ଣ୍ଣ ପାର୍ଥେ ଆହ୍ୱାନିଲେ ରଣେ,
ଶଙ୍ଖନାଦେ ଉତ୍ତରିଲେ ପାର୍ଥ ସେହିକ୍ଷଣେ ।
ଦୁଇବୀରେ ଭେଟାଭେଟି ହୋଇଲେ ସମରେ,
ମତ୍ତଗଜବର ଯଥା ମତ୍ତଗଜବରେ ।
କର୍ଣ୍ଣାର୍ଜୁନ ରଣ ଅହୋ ମହାଭୟଙ୍କର,
ତିନି ଭୁବନରେ ନାହିଁ ତାର ପଟାନ୍ତର ।
କୌରବ ପାଣ୍ଡବବଳ ଚତୁପାର୍ଶ୍ୱେ ଧାଇଁ
ବେଢ଼ିଗଲେ ସେହି ରଣେ ଯୋଗ ଦେବା ପାଇଁ ।
ଦୁଇଦଳେ ଶଙ୍ଖ ଭେରୀ ଦୁନ୍ଦୁଭି ବଜାଇ,
କର୍ଣ୍ଣ ଧନଞ୍ଜୟେ ସର୍ବେ ରହିଲେ ଅନାଇ ।
କର୍ଣ୍ଣ ଧନଞ୍ଜୟ ଏବେ ଆରମ୍ଭିଲେ ରଣ,
ପରସ୍ପରେ ବାରମ୍ବାର କରି ନିରୀକ୍ଷଣ ।

କର୍ଣ୍ଣଙ୍କର ସାରଥି ଶଲ୍ୟ, କୃଷ୍ଣ ଅର୍ଜୁନର,
ପରସ୍ପରେ ଚାହିଁ ରଥ ବାହାନ୍ତି ସତ୍ୱର ।
ପରସ୍ପରେ ବାଣ ବିନ୍ଧି ବେନି ରଥିବର
ନିବାରିଲେ ପରସ୍ପର ବାଣ ନିରନ୍ତର ।
ଇତିମଧ୍ୟେ କେତେ କୁରୁବୀର ରୋଷଭରେ
ବିନ୍ଧିଲେ ସାୟକମାନ ପାର୍ଥ ଦାମୋଦରେ ।
ନାଶି ସେହି ଶରମାନ ବୀର ଧନଞ୍ଜୟ
ବାଣେ ବାଣେ ରିପୁଦଳ-ବଳ କଲେ କ୍ଷୟ ।
ମହାଧନୁର୍ଦ୍ଧର କର୍ଣ୍ଣ ଏହି ସମୟରେ
ଛୁଟାଇ ଛୁଟାଇ ବନ୍ଧେ ଶତ ଶତ ଶରେ ।
ପ୍ରତିବାଣମାନ ବିନ୍ଧି କୁନ୍ତୀଙ୍କ ନନ୍ଦନ
କଲେ ବେଗେ ସେହି ସବୁ ବାଣକୁ ଛେଦନ ।

ପୁଣି ଗାଣ୍ଡୀବକୁ ଧରି କୁଳଶ ସମାନ
ପେଷିଲେ ସେ ରୋଷଭରେ ଏକ ମହାବାଣ ।
ସେହି ବାଣେ କର୍ଣ୍ଣଙ୍କର ରଥଧ୍ୱଜଦଣ୍ଡ
ଚାହିଁ ଚାହିଁ ନିମେଷକେ ହୋଇଲା ଖଣ୍ଡ ଖଣ୍ଡ ।
ଆନ ଏକବାଣ ବିନ୍ଧି କର୍ଣ୍ଣ କଳେବରେ
ପୀଡ଼ିଲେ ବିଷମ କ୍ଳେଶେ ସୂର୍ଯ୍ୟର କୁମରେ ।
କର୍ଣ୍ଣ ତହୁଁ ମହାଘୋଷ ଧନୁ ଧରି କରେ
ବନାଟିଲେ ବହୁ ଶତ୍ରୁମାନଙ୍କୁ ସମରେ ।
ଏହିପରି କର୍ଣ୍ଣାର୍ଜୁନ ବେନି ବୀରବର
ବାଛି ବାଛି ପରସ୍ପରେ ବରଷନ୍ତି ଶର ।
ବାଣେ ବାଣେ ଉଭୟର ରଥ ଗଲା ଛାଇ.
ତଥାପି ପେଷନ୍ତି ବାଣ ଛୁଟାଇ ଛୁଟାଇ ।

ଏଥୁଅନ୍ତେ ମହାବୀରବର ସବ୍ୟସାଚି
ଶଲ୍ୟକୁ ବିନ୍ଧିଲେ ବାଣ ଦୁଇଗୋଟା ବାଛି ।
ଆବର ବିନ୍ଧିଲେ କର୍ଣ୍ଣେ ଦଶଗୋଟା ଶର,
କର୍ଣ୍ଣ କଳେବରୁ ରକ୍ତ ବହେ ଝର ଝର ।
ମହାପୀଡ଼ା ପାଇ କର୍ଣ୍ଣ ଅତି କ୍ରୋଧଭରେ
କେଶବେ ବିନ୍ଧିଲେ ପାଞ୍ଚଗୋଟା ତୀକ୍ଷ୍ଣଶରେ ।
କୃଷ୍ଣଙ୍କର ପୀଡ଼ା ଦେଖି ପାର୍ଥ ମହାବଳୀ
ଘୃଷ୍ଟଘାସେ ଅଗ୍ନି ସମ କ୍ରୋଧେ ଉଠେ ଜ୍ୱଳି ।

ଆକର୍ଣ୍ଣ ଓଟାର ପୁଣି ପେଷେ ଦୁଇଶର
ସେ ବାଣରେ ବିଚଳିତ ହେଲେ କର୍ଣ୍ଣବୀର ।
କେହି କାହାଠାରୁ ଊଣା ନୁହେ ବିକ୍ରମରେ,
ଜାଣି ହେଉ ନାହିଁ, କିଏ ଜିଣିବ ସମରେ !
ଏସମୟେ ନାଗ ବାଣ ନାମେ ଭୟଙ୍କର
ବାଣ ଏକ ବିନ୍ଧିଲେ ସେ ସୂର୍ଯ୍ୟଙ୍କ କୁମର ।
କିରୀଟ-କଶୀଟ ସେହି ଭୟଙ୍କର ଶରେ
ଚୂର୍ଣ୍ଣ ହୋଇ ପଡ଼ିଲା ସେ ଧରଣୀତଳରେ ।
ରୁଦ୍ର ପରାକ୍ରମେ ତହୁଁ ପାର୍ଥ ବୀରବର
ଶରେ ଶରେ ପ୍ରହାରିଲେ କର୍ଣ୍ଣ କଳେବର ।
ମୁକୁଟ ପଡ଼ିଲା ଖସି କର୍ଣ୍ଣ ମସ୍ତକରୁ,
ଖସିଣ ପଡ଼ିଲା ପୁଣି ଶରାସନ କରୁ ।
ମହାକ୍ରୋଧେ କର୍ଣ୍ଣ ତହୁଁ ଧନୁ ତୋଳି କରେ
ଶତ ଶତ ବାଣ ବିନ୍ଧେ ପାର୍ଥ ଧନୁର୍ଦ୍ଧରେ ।
ପାର୍ଥର ଶରୀରେ ବହେ ରୁଧିରର ଧାର,
କ୍ରୋଧେ ଧନଞ୍ଜୟ କଲେ ଧନୁରେ ଟଙ୍କାର ।
କର୍ଣ୍ଣ ବାଣାଘାତେ ଛିଣ୍ଡି ଗଲା ଧନୁ ଗୁଣ,
ପୁଣି ଚଢ଼ାଇଲେ ନୂଆ ଗୁଣ ସେ ଅର୍ଜୁନ ।
ଏ ସମୟେ କର୍ଣ୍ଣରଥ ବସି ଗଲା ତଳେ,
ଗ୍ରାସ କଲା ମହୀ ରଥ-ଚକ୍ରେ ରଣସ୍ଥଳେ ।
ଓହ୍ଲାଇ ତଳକୁ କର୍ଣ୍ଣ ତୋଳଇ ଯେତିକ,
ପଶି ଯାଏ ରଥଚକ୍ର ଭୂମିରେ ସେତିକ ।
ପାର୍ଥେ କହେ ଦୀର୍ଘଶ୍ୱାସ ତେଜି ବୀରବର,
ରଥଶୂନ୍ୟ ମୁହିଁ ଏବେ, ସମର ସମ୍ବର ।
ତୁମ୍ଭେ ରଥେ, ମୁଁ ତଳରେ, ଏହି ଅସମୟେ
ରଥ ତୋଳିବାକୁ ବେଳ ଦିଅ ଧର୍ମଭୟେ ।
କେଶବ କହନ୍ତି ତହୁଁ ଶୁଣି କର୍ଣ୍ଣ ବାଣୀ,
"ଧର୍ମଭୟ କଥା କାହୁଁ ଅଛ ଆଜ ଆଣି !
କାହୁଁ ଥିଲା ଧର୍ମଭୟ, ଯେବେ ଦୁଃଶାସନ
ଦ୍ରୌପଦୀକୁ ସଭାତଳେ କଲା ବିବସନ ?
ଜଉଗୃହ ଦହନରେ, କପଟ ପାଶାରେ,
କହ କର୍ଣ୍ଣ, ଧର୍ମଭୟ ଥିଲା କେଉଁଠାରେ ?
ପାଣ୍ଡବଙ୍କ ବନବାସେ, ସାମ୍ରାଜ୍ୟ ହରଣେ,
କାହୁଁ ଥିଲା ଧର୍ମ ଅଭିମନ୍ୟୁ ବିନାଶନେ ?"

କୃଷ୍ଣ ବାଣୀ ଶୁଣି ଏବେ ପାର୍ଥ ମହାବୀର
ପୂର୍ବ କଥା ସ୍ମର ହେଲେ କ୍ରୋଧରେ ଅଧୀର ।
ତାହା ଦେଖି କର୍ଣ୍ଣବୀର ଅର୍ଜୁନ ଉପରେ
କ୍ଷେପିଲେ ଦାରୁଣ ଶର ମହା କ୍ରୋଧଭରେ ।
ଅଶନି ସମାନ ସେହି କର୍ଣ୍ଣବୀର ତୀର
ଧନଞ୍ଜୟ ବକ୍ଷେ ବାଜି ବହାଏ ରୁଧିର ।
ସମ୍ଭାଳି ନ ପାରି ପାର୍ଥ ପଡିଲେ ସ୍ୟନ୍ଦନେ,
କର୍ଣ୍ଣ ତହୁଁ ଲାଗିଗଲେ ରଥଆକର୍ଷଣେ ।
ସଂଜ୍ଞା ଲଭି ଧନଞ୍ଜୟ ଏହି ଅବସରେ
ବଧିଲେ ପ୍ରଚଣ୍ଡେ ବୀର ଆଞ୍ଜଳିକ ଶରେ ।
ଅର୍ଜୁନନିକ୍ଷିପ୍ତ ସେହି ମହାଦିବ୍ୟ ଶର
ସାୟନ୍ତନ ଗଗନକୁ କରିଲା ଭାସ୍ୱର ।
ଇନ୍ଦ୍ର ବଜ୍ର ବୃତ୍ରାସୁର ମସ୍ତକେ ଯେସନ,
ଆଞ୍ଜଳିକ କର୍ଣ୍ଣଶିର ଛେଦିଲା ତେସନ ।
ସନ୍ଧ୍ୟାକାଳେ ଅସ୍ତାଚଳେ ଯେହ୍ନେ ଦିବାକର,
ପଡିଲା ଅବନୀତଳେ ମସ୍ତକ କର୍ଣ୍ଣର ।
ପାଞ୍ଚଜନ୍ୟ ଦେବଦତ୍ତ ଶଙ୍ଖଦ୍ୱୟ ଘେନି
ହର୍ଷେ ଜୟଧ୍ୱନି କଲେ କୃଷ୍ଣାର୍ଜୁନ ବେନି ।
ପାଣ୍ଡବବାହିନୀ ତହୁଁ ମାତିଣ ଉଲ୍ଲାସେ
ସିଂହନାଦ କଲେ ସର୍ବେ ଧନଞ୍ଜୟ ପାଶେ ।

କର୍ଣ୍ଣର ମରଣ ଦେଖି ରାଜା ଦୁର୍ଯ୍ୟୋଧନ
ନିରାଶ ଅନ୍ତରେ କଲେ ବହୁତ ରୋଦନ ।
କୁରୁଆଠ ବୁଡିଗଲା ଦୁଃଖପାରାବାରେ
କାତରେ କାନ୍ଦିଲେ ସର୍ବେ ଶୋକେ ହାହାକାରେ !



(୭)

## ସ୍ତୋତ୍ର



ଏ ଅନନ୍ତ ବିଶ୍ୱ ତୁମ୍ଭ ମହିମା କୀର୍ତ୍ତନ
ଅଶେଷ ପ୍ରକାରେ ବିଭୋ, କରେ ଅନୁକ୍ଷଣ ।

ତୁମ୍ଭ ଜ୍ୟୋତି ଲଭି ଚନ୍ଦ୍ର ତାରକା ଭାସ୍କର
ମଣ୍ଡନ୍ତି ଶୁଭ୍ର ଆଲୋକେ ନିଜ କଳେବର ।
ଦିବସ ରଜନୀ ପୁଣି ଋତୁପରମ୍ପରା,
ନିତ୍ୟ ଆବର୍ତ୍ତନଶୀଳ ରମଣୀୟ ଧରା,

ସୁନୀଳ ଗଗନ, ସିନ୍ଧୁ ରତନନିଲୟ
ଦରଶନେ ଦେଉଛନ୍ତି ତୁମ୍ଭ ପରିଚୟ ।

ତୁମ୍ଭର ବିଶାଳ ପ୍ରୀତି ରମ୍ୟ ବସନ୍ତରେ
ଅବତରି ଧରାତଳେ ଆନନ୍ଦ ବିତରେ ।

ତାରାମୟ ଗଗନକୁ, ବିଦ୍ରୁମକୁ ବଳି
ମନୋଜ୍ଞ କୁସୁମଦଳେ ଶୋଭେ ବନସ୍ଥଳୀ ।

ତରୁଡ଼ାଳେ ବସି ପିକ ତୁମ୍ଭ ପ୍ରେମଗୀତ
ମନୋହର ତାନେ ଗାଇ ରମେ ଲୋକଚିତ୍ତ ।

ତୁମ୍ଭ ପରିମଳ ଘେନି ମଳୟପବନ
ବିଭୁଙ୍କ ପ୍ରସାଦ ବୋଲି କରେ ବିତରଣ ।

ନିଦାଘରେ ତାପେ ଆଉ ତେଜେ ବିଭୂଷିତ
ତୁମ୍ଭର ମହିମା, ପ୍ରଭୋ, ହୁଅଇ ବିଦିତ ।

ତୁମ୍ଭ ରବି ଏବେ ବୁଣେ ଖର ରଶ୍ମିରାଶି,
ତହିଁ ପରିଣାମେ ସୁଖ ଭୁଞ୍ଜେ ଧରାବାସୀ ।

ବରଷାରେ ଘନମାଳା ଭୀମ ବେଶ ଧରି
ଗଗନେ ଘୋଟନ୍ତି ତୁମ୍ଭ ଆଜ୍ଞା ଅନୁସରି ।

ଭୀଷଣ କୁଳିଶ ନାଦ, ଚପଳା ସ୍ଫୁରଣ,
ତୁମ୍ଭର ମହିମା, ପ୍ରଭୋ, କରନ୍ତି ଘୋଷଣ ।

ପ୍ରଚଣ୍ଡ ଆରବେ ଏବେ ବନ୍ଧେ କଲ୍ଲୋଳିନୀ
ସିନ୍ଧୁ ସଙ୍ଗେ କରିବାକୁ ତୁମ୍ଭ ଜୟଧ୍ୱନି ।

ଶରଦେ ବିମଳ ନଭେ ଚନ୍ଦ୍ରମା ବିମଳ,
ପ୍ରଫୁଲ୍ଲ କୁସୁମରାଜି, ସ୍ୱଚ୍ଛ ନଦୀଜଳ,
କେଦାରରେ ପକ୍ୱଶାଳୀ ଜୀବହିତକର
ପ୍ରକାଶନ୍ତି ତୁମ୍ଭ ପ୍ରେମ ଅସୀମ ସୁନ୍ଦର ।
ହେମନ୍ତ ଶିଶିରକାଳେ ତୁମ୍ଭର ଆଦେଶେ
ପ୍ରକୃତି ସାଜଇ ଅତି ଦୀନହୀନ ବେଶେ ।
ଜଣାଏ ମାନବବର୍ଗେ ସମସ୍ତ ନଶ୍ୱର,
ଚିରସ୍ଥାୟୀ ନୁହେ କିଛି ଜଗତ ମଧ୍ୟର ।
ସକଳ ଋତୁଏ ତୁମ୍ଭ ଆଜ୍ଞା ଅନୁସରି
ଚଳନ୍ତି ନିୟତିଚକ୍ରେ, ବିଭୋ, ଏହିପରି ।



(୮)

## ଭାରତୀ-ବନ୍ଦନା



(ଶ୍ରୀପଞ୍ଚମୀ ଉପଲକ୍ଷରେ ରଚିତ ।)

ଅନନ୍ତ-ମାନସ-କମଳବାସିନୀ
ଦିବ୍ୟଜ୍ଞାନମୟୀ ଅମୃତଭାଷିଣୀ
ବିଧାତାର ବାଣୀ ବିଶ୍ୱବିମୋହିନୀ
କ୍ଷଣେ କୋଟି ବିଶ୍ୱ ସୃଜନକାରିଣୀ
ଚିଦାନନ୍ଦମୟୀ ଅରୂପଧାରିଣୀ
ନିତ୍ୟ ନବ ନବ ସୃଷ୍ଟିପ୍ରକାଶିନୀ
ଆସ ମା ଭାରତୀ ଭାରତଧାମେ ।

ଅନ୍ଧକାରମୟ ତୋ ବିନା ଭାରତ,
ଭୀଷଣ ଶ୍ମଶାନରୂପେ ପରିଣତ,
ମୃତ ଅଚେତନ ଭାରତ ସନ୍ତତି
ହରାଇଣି ଆଶା ଉତ୍ସାହ ଶକତି,
ନୀରବ ନିଶ୍ଚଳ ଭାରତ ସଂସାର,
ନାହିଁ ଗୋ ଜୀବନ ବୀଣାର ଝଙ୍କାର,
ଭାରତ ଭାରତ କେବଳ ନାମେ !

୨

ଥିଲା ଦିନ ଯେବେ ତୋହର ପ୍ରସାଦେ
କୋଟି କୋଟି କଣ୍ଠ ଅମୃତ ନିନାଦେ
ତେଜେ ପରିପୂର୍ଣ୍ଣ ସ୍ୱାଧୀନତା-ଗୀତ
ବହି କରୁଥିଲା ଜଗତ ମୋହିତ,
କାହିଁ ବେଦମାତଃ ସେ ପୁଣ୍ୟ ଦିନ !

ଜଡ଼ତା ନୈରାଶ୍ୟ ଅନ୍ଧାରେ ଜଡ଼ିତ
ଚିର-ପରାଧୀନ ପତିତ ନିଦ୍ରିତ
ଭାରତ ସନ୍ତାନ ସର୍ବେ ନରନାରୀ
ନିଜର ମହିମା ଗୌରବ ପାସୋରି
ହୋଇଛନ୍ତି ମାତଃ କେମନ୍ତ ହୀନ !

୩

କେତେକାଳ ଆଉ ରହିଥିବ ପଡ଼ି
ଭାରତ ଦାରୁଣ ଅବସାଦେ ସଢ଼ି,
ଆସ ମା ଭାରତୀ କରୁଣା କର ।
ଗମ୍ଭୀରେ ବଜାଅ ମୃତ୍ୟୁଭୟଞ୍ଜଣା
ପ୍ରାଣସଞ୍ଚାରଣୀ ସେ ଅମୃତ ବୀଣା,
ଜାଗୁ ଏ ଭାରତ ଜୀବନ ଧରି ।

୪

ଆସ ମା ଆସ ମା ଆସ ମା ଜନନୀ,
ଆଜ ପୁଣ୍ୟ ମାଘେ ପୁଣ୍ୟ ଶ୍ରୀପଞ୍ଚମୀ,
ସୂର୍ଯ୍ୟରୁ ନବୀନ ମଧୁ ଆଗମନେ
ହସଇ ଧରଣୀ ଆନନ୍ଦିତ ମନେ,
ଆସ ମା ଭାରତେ ଭାରତୀ ରାଣୀ ।
ତିମିର-ସାଗରୁ ନବ ଦିନମଣି
ହିରଣ୍ମୟ କରେ ଉଦ୍ଧାର ଧରଣୀ
ଭାରତ-ଆକାଶ କରୁ ସମୁଜ୍ଜ୍ୱଳ,
ଉତ୍ଫୁଲ୍ଲ ଭାରତେ ଆନନ୍ଦଚଞ୍ଚଳ
ହସୁ ଏ ଭାରତ ଶୁଣି ତୋ ବାଣୀ ।

୫

ଦିଅ ମା ଫିଟାଇ ସ୍ୱରଗର ଦ୍ୱାର,
ଉଜ୍ଜ୍ୱଳ କର ମା ଭାରତ ସଂସାର,
ସ୍ୱରଗର ପ୍ରେମ ପୁଣ୍ୟ ଜ୍ୟୋତିରାଶି
ଭାରତ ଲଲାଟେ ଯୌତ କରୁ ଆସି,
ପୁଣ୍ୟ-ଜଳେ ଧୂଅ ଭାରତର ତନୁ,
ପାପ ତାପ ଯାଉ ଭାରତ ଭବନୁ,
କର ମା କରୁଣା ଭାରତ ପ୍ରତି ।

ଜୟ ଜୟ ଜୟ ବ୍ରହ୍ମାଣ୍ଡଜନନୀ
ଅନନ୍ତ-ମାନସ-କମଳବାସିନୀ
ଚିଦାନନ୍ଦମୟୀ ଅରୂପଧାରିଣୀ
ନିତ୍ୟ ନବ ନବ ସୃଷ୍ଟିପ୍ରକାଶିନୀ
ଦିବ୍ୟଜ୍ଞାନମୟୀ ଅମୃତଭାଷିଣୀ
ଅଚେତନ-ଜନ-ଜାଗ୍ରତକାରିଣୀ,
ଆସ ମା ଭାରତେ ଭାରତୀ ସତୀ ।

(୯)

## ଶ୍ମଶାନ



ଅସ୍ତ ହେଲେ ରବି ଗ୍ରହରାଜ ଦିନମଣି,
ତାରାମୟୀ ହାର ପିନ୍ଧି ଆସିଲା ରଜନୀ ।
ଚନ୍ଦ୍ରମାର ସୁଧା-କରେ ପ୍ରଫୁଲ୍ଲ ଭୁବନ,
ମନ୍ଦ ମନ୍ଦ ବହେ ଗନ୍ଧବହ ସମୀରଣ ।
ନୀଳାମ୍ବର-ଆଲିଙ୍ଗନେ ଅଧୀରହୃଦୟ
ପ୍ରସାରଇ ସିନ୍ଧୁ ବକ୍ଷ ନୀଳମଣିମୟ ।
ଭ୍ରମିଲି ଏସନ କାଳେ ଅମ୍ବୁପତି ତଟେ,
କଳ୍ପନା ଚିତ୍ରିଲା କେତେ ଛବି ଚିତ୍ତ-ପଟେ ।
ଭ୍ରମୁଁ ଭ୍ରମୁଁ ଏକସ୍ଥାନେ ହେଲି ଉପନୀତ,
ଭୀଷଣ ଶ୍ମଶାନ ଯହିଁ ଅଟେ ବିରାଜିତ ।
ଅସ୍ଥିମାଳା ନରମୁଣ୍ଡେ ଧବଳିତ ଦେଶ,
ଭସ୍ମରାଶି ଚିତାନଳେ ବିକଟ ବିଶେଷ ।
ଭୀମନାଦେ ଚଉପାଶେ ବେଢ଼ି ଶିବାଗଣ
କ୍ରୂର ହର୍ଷେ ଶବରାଶି କରନ୍ତି ଭକ୍ଷଣ ।
ପଡ଼ନ୍ତେ ନୟନ ମୋର ଏ ଭୀଷଣ ସ୍ଥଳ,
ଚମକିତ ଚିତ୍ତ କ୍ଷଣେ ହୋଇଲା ନିଶ୍ଚଳ ।
ନ ଦିଶିଲା ଧରା କିମ୍ବା ସାଗର ଗଗନ,
ନିବାତ ନିଷ୍କମ୍ପ ହ୍ରଦେ ତରଙ୍ଗ ଯେସନ,
ନ ସ୍ଫୁରିଲା ଭାବ-ଊର୍ମି ଚିତ୍ତରେ ତେସନ ।
କ୍ରମେ ଏ ଭାବନା ହୃଦୁଁ ହେଲା ତିରୋହିତ,
ସ୍ମୃତି-ନଭେ ବହୁ ଛବି ହୋଇଲା ଉଦିତ ।
ଗମ୍ଭୀର ଭାବସଙ୍କୁଳ ହୋଇଲା ମାନସ !
ବର୍ଷାଗମେ ହଂସେ ଯଥା ବେଢ଼ନ୍ତି ମାନସ ।
ସ୍ୱର୍ଗୀୟ ଆନନଶ୍ରୀ ମୃତ ମାତାଙ୍କର,
ନବୀନ କୁସୁମ ପ୍ରଭା ମୃତ ଭଗିନୀର,
ମୃତ ଜ୍ଞାନଦାତା ପୁଣି ମୃତ ପରିଜନ
ନୟନ ଆଗରେ ଯେହ୍ନେ ନାଚିଲେ ତକ୍ଷଣ !
ଆବର ଚିନ୍ତିଲି ଇହ ପରକାଳ କଥା,
ସ୍ୱରଗ ଆନନ୍ଦ ଶାନ୍ତି ନରକର ବ୍ୟଥା ।

ଏମନ୍ତ ବହୁତ ଭାବ ହୃଦୟ-ଅମ୍ବରେ
ବିଜୁଳି ସମାନ ଉଇଁ ଲିଭଲେ ସତ୍ୱରେ ।
ସଂସାରର ଅନିତ୍ୟତା-ତତ୍ତ୍ୱ-ଚିନ୍ତା-ଘନ
ଅବଶେଷେ ମାନସକୁ କରନ୍ତି ଆଚ୍ଛନ୍ନ ।
ଚିରସ୍ଥାୟୀ ନୁହେ କିଛି ସକଳ ଅସ୍ଥିର,
ଜୀବନ ଯୌବନ ଧନ ପଦ୍ମପତ୍ରନୀର ।
ରାଜା ପ୍ରଜା ମୂର୍ଖ ଜ୍ଞାନୀ ଦୁଃଖୀ ଧନବାନ,
ନିଷ୍ଠୁର ଶମନଠାରେ ସମସ୍ତେ ସମାନ ।
ବୃଥା ନର ଅହଙ୍କାର ପଦର ଗୌରବ,
ନିମେଷେ ବିଲୋପୀ କାଳ କରେ ସବୁ ଖର୍ବ ।
ଉଚ୍ଚଅଭିଳାଷୀ ଯେଉଁ ମଦମତ୍ତ ନର
ପ୍ରତିବାସି-ସ୍ୱତ୍ୱନାଶେ ସର୍ବଦା ତତ୍ପର,
ଯାହାର ମତ୍ସର ଭାବ ଚିରକାଳ ପାଇଁ
ଏହି ସ୍ଥାନେ ସେହି ବ୍ୟକ୍ତି ବିଲୟ ଭଜଇ ।
ସମର ମଦରେ ମାତି ଯେଉଁ ବୀରବର
ଭୀଷଣ ବଳରେ ନାଶି ଅରାତିନିକର
ଲଭେ ଅରିନ୍ଦମ ନାମ ଏ ଭବଭବନେ,
ଯାହାର ବିଜୟଚିନ୍ତା ଯଶୋରୂପଧନେ
ପରିଣତ ଆହା ସେହି ଭସ୍ମ-ଆସ୍ତରଣେ !
ପ୍ରିୟପତି ଅଙ୍କସ୍ଥିତ ନବୀନା କାମିନୀ
କାଳବଶେ ଏହିଠାରେ ଭସ୍ମବିଳାସିନୀ ।
ଘୋଟିଲେ ପୟୋଦ, ପ୍ରଭାକର ପ୍ରଭାତରେ
ଅନ୍ଧକାର କରି ବିଶ୍ୱ ଲୁଚନ୍ତି ଅମ୍ବରେ ।
ସେହିପରି ତମୋମୟ କରି ନିଜ ଘର
ପଡ଼ନ୍ତି ବାଳକ କେତେ ଶମନ ମୁଖର ।
ନବବିକଶିତ ପୁଷ୍ପ ସମାନ ସୁନ୍ଦର,
କେତେ ନବ ଶିଶୁ ମାତା ପିତା ମନୋହର,
ଅକାଳେ ଜନନୀ କୋଳୁଁ ହୋଇ ବିଶ୍ଳେଷିତ
ହୁଅନ୍ତି ଭୀମ ଶ୍ମଶାନ ଗର୍ଭରେ ନିହିତ ।
ଯମର ତାଡ଼ନେ ଏହିପରି ଜୀବରାଶି
ହୁଅନ୍ତି ସକଳ ତେଜି ଶ୍ମଶାନନିବାସୀ ।



(୧୦)

## ଶରତ୍ ପ୍ରଭାତ



ଛାଡ଼ି ବନ୍ଧୁ, ନଗର ଚଞ୍ଚଳ,
ଯିବା ଚାଲ ଯେଉଁ ସ୍ଥାନେ        ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।

ବନ୍ଧୁ, ଏହି ଶରତ ସମୟ,
ଗ୍ରାମରେ ବୁଲିବା ଆଜ,        ଦେଖିବା କେମନ୍ତେ ସାଜ
ପ୍ରକୃତି ସୁନ୍ଦରୀ ହରେ ଭାବୁକ ହୃଦୟ,
କରିବା ବିବିଧ ଗଳ୍ପେ ଚିତ୍ତ ବିନିମୟ ।

ପଲ୍ଲୀଶୋଭା ବଳଇ ବଚନ,
ଦିନମଣି ପ୍ରତ୍ୟାଗମେ        ଶତ ଶତ ବିହଙ୍ଗମେ
କରନ୍ତି ସଙ୍ଗୀତ ଯେହ୍ନେ ବୈତାଳିକଗଣ
ଦେଖି ଅରାତିବିଜୟୀ ଭୂପ ଆଗମନ ।

ଏବେ ମନ୍ଦ ସମୀର ସଞ୍ଚରେ,
ଚୁମ୍ବି ଫୁଲ ନଦୀ ପର୍ଣ୍ଣେ        ସଦା ପ୍ରେମକାଣ୍ଡ ବର୍ଣ୍ଣେ,
ଲଜ୍ଜେ ଉଦ୍ଧେ ଆହା ତହୁଁ ଫୁଲ ଥରଥରେ,
ନଦୀ କଲକଲେ, ପୁଣି ପର୍ଣ୍ଣ ମରମରେ ।

ବନେ ଭ୍ରମେ ବିଭ୍ରମୀ ଭ୍ରମର,
ଯେ ପୁଷ୍ପର ଗନ୍ଧଧନ        ହରିଥାଏ ସମୀରଣ,
ଘୃଣାଭରେ ଠେଲେ ତାକୁ ଯେସନ ନାଗର
ଦେଖି ତାର ବନିତାର କୁଳଟାବେଭାର ।

ନିରେଖିବା କୁସୁମନିକର,
ଭାରତେ କବିସମ୍ବଳ,        ରମ୍ୟ କୁମୁଦ କମଳ
ଅସିତା ଅପରାଜିତା ମାଳତୀ ସୁନ୍ଦର
ସୁକୁମାର ଶେଫାଳିକା ଧବଳ ଟଗର ।

କି ସୁନ୍ଦର କେଦାରୀଶ୍ୟାମଳ !
ଯହିଁ ଶସ୍ୟାବଳୀ ରଙ୍ଗେ ଖେଳୁଣ ଥାନ୍ତି ତରଙ୍ଗେ,
ତା ଦେଖି ଆନନ୍ଦେ ଗାଏ କୃଷକ ସରଳ ।
କିଏ ସୁଖୀ ନୋହେ ଆଶା ହୋଇଲେ ସଫଳ ?

ହାସ୍ୟମୟୀ ଉଷା ଆଗମନେ
ଚେଳିଣ ବେଗେ ପହୁଡ଼ ଗୋଧନ ଘେନି ଗଉଡ଼
ବଜାଇ ବଜାଇ ବଂଶୀ ସୁଲଳିତ ସ୍ୱନେ
ଗୋଷ୍ଠକୁ ଗମଇ ଧୀରେ ଆହ୍ଲାଦିତ ମନେ ।

କାଖେ ଘେନି ସଲିଲ କଳସ
ପଲ୍ଲୀସୀମନ୍ତିନୀଗଣ ରଙ୍ଗେ କରନ୍ତି ଗମନ,
ଅନାଇ ଜଳ-ଦର୍ପଣେ ମୁଖ-ତାମରସ
ମୁଗ୍ଧ ହୋଇ ନିଜ ରୂପେ ଲଭନ୍ତି ହରଷ ।

ନଦୀ କୂଳେ ସରୋବର ତୀରେ ।
ହରଲା କୁମାରୀଚୟ ତୋଳି ନୀଳ କୁବଳୟ
ପୂଜନ୍ତି ଦେବ ଶଙ୍କରେ ବାଲୁକାମନ୍ଦିରେ,
ଜଳାର୍ଦ୍ର କୁନ୍ତଳ ଧୀରେ କମ୍ପଇ ସମୀରେ ।



(୧୧)

## ସୀତାବନବାସ



ଅଗ୍ରଜ-ଆଜ୍ଞାବଦ୍ଧ ସୌମିତ୍ରି ରଥୀ
ରାମ-ହୃଦୟ-ଜ୍ୟୋତ୍ସ୍ନା ବୈଦେହୀ ସଙ୍ଗ
ବିସର୍ଜି ଭାଗୀରଥୀ ତୀର କାନନେ
ଲେଉଟାଇଲେ ରଥ ଅଥୟ ମନେ ।

ଘନ ଘନ ଲୋତକଧାର ନୟନ
ଝରି ତିନ୍ତିଲା ବକ୍ଷ ତିନ୍ତିଲା ଧନୁ ।
ଘୋର ଘର୍ଘର ଘୋଷେ ପୂରି କାନନ
ଚଳିଲା ହାହା ରବେ ଯେହ୍ନେ ସ୍ୟନ୍ଦନ ।

କମ୍ପି ଉଠିଲେ ବଣମୃଗ ଜନନୀ,
ରୁଷିଲେ ଗଙ୍ଗା ରଘୁକୁଳପାବନୀ,
ଜୀମୂତ ଆବରଣେ ଦେବ ଭାସ୍କର
ଲୁଚିଲେ ତମୋମୟ କରି ଅମ୍ବର ।

ହେଲା ସେ ରଥ ଯହୁଁ ଦୃଷ୍ଟି ଅତୀତ,
ପତିପ୍ରାଣା ଜାନକୀ ହେଲେ ମୂର୍ଚ୍ଛିତ,
ବାତାହତ କନକପ୍ରତିମା ପରି
ପଡ଼ିଲେ ମହୀତଳେ ରଘୁସୁନ୍ଦରୀ ।

ମିହିରକୁଳଲକ୍ଷ୍ମୀ ମୈଥିଳୀ ଦଶା
ଦେଖିଣ ଭାଗୀରଥୀ ଦୁଃଖେ ବିବଶା,
ଭ୍ୱରତ ବଧୂ ମୋହ ବିନାଶ ଆଶେ
ଶୀକରଶୀତବାୟୁ ପେଷିଲେ ପାଶେ ।

ଚେତନା ଲଭି ଦେଖି ବହୁତ କ୍ଷଣେ
ଏକାକିନୀ ସେ ଘୋର ବିଜନ ବନେ
ମରମଭେଦୀ ଶୋକେ ହୋଇ ବିକଳ
କାନ୍ଦିଲେ ସାଧ୍ୱୀ ବର୍ଷି ଲୋତକଜଳ ।

"ଚରଣପଦ୍ମତଳୁ, ଦୟାସାଗର !
"ପଠେ କି ଏ ଦାସୀକି କଲ ଅନ୍ତର ?
"କେମନ୍ତେ କହ, ପ୍ରଭୁ ! ବଞ୍ଚିବ ଦିନ
"ହରାଇ ସେ ଯୁଗଳ ପଦନଳିନ ।

"କାହା ଶରଣ କହ, ହେ ରଘୁରାଜ !
"ଜାନକୀ ଅଭାଗିନୀ ପଶିବ ଆଜ ।
"ଭୟେ ଅସ୍ଥିର ଯେବେ ହେବ ହୃଦୟ,
"କିଏ ଅଭୟ ଦେବ ହେ ଦୟାମୟ ?

"ଦାବାଗ୍ନି ରୂପେ ଯେବେ ଦୁଃଖ-ଅନଳ
"ଦହିବ ହୃଦବନ ହୋଇ ପ୍ରବଳ,
"କିଏ ହେ ନାଥ, ସ୍ନେହସଲିଳ ଦାନେ
"ଶୀତଳ କରିବ ଏ ଦଗ୍ଧ ପରାଣେ ।

"ଆଉ କି ପ୍ରଭୁ ! ଏହି ଦଗ୍ଧ ନୟନ
"ଦେଖିବ ନାହିଁ ସେହି ସୌମ୍ୟ ବଦନ ?
"ଆଉ କି ଏ ଜନମେ ଏ ଅଭାଗିନୀ
"ଏ ଦଗ୍ଧ ବକ୍ଷେ ରଖି ସେ ପାଦ ବେନି
"ଶମିବ ନାହିଁ କହ, ହେ ରଘୁପତି !
"ହୃଦୟ ଜ୍ୱାଳା ତାର, ଦାରୁଣ ଅତି ?

"ଆଉ କି, ଜୀବିତେଶ ! ସେ ପାଦତଳେ
"ଅଭାଗିନୀ ଜାନକୀ ବସି ବିରଲେ
"ଶୁଣିବ ନାହିଁ ସେହି ମଧୁର ଭାଷା ?
"ଦାସୀ ପକ୍ଷେ କି ପ୍ରଭୁ ଶେଷ ଏ ଆଶା ?
"ଏ ପୋଡ଼ା ପ୍ରାଣେ ଆଉ କି ପ୍ରୟୋଜନ ?
"ତୁମ୍ଭ ବିନା ଏ ବିଶ୍ୱ ଜୀର୍ଣ୍ଣ କାନନ ।

"ଅଭାଗିନୀକୁ ଯେ ଛଳରେ ଦେବର
"ଆଣିଲେ ବହି ଏହି ବନ ଭିତର,
"ଭାସଇ ଏକା ଅନ୍ଧା ଜାହ୍ନବୀ ଜଳେ,
"କର୍ଣ୍ଣଧାର ବିହୁନେ କମ୍ପେ ବିକଳେ ।

"ପ୍ରବଳ ପ୍ରଭଞ୍ଜନ ଯୋଗେ କରାଳ,
"କ୍ଷଣେ ଗ୍ରାସିବେ ତରୀ ତରଙ୍ଗମାଳ ।

"ନଭୁବା ଫିଙ୍ଗି ତାକୁ ତଟ ଉପର
"ନାଶିବେ ଚୂର୍ଣ୍ଣି କରି ତା କଳେବର ।
"ଆଜ୍ଞା ଏ ଭବଜଳେ ଏ ଦଶା ସିନା
"ଅଭାଗିନୀର ପ୍ରଭୁ, ସେ ପଦ ବିନା ।

"ସେ ପଦ ବିନା ଆହେ ରାଘବପତି,
"କାହିଁ ଏ ପାପୀୟସୀ ଦାସୀର ଗତି ?
"ଅତି କଠୋର, ପ୍ରଭୁ, ଦାସୀର ଜୀବ,
"ବଞ୍ଚିଛି ଯାହା ଛାଡ଼ି ପଦରାଜୀବ !
"ଏତିକ ଭିକ୍ଷା, ନାଥ, ଯେବେ ପ୍ରାଣାନ୍ତେ
"ଦାସୀ ପାଇବ ସ୍ଥାନ ସେ ପଦ ପ୍ରାନ୍ତେ ।"

ଏମନ୍ତ ଭାଷି ଶୋକେ ବିହ୍ୱଳ ଅତି,
କୁରରୀ ପ୍ରାୟେ ଉଚ୍ଚେ କାନ୍ଦିଲେ ସତୀ ।
ଦେବୀଙ୍କ ଦୁଃଖେ ବନସ୍ଥଳୀ କାତର
କାନ୍ଦିଲା ବାହ୍ୟ ପ୍ରତିଧ୍ୱନି ଛଳର !
ତେଜିଲେ ନୃତ୍ୟ ବର୍ହିକୁଳ ବିକଳ,
ହରିଣୀଏ ଛାଡ଼ିଲେ ତୃଣ-କବଳ,
ମହୀରୁହନିବହ ପୁଷ୍ପ ଭୂଷଣ
ଫିଙ୍ଗିଲେ ଅଙ୍ଗୁ ମହୀତଳେ ତକ୍ଷଣ ।

କୁଶ ସମିଧ ଧୃତ ହୋମସାଧନ
ଆହରିବା ଆଶୟେ ଭ୍ରମୁ କାନନ
ପୁରାଣ କବି ବୃଦ୍ଧ ମୁନି ଈଶ୍ୱର—
(ଗହନ ବନେ କ୍ରୂର ନିଷାଦ ଶର-
ବିଦ୍ଧ କ୍ରୌଞ୍ଚ ବିହଙ୍ଗ ଅବଲୋକନେ
ଶୋକ-ଉଚ୍ଛ୍ୱାସ ଯାର ବାହୁଣ ଘନେ
ଶ୍ଳୋକରୂପେ ମୋହିଲା ସର୍ବ ଅବନୀ)
ଚକିତେ ଶୁଣିଲେ ସେ କ୍ରନ୍ଦନଧ୍ୱନି !

ମିଳିଲେ ଯାଇ ଯହିଁ ଏକା ସୁନ୍ଦରୀ
ଗଗନେ ରାହୁ ଗ୍ରାସେ ଶଶାଙ୍କ ପରି ।
ପୋଛୁଣ ଅଶ୍ରୁଧାରା ଭକତିଭରେ
ନମିଲେ ରଘୁବଧୂ ମୁନି ପଦୁରେ ।

ଗର୍ଭଲକ୍ଷଣ ଦେଖି ମୁନିପୁଙ୍ଗବ
"ବିଶାଳଯଶା ବୀର ତନୟ ଲଭ"
ଏମନ୍ତ ସୁଆଶିଷ ମୁନି ପ୍ରଦାନି
ଭାଷିଲେ ଶାନ୍ତଚେତା ସାନ୍ତ୍ୱନା ବାଣୀ ।

"ଜାଣିଲି ଧ୍ୟାନେ, ସତି, ରାବଣ-ଅରି
"ତେଜିଲେ ତୋତେ ମିଥ୍ୟା ପ୍ରବାଦେ ଡରି
"ସଖା ମୋହର, ବତ୍ସେ, ତୋର ଶ୍ୱଶୁର,
"ବ୍ୟାପିଛି ଯାର ଯଶ ଏ ତ୍ରିପୁର ।
"ଜ୍ଞାନିଜନମାନଙ୍କ ହିତକାରକ
"ମୋହମୟ-ସଂସାର-ଦୁଃଖନାଶକ
"ମିଥିଲାନାଥ ମୁକ୍ତିତତ୍ତ୍ୱଦରଶୀ
"ପିତା ତୋହର ରାଜଶ୍ରେଷ୍ଠ ରାଜର୍ଷି ।
"ତୁ ପୁଣି ସତୀକୁଳ ଅଗ୍ରତେ ସ୍ଥିତ,
"ତେଣୁ ତୋ ଦୁଃଖେ ମୁହିଁ ଅତି ଦୁଃଖିତ ।

"ଯେବେ ଆଶ୍ରୟ, ବତ୍ସେ, ନିର୍ଭୟ ମନେ
"ହୃଦବିକାର ନାଶି ଏ ତପୋବନେ ।
"ଋଷି ସଙ୍ଗ ପ୍ରଭାବେ ଶ୍ୱାପଦେ ଯହିଁ
"ନିର୍ବାଦ ଶାନ୍ତଭାବେ ଅଛନ୍ତି ରହି ।

"ଏଥି ଗୋ ରଘୁବଧୂ, ତୋର କୁମାର
"ଲଭିବେ ବିଧିମତେ ଜାତସଂସ୍କାର ।
"ମୁନି ଆଶ୍ରମେ ପୂର୍ଣ୍ଣ ତମସା ତୀର,
"ସଂସାର-ତମୋନାଶୀ ଏ ନଦୀ ନୀର,
"ଅବଗାହନ ତହିଁ ନିତ୍ୟ ସୈକତେ,
"ସମ୍ପାଦ ବଳିକ୍ରିୟା ବିଧାନମତେ,
"ଚିନ୍ତା ଉଦ୍ବେଗ ମନୁ କର ଗୋ ଦୂର,
"ଭୁଞ୍ଜ ନିର୍ମଳ ଶାନ୍ତି ସୁଖ ପ୍ରଚୁର ।

"ନୀବାର ବୀଜ, ଜାତ ବିନା କର୍ଷଣେ
"ଯହିଁ ଆହର ଫଳ ପୂଜା ସୁମନେ,
"ତୋ ନିବ ଶୋକ ମୁନିକୁମାରୀଗଣ
"ହରିବେ ଭାଷି ମୃଦୁ ମଧୁ ବଚନ ।

"ଆଶ୍ରମର ତରୁଣ ତରୁନିକରେ
"ଯତନେ ବଢ଼ାଇଣ ଘଟଜଳରେ
"ନିରେଖିବା ଆଗରୁ ତନୟ ମୁଖ
"ଲଭିବୁ ତନୟର ପାଳନ ସୁଖ ।"

ଋଷି ଏସନ ବୃଦ୍ଧ ଯତିପ୍ରବର
ନେଲେ ସୀତାଙ୍କୁ ତପୋବନ ଭିତର,
ସାୟାହ୍ନେ ବେଦ ଚତ୍ଦଗେ ଶୟାନ
ହୋମଗ୍ନେ ରତ ଯହିଁ କୁରଙ୍ଗମାନ ।
ବେଗେ ଆସିଣ ମୁଗ୍ଧ ମୁନିକୁମାରୀ
ଅଞ୍ଚଳେ ପୋଛି ସୀତା ନୟନବାରି
ସାନ୍ତ୍ୱନା ବାକ୍ୟେ ରଘୁକାନ୍ତା ହୃଦୟ
ପ୍ରବୋଧି ଦେଇଗଲେ ନିଜ ନିଳୟ ।



( ୧୨ )

## ନିଶୀଥ-ଚିନ୍ତା



କାହିଁ ଏବେ ସେ ଚହଳ, ଯାର ଘୋର ରୋଳ
କରଥିଲା ଏତେକାଳ ଶ୍ରବଣ ବଧିର !
କାହିଁ ସେହି ଚଞ୍ଚଳତା-ଲହରୀ-ହିଲ୍ଲୋଳ,
ଯାହା ଯେନ ଜୀବକୁଳ ସତତ ଅଧୀର !
ନାହିଁ ସେହି ଚଞ୍ଚଳତା, ନାହିଁ ସେ ଚହଳ ।
କଣ୍ଠେ ତାରାମୟ ହାର ରଜନୀ ସୁନ୍ଦରୀ
( ଅଛେ ଯହିଁ ମଧ୍ୟମଣି ଇନ୍ଦୁ ସୁନିର୍ମଳ )
କୌମୁଦୀ ବସନେ ସ୍ୱର୍ଗଧାମୁଁ ଅବତରି .
ବରଷନ୍ତି ଶିଶିରାଶ୍ରୁ ପ୍ରେମେ ବିଭୁ ମହିମା ସୁମରି ।

ସୁନୀଚ କୁଟୀର କିମ୍ବା ତୁଙ୍ଗ ରାଜାଳୟ,
ସାଗରର ବକ୍ଷ ଅବା ପର୍ବତଶିଖର,
ବିଳାସ ଭବନ, କାରାଗାର ତମୋମୟ,
ବିଜନ କାନନ କିମ୍ବା ସଜନ ନଗର,
ନୀରବ ଭାବରେ ସବୁ ଏକାଳରେ ସ୍ଥିତ;
ବିଭୁଙ୍କ ଗମ୍ଭୀରାଦେଶ ଶ୍ରବଣ କାରଣ
ପ୍ରେମାବେଶେ ଆହା ଯେହ୍ନେ ସର୍ବେ ଅବହିତ !
ସହସା ହେଲା କି ସ୍ୱର୍ଗ ଏ ଭବ ଭବନ
ଭାବୁକ କଳ୍ପନା ଏବେ ମୁଗ୍ଧ ହୋଇ ପାଞ୍ଚଇ ଏସନ ।

ହିତକାରୀ ନିଦ୍ରାଦେବୀ ବିରାମଦାୟିନୀ
ବାହ୍ୟଜ୍ଞାନ ମନୁଷ୍ୟର ହରି ମୃଦୁ ବଳେ
ସଙ୍ଗେ ଯେନ ସ୍ୱପ୍ନଦେବୀ ଭ୍ରାନ୍ତି-ବିଳାସିନୀ
ଜଗତରେ ଆଧିପତ୍ୟ କରନ୍ତି ବିରଳେ ।
ସ୍ୱପ୍ନ ମାୟା ବଳେ ଦୁଃଖୀ ଅନାଥ ନିର୍ଦ୍ଧନ
ଚନ୍ତାଶ୍ରୁ ପାସୋରି ଭୋଳେ ଭୁଞ୍ଜେ ରାଜସୁଖ ।
ସନ୍ତାନବିହୀନା ନାରୀ ଚୁମ୍ବେ ପୁତ୍ରମୁଖ ।
ବୈଧବ୍ୟବିଧୁରା ବାଳା ଲଭି ଆଲିଙ୍ଗନ
ପ୍ରାଣପତି ଉତ୍ସଙ୍ଗରେ କୁତୂହଳେ କରଇ ଶୟନ ।

ଶୂନ୍ୟାସନେ ଶାନ୍ତିଦେବୀ ଧବଳବସନା
ଧର କରକମଳରେ ଦଣ୍ଡ ଜ୍ୟୋତ୍ସ୍ନାମୟ
ସୁପବିତ୍ର ସ୍ୱରେ ସତୀ ଅମୃତବଚନା
ଏ ଗମ୍ଭୀର ଉପଦେଶ ସତ୍ୟ ସୁଧାମୟ
ଢାଳୁଛନ୍ତି ଜ୍ଞାନିଜନମାନଙ୍କ ଶ୍ରବଣେ—
କେତେକାଳ ଭୁଲିଥିବ ଶାନ୍ତି ନିକେତନେ,
କେତେକାଳ ମୁଗ୍ଧ ହୋଇ ରହିବ ସଂସାରେ,
ନାହିଁ ଯହିଁ ନିତ୍ୟ ସୁଖ, ଆର୍ତ୍ତ ହାହାକାରେ
ଆଶ୍ରା କର ଧର୍ମପଥ, ପଡ଼ି ଯାଇଁ ବିଭୁଙ୍କ ଚରଣେ ।



(୧୩)

## ଆକାଶ ପ୍ରତି



୧

ଅନନ୍ତ ଅପାର ତୁହି ରେ ମହା ଆକାଶ,
ପୃଥିବୀର କୀଟ ମୁହିଁ କ୍ଷୁଦ୍ରବୁଦ୍ଧି ନର ।
କି ମହାନ କି ଗମ୍ଭୀର ତୋହର ପ୍ରକାଶ,
ଭାବିଲେ ସ୍ତବଧ ଚିତ୍ତ ହୁଅଇ ମୋହର ।

୨

ନ ଥିଲା ରେ ଯେତେବେଳେ ବିଚିତ୍ର ଭୁବନ,
ନ ଥିଲା ଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରାବଳୀ,
ନ ଥିଲା ଧରଣୀ ଏହି ଭୂତନିକେତନ,
ଅନନ୍ତ ଅନ୍ଧାରେ ପୂର୍ଣ୍ଣ ଥିଲା ସର୍ବସ୍ଥଳୀ ।

୩

ଅନନ୍ତ ନିବିଡ଼ ଘୋର ଅନ୍ଧକାରମୟ,
ଥିଲା ବିଶ୍ୱ ରୂପ-ରେଖା-ଶୂନ୍ୟ ନିରାକାର ।
ନିସ୍ତରଙ୍ଗ ଥିଲା ଯେବେ ଅନନ୍ତ ସମୟ,
ଘଟନାବିହୀନ ଘୋର କାଳ-ପାରାବାର ।

୪

ନ ଥିଲା ଯେ କାଳେ ସୃଷ୍ଟି-ଲୀଳା ଜଗତର,
କେବଳ ଜାଗ୍ରତ ଥିଲେ ଅନାଦିକାରଣ,
ଦେଶକାଳାତୀତ ବାକ୍ୟ-ମନ-ଅଗୋଚର,
ଅନନ୍ତ ଚୈତନ୍ୟମୟ ବ୍ରହ୍ମ ସନାତନ ।

୫

ସେ କାଳରେ ଅବଲମ୍ବି ଅନାଦିକାରଣେ
ଅସୀମ ଆକାଶ, ତୁହି ମହାମହିମାରେ
(ସେ ମହିମା, ସ୍ତବ୍ଧ ଚିତ୍ତ ଯାହାର ଚିନ୍ତନେ ! )
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅନ୍ଧାରେ ।

୬

ସହସା ପ୍ରଥମ ଊର୍ମି ମହାକାଳ-ନୀରେ
ଖେଳିଲା ଅନନ୍ତ ମହାମହେଶ-ଆଦେଶେ,
ସହସା ପ୍ରକାଶେ ଜ୍ୟୋତି-ଧାରା ତୋ ଶରୀରେ,
ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମକେଶ କେଶେ ।

୭

ସାକ୍ଷୀ ତୁହି ରେ ଗଗନ, ସୃଷ୍ଟିପ୍ରକ୍ରିୟାର,
ଦେଖିଲୁ କେମନ୍ତେ ଜ୍ୟୋତି ଭେଦ ତମୋରାଶି
ପ୍ରକାଶିଲା କୋଟି କୋଟି ସୁନ୍ଦର ସଂସାର
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ତୋ ଦେହେ ବିନ୍ୟାସି ।

୮

ପୃଥିବୀ ଜନମ ତୁହି ଦେଖିଲୁ ଗଗନ,
ଜଳ-ସ୍ଥଳ-ଅଗ୍ନି-ବାୟୁ-ସଂଗ୍ରାମ ଭୈରବ ।
ଦେଖିଲୁ ହିମାଦ୍ରି, ଆଦି ଗିରି ଉନ୍ନମନ,
ଅଚଳ ଶିଖରୁ ନଦ ନଦୀର ଉଦ୍ଭବ ।

୯

ପୁଷ୍ପର ପ୍ରଥମ ହାସ୍ୟ ତୋହର ଗୋଚର,
ପ୍ରଥମ ଜୀବର ସୃଷ୍ଟି ତୋର ସନ୍ନିଧାନେ,
ସୃଷ୍ଟି ଆଦି ନରନାରୀ ଅଗ୍ରତେ ତୋହର,
ସର୍ବଦର୍ଶୀ ଅଛୁ ତୁହି ବିଧିର ବିଧାନେ ।

୧୦

ଅତୀତର ଇତିହାସ କେ ଜାଣେ ତୋ ପରି,
ସୁଖଦୁଃଖମୟ ଯେତେ ଘଟନାନିଚୟ
ଘଟିଛି ଜଗତେ, ସବୁ ବିଦିତ ତୋହର,
ତୋ ଅଗ୍ରତେ ରାଜ୍ୟନାଶ, ରାଜ୍ୟ-ଅଭ୍ୟୁଦୟ ।

୧୧

ବଳିଷ୍ଠର ଅତ୍ୟାଚାର, ଦୁର୍ବଳ-ଦୁର୍ଗତି,
ସ୍ୱାର୍ଥ ଦ୍ୱେଷ ଲୋଭାଦିର କ୍ରୂର ପ୍ରବଞ୍ଚନା,
ଦେଖିଛୁ ସକଳ, ବ୍ୟୋମ ଗମ୍ଭୀରମୂରତି,
ତୋପରି ବୁଝିବ କିଏ ପୃଥିବୀ ବେଦନା !

୧୨

ଆଦି ସୃଷ୍ଟି କାଳୁ ଅବଗାହି ଜ୍ୟୋତି ଜଳେ
କି ସୁନ୍ଦର କି ଉଦାର ଦେହଶ୍ରୀ ତୋହର !
କହ ବ୍ୟୋମ, କିଏ ଅଛି ଏ ବିଶ୍ୱମଣ୍ଡଳେ,
ତୋ ରୂପେ ନୁହଇ ମୁଗ୍ଧ ଯାହାର ଅନ୍ତର ।

୧୩

ସକଳ ସୌନ୍ଦର୍ଯ୍ୟଲୀଳା ତୋହର ଉତ୍ସଙ୍ଗେ,
ନିତ୍ୟ ଲୀଳାଭୂମି ତୁହି କବିତା-ଦେବୀର,

ନାଚଇ ଅଗଣ୍ୟ ବିଶ୍ୱ ନିତ୍ୟ ଲୀଳାରଙ୍ଗେ
ତୋ ମହାସୁନୀଳ ବକ୍ଷେ ଶାସନେ ବିଧିର ।

୧୪

କେତେ ବେଶ ଧର ବ୍ୟୋମ ହେଉ ପ୍ରକାଶିତ,
କେତେବେଳେ ଦିଗମ୍ବର ତୁହି ନୀଳାମ୍ବର,
ନକ୍ଷତ୍ର ଶଶାଙ୍କେ କେବେ ତୋ ଦେହ ଭୂଷିତ,
କେବେ ମେଘ-ଆଡ଼ମ୍ବରେ ଦିଶୁ ଭୟଙ୍କର ।

୧୫

ସୁହାସିନୀ ଉଷାଦେବୀ ଆଲୋକ-ନନ୍ଦିନୀ
ବନ୍ଦେ ଭକ୍ତିଭରେ ଯେବେ ତୋର ପଦତଳେ,
ସହସା ହସଇ ଜାଗି ଉଲ୍ଲାସେ ମେଦିନୀ,
ଲାବଣ୍ୟ-ଲହରୀ ଉଚ୍ଛୁଳଇ ଜଳେ ସ୍ଥଳେ ।

୧୬

ସହସା କଟାକ୍ଷେ ତୋର ରବି ଜ୍ୟୋତିର୍ମୟ
ରଞ୍ଜଇ ଧରଣୀମୁଖ କନକ-କିରଣେ,
ସହସା ଫୁଟଇ ଫୁଲ ବହଇ ମଳୟ,
ବିହଙ୍ଗ ସଙ୍ଗୀତ ଗାଏ ସୁମଧୁର ସ୍ୱନେ ।

୧୭

ରଞ୍ଜିତ ଜଳଦ-ମଞ୍ଚୁ ଯେବେ ଅବତର
ବୁଡ଼ଇ ପଶ୍ଚିମେ ଭାନୁ କୋଳରେ ତୋହର,
ଧୀରେ ଧୀରେ ଅନ୍ଧକାର ଚୌଦିଗ ଆବର
ମଣ୍ଡଇ ନକ୍ଷତ୍ରମାଳେ ତୋର କଳେବର ।

୧୮

କି ଗମ୍ଭୀର କି ପ୍ରଶାନ୍ତ ଭାବ ଶର୍ବରୀରେ
ଜାଗଇ ଭାବୁକ ମନେ ତୋର ଦରଶନେ,
କି ମହାନୀରବ ବେଦ ପ୍ରକୃତି ଗମ୍ଭୀରେ,
ଶୁଣଇ ନୀରବ ବିଶ୍ୱ ଭୟସ୍ତବ୍ଧ ମନେ ।

୧୯

କୌମୁଦୀ-ରଞ୍ଜିତ ତୋର ନୀଳ କଳେବର,
ପ୍ରଶାନ୍ତ ପବିତ୍ର ମୂର୍ତ୍ତି ଭୁବନମୋହନ,
ନିମେଷେ କରଇ ଆହା ଲୁସ୍ତି ତେ ସୁନ୍ଦର,
ଦର୍ଶନେ ପବିତ୍ର କରେ କଳୁଷିତ ମନ ।

୧୦

ଗମ୍ଭୀର ନିଶୀଥ କାଳେ ନିଦ୍ରିତା ଧରଣୀ
ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ,
ହସଇ ଗୌରବେ ତେଣୁ ମହାନନ୍ଦେ ଧନ୍ୟା,
ସୁପ୍ତ ଶିଶୁ ଦେଖି ଯେହ୍ନେ ସ୍ୱର୍ଗୀୟ ସ୍ୱପନ ।

୧୧

ଧନ୍ୟ ଧନ୍ୟ ରେ ଆକାଶ ଧନ୍ୟ ତୋ ମହିମା,
ମହାଭାବ ଉପୁଜଇ ତୋର ଦରଶନେ,
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା
ସଂସାରର କ୍ଷୁଦ୍ରଭାବ ବିନାଶଇ କ୍ଷଣେ ।

୧୨

ମୁହୂର୍ତ୍ତିକେ ଘେନି ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ,
ମହାପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ,
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।



(୧୪)

## ଜୀବନଚିନ୍ତା

୧

ରେ ଆତ୍ମନ୍ ! ନିଦ୍ରା ପରିହରି
ଫେରି ତନ୍ଦ୍ରାର ଲୋଚନ     କର କର ନିରୀକ୍ଷଣ,
ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ ସିନ୍ଧୁ-କଲ୍ଲୋଲ-ଲହରୀ ।

୨

କି ବେଗରେ ଯାଉଅଛି ଚଳି
ସେହି ସ୍ରୋତ ସଙ୍ଗେ ଭାସି     ଜୀବନର ସୁଖରାଶି,
ଯାହାର ସ୍ମରଣେ ନର ଶୋକଶ୍ୱାସ ତାଳି
ଅତୀତକୁ ଉଦ୍ବୋଧଇ ବୃଥା ଭାଳି ଭାଳି ।

୩

ସ୍ୱପ୍ନ ସମ ନିଦ୍ରା— ପାରାବାରେ
କ୍ଷଣକେ ହୁଅଇ ଲୀନ     ଗର୍ବ ଦମ୍ଭ ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍ବୁଦ ଆକାରେ,
ସକଳ ଗ୍ରାସଇ କାଳ-ମୁଖ ନିର୍ବିଚାରେ ।

୪

ସେ ସିନ୍ଧୁ— ତରଙ୍ଗ ମୁଖ ପ୍ରତି
ଆକୃଷ୍ଟ ଅଦୃଶ୍ୟଭାବେ     ହୋଉଅଛି ସବୁ ଭବେ,
ମୃଦୁ ନିର୍ଝରିଣୀ, ମହାବେଗା ସ୍ରୋତସ୍ୱତୀ,
ସ୍ୱାଧୀନ ମନୁଷ୍ୟ, ମହାଯଶା ମହୀପତି ।

୫

ଭବସିନ୍ଧୁ ମାୟାଶୈଳମୟ,
ସମସ୍ତ ଛଳନାପୂର୍ଣ୍ଣ,     ସେ ଶୈଳେ ସର୍ବଦା ଚୂର୍ଣ୍ଣ
ହୁଅଇ ଆଶାର ତରୀ, କାମନାନିଚୟ
ବିଫଳ ସତତ, ତତ୍ତ୍ୱ ନୈରାଶ୍ୟ-ଆଳୟ ।

୬

ଜଗତର ଲୋଚନନନ୍ଦନ
ଯୁବତୀର ରକ୍ତାଧର, ରମ୍ୟ ଜ୍ୟୋତି ନୟନର,
ସ୍ୱର୍ଣ୍ଣ ଘନ ସମ ବକ୍ଷ, ଶୁଭ୍ର ପଦ୍ମାନନ,
ଇନ୍ଦ୍ରଧନୁ ଶୋଭା ସମ ପଳାନ୍ତି ବହନ ।

୭

ଯୁବକର ତେଜ ବୀର୍ଯ୍ୟ ବଳ,
ପ୍ରୌଢର ଚତୁର ଜ୍ଞାନ, ସୁକୌଶଳ କାର୍ଯ୍ୟମାନ,
କାଳର ପ୍ରଭାବେ ଦିନେ ହୋଇବ ବିଫଳ,
କିସ ଏ ଜଗତେ କହ ସ୍ଥିର ଅଚଞ୍ଚଳ !

୮

ଧନ ମାନ ଯଶ ଆଦି ଯାହା
ଭାଗ୍ୟଦେବୀ ପ୍ରସାଦରେ ଏ ଭବେ ଲଭନ୍ତି ନରେ,
କାଳଚକ୍ର ଆବର୍ତ୍ତନେ କି ବେଗରେ ଆହା
ପଳାନ୍ତି ରେ ଅନୁସରି ନିଜ ନିଜ ରାହା !

୯

ବିମୋହନ ମନ୍ମଥ ବିଳାସ
ଠାଣେ ମନ ମାୟାଯନ୍ତ୍ରେ, ଭୁଲାଏ କପଟ ମନ୍ତ୍ରେ,
କୌଶଳେ ଜନ୍ମାଇ ଚିତ୍ତେ କ୍ଷଣିକ ଉଲ୍ଲାସ
ଉତ୍ଫୁଲ୍ଲ ବିପ୍ଳବକୁ କରାଏ ପ୍ରକାଶ ।

୧୦

ଆତ୍ମାରାଜ୍ୟେ ସେ ଭୀମ ବିପ୍ଳବେ
ଧର୍ମର ପୁଣ୍ୟ ରାଜତ୍ୱ, ପ୍ରଜ୍ଞାର ମହତ ତତ୍ତ୍ୱ
ହୁଏ ପରାହତ, ପାପ ଗର୍ଜଇ ଭୈରବେ,
ପଳାୟନ କରେ ଶାନ୍ତି ସେହି ଉପଦ୍ରବେ ।

୧୧

ମୁକୁଟମଣ୍ଡିତ ରାଜଶିର
ନୁହଇ ଶାନ୍ତି-ଆସ୍ପଦ, ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର ।
ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର !

୧୨

ଏ ସଂସାରେ ନାହିଁ ସୁଖ ଶାନ୍ତି,
ଅହଙ୍କାର ଦ୍ୱେଷ ହ୍ରେଷ ଲୋଭ ମୋହ ଅସନ୍ତୋଷ
ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି,
ପାପର ଭୀଷଣାବର୍ତ୍ତେ ନରେ ନିକ୍ଷେପନ୍ତି ।

୧୩

କାହିଁ ଶାନ୍ତି, କାହିଁ ନିତ୍ୟସୁଖ,
ଯାହା ଲଭବାର ଲାଗି ଅଛି ଅବିରତ ଜାଗି
ଚିତ୍ତଗୃହେ ଆଶାଦୀପ ଉଜ୍ଜ୍ୱଳମୟୂଖ,
କାହିଁ ଗଲେ ପାସୋରିବ ମୃତ୍ୟୁ ପାପ ଦୁଃଖ ।

୧୪

ରେ ହୃଦୟ ! ନ ହୁଅ କାତର,
ସଂସାରର ବିଡ଼ମ୍ବନା ପାପ ସନ୍ତାପ ଯାତନା
ବିପଦ ଦୁର୍ଦ୍ଦିନତମ ଘୋର ଭୟଙ୍କର
ନିରେଖି ନିରାଶାବଶେ ନ ହୁଅ ଜର୍ଜ୍ଜର ।

୧୫

ଧର ଧୈର୍ଯ୍ୟ ଘେନ ରେ ସାନ୍ତ୍ୱନା,
ଅଛି ସେହି ମହାଧନ, ସେ ମହାସ୍ୱର୍ଗରତନ,
ସେ ଅମୃତ ମହୌଷଧ, ଯାହାର କାମନା
ଆଶା, ଜାଗ୍ରତ ସତତ, କରେ ଉଦ୍ଦୀପନା ।

୧୬

ସ୍ଥିର ହୁଅ ରେ ଚଞ୍ଚଳ ମନ,
ଘେନ ମହାତତ୍ତ୍ୱ ଦୀକ୍ଷା, ଜୀବର ପରମ ଶିକ୍ଷା,
ତେବେ ରେ ଲଭିବୁ ସେହି ପ୍ରାଣାରାମ ଧନ,
ଆକୁଳ ହୃଦୟ କରେ ଯାର ଅନ୍ୱେଷଣ ।

୧୭

ଧୂଳିର ଏ ନର କଳେବର,
ଅହୋ ମାନବ ଜୀବନ କି ଅଦ୍ଭୁତ ଉଦ୍ଭାବନ !
ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ,
କମଳ ଶୋଭଇ ଯଥା ପଙ୍କମୟ ସରେ ।

୧୮

ଏ ସଂସାର ଅନ୍ଧକାର ସ୍ଥାନ,
ଅନ୍ଧାରେ ହେଲେ ଜଡ଼ିତ ନ ହୁଅଇ ବିକଶିତ
ଜୀବାତ୍ମା କୁସୁମ ଏଥି, ହୁଏ ମ୍ରିୟମାଣ
ହରାଇଣ ଦିବ୍ୟ ଶୋଭା ପ୍ରେମ ଭକ୍ତି ଜ୍ଞାନ ।

୧୯

ଦିବାକରେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମଫୁଲ, ତେସନେ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ ଦରଶନେ,
ପୁଣ୍ୟର ତପନ ଯେହ୍ନୁ ପାପର ଭୁବନେ ।

୨୦

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ
ବିଭୁପାଦପଦ୍ମ ପାଶେ, ପୁଣ୍ୟ ଜ୍ୟୋତିର୍ମୟ ବାସେ,
ରୋଗ ପାପ ମୃତ୍ୟୁ ଆଦି ଯହିଁ ପରାଭୂତ,
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ ।

୨୧

ଏ ପିପାସା ନୁହଇ ନିବାର
ଅସାର ସଂସାର ଜଳେ, ରିପୁଚୟ କୋଳାହଳେ
ନୋହେ ନିବାରିତ କେଭେ; ଏକା ଧର୍ମବାର
ଶମଇ ଏ ମହା ଅଗ୍ନି ଅମୃତ ସଞ୍ଚାର ।

୨୨

ତେବେ ଆରେ ଅସ୍ଥିର ହୃଦୟ,
ତ୍ୟଜ କୁତ୍ସିତ ବାସନା କର ତାଙ୍କ ଆରାଧନା,
ଧର୍ମରାଜ ପ୍ରଭୁ ଯେହ୍ନୁ ମଙ୍ଗଳ-ଆଳୟ,
ଅମୃତଜୀବନଦାତା ବ୍ରହ୍ମାଣ୍ଡଆଶ୍ରୟ ।

୨୩

ପରିହର ପାପ ପ୍ରଲୋଭନ
ଉଜ୍ଜ୍ୱଳ କର ବିଶ୍ୱାସ, ସ୍ୱାର୍ଥ ଅହଂକାର ନାଶ,
କର ରେ ହୃଦୟାକାଶ ନିର୍ମଳ ବହନ,
ତେବେ ରେ ଲଭିବୁ ଧର୍ମରସ ଆସ୍ୱାଦନ ।

୧୪

ପ୍ରୀତିମୟ ଜୀବନରତନ
ଦେବେ ତୋତେ ପରମେଶ, ତାଙ୍କର ପବିତ୍ରାଦେଶ
ନିଃସ୍ୱାର୍ଥ ପବିତ୍ର ଚିତ୍ତେ କର ରେ ସାଧନ,
ଜଗତର ହିତ ଅର୍ଥେ ଦିଅ ରେ ଜୀବନ ।

୧୫

ହେ ଈଶ୍ୱର ପତିତତାରଣ,
ପ୍ରାଣାରାମ ନିରଞ୍ଜନ, ଭୟବିଘ୍ନବିନାଶନ,
ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ,
ସଂସାରବିଷାକ୍ତ ନେତ୍ରେ ତୁମ୍ଭେ ହେ ଅଞ୍ଜନ ।

୧୬

ଆସ ନାଥ ଅଗତିର ଗତି,
ତୁମ୍ଭ ବିନା ଏ ସଂସାରେ ମରଇ ମୁଁ ହାହାକାରେ,
ତାର ମୋତେ ମହାପ୍ରଭୁ ଦେଇଣ ସୁମତି,
ଅନନ୍ତ ଦୟା ତୁମ୍ଭର, ଅନନ୍ତ ଶକତି ।



( ୧୫ )

# ଅଯୋଧ୍ୟା ପ୍ରତ୍ୟାଗମନ

( ସଂସ୍କୃତ ରଘୁବଂଶରୁ ଅନୂଦିତ । )



ଏଥୁଅନ୍ତେ ଶବ୍ଦବହ ସୁନୀଳ ଅମ୍ବର
ପୁଷ୍ପକ ବିମାନେ ହେଲେ ଭେଦ ବୀରବର,
ନୟନେ ପଡ଼ନ୍ତେ ରତ୍ନ-ଆକର ଅର୍ଣ୍ଣବ,
ସୀତାଙ୍କୁ ଭଷିଲେ ବାଣୀ ରହସ୍ୟେ ରାଘବ ।
ବିଦେହନନ୍ଦିନି, ଦେଖ ମଳୟ ପର୍ଯ୍ୟନ୍ତ
ବିଭକ୍ତ ସେତୁରେ ମୋର ସିନ୍ଧୁ ଫେନବନ୍ତ ।
ଯେସନେ ଶରଦେ ଶୁଭ୍ର ତାରାବିମଣ୍ଡିତ
ଗଗନ ଦିଶଇ ଛାୟାପଥେ ଦ୍ୱିଖଣ୍ଡିତ ।
ସମୁଦ୍ର ଉଦ୍ଭବ କଥା ଶୁଣ ରୂପବତି,
ଜନମିଲେ ଆମ୍ଭ କୁଳେ ସଗର ନୃପତି ।
ଆରମ୍ଭିଲେ ଯାଗ, ମେଧ ତୁରଙ୍ଗ ତାଙ୍କର
ପାତାଳେ ବାନ୍ଧିଲେ ଇନ୍ଦ୍ର କପିଳ ପାଶର
ଅଶ୍ୱ ଅର୍ଥେ ମହୀତଳ ସଗରଙ୍କ ପୁଏ
ବିଦାରିଲେ, ତେଣୁ ଏହା ସାଗର ବୋଲାଏ ।
ଏ ସଲିଳ ଦେଇ ଘନ ରଚନ୍ତି ତପନ,
ଜନ୍ମନ୍ତି ଏହାର ଗର୍ଭେ ବିବିଧ ରତନ ।
ବାଡ଼ବ-ଅନଳ ଏହା କରଇ ଧାରଣ,
ଏଥିରୁ ଗୋ ଇନ୍ଦୁମୁଖି, ଇନ୍ଦୁର ଜନମ ।
ଅନେକ ଅବସ୍ଥା ଭଜିଅଛି ପାରିବାର,
ଦଶଦିଗ ବ୍ୟାପିଅଛି ଏହାର ବିସ୍ତାର ।

କଳି ନୋହେ ଏହାର ସ୍ୱରୂପ ପରିମାଣ,
ବିଷ୍ଣୁଙ୍କ ପରି ଏ ତାହା ଅତିକ୍ରମେ ଜ୍ଞାନ ।
କଳ୍ପ ଅନ୍ତେ ସର୍ବଲୋକ ସଂହାରି କେଶବ
କରନ୍ତି ଏଥିରେ ଯୋଗନିଦ୍ରା ଅନୁଭବ ।
ନାଭିପଦ୍ମାସନେ ପିତାମହ ସେ କାଳରେ
ବିଷ୍ଣୁଙ୍କୁ କରନ୍ତି ସ୍ତବ ସୁଗମ୍ଭୀର ସ୍ୱରେ ।

ପକ୍ଷ ଛେଦ ଗିରି ସର୍ବ ହରନ୍ତେ ବାସବ
ଆଶ୍ରିଲେ ଏହାର ଜଳ ମହୀଧର ସର୍ବ,
ଯେସନ ଶତ୍ରୁର ଭୟେ ଭୀତ ନୃପଗଣ
ମଧ୍ୟସ୍ଥ ଭୂପାଳଠାରେ ପଶନ୍ତି ଶରଣ ।
ଯେକାଳେ ବରାହରୂପେ ରସାତଳୁ ହରି
ଅବନୀ ଦେବୀଙ୍କ ହେଲେ ଥିଲେକ ଉଦ୍ଧାର,
ଏହାର ବିମଳ ଜଳ ବଢ଼ି ପ୍ରଳୟରେ
ହୋଇଲା ଅବଗୁଣ୍ଠନ କ୍ଷଣେ ଭୂମୁଖରେ ।

* * * * * * *

ଜଳଜନ୍ତୁ ସହ ନଦୀମୁଖର ଜୀବନ
ଦୂରେ ତିମିବୃନ୍ଦ ମୁଖେ କରନ୍ତି ଗ୍ରହଣ ।
ସେ ମୁଖ ମୁଦିଲା ବେଳେ ରନ୍ଧ୍ର ଦେଇ ଜଳ
ଊର୍ଦ୍ଧ୍ୱକୁ ପ୍ରବାହରୂପେ ଉଠେ ଅବିରଳ ।
ଗଜାକାର ଗ୍ରାହଗଣ ଭେଦି ଫେନରାଶି
ତରଙ୍ଗ ଉପରେ ଦେଖ ଉଠୁଛନ୍ତି ଭାସି;
ଦିଶୁଛି କପୋଳେ ଫେନପୁଞ୍ଜ ଲାଗିବାରୁ,
କର୍ଣ୍ଣେ ଯେହ୍ନେ ବିରାଜଇ ଚାମର ସୁଚାରୁ ।
ଆକାରେ ତରଙ୍ଗ ସମ ଅଜଗରଗଣ
ବାହାର ଅଛନ୍ତି ପିଇବାକୁ ସମୀରଣ ।
ଦୂର କରେ ଫଣାମଣି ତରଙ୍ଗର ଭ୍ରାନ୍ତି,
ରବିକର ଯୋଗୁଁ ଯାର ବଢିଅଛି କାନ୍ତି ।
ରମ୍ୟ ବିମ୍ବାଧର ସମ ପ୍ରବାଳମାଳାରେ
ପଡ଼ିଅଛି ଶଙ୍ଖଯୂଥ ତରଙ୍ଗବେଗରେ ।
ବନ୍ଧ ଅଟେ ମୁଖ ତାର ପ୍ରବାଳ ଅଙ୍କୁରେ,
ତେଣୁ ବାହାରଇ ତାହା ଅତି ବିଳମ୍ବରେ ।
ସିନ୍ଧୁଜଳ ପିଇବାକୁ ପ୍ରବର୍ତ୍ତିଣ ଘନ
ଭଉଁରିବେଗରେ ଦେଖ ଭ୍ରମୁଛି କେସନ ।
ଏ ଛବି ଦେଖି ମନକୁ ଏମନ୍ତ ଆସୁଛି,
ସିନ୍ଧୁକୁ ମନ୍ଦରଗିରି କିଅବା ମନ୍ଥୁଛି ।
ନୀଳ ଦିଶେ ତୀର ତାଳୀ-ତମାଳମାଳରେ,
ଲୌହଚକ୍ର ସମ ସିନ୍ଧୁ ଅଟଇ ଆକାରେ,
ଚକ୍ରର କଳଙ୍କ ରେଖା ପ୍ରାୟ ସେହି ତୀର,
ଦୂରରୁ ଦିଶଇ ଦେଖ କେମନ୍ତ ରୁଚିର ।

କେତକୀରେଣୁରେ ଦେଖ ଗୌର ସମୀରଣ
ତୁମ୍ଭ ମୁଖ ବିଶାଳାକ୍ଷି, କରୁଛି ମଣ୍ଡନ ।

* * * * * *

କହୁଁ କହୁଁ ମୁହୂର୍ତ୍ତକେ ବିମାନ ବେଗରେ
ପହଞ୍ଚିଲା ଦେଖ ଆସି ବେଳାପ୍ରଦେଶରେ ।
ସେ ବେଳା ଶୁକ୍ତିନିର୍ଗତ ମୁକ୍ତାରେ ଶୋଭିତ,
ତହିଁରେ ଗୁବାକଶ୍ରେଣୀ ଫଳେ ଆନମିତ ।
ମୋର ଇଚ୍ଛା ଅନୁସରି ସଞ୍ଚରଇ ରଥ,
କେତେବେଳେ ଅବଲମ୍ବେ ଦେବତାଙ୍କ ପଥ,
କେବେ ଘନପଥେ, କେବେ ବିହଗମାର୍ଗରେ
ପୁଷ୍ପକ ବିମାନ ଦେଖ ଗଗନେ ସଞ୍ଚରେ ।
ତୁମ୍ଭ ମୁଖେ ସ୍ୱେଦବିନ୍ଦୁ ମଧ୍ୟାହ୍ନେ ଝରଇ,
ତାହାକୁ ଆକାଶ ବାୟୁ ବହନେ ହରଇ ।
ମନ୍ଦାକିନୀ ବୀଚି ଯୋଗୁଁ ଏ ବାୟୁ ଶୀତଳ,
ବହଇ ଏ ଐରାବତ ମଦ ପରିମଳ ।
ସ୍ୟନ୍ଦନର ଗବାକ୍ଷରେ ଲମ୍ବାଇଣ କର
କୁତୂହଳେ ପରଶୁଛ ତୁମ୍ଭେ ଜଳଧର ।
ତୁମ୍ଭ କରକମଳରେ ଅର୍ପୁଅଛି ଘନ
ବିଜୁଳି ବଳୟରୂପେ ନବ ଆଭରଣ ।
ଦୂରେ ଦେଖ ବିରାଜଇ ଦଣ୍ଡକ କାନନ,
ନୂତନ ନିର୍ମିତ ଯହିଁ ପର୍ଣ୍ଣନିକେତନ ।
ନାହିଁ ଆଉ ରକ୍ଷୋଭୟ, ଏଣୁ ଆନନ୍ଦରେ
ତପସ୍ୱୀ ଏ ନିବସନ୍ତି ଆଶ୍ରମନିକରେ ।
ତୁମ୍ଭ ପୟର ନେପୁର ପୟରରୁ ଖସି
ମଉନରେ ପଡ଼ିଥିଲା ଏଠାରେ ପ୍ରେୟସି !
ପୂର୍ବେ ସେ ବାଜୁଥିଲା ପୟରେ ଗରବେ,
ଭ୍ରଷ୍ଟ ହୋଇ ଦୁଃଖେ ଏଥି ଥିଲା ସେ ନୀରବେ ।
ଯେ ପଥେ ତୁମ୍ଭଙ୍କୁ ରକ୍ଷଃ ନେଇଥିଲା ହରି,
ଦେଖାଇଲେ ସେହି ପଥ ମୋତେ ଦୟା କରି-
ବଚନବିହୀନ ଏହି ବଲ୍ଲୀନିକର,
ସଞ୍ଚାଳି ପଲ୍ଲବମୟ ଶ୍ୟାମ ଶାଖାକର ।
ତେଜି ତୃଣାଙ୍କୁରସ୍ପୃହା ମୃଗାଙ୍ଗନାଗଣ
ନିବେଶି ଦକ୍ଷିଣ ଆଡ଼େ ଉତ୍ପକ୍ଷ୍ମ ନୟନ

ଜଣାଇଲେ ମୋତେ କେଉଁ ଦିଗେ ତୁମ୍ଭ ଗତି,
ତାହା ଦେଖି ମୋ ହୃଦୟେ ଶୋକ ହୋଇଲା ଅତି ।
ଦିଶଇ ଅଗ୍ରତେ ମାଲ୍ୟବାନ ମହୀଧର,
ଗଗନପରଶୀ ଅଟେ ଯାହାର ଶିଖର ।
ଘନଜଳ ସଙ୍ଗେ ତହିଁ ମୋ ନୟନଜଳ
ଝରିଲା ତୁମ୍ଭ ବିରହଯୋଗୁଁ ଅବିରଳ ।
ନବମେଘଜଳସିକ୍ତ ମୃତ୍ତିକା ସୁବାସ,
କଦମ୍ବ କେଶର ଯାର ଅର୍ଦ୍ଧ ପରକାଶ,
ନୀଳକଣ୍ଠ ମୟୂରର ଗମ୍ଭୀର ନିଃସ୍ୱନ,
ତୁମ୍ଭ ବିନା ଏ ସକଳ ଦହିଲେ ମୋ ମନ ।
କନ୍ଦରଝଙ୍କାରୀ ମନ୍ଦ୍ର ଘନଗରଜନ,
ଶୁଣନ୍ତେ ହୃଦୟ ମୋର ହୋଇଲା ଉଚ୍ଚାଟନ,
ସୁମରନ୍ତେ ପୂର୍ବ କଥା ଯେବେ ଥରି ଥରି,
ଘଡ଼ଘଡି ଭୟେ ମୋତେ ପକାଇଲ ଧରି ।
ଏଥି ବିକଶିତ ନବ କନ୍ଦଳୀକୁସୁମ,
ଯୁକ୍ତ ତହିଁ ଜଳସିକ୍ତ ମୃତ୍ତିକାର ଧୂମ,
ଦେଖନ୍ତେ ପଡ଼ିଲା ମନେ ବିବାହ ସମୟ,
ଦାବାଗ୍ନି ପରାୟେ ଶୋକ ଦହିଲା ହୃଦୟ ।
ସେ ମଧୁର କାଳେ ତୁମ୍ଭ ନୟନ ଯୁଗଳ
ପୁଣ୍ୟଧୂମ ଯୋଗୁଁ ଆହା କେମନ୍ତ ପାଟଳ !
ଅଗ୍ରତେ ବିରାଜେ ରମ୍ୟ ପମ୍ପା ସରୋବର,
ଯାହାର ଦର୍ଶନେ କ୍ଷିନ୍ନ ହୁଅଇ ଅନ୍ତର ।
ଚତୁର୍ଦିଗ ସମାଚ୍ଛନ୍ନ ନିବିଡ଼ ବେତସେ,
ଜଳେ ବିହରନ୍ତି ଦେଖ, ଆନନ୍ଦେ ସାରସେ ।
ଉତ୍ପଳ କେଶର ଦେଇ ପରସ୍ପର ମୁଖେ
ରଥାଙ୍ଗମିଥୁନ ଏଥି ବସିଥିଲେ ସୁଖେ ।
ତୁମ୍ଭ ବିରହରେ କରି ଏ ଛବି ଦର୍ଶନ
ପୂର୍ବ ସୁଖମାନ, ଆହା, କରିଲି ସ୍ମରଣ ।
ସ୍ତବକସ୍ତନରେ ନମ୍ର ଅଶୋକବଲ୍ଲରୀ
ଦେଖି, 'ପାଇଲି ତୁମ୍ଭଙ୍କୁ' ଏହା ମନେ କରି
ଅଧୀର ହରଷେ ଶୋକେ ଆଲିଙ୍ଗନ ଆଶେ
ଅଶ୍ରୁପୂର୍ଣ୍ଣ ନୟନରେ ଧାଆନ୍ତେ ତା ପାଶେ,
'ନୁହନ୍ତି ଏ ସୀତା ଦେବୀ' ସୁମିତ୍ରାନନ୍ଦନ
ଏମନ୍ତ ବୋଲିଣ ମୋତେ କଲେ ନିବାରଣ ।

ବିମାନଲମ୍ବିତ ହେମକିଙ୍କିଣୀ ଶବଦ
ଶୁଣିଣ ସାରସେ ତେଜି ଗୋଦାବରୀ ହ୍ରଦ
ଉଡ଼ି ନୀଳମଣିମୟ ଅମ୍ବରମାର୍ଗରେ
ତୁମ୍ଭଙ୍କୁ ପାଛୋଟି ଆସୁଛନ୍ତି କି ଆଦରେ ?
ବନ୍ଧୁବଦନ ପରେ ଦେଖ ପଞ୍ଚବଟୀ ବନ,
ଯାର ଦରଶନେ ହର୍ଷେ ନିମଗ୍ନ ମୋ ମନ ।
ସୁମଧ୍ୟମା, ତୁମ୍ଭେ ସିଞ୍ଚି ଘଟର ସଲିଳ
ଏହି ବାଲ ଚୂତ ତରୁ ବଢ଼ାଇଣ ଥିଲ ।
ତୁମ୍ଭର ପାଳିତ ଏହି କୃଷ୍ଣସାରପନ୍ତି
ନୟନ ବୁଲାଇ ରଥ ଆଡ଼କୁ ଚାହାନ୍ତି ।
ମୃଗୟାରୁ ବାହୁଡ଼ିଣ ଏଥି ଗୋ ସୁନ୍ଦର,
ତରଙ୍ଗ ଅନିଲେ ଦେହ କ୍ଳାନ୍ତି ପରିହର,
ପ୍ରଦୋଷେ ତୋ କୋଳେ ଶିର ନିହି ପ୍ରେମଭରେ
ଶୋଇଥିଲି ପ୍ରିୟେ, ମଞ୍ଜୁ ବଞ୍ଜୁଲ କୁଞ୍ଜରେ ।
ଦେଖ ଦେଖ ରୂପବତି ! ଦିଶେ ମନୋରମ
ସମସ୍ତ ଲୋକପାବନ ଅଗସ୍ତ୍ୟ ଆଶ୍ରମ ।
ଭ୍ରୂଭଙ୍ଗ ମାତ୍ରକେ ଯାର ନହୁଷ ନୃପତି
ଭ୍ରଷ୍ଟ ହୋଇ ଇନ୍ଦ୍ରପଦୁଁ ଲଭିଲେ ଦୁର୍ଗତି ।
ଶରଦରେ ନଭେ ଦେଖି ଯାହାଙ୍କ ଉଦୟ
ହୁଏ ନିରମଳ କଳୁଷିତ ବାରିଚୟ ।
ଯାର ଅଗ୍ନିତ୍ରୟ-ଧୂମ ହୋମଗନ୍ଧମୟ
ଆଘ୍ରାଣ କରନ୍ତେ ଶୁଦ୍ଧ ହେଉଛି ହୃଦୟ ।
ମହାଯଶା ମହର୍ଷି ଏ, ପ୍ରଭାବେ ଯାହାର
ହେଲେ ଦୂର ହୁଏ ନରହୃଦୟବିକାର ।
ଦିଶୁଅଛି ମାନମୟି, ରମ୍ୟ ପଞ୍ଚାପ୍ସର,
ଶାତକର୍ଣ୍ଣି ମହର୍ଷିଙ୍କ କେଳିସରୋବର ।
ତଡ଼ିଦଗ ବେଢ଼ିଅଛି ବିବିଧ କାନନ,
ମେଘ ଅନ୍ତରାଳେ ଇନ୍ଦୁ ମଣ୍ଡଳ ଯେସନ,
ତେସନ ଦୂରରୁ ଦିଶେ ଏ ସରୋବରତନ ।
ପୂର୍ବେ କୁଶାଙ୍କୁର ମାତ୍ର କରଣ ଆହାର,
ସୁରଙ୍ଗ କୁରଙ୍ଗ ସଙ୍ଗେ କରଣ ସଞ୍ଚାର,
ଆଚରିଲେ ତୀବ୍ର ତପ ଶାତକର୍ଣ୍ଣି ଯତି,
ତାହା ଦେଖି ଭୀତ ହେଲେ ସୁରରାଜ ଅତି ।

ଯୌବନ-କପଟ-ଯନ୍ତ୍ରେ ପାଞ୍ଚ ଅପ୍ସରାର
ବାନ୍ଧିଲେ ଯୋଗି-ମାନସ-ମୃଗ ସୁନାଶିର,
ଜଳଉଲେ ହର୍ମ୍ୟେ ତହିଁ ନିବସନ୍ତି ମୁନି,
ବହୁଅଛି ବାୟୁ ତାଙ୍କ ମୃଦଙ୍ଗର ଧ୍ୱନି ।
ଗଗନରେ ଉଠି ତାଙ୍କ ମଧୁର ସଙ୍ଗୀତ
ପୁଷ୍ପକର ଚନ୍ଦ୍ରଶାଳା କରେ ନିନାଦିତ ।
ସୁତୀକ୍ଷ୍ଣ ନାମେ ତେଜସ୍ୱୀ ଶାନ୍ତ ଋଷିବର
ଆଚରନ୍ତି ତୀବ୍ରତପ ଦେଖ ବାମାବର ।
ଅଗ୍ନି ଚତୁଷ୍ଟୟ ମଧ୍ୟେ ବସି ତପୋଧନ
ପ୍ରଚଣ୍ଡ ଭାସ୍କରବର୍ତ୍ମେ ଅର୍ପିନ୍ତି ନୟନ ।
ତାଙ୍କର କଠୋର ତପେ ଭୀତ ପୁର-ଅରି
ବ୍ରତଭଙ୍ଗେ ଆଶେ ପାଶେ ପେଷିଲେ ଅପ୍ସରୀ ।
ସୁରସୁନ୍ଦରୀଙ୍କ ନାନା ବିଳାସ ଲଳିତ
ନ ପାରିଲା ମୋହି ଶାନ୍ତ ମୁନିବର ଚିତ୍ତ ।
ବୃଥା ତାଙ୍କ ହାସ୍ୟମୁଖେ କଟାକ୍ଷ ପ୍ରେରଣ,
ବୃଥା ଛଳକ୍ରମେ ମେଖଳାର ପ୍ରଦର୍ଶନ ।
ଧରିଅଛି ଅକ୍ଷମାଳା-ବଳୟ ଯେ କର,
ମୃଗ-ଦେହ କଣ୍ଡୂୟନେ ଯେ ଅଟେ ତତ୍ପର,
ସେ ଦକ୍ଷିଣ ହସ୍ତ ମୋର ସମ୍ମାନ ନିମନ୍ତେ
ପ୍ରସାରିତ ହୋଇଅଛି ଊର୍ଦ୍ଧ୍ୱକୁ କେମନ୍ତେ ?
ସଦା ମୌନବ୍ରତୀ ମୁନି, ଶିର ପ୍ରକମ୍ପରେ
ପ୍ରଣତି ଗ୍ରହଣ ମୋର ଚିତ୍ତ ପ୍ରସାଦରେ
ବିମାନର ବ୍ୟବଧାନୁ ବିମୁକ୍ତ ଈକ୍ଷଣ
ନିହିଲେ ଭାସ୍କରବର୍ତ୍ମେ ପୁଣି ତପୋଧନ ।
ଅଗ୍ରତେ ଦିଶଇ ପ୍ରିୟେ ଅତିଥିଶରଣ
ଶରଭଙ୍ଗ ମହର୍ଷିଙ୍କ ପୁଣ୍ୟ ତପୋବନ ।
ମହାତପା ଋଷି ବହୁକାଳ ଇନ୍ଧନରେ
ସାଧି ହୁତାଶନ ତୃପ୍ତି ସଂଯତ ମନରେ,
ଅବଶେଷେ ମନ୍ତ୍ରପୂତ ନିଜର ଶରୀର
ଅର୍ପିଲେ ଆହୁତିରୂପେ ଆନନ୍ଦେ ଅଗ୍ନିର ।
ସ୍ନିଗ୍ଧ ଛାୟା ସୁମଧୁର ଫଳ ଦାନ କରି,
ପଥିକର ପଥଶ୍ରମ ଦୟାଭାବେ ହରି,
ତପୋବନ ତରୁବୃନ୍ଦ ସୁପୁତ୍ର ଯେସନ
ଅତିଥିସତ୍କାର ବ୍ରତ କରନ୍ତି ପାଳନ ।

ଧରି ଦର୍ପକଳମତ୍ତ ବୃଷଭର ଶିଙ୍ଗ
ହରଇ ନୟନ ପ୍ରିୟେ, ଚିତ୍ରକୂଟ ଗିରି ।
ବୃଷମୁଖ ତୁଲ୍ୟ ଏହି ଗିରିର କନ୍ଦର.
ନିରନ୍ତର ନିର୍ଝରର ନିନାଦେ ମୁଖର,
ବପ୍ରପଙ୍କ ପରି କଳା ନବଜଳଧର
ସୋହୁଅଛି ଦେଖ ପ୍ରିୟେ, ପର୍ବତ ଶିଖର ।
ଚିତ୍ରକୂଟ ଗିରିପାଶେ ବହେ ମନ୍ଦାକିନୀ,
ଦୂରୁଁ ଦିଶେ ସୂକ୍ଷ୍ମରେଖା ପରାଏ ତଟିନୀ,
ପ୍ରଶାନ୍ତ ନିର୍ମଳ ଯଥା ଦେବତାଙ୍କ ମନ,
ଜାହ୍ନବୀର ଜଳ ସଦା ତେମନ୍ତ ପ୍ରସନ୍ନ ।
ଅବନୀ-ରମଣୀ କଣ୍ଠେ ମୁକ୍ତାର ହାର
ପ୍ରାୟେ ମନ୍ଦାକିନୀ ପ୍ରିୟେ, ଦିଶଇ ଉଦାର ।
ଏହି ସେ ତମାଲ ତରୁ ଦିଶଇ ମଞ୍ଜୁଳ,
ଉଦ୍‌ଗ୍ରୀବ କଳାପିକୁଳେ ନୃତ୍ୟ ସମାକୁଳ ।
ସ୍ନିଗ୍ଧ ପଲ୍ଲବେ ଯାର କରି ସୁଘଟନ
ରଚିଲ ପ୍ରେୟସି, ତୁମ୍ଭ ଶ୍ରବଣଭୂଷଣ,
ଯବାଙ୍କୁର ସମ ପାଣ୍ଡୁ ଗୃରୁ କପୋଳର
ସେ ରମ୍ୟ ଭୂଷଣ ଲାଗି ରାଜିଲା ସୁନ୍ଦର ।

ଅଗ୍ରତେ ରାଜଇ ଅତ୍ରି ମୁନି ତପୋବନ,
ତପସ୍ୟା ପ୍ରଭାବେ ଯହିଁ ଘଟେ ଅଘଟନ;
ଦଣ୍ଡଭୟ ବିନା ଯହିଁ ଜନ୍ତୁଏ ଶାସିତ,
ପୁଷ୍ପ ବିନା ତରୁବୃନ୍ଦ ହୁଅନ୍ତି ଫଳିତ ।
ଯେ ଜାହ୍ନବୀ ଜଳୁ ସପ୍ତର୍ଷି ସ୍ୱହସ୍ତରେ
କନକକମଳଚୟ ତୋଳନ୍ତି ଆଦରେ,
ଯାହାର ପ୍ରବାହ ଶିରେ, ପ୍ରସନ୍ନ ପାବନ,
ନିଜେ ହର ମାଳାରୂପେ କରନ୍ତି ଧାରଣ,
ସେହି ଭାଗୀରଥୀ ବହୁଛନ୍ତି ଏହି ବନେ
ଅତ୍ରି-ସଧର୍ମିଣୀ ଅନସୂୟାଙ୍କ ଯତନେ ।
ତପସ୍ୱିମାନଙ୍କ ସ୍ନାନ-ଅର୍ଥେ ତପସ୍ୱିନୀ
ତପସ୍ୟା ବଳରେ ଆଣିଥିଲେ ମନ୍ଦାକିନୀ ।
ବୈଦେହନନ୍ଦିନି, ଦେଖ, ବସି ବୀରାସନେ
ଧ୍ୟାନେ ରତ ମୁନିବୃନ୍ଦ ଏକତାନମନେ ।

ତାଙ୍କ ବେଦୀମଧ୍ୟଗତ ମହୀରୁହଦଳ
ସମୀର ଅଭାବେ ହୋଇ ଏକାନ୍ତ ନିଶ୍ଚଳ
ଯୋଗମଗ୍ନ ଯୋଗୀ ପ୍ରାୟେ ଦିଶନ୍ତି ସକଳ ।

ଏବେ ସେହି ଶ୍ୟାମବଟ ବିରାଜେ ଅଗ୍ରତେ,
ଯାର ପାଦ ବନ୍ଦି କହିଥିଲ ପତିବ୍ରତେ
"ମୋ ନାଥ ହୁଅନ୍ତୁ ପାରି ସର୍ବ ସଙ୍କଟରୁ,
ନିର୍ବିଘ୍ନେ କରନ୍ତୁ ବ୍ରତ ରକ୍ଷା ମହାତରୁ !"
ପଦ୍ମରାଗ ଫଳପୁଞ୍ଜ ପତ୍ର ମରକତେ
ମଣ୍ଡିତ ଏ ବୃକ୍ଷରାଜ ଦିଶଇ କେମନ୍ତେ ?
ଜାହ୍ନବୀ ଯମୁନା ଯୋଗ ଦେଖ ଗୋ ସୁନ୍ଦରି !
ଶୁଭ୍ର ନୀଳ ଜଳ ଦିଶେ ରୁଚିର କିପରି ?
ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ
ଗୁନ୍ଥା ହେଲେ ମାଳା ପ୍ରାୟେ ଦିଶଇ ସଲିଳ;
କିମ୍ବା ଇନ୍ଦୀବରେ ମିଶି ଶ୍ୱେତ ଶତଦଳ —
ମାଳା ପରି ଦିଶେ ଏହି କଳା ଧଳା ଜଳ;
କିଅବା ମାନସଗାମୀ ରାଜହଂସପନ୍ତି
କାଦମ୍ବଦଳ ସଂଯୋଗେ ଯେମନ୍ତ ଦିଶନ୍ତି;
ଅଥବା ଅବନୀବରବଦନେ ରଚିତ
ଚନ୍ଦନରଚନା କୃଷ୍ଣ ଅଗୁରୁ ମିଶ୍ରିତ;
କିଅବା ଯେମନ୍ତ ପ୍ରିୟେ, ସୁନୀଳ ଗଗନ
ଶୁଭ୍ର ଶରଦଭ୍ର ରନ୍ଧ୍ରେ ଦିଶଇ ଶୋଭନ;
ଅବା ଧଳା ଭସ୍ମବୋଳା ଶଙ୍କର ଶରୀର
ଅସିତ ଉରଗେ ଯଥା ରାଜଇ ରୁଚିର;
କିଅବା ଛାୟାରେ ମିଶା ଚନ୍ଦ୍ର ଜ୍ୟୋତ୍ସ୍ନା ପରି
ଦିଶଇ ପ୍ରେୟସି, ଗଙ୍ଗା ଯମୁନା ଲହରୀ ।
ତ୍ରିଲୋକପାବନ ଗଙ୍ଗା ଯମୁନା ସଙ୍ଗମ
ମୁମୂର୍ଷୁ ଜନର ଅଟେ ଆଶ୍ରୟ ଚରମ;
ବିଦେହନନ୍ଦନ ! ଏଥି ଲୋକେ କରି ସ୍ନାନ
ଲଭନ୍ତି ପରମ ଗତି ବିନା ତତ୍ତ୍ୱଜ୍ଞାନ ।
ଏହି ସେ କିରାତପତି ଗୁହକ ନଗରୀ.
ପଡ଼ଇ କି ମନେ ପୂର୍ବ କଥା ମୋ ସୁନ୍ଦରି ?
ଏଥି ଗୋ ମସ୍ତକୁଁ କାଢ଼ି କନକମୁକୁଟ
ରଚିଲି ତାପସଯୋଗ୍ୟ ନବ ଜଟାକୂଟ;

ସେକାଳେ ସୁମନ୍ତ ଅଶ୍ରୁପୂର୍ଣ୍ଣ ଲୋଚନରେ
ଅନାଇଣ ମୋ ଆଡ଼କୁ ମ୍ଳାନ ବଦନରେ
'କୈକେୟି ! ପୂରଇ ଏବେ ତୁମ୍ଭ ମନୋରଥ !'
ଏମନ୍ତ ଭାଷିଲେ ଦୁଃଖେ ବାହୁଡ଼ାଇ ରଥ ।

ସରଯୂର ତଟେ ଏବେ ରଥ ଉପନୀତ,
ବିଧବା ଜନନୀ ସମ ଅଟନ୍ତି ସତତ,
ପରବାସୁଁ ସମାଗତ ଦେଖି ମୋତେ ପାଶେ
ଧବଳ ତରଙ୍ଗ-କର ଆଲିଙ୍ଗନେ ଆଶେ

ପ୍ରସାରନ୍ତି ତରଙ୍ଗିଣୀ ଅବା ସ୍ନେହଭରେ,
ଶୀକର-ଶୀତଳ ବାୟୁ ମନସ୍ତାପ ହରେ ।
କନକ କମଳ କଳି ଯା ଜଳେ ବିକଶେ,
ସଦା ଯହିଁ ଯକ୍ଷବାଳା କ୍ରୀଡ଼ନ୍ତି ହରଷେ,

ସେହି ସେ ମାନସ ହ୍ରଦ ମାନସହରଣ
ବେଦମତେ ସରଯୂର ଜନମକାରଣ ।
ପବିତ୍ରସଲିଳା ଏହି ନଦୀକୁଳେଶ୍ୱରୀ,
ଏହାର ପୁଳିନଦେଶ ମାତାକୋଳ ପରି,

ପିଇଣ ଏହାର କ୍ଷୀର ସମ ସୁଧାପୟ,
ବର୍ଦ୍ଧିତ କୋଶଳ ଦେଶ ନରେଶ୍ୱରଚୟ ।
ଗୋଧୂଳି ଆକାଶ ପରି ତାମ୍ରଧୂଳିରାଶି
ଦେଖ ଗୋ ସୁନ୍ଦରି ! ଅଗେ ଆସୁଅଛି ଭାସି,

ହନୁମନ୍ତ ମୁଖୁଁ ପରା ଶୁଣି ମୋ ସନ୍ଦେଶ
ସୈନ୍ୟ ସଙ୍ଗେ ଆସୁଛନ୍ତି ଭରତ ନରେଶ ।
ରଣେ ଖର ଦୂଷଣଙ୍କୁ ବଧି ବାହୁଡ଼ନ୍ତେ
ତୁମ୍ଭଙ୍କୁ ମୋ କରେ ଦେଲେ ସୌମିତ୍ରି ଯେମନ୍ତେ,
ପିତୃସତ୍ୟ ପ୍ରତିପାଳି ମୁହିଁ ପ୍ରତ୍ୟାଗତ,
ରାଜ୍ୟଶ୍ରୀ ଅର୍ପିବେ ଏବେ ମୋଠାରେ ଭରତ ।
ଆଗରେ ବଶିଷ୍ଠ, ପଛେ ଭରତ ସୁମନ୍ତ,
ଚଉପାଶେ ବେଢ଼ିଛନ୍ତି ଅମାତ୍ୟପଙ୍କତି,

ତହିଁ ପଛେ ରାଜସେନା ରଣେ ଚିରଜୟୀ
ସାଗରଲହରୀ ସମ କି ରଙ୍ଗେ ଆସଇ !
ବଲ୍କଲବସନ ଦେହେ, ଅର୍ଘ୍ୟପାତ୍ର କରେ
ଧାର୍ମିକ ଭରତ ଆସୁଛନ୍ତି ନତ ଶିରେ ।

ନୀରବନ୍ତେ ରାମ, ଦେବବିମାନ
ଇଚ୍ଛା ଜାଣି ବେଗେ ଉଲ୍ଲାସମାନ
ଛାଡ଼ିପଥୁଁ ଖସେ ଅବନୀତଳ,
ଅନମ୍ବର ଦେଶ ଦଶେ ଉତ୍କଳ,
ଅନାଇଲେ ବିସ୍ମୟରେ ଯେ
ଆନନ୍ଦ ମଗନ ଅଯୋଧ୍ୟାନିବାସୀ ଭରତଙ୍କ ଅନୁଚରେ ଯେ ।

ବିଭୀଷଣ ଆଗେ ଦେଖାନ୍ତି ବାଟ,
ଶ୍ରୀକର ଧରନ୍ତି କପିସମ୍ରାଟ,
ବେନିଏ ଅଛନ୍ତି ସେବାଚତୁର,
ସୋପାନେ, ଅବନୀ ତଳୁ ଅଦୂର,
ପଦ ଦେଇ ରଘୁପତି
ଯଟିକ ପଦବୀ କରଣ ପବିତ୍ର ବିଜେ କଲେ ବସୁମତୀ ।

ପ୍ରଣମି ବଶିଷ୍ଠ ମୁନି ଚରଣେ
ଅର୍ଘ୍ୟ ଘେନି ପ୍ରଭୁ, ସାଶ୍ରୁନୟନେ
ଚୁମ୍ବିଲେ ଭରତ ଶତ୍ରୁଘ୍ନ ଶିର
ଆଲିଙ୍ଗି ଆଦରେ ରଘୁପ୍ରବୀର,
ଧନ୍ୟ ସେ ସାଧୁ ଭରତ,
ଭୋଗ ପରିହରି ଭ୍ରାତୃପ୍ରେମବଶେ ଆଚରିଲେ ଯତିବ୍ରତ ।

ଦେଖ ହେ ଭରତ, କପି-ଈଶ୍ୱର,
ବିପଦବନ୍ଧୁ ଏ ଦୁଃଖୀ ରାମର,
ମହାମିତ୍ର ମୋର ଏ ବିଭୀଷଣ,
ଅରାତିବିନାଶେ ଅତି ଭୀଷଣ,
ଭାଷନ୍ତେ ରାମ ଏସନ,
ଲକ୍ଷ୍ମଣ ଉପେକ୍ଷି ବେନିଙ୍କି ଭରତ ସାଦରେ କଲେ ବନ୍ଦନ ।

ଭରତ ଚରଣେ ନୁଆଇଁ ଶିର
ସାଷ୍ଟାଙ୍ଗେ ନମିଲେ ସୌମିତ୍ରି ବୀର,
ଉଠାଇ ଭରତ ତାଙ୍କୁ ସାଦରେ
ଆଲିଙ୍ଗିଲେ ଅଙ୍ଗ ପ୍ରେମନିର୍ଭରେ,
ଅନୁଭବି ସେ ଆଶ୍ଳେଷେ
ମେଘନାଦ-ଭୀମ-ପ୍ରହାର-ଅଙ୍କିତ ବନ୍ଧୁର ସେ ଉରୋଦେଶେ ।

କପିସେନାମାଏ ମନୁଷ୍ୟ ବେଶ
ଧରିଲେ ଲଭିଣ ରାମ ଆଦେଶ,
ବସିଲେ ବାରଣରାଜପୃଷ୍ଠରେ,
ମଦବାରିଧାରା ଯା ଗଣ୍ଡୁ ଝରେ,
ଶଇଳୁ ଯେହ୍ନେ ନିର୍ଝର,
ପରିଚିତ ଗିରି ଆରୋହଣ ସୁଖ ଲଭିଲେ ତହିଁ ବାନର ।

ବିଭୀଷଣ ପ୍ରଭୁ ଆଦେଶ ମତେ
ସଗଣେ ବସିଲେ ସୁନ୍ଦର ରଥେ,
କି ଅବା ଦେବା ସେ ରଥ ଉପମା ?
ଭୂତଳେ ଅତୁଳ ଯାର ସୁଷମା,
ସେ ସ୍ୟନ୍ଦନ ଦରଶନେ
ନିଶାଚରଙ୍କର ଲଙ୍କାର ସ୍ୟନ୍ଦନ ଶୋଭା ପଡ଼ିଗଲା ମନେ ।

କାମଗତି ଧ୍ୱଜଶୋଭିତ ରଥେ
ବସିଲେ ନୃମଣି ଭ୍ରାତା ସଙ୍ଗତେ,
ବୁଧ ବୃହସ୍ପତି ଯୋଗେ ଯେସନ
ଦିଶନ୍ତି ଶଶାଙ୍କ ତାରାରମଣ
ସାୟନ୍ତନ ଘନ ପରେ,
କେତନ ପରାୟେ ସ୍ୱର୍ଣ୍ଣସୌଦାମିନୀ ସ୍ଫୁରୁଥାଏ ଅନମ୍ବରେ ।

ପ୍ରଳୟୁ ବରାହରୂପୀ ମୁରାରି
ବସୁନ୍ଧରା ଯେହ୍ନେ ଥିଲେ ଉଦ୍ଧାରି,
ଜ୍ୟୋତ୍ସ୍ନାକୁ ଯେସନ ଶରତ କାଳ
ପ୍ରକାଶେ ବିନାଶି ଜଳଦମାଳ,
ସୀତା ସତୀଙ୍କି ତେସନ
ଉଦ୍ଧାରିଲେ ରବିକୁଳ-ରବି ରାମ ସଂହାରି ରଣେ ରାବଣ ।

ସେ ସୀତା ଚରଣେ ଶିର ଭରତ
ଲଗାଇଲେ ଭକ୍ତିଭାବେ ତଦ୍ଗତ,
ଜାନକୀ ପୟର ପବିତ୍ର ଅତି,
ନ ଘେନିଲେ ଲଙ୍କାପତି ପ୍ରଣତି,
ରାମ ପ୍ରେମେ ଜଟାଧର
କୈକେୟୀନନ୍ଦନ କ୍ଷିତି ଲୋଟି ତହିଁ ଧୃତ ହେଲେ ପରସ୍ପର ।

ଧାଇଁଲେ ଅଗ୍ରତେ ବ୍ୟଗ୍ର ପ୍ରଜାଏ,
ପଛେ ପୁଷ୍ପଶୋଭୀ ପୁଷ୍ପକ ଧାଏଁ,
ଅର୍ଦ୍ଧ କ୍ରୋଶ କ୍ଷଣେ ହୁଅନ୍ତେ ପାର,
ଦିଶିଲା ବସନ-ଗୃହ ଉଦାର
ଅଯୋଧ୍ୟାର ଉପବନେ,
ଆନନ୍ଦେ ବୈଦେହ-ନନ୍ଦନାରମଣ ମିଳିଲେ ତାହିଁ ସଗଣେ ।



(୧୭)

# ନୀତିରତ୍ନମାଳା



୧

ପ୍ରତ୍ୟକ୍ଷ ଦେବତା ବୋଲି ମଣିବ ହେ ଜନନୀ ଜନକେ,
କରିବ ଦୁହିଙ୍କ ସେବା ପ୍ରାଣପଣେ ବାଳକା ବାଳକେ ।
ଶୁଣାଇବ ମୃଦୁବାଣୀ ଆଚରିବ ପ୍ରିୟ ଅନୁକ୍ଷଣ,
ସୁପୁତ୍ର ସୁକନ୍ୟା ହୋଇ ସୁପବିତ୍ର କର ହେ ଜୀବନ ।
ଅଟନ୍ତି ପରମଗୁରୁ ପିତା ମାତା ଘେନ ଏହି ଶିକ୍ଷା,
ଆକାଶଠୁଁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା !

୨

ନୁହେ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯାର ଶିର,
ଯୌବନେ ଯେ ଜ୍ଞାନେ ରତ ଦେବେ ତାକୁ ବୋଲନ୍ତି ସ୍ଥବିର ।
ଯୌବନେ ଧାର୍ମିକ ହେବ, ଏ ଜୀବନ ଯେଣୁ ଅନିଶ୍ଚିତ,
କେ ଜାଣେ କାହାର ଆଜ ମୃତ୍ୟୁକାଳ ହେବ ଉପସ୍ଥିତ ।
ସୁଚରିତ୍ର ସୁଶୀଳ ଯେ ପ୍ରସନ୍ନାତ୍ମା ଆତ୍ମଜ୍ଞ ସୁମତି,
ଇହଲୋକେ ଲଭେ ମାନ, ପରଲୋକେ ଲଭଇ ସଦ୍ଗତି ।

୩

ବଚନ ମନନ ଯାର ସତ୍ୟପୂତ ପୁଣି ସୁସଂଯତ,
ପ୍ରଶାନ୍ତ ଯାହାର ମନ ପୁଣ୍ୟକର୍ମେ ସର୍ବଦା ନିରତ ।
ଅଧର୍ମର ଭାବ ଯେହୁ ହୃଦୟରେ ନ ପୋଷଇ କ୍ଷଣେ,
ପବିତ୍ର ଜୀବନ ତାର ଧନ୍ୟ ଧନ୍ୟ ଏ ମର୍ତ୍ତ୍ୟଭୁବନେ ।
ନିଜେ ସେ ନିଜର ବନ୍ଧୁ ଜିତେନ୍ଦ୍ରିୟ ଅଟଇ ଯେ ଜନ,
ନିଜେ ସେ ନିଜର ବୈରୀ ରିପୁଙ୍କୁ ଯେ ନ କରେ ଦମନ ।

୪

ଲଭି ଏ ମନୁଷ୍ୟ-ଜନ୍ମ ଲଭିଣ ଏ ବୁଦ୍ଧି ଓ ହୃଦୟ,
ଆତ୍ମଘାତୀ ସେ ଜନ ଯେ ପରମାୟୁ ବୃଥା କରେ କ୍ଷୟ ।
ପ୍ରଥମ ବୟସେ କର ସେହି କର୍ମ ଯଦ୍ଦ୍ୱାରା ଜୀବନ
ହୋଇବ ଉତ୍ତର-କାଳେ ସୁଖ ଆଉ ଶାନ୍ତିର ଭବନ ।

ଧନହୀନ ବୋଲି କେବେହେଁ ଅପଯଶାକୁ ଅବଜ୍ଞା ନ କର,
ଉଦ୍‌ଯୋଗୀ ଲଭଇ ଲକ୍ଷ୍ମୀ, ତେଣୁ କାର୍ଯ୍ୟେ ହୁଅ ହେ ତତ୍ପର ।

୫

କାଳଚକ୍ରର ଆବର୍ତ୍ତନେ ଭୁଞ୍ଜନ୍ତି ସୁଖ ଦୁଃଖ ଜନେ ।
ସୁଖ ବା ଦୁଃଖ ଆସୁ ଯାହା, ବହିବ ଧୀର-ଚିତ୍ତେ ତାହା ।
ଧନ-ଅଭାବେ ଧର୍ମ-ପଥ ନ ଛାଡ଼ି ହୋଇ ଅସଂଯତ ।
ନିର୍ମଳ ସୁଖ ବାଞ୍ଛ ଯଦି, ସନ୍ତୋଷେ ଥିବ ନିରବଧି ।
ନାହିଁଟି ଅନ୍ତ ପିପାସାର, ତେଣୁ ସନ୍ତୋଷ କର ସାର ।

୬

ମୌନେ କିମ୍ବା ବନବାସେ ମୁନି କେହି ନ ହୁଅଇ ନର,
ଆତ୍ମତତ୍ତ୍ୱ ଜାଣେ ଯେହୁ ମୁନିଶ୍ରେଷ୍ଠ ଅଟେ ସେ ନିକର ।
ନ ଇଚ୍ଛିବ ମୃତ୍ୟୁ କେବେ, ନ ଇଚ୍ଛିବ ପରମାୟୁ ଭୋଗ,
ପ୍ରତୀକ୍ଷା କରିବ କାଳ ଭୃତ୍ୟ ଯଥା ପ୍ରଭୁର ନିୟୋଗ ।

୭

ହେ ଗୃହସ୍ଥ, ହୁଅ ସଦା ବ୍ରହ୍ମନିଷ୍ଠ ଜ୍ଞାନପରାୟଣ,
ଯେଉଁ କର୍ମ ଆଚରିବ ବ୍ରହ୍ମପଦେ କର ସମର୍ପଣ ।
ଜ୍ୟେଷ୍ଠ ଭାଇଙ୍କର ଜାୟା ମାତୃ ସମା କନିଷ୍ଠ ଭ୍ରାତାର,
କନିଷ୍ଠର ପତ୍ନୀ ଅଟେ କନ୍ୟା ସମା ଏହି ସଦାଚାର ।
କନିଷ୍ଠ ଅଟନ୍ତି ଯେହୁ ଭାଇ ଭଗ୍ନୀ ତନୟ ତନୟା,
ସେମାନଙ୍କ ହିତ ସାଧ ହୃଦୟରେ ବହି ସ୍ନେହ ଦୟା ।
ଘୃଣା ବା ଅବଜ୍ଞା କେବେ ନ ବହିବ ଦାସ ଦାସୀ ପ୍ରତି,
ଆଚରିବ ତାଙ୍କ ଉପକାର ହୋଇଣ ପ୍ରସନ୍ନମତି ।
ପିତୃବ୍ୟ ମାତୁଳ ଆଦି ପିତୃଷ୍ୱସା ପୁଣି ମାତୁଳାନୀ,
ସେମାନଙ୍କୁ ଭକ୍ତି କର ସଦା, ଗୁରୁ ଜ୍ୟେଷ୍ଠା ଭଗ୍ନୀ ।
ଜ୍ୟେଷ୍ଠ ଭ୍ରାତା ପିତା ସମ, ଜ୍ୟେଷ୍ଠା ଭଗ୍ନୀ ଜନନୀ ସମାନ,
ପତି ପତ୍ନୀ ପରସ୍ପର ପ୍ରାଣ ସମ, ଏଥୁ ନୁହେ ଆନ ।
ପିତାମହ ମାତାମହ ପିତାମହୀ ମାତାମହୀ ତଥା
ଅଟନ୍ତି ପରମଗୁରୁ, ସେମାନଙ୍କୁ ପୂଜ ହେ ସର୍ବଥା ।
ଅର୍ଦ୍ଧ ମାତ୍ର ଥାଏ ନର ଧର୍ମପତ୍ନୀ ନ ଲଭିବାଯାଏ,
ବାଳକବାଳକାଶୂନ୍ୟ ନିକେତନ ଶ୍ମଶାନ ପରାଏ ।
ଅଟନ୍ତି ଗୃହର ଲକ୍ଷ୍ମୀ ସତୀ ନାରୀ ସନ୍ତାନଜନନୀ,
ପୂଜନୀୟା ମହାଭାଗା ରମଣୀ ଏ ସଂସାରର ମଣି ।

ପତି ପତ୍ନୀ ଦୁହିଙ୍କର ଏହି ଅଟେ ଧର୍ମ ସନାତନ,
କେବେହେଁ ଲଙ୍ଘିବେ ନାହିଁ ପରସ୍ପରେ ଯାବତଜୀବନ ।
ଧର୍ମେ କର୍ମେ ଭୋଗେ ଯୁକ୍ତ ପରସ୍ପର ବିଶୁଦ୍ଧ ପ୍ରେମରେ,
ଦମ୍ପତିଜୀବନ ଧନ୍ୟ ମଧୁମୟ ବିଶ୍ୱ ଚରାଚରେ ।
ଯେଉଁ ଗୃହେ ପରସ୍ପରେ ପରିତୁଷ୍ଟ ପତ୍ନୀ ଆଉ ପତି,
ସେ ସନ୍ତୋଷମୟ ଗୃହ ମଙ୍ଗଳର ଚିରନିବସତି ।
ଧର୍ମେ କର୍ମେ ସହଚରୀ ଶ୍ଲାଘ୍ୟା ପରି ପତି ଅନୁଗତା,
ସ୍ୱଚ୍ଛମନା ସୁଭାଷିଣୀ ସଦାଗୃହୀ ସର୍ବଦା ସଂଯତା,
ଗୃହର ଯାବତ କାର୍ଯ୍ୟେ ସଦା ରତା ସୁପ୍ରସନ୍ନମନେ,
ଧନ୍ୟା ପୁତ୍ରକନ୍ୟାବତୀ କୁଟୁମ୍ବିନୀ ଏ ମର୍ତ୍ତ୍ୟଭୁବନେ ।
ଗୃହସ୍ଥ ପାଳିବେ ଯତ୍ନେ ପତ୍ନୀ ଆଉ ପୁତ୍ରକନ୍ୟାଗଣେ,
ଆଚରିବେ ସ୍ୱଜନର ବାନ୍ଧବର ହିତ ପ୍ରାଣପଣେ;
ବିଦ୍ୟା ଶିଖାଇବେ ପୁତ୍ର କନ୍ୟା ଉଭୟେ ଯତନେ,
ବିତରି ଧର୍ମର ଜ୍ଞାନ ଚଳାଇବେ ଧର୍ମର ଶାସନେ ।



(୧୭)

## ଦୃଷ୍ଟାନ୍ତମାଳା



୧

ଶିଳାରେ ଘଷିଲେ ଚନ୍ଦନ
ସୁବାସ କରେ ବିତରଣ ।
ଯେସନେ ସଂସାର କଷଣେ
ବଢ଼ଇ ସାଧୁ ପ୍ରେମଧନେ ।

୨

କାଞ୍ଚନ ଅଗ୍ନି ପରୀକ୍ଷାରେ
ଝଟକେ ତେଜେ ଯେପ୍ରକାରେ,
ସଜ୍ଜନ ଦୁଃଖାଗ୍ନିରେ ଦହି
ପୁଣ୍ୟର ତେଜରେ ଶୋଭଇ ।

୩

ଏକାଗ୍ର ଦୃଷ୍ଟି ନିରନ୍ତର
ରଖି ଯେ ଲକ୍ଷ୍ୟେ ପେଷେ ଶର,
ଲକ୍ଷ୍ୟ ଭେଦଇ ସେହି ଜନ
ଲଗାଇ ତହିଁ ପ୍ରାଣ ମନ ।
ସିଦ୍ଧି ଲଭିବ ଯଦି ନରେ,
ତେବେ ଏକାଗ୍ର ମାନସରେ
ସ୍ଥିର ସଂକଳ୍ପ ଅନୁସରି
କୌଶଳେ କର୍ମ ଯାଅ କରି ।

୪

ଫଳଭରେ ଅବନତ ଯଥା ତରୁଗଣ,
ଜଳଭରେ ଅବନତ ନୀରଦ ଯେସନ,
ନାନାଗୁଣେ ସେହିପରି ନମ୍ର ସାଧୁଜନେ,
ଐଶ୍ୱର୍ଯ୍ୟରେ ମଧ୍ୟ ଗର୍ବ ନ ବହନ୍ତି ମନେ ।

୫

ପାଦପ ମସ୍ତକେ ଯଥା ରୌଦ୍ରତାପ ସହି
ଛାୟାଦାନେ ପଥିକର ସନ୍ତାପ ହରଇ ।
ସ୍ୱସୁଖକାମନା ତେଜି ବହୁ କ୍ଲେଶ ସହି
ସାଧୁଜନ ତଥା ଲୋକ-କଲ୍ୟାଣ ସାଧଇ ।

୬

ଅସାଧୁ ହୁଅଇ ସାଧୁ ସାଧୁର ସଙ୍ଗରେ,
ନିର୍ମଳ ପଙ୍କିଳ ଜଳ ନିର୍ମଳୀ ଯୋଗରେ ।

୭

ସଲିଳ ସଞ୍ଚୟି କରି ବାରିଦ ଯେସନ
ଲୋକହିତ ଲାଗି ତାହା କରଇ ବର୍ଷଣ ।
ସାଧୁଜନ ସେହିରୂପେ ଅରଜଣ ଧନ
ଲୋକହିତ ଲାଗି ତାହା କରେ ବିତରଣ ।

୮

କାଞ୍ଚନ ବିଶୁଦ୍ଧ କିମ୍ବା ସେ ଅଟେ ମିଶ୍ରିତ,
ଜଣାପଡ଼େ ଅନଳରେ ହେଲେ ପରୀକ୍ଷିତ ।
ସାଧୁତା ବା ଅସାଧୁତା ମନୁଷ୍ୟର ତଥା
ବିପଦକାଳରେ ଜଣା ପଡ଼ଇ ସର୍ବଥା ।

୯

ବାଲୁଙ୍ଗା ଉପାଡ଼ି କ୍ଷେତୁଁ କୃଷକ ଯେସନ
ଶସ୍ୟକୁ ବଢ଼ାଏ କରି ବିବିଧ ଯତନ ।
ଉପାଡ଼ିଣ ହୃଦୟରୁ କୁପ୍ରବୃତ୍ତିଗଣ
ସୁଜନେ ସଦ୍‌ଗୁଣଚୟ କରନ୍ତି ବର୍ଦ୍ଧନ ।



(୧୮)

## ନବ-ବସନ୍ତ-ଭାବନା



(୧)

ଋତୁକୁଳପତି ବସନ୍ତ
ଋତୁ-ଚକ୍ର-ଅୟନେ
ସମାଗତ ପୁଣି ମଧୁରେ
ମଧୁମୟ ଭୁବନେ ।
ମଳୟ ସମୀର କୋମଳେ
ଫେଡ଼ି ଦକ୍ଷିଣଦ୍ୱାର
ନବ ଶୁଭବାର୍ତ୍ତା ପ୍ରଶ୍ନରେ
ଢୋଇଅଛି ବାହାର ।
ତରୁ ଲତା ପାଇ ସେ ବାର୍ତ୍ତା
ପୁଷ୍ପବିକାଶ ଛଳେ
ହସନ୍ତି ଆହା କି ଉଲ୍ଲାସେ
ଜଳେ କିଅବା ସ୍ଥଳେ
ପଲକେ ପଲ୍ଲବ-ଦୁକୂଳ
ପିନ୍ଧି ଧରଣୀ-ରାଣୀ
ପୁଲକପୂରିତ ଅନ୍ତରେ
ପୂଜେ ବିଶ୍ୱବିନ୍ଦାଣୀ ।
କି ମନ୍ତ୍ର ଲଭିଛି ଅଟବୀ—
କଳ-ପିକ ସୁସ୍ୱନେ
ଉନ୍ମାଦଇ କୁହୁଝଙ୍କାରେ
ମୁହୁର୍ମୁହୁ ଭୁବନେ ।
ମଧୁର ସୌରଭତରଙ୍ଗେ
ଦଶଦିଗ ପ୍ଲାବିତ,
ମଧୁଶ୍ରୀ ନଗର ମାଧବୀ—
ଭାବେ ନିଜେ ମୋହିତ ।
ଲଗାଇ ନିଖିଳ-ରଞ୍ଜନ
କିବା ଅଞ୍ଜନ ଡୋଳେ
ପଶୁ ପକ୍ଷୀ କୀଟ ପତଙ୍ଗେ
ରଙ୍ଗେ ଭ୍ରମନ୍ତି ଭୋଳେ ।

ମୃଗ ମୃଗୀ କପି କରିଣୀ
ଅଳି ବିହଙ୍ଗକୁଳ,
ସ୍ଥାବର ଜଙ୍ଗମ ସକଳେ
ମଧୁ-ରସେ ଆକୁଳ ।
ଆସନ୍ତେ ବସନ୍ତ-ଉତ୍ସବ
ଏବେ ଭବ-ଭବନେ,
ପରିଣତ ଜୀର୍ଣ୍ଣ ଧରଣୀ
ନବ ନନ୍ଦନବନେ ।
ପ୍ରାଣ-ମନ୍ଦାକିନୀ-ପ୍ରବାହ
ମୃତ ଜଡ଼ ପାଷାଣେ
ସଞ୍ଚାରଇ ନବ ପୁଲକ
ଅଦ୍‌ଭୁତ ବିଧାନେ ।
ନବୀନ ଯୌବନ-ପ୍ରବାହ
କୋଟି କୋଟି ଆକାରେ
ବିକାଶଇ ଶୋଭା ମୂରତି
ଏହି ଜଡ଼ସଂସାରେ ।
ବସନ୍ତ-ମାଧୁରୀ-ମଦିରା—
ପାନେ ମାତି ଭୁବନ
ଉଦାର ଉଦାମ ଉଲ୍ଲାସେ
ଭୁଞ୍ଜୁଅଛି ଯୌବନ ।

(୨)

କିନ୍ତୁ କାହିଁକି ରେ ହୃଦୟ
ଆଧି-ବ୍ୟାଧି-ଆଳୟେ
ଜରାଜୀର୍ଣ୍ଣ ମୃତ ପରାୟେ
ପଡ଼ି ରହିଛୁ ଭୟେ ।
ସଙ୍କୁଚିତ ଘୋରସଙ୍କଟେ
ଜର ଜର ବିଷାଦେ,
ନିରାଶା-ପ୍ରହାରେ ନିର୍ଜୀବ
ଅବସନ୍ନ ପ୍ରମାଦେ ।
ଜୀବନ-ଯୌବନ-ଉତ୍ସାହ—
ସ୍ରୋତ ଯାଇଛି ଶୁଖି,
ଲକ୍ଷ୍ମୀଛଡ଼ା ହୋଇଅଛୁ ତୁ
ହୀନ କୁତ୍ସିତ ଦୁଃଖୀ ।

ଚଉପାଶେ ଦେଖ ଦାରୁଣ
ମୋହ ଦୁର୍ଭିକ୍ଷ ଘୋର,
ଅସ୍ଥିଚର୍ମସାର କଙ୍କାଳ
ମାତ୍ର ରହିଛୁ ତୋର ।
ଇନ୍ଦ୍ରିୟବାସନା-ପିଶାଚୀ
ତୋର ପ୍ରାଣଶୋଣିତ
ମହର୍ମୁହୁ ଶୋଷି ନେଉଛି
ଅରେ ଦଗଧ ଚିତ୍ତ ।
ଅମୃତ-ସନ୍ତାନ-ପଦବୀ
ଲଭ ମୃତ୍ୟୁ-ତମିରେ
ହନ ତୋର ଗଲା ବୃଥିଲେ
କର୍ମଭୂମି ମହୀରେ ।

(୩)

ଏ ଘୋର ଦୁର୍ଗତି ବିଷୟ
ଦିନେ ଭାଳିଲି ବସି,
ରୌଦ୍ରବେଗେ ହସିଲା ଅନ୍ଧାର
ବୁଦ୍ଧି ନ ପାରେ ପଶି ।
ଅପସରି ଗଲା ସହସା
ସେହି ଘୋର ତିମିର,
ଉଇଁଲା ହୃଦୟ-ଆକାଶେ
ମହାଜ୍ଞାନ-ମିହିର ।
ଫୁଟିଲା ମୋ ଜ୍ଞାନ-ନୟନ—
ପଦ୍ମ ସେ ରବିକରେ,
ଦେଖିଲି, ଯା ଚର୍ମନୟନେ
ଦେଖି ନାହିଁ ବିଶ୍ୱରେ ।
ହୃଦୟକନ୍ଦର ଧ୍ୱନିତ
ହେଲା ନବ ସଙ୍ଗୀତେ,
ଶୁଣିଲି ଯା ଶୁଣି ନ ଥିଲି
ଧ୍ୟାନସ୍ତିମିତ ଚିତ୍ତେ ।
ଆକାଶ-ସମ୍ଭବା ଭାରତୀ
ଦିବ୍ୟ ଆଶ୍ୱାସଭରେ
ଭାଷିଲେ ଏସନ ସମ୍ବୋଧି
ହତାଶ୍ୱାସ ଏ ନରେ ।

(୪)

ଅନାଇଣ ବାରେ ଦେଖ ରେ
ଜୀବ ! ନିଜ ଅନ୍ତରେ,
ଅନନ୍ତ-ଜୀବନ-ଆଧାର
ସତ୍ୟ ଶିବ ସୁନ୍ଦରେ ।
ଅନନ୍ତ ସରସ ବସନ୍ତ
ମଧୁମୟ ଉତ୍ସବ,
ଅନନ୍ତ ଜୀବନ ଯୌବନ
ମହାନନ୍ଦ-ବିଭବ,
ଲେଖିଛନ୍ତି ତୋର ଲଲାଟେ
ପ୍ରାଣବିଧାତା ତୋର,
ତେଣୁ ଛିଣ୍ଡାଅ ତୁ ଭିତରେ
ମୋହ-ବନ୍ଧନ ଡୋର ।
ଆସକ୍ତି ଲାଳସା କେବଳ
ମୃଗତୃଷ୍ଣିକା ଭବେ,
ପରହର ତାହା ଝଟେଇ
ଧାଅ ଶ୍ରେୟ-ଗୌରବେ ।
ପ୍ରେୟପଥ ତେଜ ଶ୍ରେୟର
ପଥ ଆଶ୍ରୟ କର,
ବ୍ରହ୍ମପଦେ ପ୍ରାଣ ବିସର୍ଜି
ନବଜୀବନ ଧର ।
ଜ୍ୱଳନ୍ତ ଇନ୍ଧନ ପରାୟେ
ପ୍ରେମ-ଅନଳେ ଜଳ
ପାପ ପ୍ରଲୋଭନ କ୍ଷଣ ରେ
ହୋଇ ଧରମେ ବଳୀ ।
ସାଧ ଏହି ପୁଣ୍ୟମନ୍ତ୍ର,
ଲଭିବୁ ରେ ଅନ୍ତରେ
ନିତ୍ୟୋତ୍ସବମୟ ବସନ୍ତ
ଭବ-ମରୁପ୍ରାନ୍ତରେ ।
ଜୀବନର ଉତ୍ସ ନିର୍ମଳ
ଶୁଦ୍ଧ ହେବ ଖଣକେ,
ବହିବ ଅନ୍ତରେ ଉତ୍ସବ—
ଧାର ମହାପୁଲକେ ।

ଆଶା-ପାରିଜାତ ଫୁଟିବ
ହୃଦ-ନନ୍ଦନବନେ,
ଜ୍ଞାନ-ଭକ୍ତି-କର୍ମ-ସୌରଭ
ବ୍ୟାପି ଯିବ ଜୀବନେ ।

ସ୍ୱରଗର ଶିଳ୍ପୀ ସମ୍ପଦେ
ହେବୁ ତୁହି ସୁନ୍ଦର,
ଅମୃତ ସଙ୍ଗୀତ ଝଙ୍କାରେ
ଢଳିଯିବ ଅନ୍ତର ।



( ୧୯ )

## ଏ ସୃଷ୍ଟି ଅମୃତମୟ ହେ



୧

ମଧୁମୟ ସୃଷ୍ଟି          ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ ।
ଜାଗ ନର ନାରୀ          ଅମୃତ-ସନ୍ତତି,
ପିଅ ସେ ଅମୃତ ପୟ ହେ ।
ଚିର ସେ ଅମୃତ          ଦିବସ ଶର୍ବରୀ
ଗାଅ ଅମୃତର ଜୟ ହେ ।

୨

ମହାନ ଅନନ୍ତ          ଉଦାର ଆକାଶ
ତେଜେ ତେଜେ ତେଜୋମୟ ହେ ।
ସେ ବରେଣ୍ୟ ଭର୍ଗ          ମନ୍ଦାକିନୀଧାରା
ନାଶଇ ମରଣ ଭୟ ହେ ।
ସେ ତିମିର-ହର          ଗଗନର ଜ୍ୟୋତି
ପାନେ ହୁଅ ପୁଣ୍ୟାଶୟ ହେ ।

୩

ଅକୂଳ ଅତଳ          ମହାପାରାବାର
ନାଦେ ନାଦେ ନାଦମୟ ହେ ।
ଅବନୀ-ଲକ୍ଷ୍ମୀର          ପ୍ରସବିତା ସିନ୍ଧୁ
ନିବିଡ଼ ନୀଳମାଳୟ ହେ ।
ତରଳ ତରଙ୍ଗେ          ଢାଳେ ନାଦ-ସୁଧା
ପିଅ ସେହି ତାଳ ଲୟ ହେ ।

୪

ଅମ୍ବର-ଚୁମ୍ବିତ          ମହାମହୀଧର
ହିମେ ହିମେ ହିମାଳୟ ହେ ।
ଧରା-ରାଣୀ-ବେଣୀ          କେତେ ଗିରିଶ୍ରେଣୀ
ନିର୍ଝର-ମୁକୁତାମୟ ହେ ।
ସେ ଶିଳା-ନୀଳାରେ          ଘନୀଭୂତ ସୁଧା
ପାନେ ପାପ କର କ୍ଷୟ ହେ ।

୫

ଦିଗନ୍ତବିହାରୀ ବାୟୁ ସଦାଗତି
ଶ୍ୱାସେ ଶ୍ୱାସେ ଶ୍ୱାସମୟ ହେ ।
ମଳୟ-ଲାସ୍ୟେ ବା ପ୍ରଳୟ-ତାଣ୍ଡବେ
ସଦା ଚଞ୍ଚଳ ଅଥୟ ହେ ।
ସେ ମୃଦୁଳ ଲାସ୍ୟେ, ସେ ଚଣ୍ଡ ତାଣ୍ଡବେ
ଅମୃତର ଅଭିନୟ ହେ ।

୬

ମରୀଚିକା-ମୟ ତରୁ-ଶୂନ୍ୟ ମରୁ
ଘୋର ତୃଷା-ରଙ୍ଗାଳୟ ହେ ।
ଦିଗନ୍ତବିସ୍ତୃତ ଜ୍ୱଳନ୍ତ ପ୍ରାନ୍ତର
ପଥଶୂନ୍ୟ ନିରାଶ୍ରୟ ହେ ।
ସେ ମରୁ ଅନ୍ତରୁ ବହେ ସୁଧା-ସ୍ରୋତ
ପିଅ ସେହି ସୁଧାପୟ ହେ ।

୭

କୋମଳ ଶ୍ୟାମଳ ତୃଣ-ଶସ୍ୟ-କ୍ଷେତ୍ର
ବନ ତରୁ-ଲତାମୟ ହେ ।
ବର୍ଣ୍ଣେ ବିଚିତ୍ରିତ ଶବ୍ଦେ ମୁଖରିତ
ଗନ୍ଧେ ପୂରିତ-ହୃଦୟ ହେ ।
ଡାଳେ ଡାଳେ ଢାଳେ ମଧୁରସ-ଧାର
ଫଳ ପୁଷ୍ପ କିସଲୟ ହେ ।

୮

ନିତ୍ୟ ବହମାନ ନଦନଦୀମାନ
ସ୍ୱଚ୍ଛ ସରୋବର-ଚୟ ହେ,
ସମୀର ପରଶେ କଳକଳ-ନାଦୀ
ରମ୍ୟ ବୀଚିମାଳାମୟ ହେ ।
ବକ୍ଷରେ ବିମ୍ବିତ ଚନ୍ଦ୍ର ସୂର୍ଯ୍ୟ ତାର
ଜନମାଏ କି ବିସ୍ମୟ ହେ !

୯

ଭୂର୍ଲୋକ ଦ୍ୟୁଲୋକ ପୁଣି ଅନ୍ତରୀକ୍ଷ
ପ୍ରକୃତିର ନାଟ୍ୟାଳୟ ହେ,
ସ୍ଥାବର ଜଙ୍ଗମ ପଶୁ ବିହଙ୍ଗମ
କୀଟପତଙ୍ଗମୟ ହେ,
ରହସ୍ୟ-ପୂରିତ ଏ ଅସୀମ ବିଶ୍ୱ
ଅମୃତେ ଅମୃତମୟ ହେ !

୧୦

ପୂର୍ବାଶାର ଦ୍ୱାରେ    ଉଭା ଉଷା-ରାଣୀ
ସୂଚି ଭାନୁ-ଅଭ୍ୟୁଦୟ ହେ,
ସ୍ନିଗ୍ଧ ଛାୟାମୟୀ    ସନ୍ଧ୍ୟା ମହାଦେବୀ
ଆଦେଶିଣ ଧ୍ୟାନ ଲୟ ହେ,
ଆଲୋକ-ବିଳାସୀ    ଉଜ୍ଜ୍ୱଳ ଦିବସ
କର୍ମ-ଜାଗରଣମୟ ହେ,
ତମସ୍ୱିନୀ ଅବା    ଜ୍ୟୋତ୍ସ୍ନାମୟୀ ରାତ୍ରି
ବିଶ୍ରାମର ସୁଷମୟ ହେ,
ବସନ୍ତ ନିଦାଘ    ବରଷା ଶରତ
ହିମଶୀତଋତୁଚୟ ହେ,
ପ୍ରଶାନ୍ତ ଗମ୍ଭୀର    ମଧୁର ରୁଚିର
ଦିବ୍ୟ ସୁଧା-ସ୍ୱାଦମୟ ହେ ।

୧୧

ଗୃହ ପରିବାର    ମାନବସମାଜ
ନର ନାରୀ ଲୋକାଳୟ ହେ,
ପିତା ମାତା ଭାଇ    ଭଗିନୀ ଦମ୍ପତୀ
ତନୟା କିମ୍ବା ତନୟ ହେ,
ଗୁରୁଜନ ବନ୍ଧୁ    କିମ୍ବା ଅନ୍ତେବାସୀ
ଆଶୀର୍ବାଦ ପରିଚୟ ହେ,
ଦୟାନିକେତନ    ଧର୍ମାଧିକରଣ
ବିଦ୍ୟାଳୟ ଦେବାଳୟ ହେ,
ଶ୍ରଦ୍ଧା ଭକ୍ତି ପ୍ରୀତି    ଦୟା ଶୁଭାକାଂକ୍ଷା
ପୁଣ୍ୟ ବିଶ୍ୱାସ ବିନୟ ହେ;
ଏ ସକଳ ମଧ୍ୟେ    ନିବସନ୍ତି ବିଭୁ
ଶାଶ୍ୱତ ଅମୃତମୟ ହେ ।
ଗରଳୁ ଅମୃତ    କରନ୍ତି ବାହାର
ଅନନ୍ତ ଅମୃତାଳୟ ହେ ।
ପରମ ଜନକ    ପରମ ଜନନୀ
ତାଙ୍କ ପଦେ ବରାଭୟ ହେ ।
ସେହି ବରାଭୟେଁ    ଆନନ୍ଦାମୃତର
ହୁଅ ଶିଶୁ ସ୍ତନନ୍ଧୟ ହେ ।



(୨୦)

## ଆଶା

୧

ଏ ଭବ-ଭୈରବ-ବନେ    ଶ୍ରାନ୍ତ ଅବସନ୍ନ
ପଥିକ ଏକାକୀ,
ଭ୍ରମଇ ହରାଇ ପଥ    ନିରାଶ ବିଷଣ୍ଣ
ଦୁଃଖେ ଡାକି ଡାକି ।
ସର୍ବଗ୍ରାସୀ ଘୋର ମୋହ    ଅନ୍ଧାରେ ମଗନ
ଦିଗ ଦିଗନ୍ତର ।
ସର୍ବଗ୍ରାସୀ ସ୍ୱାର୍ଥମେଘେ    ଆବୃତ ଗଗନ
ଘୋର ଭୟଙ୍କର ।
ଈର୍ଷାର ବିକଟ ହାସ୍ୟ    ଚପଳାସ୍ଫୁରିତ
ଧରଷେ ନୟନ ।
କ୍ରୋଧ ଦ୍ୱେଷ ଗରଜନ    ଭୟାବହ ଅତି
ରୋଧଇ ଶ୍ରବଣ ।
ହିହିରବେ ବହେ ପାପ—    ପ୍ରଳୟ ପବନ
କମ୍ପେ ବସୁମତୀ ।
ତ୍ରାସେ ବିକମ୍ପିତ ସ୍ତବ୍ଧ    ପାନ୍ଥ-ପ୍ରାଣ-ମନ
ନ ଦିଶଇ ଗତି ।
ମାତୃଅଙ୍କ ହରାଇଣ    ଶିଶୁ ଅସହାୟ
ଯେସନ ଅନ୍ଧାରେ,
କାନ୍ଦଇ ତେସନ ପାନ୍ଥ    ହୋଇ ନିରୁପାୟ
ଆର୍ତ୍ତି ହାହାକାରେ ।

୨

କାନ୍ଦିଣ ବୋଲଇ "ମା ଗୋ    ଜଗତ ଜନନି !
ଏ କି ଲୀଳା ତୋର ।
କାହିଁକି ଝଟିକା-ମୟୀ    ଏ ଘୋର ରଜନୀ,
ଏ ଅରଣ୍ୟ ଘୋର ?

କାହିଁ ଛାଡ଼ିଗଲୁ ମା ଗୋ ! ଏ ଭୀଷଣ ବନେ
ଦୁର୍ବଳ ତନୟେ !
ପଥ ନ ଜାଣଇ, ନାହିଁ ସାମର୍ଥ୍ୟ ଚରଣେ,
ସ୍ତବଧ ମୁଁ ଭୟେ ।

ଶୈଶବେ ଯୌବନେ ମା ଗୋ ! କି ଉଜ୍ଜ୍ୱଳ ଦୃଷ୍ଟି
ଦେଲୁ ଏ ନୟନେ ।
କେମନ୍ତ ଉତ୍ସାହ ପ୍ରୀତି ବିଶ୍ୱାସର ସୃଷ୍ଟି
କଲୁ ଏ ଜୀବନେ ।

ଏବେ ମା ଗୋ ବିଷାଦର ଜୀବନ୍ତ ମରଣେ
କାହିଁକି ଏ ପ୍ରାଣ
ଏକାନ୍ତ ଅବଶ ଅବ— ସନ୍ନ ଅନୁକ୍ଷଣେ
ହତ ବୁଦ୍ଧି ଜ୍ଞାନ ।

ଏ ମୃତ୍ୟୁ ସଙ୍କଟେ ମା ଗୋ ! ନ ରକ୍ଷିଲେ ତୁହି
ଆଉ କେ ରକ୍ଷିବ ?
କାତରେ ବିକଳେ ଆଜି ଡାକୁଅଛି ମୁହିଁ
ଦୀନହୀନ ଜୀବ ।

ଏ ଘୋର ଯନ୍ତ୍ରଣା ଆଉ ନ ପାରଇ ସହି
ଦେ ମା ଦରଶନ ।
ପ୍ରକାଶ ଶ୍ରୀମୁଖ ଜ୍ୟୋତି ଏବେ କୃପା ବହି
ମୁଁ ଯେ ଅକିଞ୍ଚନ ।”

୬

ଏମନ୍ତ ସେ ପାନ୍ଥ ଆହା କାନ୍ଦଣ କାତରେ
ହୋଇଲା ମୂର୍ଚ୍ଛିତ ।
ସହସା ଆକାଶ-ବାଣୀ ତା ହୃଦ-କନ୍ଦରେ
ହେଲା ପ୍ରବାହିତ ।

“ଉଠ ବତ୍ସ, ଅଛି ପାଶେ, ନୟନ ଫିଟାଇ
ଦେଖରେ ତୁ ବାରେ ।
ଭ୍ରାନ୍ତିବଶେ ମୋର କୋଡ଼ ଛାଡ଼ି କାହିଁପାଇଁ
କାନ୍ଦୁ ନିରାଶାରେ ?

ଦେଖ ରେ ନୟନ ଫେଡ଼ି ମୋ ନୟନପ୍ରଭା
ଆଶା-ପ୍ରଭା-ମୟୀ ।
ବିନାଶି ତିମିର-ରାଶି ବିଶ୍ୱାସ-ସୁଲଭା
ବିଶ୍ୱ ଉଜ୍ଜଳଇ ।”

୪

ହୃଦୟର ସ୍ତରେ ସ୍ତରେ ସଞ୍ଚରିଲା କ୍ଷଣେ
ସେ ସ୍ୱର୍ଗ ସଙ୍ଗୀତ ।
ଭାଙ୍ଗିଲା ବିଷମ ମୋହ, ଚିତ୍ତ ନବ ପ୍ରାଣେ
ହେଲା ତରଙ୍ଗିତ ।

ନୟନ ଉନ୍ମୀଳି ପାନ୍ଥ ଦେଖେ ଆଚମ୍ବିତ
ଅପୂର୍ବ ଦର୍ଶନ ।
ନାହିଁ ସେ ଅନ୍ଧାର ଘୋର, ବିଲୁପ୍ତ ଚକିତେ
ସେ ଭୈରବ ବନ ।

ଆଲୋକ-ପ୍ରବାହ ଦଶ— ଦିଗେ ଉଛୁଳଇ
ନାଶି ଅନ୍ଧକାର ।
ସେ ଆଲୋକ-ସୁଧାପାନେ ପ୍ରାଣେ ଉପୁଜଇ
ଆଶ୍ୱାସ ଅପାର ।

ସହସା ଅଗ୍ରତେ ଉଭା ଦେବୀ ପ୍ରଭାମୟୀ
ସହାସ ମୂରତି ।
ବେନି ପାର୍ଶ୍ୱେ ବେନି ସଖୀ ଦିବ୍ୟ ତେଜୋମୟୀ
କରନ୍ତି ଆରତି ।

ବାଳାର୍କ କିରୀଟରୂପେ ଉଜଳେ ଭୁବନ
କଜ୍ଜ୍ୱଳ-ଚିକୁରେ ।
ନିଶାନ୍ତ ତାରକା ବର୍ଷି ପ୍ରଶାନ୍ତ କିରଣ
ନେତ୍ରଯୁଗେ ସ୍ଫୁରେ ।

ଚରଣେ କିରଣମୟ ଶତଦଳ ଦଳ
ଉଠଇ ବିକଶି ।
ସଖୀଏ ନିଅନ୍ତି ତୋଳି ସେହି ଶତଦଳ
ହର୍ଷେ ହସି ହସି ।

ମହାଦେବୀ ଦେହ ପ୍ରଭା ଦିଗଙ୍ଗନାଙ୍କର
ଜଳଦ-ବସନେ
ଇନ୍ଦ୍ରଧନୁ ବର୍ଣ୍ଣୋତ୍ସବ ସୃଜେ ମନୋହର
ଅନନ୍ତ ଗଗନେ ।

ପାରିଜାତ-ପୁଷ୍ପମୟ ଶ୍ରୀଅଙ୍ଗୁ ପ୍ରସରି
ସ୍ୱର୍ଗୀୟ ସୌରଭ
ସକଳ ସନ୍ତାପ ଶ୍ରାନ୍ତି ଅବସାଦ ହରି
ପୂର୍ଣ୍ଣ କରେ ନଭ ।

ମହାଦେବୀ-ଆବିର୍ଭାବେ ସ୍ଥାବର ଜଙ୍ଗମ
ପୁଲକେ ପୂରିତ ।
ବିକଶି ଉଠଇ ପୁଷ୍ପ, ଗାଏ ବିହଙ୍ଗମ
ଲଳିତ ସଙ୍ଗୀତ ।
ଆନନ୍ଦେ ବିହ୍ୱଳ ପାନ୍ଥ ଭକ୍ତିପୁଲକିତ
ନମଇ ପଦ୍ମରେ ।
ଆନତ କରନ୍ତେ ଶିର ପ୍ରଭା ଲୋକାତୀତ
ନୟନେ ସଞ୍ଚରେ ।
ସହସା ପ୍ରକାଶେ ମହା— ଦେବୀ ପଦତଳେ
ସ୍ୱରଗ ତୋରଣ !
କୋଟି ପ୍ରଭାକର ଜିଣି ମହାତେଜେ ଜ୍ୱଳେ
ବିଚିତ୍ର ଶୋଭନ ।
ତୋରଣ-ଲଲାଟେ ଶୋହେ ଇନ୍ଦ୍ରଧନୁାକାର
ସ୍ୱର୍ଣ୍ଣବର୍ଣ୍ଣାବଳୀ !
ଅହା କି ଅମୃତମୟ ଘୋଷଣା ଉଦାର
ବ୍ରହ୍ମାଣ୍ଡ ଉଜଳି—
"ଭକ୍ତି-ପ୍ରୀତି-ସହଚରୀ— ଆଶା ଅଧିଷ୍ଠିତ
ଏ ସ୍ୱର୍ଗ ତୋରଣ ।
ସଦା ଅବାରିତ-ଦ୍ୱାର ପ୍ରଭା-ବିଭାସିତ
ବିଶ୍ୱ-ବିମୋହନ ।
ଆସ ଆସ ପାପୀ ତାପୀ ଯେ ଅଛ ଜଗତେ
ସେବି ଦେବୀପଦ
ପ୍ରବେଶ ସ୍ୱରଗଧାମେ ଭୁଞ୍ଜ ରେ ସନ୍ତତେ
ଅମୃତ ସମ୍ପଦ ।"

୫

ଆବର ଦେଖଇ ପାନ୍ଥ, ବେଢ଼ି ଚଉପାଶେ
ସ୍ୱର୍ଣ୍ଣବୀଣା କରେ
ଜ୍ୟୋତିର୍ମୟ ଦେବଦଳ ଗାଆନ୍ତି ଉଲ୍ଲାସେ
ମହାପ୍ରେମଭରେ—
"ଜୟ ଜଗଦମ୍ବା ନେତ୍ରି— ପ୍ରଭାମୂର୍ତ୍ତିମତୀ
ଆଶା ପ୍ରଭାମୟୀ ।
ବ୍ରହ୍ମାଣ୍ଡପାବନି ମାତଃ ଜୟ ଭଗବତି !
ଜୟ ପୁଣ୍ୟମୟି !"
ବାଜଇ ଅଯୁତ ବୀଣା ଅମୃତ ଝଙ୍କାରେ
କହି ଜୟଧ୍ୱନି ।
ଗମ୍ଭୀରେ ଧ୍ୱନିତ ସେହି ଜୟଜୟକାରେ
ଆକାଶ ଅବନୀ ।

---

( ୨୧ )

## ଭାରତ-ଭାବନା



( ୧ )

ଏହି କି ସେ ପୁଣ୍ୟ-ଭୂମି ଭୁବନ-ବିଦିତ,
ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ-ଗୌରବର ?
ଏହି କି ଭାରତ, ଯାର ମହିମା ସଙ୍ଗୀତ—
ଗମ୍ଭୀର-ଝଙ୍କାରେ ପୂର୍ଣ୍ଣ ଦିଗ ଦିଗନ୍ତର ?
ଏହି କି ସେ ସୁମନୋଜ୍ଞ ଆଶା-ସରୋବର,
ଯାର ଜ୍ଞାନାମୃତ ପାନେ କୃତାର୍ଥ ଧରଣୀ ?
ଯାର ତେଜେ ବିଭାସିତ ଦେଶ ଦେଶାନ୍ତର ?
ଏହି କି ସେ ବସୁଧାର ସମୁଜ୍ଜ୍ୱଳ ମଣି ?
ଏହି କି ଅମୃତମୟୀ ମୃତ୍ୟୁଞ୍ଜୟ-ସନ୍ତାନ-ଜନନୀ ?

( ୨ )

କେମନ୍ତେ ହା ବିଭୋ ! ଆଜ କରିବି ବିଶ୍ୱାସ,
ଏହି ସେହି ଦେବଭୂମି ବିଶ୍ୱବନ୍ଦନୀୟା ?
ଏହି ସେହି ତେଜୋବୀର୍ଯ୍ୟ-ଗୌରବନିବାସ,
ଯାହାର ସ୍ମରଣେ ଉଲ୍ଲସିତ ବୀର ହିୟା ?
ଏହି ସେହି ସର୍ବଦେଶ-ଅଗ୍ରଗଣନୀୟା ?
ମାନବ-ମାନସ-ଚକ୍ଷୁ ଜ୍ଞାନ-ଆଦିତ୍ୟର
ପବିତ୍ର ଉଦ୍ଭବସ୍ଥଳୀ, ତେଣୁ ମହନୀୟା,
ଯେସନ ପୂର୍ବାଶା, ଊଷା-ଉତ୍ସଙ୍ଗ ସୁନ୍ଦର,
ଶୈଶବୀୟ ଲୀଳାଭୂମି ଲୋକଚକ୍ଷୁ ଦେବ ତପନର ।

( ୩ )

କାହିଁ ସେହି ନଦୀ ପୁଣ୍ୟତୋୟା ସରସ୍ୱତୀ,
ଯାର କୂଳେ ଋଷିକଣ୍ଠେ ସ୍ଫୁରନ୍ତି ଗମ୍ଭୀରେ
ଈଶସ୍ତୁତି, ବେଦରୂପେ ମୋହି ବସୁମତୀ
ଅମୃତ ସଙ୍ଗୀତ ତାନେ, ଉଚ୍ଛ୍ୱସିଣ ଧୀରେ
ହୃଦୟର ଉଚ୍ଚତମ ଆଶା-ଲହରୀରେ ?
କାହିଁ ରେ ଭାରତ ବକ୍ଷେ ଆଜ ସେ ସଙ୍ଗୀତ,
ବେଦମାତା, ଆର୍ଯ୍ୟଦେହ ପୁଷ୍ଟ ଯାର କ୍ଷୀରେ,
ଆର୍ଯ୍ୟଙ୍କର ଆତ୍ମାପଦ୍ମ ଯହିଁ ବିକସିତ,
ଶିଖିଲା ସମ୍ବନ୍ଧ ତାର ପରମାତ୍ମା-ମନ୍ଦିର ସହିତ !

( ୪ )

ନାହିଁ ସେହି ଦିନ, ଯେବେ ପବିତ୍ର ଆଶ୍ରମେ
ସମାସୀନ ବ୍ରହ୍ମବାଦୀ ଆର୍ଯ୍ୟଋଷିଗଣ—
ବଶୀନ୍ଦ୍ର ବଶିଷ୍ଠ, ଅତ୍ରି ଅଟଳ ସଂଯମେ,
ଅଗ୍ନିସଙ୍କାଶ ଅଙ୍ଗିରା, ବ୍ୟାସ ତପୋଧନ,
ରାଜର୍ଷି ଜନକ ନିତ୍ୟ ଶାନ୍ତି-ପରିପୂର୍ଣ୍ଣ,
ଧ୍ୟାଇଲେ ସୃଷ୍ଟିର ତତ୍ତ୍ୱ ମଗ୍ନି ତପସ୍ୟାରେ,
ଆନନ୍ଦେ ବିସ୍ମୟେ ଆହା କଲେ ଦରଶନ
ବ୍ୟାପି ଅକୂଳ ଅନନ୍ତ ଘୋର ଅନ୍ଧକାରେ
ବିରାଜିତ ବ୍ରହ୍ମଜ୍ୟୋତି ନସ୍ତରଙ୍ଗ କାଳପାରାବାରେ ।

( ୫ )

ଥିଲା ଦିନ ଯେବେ ଏହି ଭାରତଧାମରେ
ପବିତ୍ରତା ମୂର୍ତ୍ତିମତୀ ସରଳତାମୟୀ,
ଦୟାରୂପେ ଅବତୀର୍ଣ୍ଣା ଋଷିଜନଘରେ,
ଋଷିକନ୍ୟା ଋଷିପତ୍ନୀ ଦିବ୍ୟ ତେଜୋମୟୀ,
ଉଶ୍ୱାସିଲେ ପାପାକ୍ରାନ୍ତ ମେଦିନୀର ଭାର ।
ଯେବେ ବୀରସୀମନ୍ତିନୀ କ୍ଷତ୍ରିୟ-କୁମାରୀ
ପ୍ରସବିଲେ ବୀରବୃନ୍ଦ ମହୀ-ଅଲଙ୍କାର,
ଶିଖାଇଲେ ପ୍ରାଣକାନ୍ତେ କଟାକ୍ଷ ପ୍ରହାର.
ସେ ବୀରତ୍ୱ, ଯାର ଯଶ ଉଚ୍ଚନାଦେ ଘୋଷଇ ସଂସାର ।

( ୬ )

କାହିଁ ସେ ଅଯୋଧ୍ୟା ଧନ୍ୟା ଯୋଧେନ୍ଦ୍ରଜନନୀ,
କ୍ଷତ୍ର ତେଜୋଭାନୁ ଯହିଁ ଉଇଁଲା ପହିଲେ
ହିମୋଜ୍ଜ୍ୱଳ ହିମାଚଳ ଶିରେ ଦିନମଣି
ହେମରଶ୍ମି ବର୍ଷେ ଯଥା ନିଶା ପ୍ରଭାତିଲେ;
ସେ ସୂର୍ଯ୍ୟପ୍ରଭବ ବଂଶ ଅବା କେଉଁଠାରେ,
ଯାର କୀର୍ତ୍ତି-ମହାଗୀତ ଆଦିମହାକବି
ଗାଇଲେ ଅମୃତକଣ୍ଠେ ପବିତ୍ର ଝଙ୍କାରେ,
ବୀରତ୍ୱର, ସତୀତ୍ୱର ସେ ଅତୁଳ୍ୟ ଛବି
ଟାନି ରାମାୟଣାକାରେ ତପୋଧନ ଅର୍ପିଲେ ସଂସାରେ !

[ ୭ ]

ଭାରତହୃଦକୌସ୍ତୁଭ କୌରବ-ଗୌରବ,
କାହିଁ ସେହି ଇନ୍ଦ୍ରପ୍ରସ୍ଥ କାହିଁ ବା ହସ୍ତିନା,
ଯାହାର ମୋହନ ଛବି ନୟନଦୁର୍ଲଭ
ହୃଦଦରପଣେ ଧରି ଆଦରେ, ଯମୁନା,
ଅବିରତ ନୃତ୍ୟେ ରତ ଥିଲୁ କଲ୍ଲୋଳିନ,
ସୁନୀଳ ପ୍ରବାହ ତୋର ଅଙ୍କ ବହମାନ,
ଦୂରବେ ଯେପରି ବନ୍ଧୁଥିଲା ତରଙ୍ଗିଣି !
କନ୍ତୁ କବା ଅଦଭୂତ ବିଧିର ବିଧାନ,
ତୋ ଜଳବୁଦ୍ବୁଦ ସମ ସେ ଐଶ୍ୱର୍ଯ୍ୟ ଲୁପ୍ତ ଲୋ ତଟିନ !

[ ୮ ]

ମହାଭାରତର ମହାଗୀତ କଥା ଭାଳ
ବିସ୍ମୟେ ହୃଦୟ ପୂର୍ଣ୍ଣ ନୁହଇ କାହାର ?
ଘୋର ଭଇରବ କୁରୁକ୍ଷେତ୍ର ରଣସ୍ଥଳୀ,
ବିଶାଳ ଜଗତେ କାହିଁ ପଟାନ୍ତର ତାର ?
ନାହିଁ ଦେଶ ରବିତଳେ ଯହିଁ ଏକାହବେ
ମହାରଥୀ ମହାବାହୁ ଏତେ ବୀରମଣି
ଦାବାନଳ ଜିଣି ତେଜେ ମାତିଲେ ଭୈରବେ,
ପ୍ରତାପେ କମ୍ପିତ କରି ବିପୁଳ ଧରଣୀ,
ମହାବାହୁ ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୀମ ଅର୍ଜୁନ ଆର୍ଜୁନ ।

[ ୯ ]

ଅନ୍ୟାୟର ଅତ୍ୟାଚାରେ ଚିର-ଜର୍ଜରିତ,
ସର୍ବଥା ଜଡିତ କୁସଂସ୍କାର-ଅନ୍ଧକାରେ,
ଥିଲା ଏ ଭାରତଭୂମି ଯୁଗାନ୍ତ ପୀଡ଼ିତ,
ଯେବେ ଶାକ୍ୟସିଂହ ବୁଦ୍ଧ ବିଖ୍ୟାତ ସଂସାରେ
ଭୂଭାରହରଣ-ଅର୍ଥେ ତେଜି ରାଜଭୋଗ
ତପସ୍ୟା-ସାଗରେ ମଜ୍ଜି ଲଭିଲେ ସେ ଜଳେ
ନିର୍ବାଣ-ତତ୍ତ୍ୱରତନ ସାଧି ଜ୍ଞାନଯୋଗ,
ପ୍ରଚାରିଲେ ନବଦୀକ୍ଷା "ସମାନ ସକଳେ"
ବ୍ୟାପିଲା ଦାବାଗ୍ନି ପ୍ରାୟେ ମହାଦୀକ୍ଷା ଅବନୀମଣ୍ଡଳେ ।

[ ୧୦ ]

ବୌଦ୍ଧଧର୍ମ ବୈଜୟନ୍ତୀ ବିଜୟ-ଉଲ୍ଲାସେ,
ନବଧର୍ମ ନବରାଜ୍ୟ ସ୍ଥାପିଣ ଭାରତେ,
ଧାଇଁଲା ସଦ୍ଭବ ଦିଗେ ଜିଣିବାର ଆଶେ
ସିଂହଳ, ତାତାର, ଚୀନ, ଯାପାନ, ତିବ୍ବତ ।
ଆହା କିବା ପ୍ରଭାମୟ ଭାରତଭବନ
ଥିଲା ସେହିକାଳେ, ଯେବେ ଶାସିଲେ ଧରଣୀ
ଗୁପ୍ତବଂଶ-ଅବତଂସ ବୌଦ୍ଧ ଭୂପଗଣେ,
ଯବନବିଜୟୀ ଚନ୍ଦ୍ରଗୁପ୍ତ ବୀରାଗ୍ରଣୀ,
ଦେବପ୍ରିୟ ପ୍ରିୟଦର୍ଶୀ ଲୋକନାଥ ଅଶୋକ ନୃମଣି ।

(୧୧)

ନଭସ୍ପର୍ଶୀ ପର୍ବତ ଦମି ଶିଳ୍ପବଳେ
କାଳଜୟ ଖଣ୍ଡକାନ୍ତି କୀର୍ତ୍ତିନିଚୟ
ଗାନ୍ଧାର କର୍ଣ୍ଣାଟ ପୁଣି ଗୁର୍ଜ୍ଜର ଉତ୍କଳେ
ନିର୍ମିଲେ କୌଶଳେ ଏହି ନରପତିଚୟ;
ସ୍ଥାପି କେତେ ଜୟସ୍ତୂପ ଗୌରବ-କେତନ
ଭାରତର ଜୟପ୍ରଭା ଦେଶ ଦେଶାନ୍ତରେ
ବିସ୍ତାରିଲେ ମହାଯଶା ମହୀପତିଗଣ,
ପ୍ରକୃତିରଞ୍ଜନ ବ୍ରତ ପାଳି ଯତନରେ
ପ୍ରତିଷ୍ଠିଲେ ଶାନ୍ତିମୟ ସୁଶାସନ ଦିଗ ଦିଗନ୍ତରେ ।



( ୨୨ )

# ଋଷିପ୍ରାଣେ ଦେବାବତରଣ

ସରସ୍ୱତୀ ନଦୀତଟ—ଉଷାକାଳ ।

ପ୍ରଶାନ୍ତ ନିଶାନ୍ତକାଳ,    ବିରାଜେ ଉଜ୍ଜ୍ୱଳେ
ଉଷାର ତୁଷାର-ଶୁଭ୍ର    ଲଲାଟମଣ୍ଡଳେ
ସ୍ୱର୍ଗର କୌସ୍ତୁଭମଣି    ଶୁକ୍ର ସୁଶୋଭନ
ପଶ୍ଚିମ-ଦିଗନ୍ତପଟେ    ଛବି ଅତୁଳନ,
ଉଦୀଚୀ ଆକାଶେ ଦୂରେ    ମହାଜ୍ୟୋତିର୍ମୟ,
ତୁଷାର-କିରୀଟେ ରାଜେ    ଗିରିନ୍ଦ୍ର-ଆଲୟ,
ଅନନ୍ତ ହିମାନୀ-କ୍ଷେତ୍ର    ଶୁଭ୍ର ହିମାଚଳ
ତ୍ରିଦିବର ପୁଣ୍ୟପୁଞ୍ଜ    ପ୍ରାୟେ ମହୋଜ୍ଜ୍ୱଳ ।
ବିଶ୍ୱପ୍ରାଣ ସ୍ପର୍ଶୀ ଆହା    ଉଷାର ଉତ୍ସବେ
ମାତିଲେ ସୁହାସମୟୀ    ଦିଗ୍‌ବଧୂ ସରବେ ।
ଶିଶିର ଜଳରେ ଧୋଇ    ଉଷା ଶ୍ରୀଚରଣ
ଲଭିଲେ ଆଶିଷ-ରୂପେ    ଦିବ୍ୟ ଆଭରଣ—
ଜ୍ୟୋତିର ସିନ୍ଦୂର ବିନ୍ଦୁ,    ଜ୍ୟୋତିର ବଳୟ,
ଜ୍ୟୋତିର୍ମୟ ଅବତଂସ,    ମାଳା ଜ୍ୟୋତିର୍ମୟ ।
ଜ୍ୟୋତିର୍ମୟ ପାରିଜାତ    ଦିଗ୍‌ବଧୂ-କୁନ୍ତଳେ
ଫୁଟାଇଲେ ଆନନ୍ଦିତେ    ଉଷା କୁତୂହଳେ ।
ଏବେ ପୌର୍ଣ୍ଣମାସୀଜ୍ୟୋତ୍ସ୍ନା-    ଧବଳ ଭୁବନ
ତରଳ ରଜତପୂରେ    ପ୍ଲାବିତ ଶୋଭନ;
ଦ୍ୟୁଲୋକ-ଦୁହିତା ଉଷା    ତହିଁରେ ଆବର
ଦୋହନ କରନ୍ତି କାମ-    ଧେନୁ ତ୍ରିଦିବର ।
ଶ୍ରୀକର ପରଶେ ଯେହ୍ନେ    କ୍ଷୀର-ପାରାବାର
ଉଜ୍ଜ୍ୱଳ ଆଲୋକରୂପେ    ପ୍ଲାବଇ ସଂସାର ।
ଦିଶି ଦିଶି ଉଛୁଳଇ    ଆଲୋକ-ପ୍ରବାହ,
ଦ୍ୟାବା ପୃଥିବୀର କିବା    ଏ ଦୈବ ବିବାହ ।
ତରଳ ସ୍ୱର୍ଗୀୟ ଗୀତ    ଉଷା-ଉଦ୍‌ବୋଧିନୀ
ଛାଇଲା ଭରତ ଧୂର    ଆକାଶ ଅବନୀ ।
ଉଷାର ପରଶେ ଜାଗେ    ପ୍ରଣିପାତ କରି
ଅବନୀ ଶିଶିର-ମୁକ୍ତା-    ମାଳିନୀ ସୁନ୍ଦରୀ ।

ଏମନ୍ତ ସମୟେ ପୁଣ୍ୟ- ତୋୟା ସରସ୍ୱତୀ
ତୀରେ ଉଭା କଏ ଯୁବା ଉଦାତ୍ତ-ମୂରତି,
ଦୀର୍ଘ-କାୟ ହେମ-ଗୌର ରମ୍ୟ କଳେବର,
ପ୍ରଶସ୍ତ ଲଲାଟ ଲୀଳା- ମଞ୍ଚ ଚୈତନ୍ୟର ।

ବିଶାଳ ଲୋଚନଯୁଗ ଅକୁଣ୍ଠି ବିଶ୍ରାନ୍ତ,
ଝରଇ ଯହିଁରୁ ଜ୍ୟୋତି- ଧାରା ସୁପ୍ରଶାନ୍ତ ।
ସୁତୀକ୍ଷ୍ଣ ନାସାଗ୍ର ତୀକ୍ଷ୍ଣ ଅସି-ମୂନ ପ୍ରାୟେ
ସୂଚଇ ସାଧନ ଶୁଭ- ଲକ୍ଷ୍ୟ-ସିଦ୍ଧିଯାଏ ।

ଓଷ୍ଠ-ଯୁଗ ବାଣୀଙ୍କର ମାଣିକ୍ୟ-ସୋପାନ,
ବିଶ୍ୱକର୍ମୀ ବିଧାତାର ବିଚିତ୍ର ନିର୍ମାଣ ।
ଅଗ୍ନି-ପ୍ରଭ ଜଟା-ଜାଲ ଆଜାନୁଲମ୍ବିତ,
କୃଷ୍ଣ ରୋମାବଳୀ-ଶ୍ମଶ୍ରୁ ଆନନେ ଶୋଭିତ ।

ଲମ୍ବିତ ଆୟତ ଭୁଜ- ଦଣ୍ଡ ସୁସରଳ,
ସୁବିପୁଳ ବକ୍ଷ ମହା- ଭାବ-ଲୀଳା-ସ୍ଥଳ ।
ସ୍ୱର୍ଣ୍ଣଦୀ ପୁଲିନେ ସ୍ୱର୍ଣ୍ଣ- ନମେରୁ ସଦୃଶ
ସରସ୍ୱତୀ ତଟେ ଉଭା କେ ମହାପୁରୁଷ ?

ଗଦ୍ଗଦ ଶବଦେ ପଦ- ତଳେ ଅବିରଳ
ଉତ୍ପଳ-ଶୟନେ ବହେ ସରସ୍ୱତୀ-ଜଳ ।
ଉଷାର ଉତ୍ସବମୟ ଗଗନ, ସମ୍ମୁଖେ
କାବ୍ୟତାର ସ୍ନିଗ୍ଧଜ୍ୟୋତି ଢାଳୁଅଛି ମୁଖେ ।

ବାମେ ଦିଗ୍ବଳୟ କୋଳେ ଦିଶଇ ଭାସ୍ୱର
ହୀରକ-କିରୀଟ-ସମ ହିମାଦ୍ରି ଶିଖର ।
ପଶ୍ଚାତେ କୁରଙ୍ଗଶୋଭ- ଉଟଜ-ଅଙ୍ଗନ,
ଚଉପାଶେ ପ୍ରସାରିତ ପୁଲିନ-କାନନ ।
ନିଶାନ୍ତ-ସମୀର ବହେ ନୀରବ ଶୀତଳ
ପରଶି ମୃଦୁଳେ ଯୁବା- ଆନନମଣ୍ଡଳ ।

ଆଲୋକ-ମଣ୍ଡିତ ସେହି ପୁରୁଷ-ପୁଙ୍ଗବ
ପ୍ରଜାପତି-ଋଷି-ବଂଶ- ଜ୍ୱଳନ୍ତ-ଗୌରବ ।
ହିରଣ୍ମୟପ୍ରଭ ଯଥା ହିରଣ୍ୟାଂଶୁମାଳୀ,
ନାମରେ ହିରଣ୍ୟଗର୍ଭ ମହା-ଜ୍ୟୋତିଶାଳୀ ।
ଦେବକନ୍ୟା ଉଷା ଶୋଭା- ପୁଣ୍ୟ-ସୋମରସ-
ପାନେ ଦେବ-ଭାବେ ପୂର୍ଣ୍ଣ ହୃଦୟ ସରସ ।

ମହାପ୍ରେମେ ବିସ୍ଫାରିତ     ବିଶାଳ ଲୋଚନ,
ଏ ମହାମାଧୁରୀ-ଲୀଳା     କରନ୍ତି ଦର୍ଶନ,
ଦେଖୁଁ ଦେଖୁଁ ଅଭିଭୂତ     ମହାଭାବେ ଭୋଳା,
ଦେଖୁଁ ଦେଖୁଁ ନିମୀଳିତ     ନୟନର ଡୋଳା ।

ଇନ୍ଦ୍ରିୟ-ପ୍ରତୀତି-ଭୂମି-     ଅତୀତ ସଂସାରେ
ନିମଗନ ମନ ପ୍ରାଣ     ଧ୍ୟାନ-ପାରାବାରେ ।
ସହସା ସହସ୍ର ବିଦ୍ୟୁ     ଲ୍ଲହଃ ପରାଭବି
ଋଷିର ଅନ୍ତରେ ସ୍ଫୁରେ     ମହାମୃତ ଛବି ।

ଅମୂର୍ତ୍ତି ମୂରତି ଆହା     ରୂପ ନିରୁପମ,
ଅନନ୍ତ ଅନଳ, ବ୍ୟାପି     ସ୍ଥାବର ଜଙ୍ଗମ ।
ଦେଶ-କାଳାତୀତ ଦୃଶ୍ୟ     କଳ୍ପନା-ଅତୀତ,
ଅଥଚ ଜ୍ୟୋତିର ଜ୍ୟୋତି     ଚକ୍ଷୁ ଅଗ୍ରେ ସ୍ଥିତ ।

ଦୂରରୁ ସୁଦୂର, ଚିନ୍ତା-     ବାକ୍ୟ-ଅଗୋଚର,
ନିକଟୁଁ ନିକଟ, ପ୍ରାଣ     ସମଗ୍ର ପ୍ରାଣର ।
ଅଶବ୍ଦ ଅସ୍ପର୍ଶ ସେହି     ଅରୂପ ଅରସ,
କିନ୍ତୁ ରେ ପରମ ସତ୍ୟ     ମହାନନ୍ଦ-ରସ ।

ନିଜ ମହିମାରେ ସ୍ଥିତ     ନିଜେ ନିରାଧାର,
ଅନନ୍ତ ଅଗମ୍ୟ ମହା-     ବ୍ରହ୍ମାଣ୍ଡ-ଆଧାର ।
ସମ୍ମୁଖେ ପଶ୍ଚାତେ ସେହି,   ନିମ୍ନେ ଊର୍ଦ୍ଧ୍ୱେ ସେହି,
ଦକ୍ଷିଣେ ବାମରେ ସେହି,     ଅଥଚ ଅଦେହୀ ।

କେ ସେ ରେ ବରେଣ୍ୟ-ଭର୍ଗ     ପରମ ସୁନ୍ଦର,
ପୂର୍ଣ୍ଣ ଅପ୍ରତିମ, ପୂରି     ବାହ୍ୟ ଅଭ୍ୟନ୍ତର ।
ଆବିର କଲ୍ଲୋଳମୟୀ     ମହା ସରସ୍ୱତୀ,
ସ୍ୱସ୍ତି-ପୂର୍ଣ୍ଣା ସୁଗମ୍ଭୀରା     ବାଣୀ ଭଗବତୀ,

ଉତ୍ସ ପ୍ରାଚ୍ୟେ ଉତ୍ସାରିତ     ଭେଦି ହୃଦସ୍ତର,
ଅମୃତ ସୂନୃତ ନାଦେ     ପୂରେ ଚିଦମ୍ବର ।
ଭବଶିରେ ଯଥା ଅବ-     ତୀର୍ଣ୍ଣା ଭାଗୀରଥୀ,
ମହାନାଦମୟୀ ବିଶ୍ୱ-     ପ୍ରହ୍ଲାଦନୀ ସତୀ ।

ତେସନ ଆଜି ଏ ଋଷି-     ପ୍ରାଣେ ଅବତରି
କି ଏକ ଅମୃତ ବାଣୀ     ଯାଏ ରେ ପ୍ରସରି !
ଅଶବ୍ଦ ଶବଦ ଭୂମା     ବାକ୍ୟ-ଅଗୋଚର,
ଶୁଣଇ ସ୍ତବଧ ପ୍ରାଣ     ସେ [illegible] ସ୍ୱର ।

କେ ଜାଣେ କାହିଁ ସେ ବାଣୀ- ବୀଣାର ଶବଦ
କେମନ୍ତେ ପୂରିଲା ଋଷି- ହୃଦ-ବକ୍ଷୁ ପଦ
ବିଶ୍ୱବ୍ୟାପି-ଅସ୍ତିତ୍ୱର ଓଁକାର-ଝଙ୍କାର
ସୁମନ୍ଦ୍ର ଧ୍ୱନିରେ ପୂରେ ନିଖିଳ ସଂସାର ।

କେମନ୍ତେ ବର୍ଣ୍ଣିବି ସେହି ଭାଷାତୀତ ଭାବ,
ଜୀବାତ୍ମାରେ ପରମାତ୍ମା- ଭୂମା-ଆବିର୍ଭାବ ।
ନୁହେ ସେ ଧରାର ଦୃଶ୍ୟ, ଧରାର ଶବଦ,
ସେ ଭାବ ନୁହଇ କ୍ଷୁଦ୍ର ଧରାର ସମ୍ପଦ ।

ମହାଧ୍ୟାନ ମହିମାର ଚିନ୍ମୟ ବିଭବ,
ଦେଖ ରେ ଜଗତ ଆଜି ଦୃଶ୍ୟ ଅଭିନବ ।
ଦେଖ ରେ ଦେଖ ରେ ଆଜି ଅପରୂପ ଛବି
ଚିତ୍ରୁଛନ୍ତି ମହା-ଆଦି- ଚିତ୍ରକର-କବି ।

ନିଜେ ରେ ଜ୍ୟୋତିର ଜ୍ୟୋତି ଦେବ ଭଗବାନ,
ଅରୂପ-ପ୍ରକାଶେ ପୂରି ଋଷିଜନ-ପ୍ରାଣ,
ଭେଦ ଯେସନେ ବ୍ରହ୍ମ ତାଲୁ ସହସା ଉଦିତ,
କରୁଛନ୍ତି ଋଷିମୁଖ-ପଦ୍ମ ବିକଶିତ ।

ବଦନ, ତୁଷାର-ଗୌର, ଦଶେ ଗୌରତର,
ବିମଳ ଜ୍ୟୋତିର ବିଭା ପ୍ରଫୁଲ୍ଲ ପୁଷ୍କର ।
କି ମହାତାଡ଼ିତ ସ୍ରୋତ ପଶି ଅଟମିଛେ
ଆପାଦମସ୍ତକ ଧାଇଁ ଧମନୀ-ଶୋଣିତେ ।

ମହାପୁଲକରେ ତନୁ ରୋମାଞ୍ଚେ ପୂରିତ,
କଦମ୍ବ-କେଶର ପ୍ରାୟେ କେଶ କଣ୍ଟକିତ ।
ପ୍ରେମାଶ୍ରୁ ଉଚ୍ଛୁଳ ପଡ଼େ ନୟନ-ଯୁଗଳେ,
ସୁନ୍ଦର କପୋଳେ ଧାରି ବହେ ଅବିରଳେ ।

ହିମଗୌର ହିମାଚଳ କପୋଳେ ଯେସନ
ଜାହ୍ନବୀ-ଯମୁନା-ଧାରି ବହେ ଘନ ଘନ ।

ସହସା ଫୁଟଇ ଋଷି- ଲୋଚନ-କମଳ,
ଖେଳେ ତହିଁ ଆହା କିବା ଜ୍ୟୋତି ସୁବିମଳ ।
ବାହ୍ୟ-ଅଭ୍ୟନ୍ତର-ଭେଦ ଏବେ ନାହିଁ ଆଉ,
ଦିଶି ଦିଶି ଏକ ଜ୍ୟୋତି ଦିଶେ ଦାଉ ଦାଉ ।
କ୍ଷିତି ଅପ ମରୁଦ୍ ବ୍ୟୋମ ତେଜ ଏକାକାର,
ନିରେଖନ୍ତି ଋଷି ଆହା ଚିନ୍ମୟ ସଂସାର ।

ମୃତ ଜଡ଼ ଆଜି ଆହା !    କି ଅମୃତମୟ,
ବ୍ରହ୍ମ-ନିଃଶ୍ୱସିତେ ଧ୍ୱନି    ବ୍ରହ୍ମାଣ୍ଡ-ହୃଦୟ ।
ବ୍ରହ୍ମାଣ୍ଡ-ହୃଦୟ-ତନ୍ତ୍ରୀ    ବାଜେ ଏକତାନେ
ଓଁକାର-ଝଙ୍କାରମୟ    ମର୍ମଭେଦୀ-ଗାନେ ।

ତତ୍କ୍ଷଣରେ ଛିନ୍ନ ହେଲା    ମର୍ମଗ୍ରନ୍ଥି-ଚୟ,
ଗମ୍ଭୀର ଉଚ୍ଛ୍ୱାସେ ଧ୍ୱନି    ଋଷିର ହୃଦୟ ।
ଋଷିର ନିରୁଦ୍ଧ କଣ୍ଠ    ଭେଦ ଅସମ୍ଭାଳେ
ଉଚ୍ଛୁଳଇ ବାଣୀସ୍ରୋତ    ବଦନାନ୍ତରାଳେ ।

ଋଷି-ରସନାରୁ ବହେ    ଗଦଗଦ ଭାଷେ
ପୁଣ୍ୟା ସରସ୍ୱତୀ ପ୍ରାୟେ    ପ୍ରଭାତ ଆକାଶେ ।
ତ୍ରିଷ୍ଟୁଭ ଗାୟତ୍ରୀ ଛନ୍ଦେ    ଗୀର୍ବାଣ-ବିଭବ
ଡ଼ାଲଣ କରନ୍ତି ଋଷି    ସ୍ତବ ଅଭିନବ ।

ସେହି ମନ୍ତ୍ରମୟ ଛନ୍ଦ    ସେ ବାଣୀସମ୍ପଦ,
କାହୁଁ ତୁ ପାଇଲୁ ଭାଷା    ସେ ଅମୃତ ପଦ ।
ମହାପ୍ରେମାବେଶେ    ଋଷି ଭାସି ଅଶ୍ରୁଜଳେ
ବକ୍ଷେ ସ୍ଥାପି କରଯୁଗ    ବୋଲନ୍ତି ବିହ୍ୱଳେ:—

"କେ ହେ ଦେବ ଦେବଦେବ ପ୍ରଭୁ ପରାତ୍ପର,
କି ଅମୃତ ତେଜେ ଆଜି    ପୂରି ମୋ ଅନ୍ତର,
କି ଅମୃତ ତେଜେ ପୂରି    ଏ ମହାଆକାଶ,
ବିରାଜିତ ବିଶ୍ୱଦେବ    ବିଭୋ ସ୍ୱ-ପ୍ରକାଶ ।

କେ ହେ ଦେବ ମହାଦେବ    ଦ୍ୟାବାପୃଥିବୀର,
ଦ୍ୟୁଲୋକ ଭୂଲୋକ ବନ୍ଦେ    ଆନନ୍ଦେ ଅଧୀର ।
ଅମୃତ ଯାହାର ଛାୟା,    ମୃତ୍ୟୁ ଯା କିଙ୍କର,
ବନ୍ଦଇ ବରେଣ୍ୟ-ଭର୍ଗ    ବିଶ୍ୱଚରାଚର,

ଅମର ଅଜର ହୋତା    ଅଗ୍ନି ଯଜ୍ଞକାରୀ,
ଐରାବତେ ବିରାଜିତ    ଇନ୍ଦ୍ର ବଜ୍ରଧାରୀ,
ଦଶଦିଗ ବ୍ୟାପି ସଦା -    ଗତି ମରୁଦ୍‌ଗଣ,
ଗଗନ-ବିହାରୀ ସୂର୍ଯ୍ୟ    ଜ୍ୱଳନ୍ତ ତପନ,

ଦ୍ୟୁଲୋକର ଜ୍ୟୋତି, ମିତ୍ର,    ତନ୍ଦ୍ରେ ସୁନାପୁଣି,
ଜଳ-ସ୍ଥଳ-ଆବରକ    ବରେଣ୍ୟ ବରୁଣ,
ଦ୍ୟୁଲୋକନନ୍ଦିନୀ ଉଷା    ତମିସ୍ର-ହାରିଣୀ,
ସରସ୍ୱତୀ ବାଣୀମୟୀ    ସୂନୃତ-ଭାଷିଣୀ.

ଦିବା ବିଭାବରୀ ମାସ ଋତୁ ସମ୍ବତ୍ସର
ନିମେଷ ମୁହୂର୍ତ୍ତ ସର୍ବେ ବହନ୍ତି ପଥିର,
କେ ହେ ଦେବ ମହିମାର ପ୍ରଦୀପ୍ତ ଅନଳ,
ଯା ଇଙ୍ଗିତେ ଉଭା ଏହି ଶ୍ୱେତ ହିମାଚଳ,

ପୂଜିଲେ ଇଙ୍ଗିତେ ଯାର ପୂର୍ବ ଋଷିଗଣ
ମହାଭୂତଚୟେ ଦେଖି ଶକ୍ତି-ନିଦର୍ଶନ,
ସେହି ଭୂତ-ଶକ୍ତିଚୟ ଧରି ଏକାଧାରେ,
କେ ହେ ବିରାଜିତ ତୁମ୍ଭେ ନିଜ ମହିମାରେ,

ସୁଗମ୍ଭୀର ଉଚ୍ଚାରଣେ ଏ କ୍ଷୁଦ୍ର ପରାଣେ
ଅବତୀର୍ଣ୍ଣ ବାଣୀରୂପେ ଅଦ୍ଭୁତ ବିଧାନେ,
ଜାଣିଅଛୁ ପରାତ୍ପର, ଏ ପ୍ରାଣବିଧାତା,
ଅଟ ହେ ପ୍ରତ୍ୟକ୍ଷ ତୁମ୍ଭେ ବିଶ୍ୱପିତାମାତା ।

ଏକ ଅଦ୍ୱିତୀୟ ପ୍ରଭୁ ସର୍ବ ମୂଳାଧାର,
ଏକମାତ୍ର ପରମାତ୍ମା ବ୍ରହ୍ମ ନିରାକାର ।
ଜୟ ହେ ମଙ୍ଗଳମୟ ମହାମହେଶ୍ୱର,
ଜୟ ଜୟ ସତ୍ୟରୂପ ପରମ ସୁନ୍ଦର ।

ବିରାଜ ବିରାଜ ଦେବ ହେ ଅମୃତମୟ,
ତୁମ୍ଭର ଅମୃତ ରୂପେ ପୂରି ଏ ହୃଦୟ;
ତୁମ୍ଭର ଓଙ୍କାରମୟୀ ବାଣୀ ନିରନ୍ତର
ପବିତ୍ର ଝଙ୍କାରେ ପୂରୁ ଏ ପ୍ରାଣକନ୍ଦର ।"



( ୧୩ )

## ହୃଦୟ-ସଙ୍ଗୀତ



ଇନ୍ଦ୍ରିୟର କାରାଗାରେ   ରୁଦ୍ଧ ପ୍ରାଣ-ପକ୍ଷୀ
ଢବା ନିଶି ବ୍ୟାକୁଳିତ   ଅସ୍ଥିର ବିକଳ ।
ନବୃଢ଼ ଆକାଙ୍କ୍ଷା ଆଶା   କେଉଁଠାରେ ରଖି,
ବାଷ୍ପାକୁଳ ଗଦଗଦ   ସ୍ୱରେ ଅବିରଳ
ତାହାର ସଙ୍ଗୀତ ଗାଏ ଚମକ ଚମକ ।
ସେ ସଙ୍ଗୀତ ସଙ୍ଗେ   ଶତ ସ୍ୱପନ ଚପଳ
ମିଶାଉଛୁ କ୍ଷଣେ କ୍ଷଣେ   କଲପନା-ସଖୀ ।
ମୁଗ୍ଧ-ସହଚରୀ କେତେ   କେତେ ଅଶ୍ରୁଜଳ,
କେତେ ଚିନ୍ତା ସେ ସଙ୍ଗୀତେ   କରଇ ମିଳିତ ।
ଅନନ୍ତର ଅଭିମୁଖେ   ସେ ସଙ୍ଗୀତ-ନଦ
ବ୍ୟଗ୍ର ଧାଇଁବାରେ,   କିନ୍ତୁ ଏ କି ରେ ବିପଦ,
ପଦେ ପଦେ ତାର   ପଥ ପାଷାଣେ-ପିହିତ !
ଭାଙ୍ଗି ସେ ପାଷାଣ,   ଲଭ ପ୍ରେମ-ବିଷ୍ଣୁପଦ,
ଅନନ୍ତେ ମିଳିବ କି ରେ   ଅନ୍ତରସଙ୍ଗୀତ ?



( ୧୪ )

## ବିଚ୍ଛେଦ *



ହଜ ନାହିଁ ଯାର କେବେ କିଛିହିଁ ରତନ,
ଏ ମର୍ତ୍ତ୍ୟ ସଂସାରେ ସେହି ଦୀନ ଅକିଞ୍ଚନ ।

ସେ ପୁଣି ଦରିଦ୍ରତର, ହରାଇ ରତନ
ଏ ଭବଭବନେ ତାହା ପାସୋରେ ଯେ ଜନ ।

ସେ ପୁଣି ଦରିଦ୍ରତମ କୃପା-ପାତ୍ର ଅତି,
ହରାଇ ପାସୋରିବାକୁ ବଳେ ଯାର ମତି ।

ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମବେଦନାରେ,

ଯେ ଜନ ଜପଇ ଶିବ ରାତ୍ରି-ଜାଗରଣେ
ଅଶ୍ରୁ-ଧୂତ ପ୍ରେମ-ମନ୍ତ୍ର ହୃଦୟ ରତନେ,

ସେହି ଏକା ଏ ଜଗତେ ମହାଧନେ ଧନୀ,
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ ।

ପ୍ରଭୁ ହେ, ଶାଶ୍ୱତ ତବ ଶ୍ରୀକୋଠଭଣ୍ଡାରେ
ରଖ ବନ୍ଧୁ-ହୃଦ-ନିଧି ଲକ୍ଷ୍ମୀ-ପ୍ରତିମାରେ ।



* ଜଣେ ବନ୍ଧୁଙ୍କର ପତ୍ନୀ-ବିୟୋଗ-ଶୋକକୁ ଲକ୍ଷ୍ୟ କରି ଲିଖିତ ।

( ୨୫ )

## ଜରା ଆକ୍ରମଣ



( ୧ )

ଶକ୍ତି-ହରା ଜରା   ଛୁଇଁଲାଣି ଦେହପୁର,
ଅଲକ୍ଷିତେ ବଳ ମୋର   କରୁଅଛି ଦୂର ।
ଯୌବନ ପ୍ରାସାଦ ଭିତ୍ତି   ଅଳ୍ପ ଆଘାତରେ
ଭାଙ୍ଗି ପଡ଼ୁଅଛି ନିତି   କମ୍ପି ଥରଥରେ ।
ଲିଭି ଯାଉଅଛି କ୍ରମେ   ଦୀପ୍ତି ନୟନର,
ସାମର୍ଥ୍ୟ ଯାଉଛି ତୁଟି   ଏ ମୋ ଚରଣର ।
ମସ୍ତକର କେଶ ଏବେ   ହେଲାଣି ପଳିତ,
ଦୁର୍ବଳ କଣ୍ଠର ସ୍ୱର,   ସବୁ ବିକଳିତ ।
ଅପ୍ରସନ୍ନା ଏବେ ନିଦ୍ରା—ଦେବୀ ଶାନ୍ତିହରା,
ବେଗେ ମାଡି ଆସୁଅଛି   ନିଶାଚରୀ ଜରା ।
ଏହି ଭଗ୍ନ ଦେହଘରେ   ରହିଅଛି ପଡି,
ଆସୁଛି ମରଣ ମୋତେ   ତହୁଁ ଦେବ ଛଡି ।
ବାନ୍ଧୁଅଛି ବାସନାକୁ   ଯୌବନ ବିରହ,
ବିକଳେ କାନ୍ଦୁଛି ତାହା   ତେଣୁ ଅହରହ ।



( ୨ )

ଜରା ଆକ୍ରମଣେ ତେବେ   ହେବି କି ନିରାଶ ?
ଢାଳିବି କି ଆର୍ତ୍ତନାଦେ   ବିଷାଦର ଶ୍ୱାସ ?
ନିରାଶର କଥା ଛି ଛି   କହିବି କେମନ୍ତେ,
ଅନ୍ତରରେ ଅନୁଭବି   ଅନନ୍ତ ବସନ୍ତେ ?
ଜୀବନ-ବିଧାତା ପ୍ରଭୋ   କରୁଣା-ସାଗର,
ଅନନ୍ତ ବସନ୍ତ ତୁମ୍ଭେ   ଏ ମୋ ଜୀବନର ।
ଗର୍ଜି ତର୍ଜି ଆସୁ ଜରା   ଘୋର ବ୍ୟାଘ୍ରୀ ପରି,
ତା କ୍ରୂର ନଖରାଘାତେ   ଯାଉ ଦେହ ଝରି ।

ବିକଟ ଭ୍ରୂକୁଟି କରି   ଆସୁ ଆଧି ବ୍ୟାଧି,
ଯେତେ ସାଧିବାର ସେତେ   ଯାଉ ଦାଉ ସାଧି ।
ଅନନ୍ତ ଅଭୟ ପ୍ରଭୋ   ଦେଇଛ ଅନ୍ତରେ,
ଅନନ୍ତ ଜୀବନ-ଧାରା   ଢାଳି ମହାଦରେ ।
ଅମୃତ ଉତ୍ସାହ, ତେଣୁ   ଆନନ୍ଦ ଅମୃତ
ଝର-ନୀର ପ୍ରାୟେ ପ୍ରାଣୁ   ହେଉଛି ନିଃସୃତ ।



( ୨୬ )

## ଉତ୍କଳ-ସଙ୍ଗୀତ

( ୧ )

ବାରେ ଡ଼ାକ ହେ ଉତ୍କଳସୁତେ,
ମା ଉତ୍କଳଭୂମି ଜନନୀ ।
ପାନ କର ମା-ନାମ-ଅମୃତେ,
ଗାଅ ମା ମା ଦିନ ରଜନୀ ।

( ୨ )

ବାରେ ଚିନ୍ତ ପ୍ରେମଭକ୍ତିଭରେ
ଜନନୀ-ବିଭବ-ଗୌରବେ ।
ଜନ୍ମଭୂମି ଜନନୀ ପଦ୍ୟରେ
ବନ୍ଦ ହେ ଜୟ ଜୟ ରବେ ।

( ୩ )

ଧର୍ମକ୍ଷେତ୍ର ଉତ୍କଳର ଜୟ
ଯୁଗ-ଯୁଗ-ବ୍ୟାପୀ ଭାରତେ ।
ବୌଦ୍ଧଗୁମ୍ଫା ବୌଦ୍ଧମୂର୍ତ୍ତିଚୟ
ରାଜଇ ପର୍ବତେ ପର୍ବତେ ।

( ୪ )

ଶୈବତୀର୍ଥ ଶ୍ରୀ ଭୁବନେଶ୍ୱର
ନିରୁପମରୂପେ ବିରାଜେ ।
ଶତ ଶତ ମନ୍ଦିର ସୁନ୍ଦର
ଶୋଭଇ ଅପରୂପ ସାଜେ ।

( ୫ )

ଶୁଭ୍ରସ୍ତମ୍ଭ ବୈତରଣୀ ତଟେ
ଦେଖ ହେ ନୟନ ବିସ୍ତାର;
ବିରାଜିତ ତୁଙ୍ଗେ ବ୍ୟୋମପଟେ
ଉତ୍ସାହ ଅଭୟ ସଞ୍ଚାର !

(୬)

ନିରେଖ ହେ ମହୋଦଧି ତୀରେ
ନୀଳାଚଳଧାମ ଶ୍ରୀକ୍ଷେତ୍ରେ,
ହିନ୍ଦୁ ହୃଦ ଆକୁଳ ଅଧୀରେ
ଦେଖିବାକୁ ଯେ ଧାମ ନେତ୍ରେ ।

(୭)

ସ୍ମର ବାରେ ହେ ଉତ୍କଳବାସୀ,
କୋଣାର୍କ ଶିଳା-ଶିଳ୍ପ-ରତ୍ନେ ।
ଆହା କି ମୋହନ ରୂପ-ରାଶି
ଉନ୍ମୀଳିତ ଶିଳ୍ପୀର ଯତ୍ନେ ।

(୮)

ଏହି ସେହି କଳିଙ୍ଗ-ଧରିତ୍ରୀ
ଯହିଁ ଧୌଳି, ଜୌଗଡ଼ ରାଜେ ।
ଶିଳାକ୍ଷରେ ଯହିଁ 'ଜୀବେ-ମୈତ୍ରୀ'
ଘୋଷିତ ଅଶୋକ-ସାମ୍ରାଜ୍ୟେ ।

(୯)

ଏହି ସେହି ଉତ୍କଳ-ଧରଣୀ
ଯହିଁ ହରି ନାମ ପ୍ରଚାର,
ଦେଖାଇଲେ ଭକତି-ସରଣୀ
ଶ୍ରୀଚୈତନ୍ୟ ପ୍ରେମ-ଭିଖାରି ।

(୧୦)

ମହାନଦୀ-ବ୍ରାହ୍ମଣୀ-ସେବିତ
ସୁବର୍ଣ୍ଣରେଖା-ଋଷିକୁଲ୍ୟା—
ବୈତରଣୀ-ପ୍ରବାହ-ପ୍ଲାବିତ
ଉତ୍କଳ-ସୁଷମା ଅତୁଲ୍ୟା ।

(୧୧)

ମହୋଦଧି ଦିଗନ୍ତ-ବିସ୍ତାର
ଚିଲିକା ହ୍ରଦ ଜଳରାଶି
ଅଟବୀ-ଅଚଳ-ବ୍ରଜଧାରି
ଉତ୍କଳ ଚିତ୍ତ-ଉଲ୍ଲାସୀ ।

( ୧୨ )

ଶୈଳାବନ୍ଧବେଷ୍ଟିତ କଟକେ
ଭଗ୍ନ ବାରବାଟୀ ଅଦୂରେ,
ସ୍ମର ବାରେ କଳ୍ପନା-ଛଟକେ
ପୂରୁବ ଯଶୋଧନ ଶୂରେ ।

( ୧୩ )

ପୂରୁବ ଉନ୍ନତ-ପଦ-ଭ୍ରଷ୍ଟ
ହେ ଉତ୍କଳ ନବ୍ୟ ସମାଜ !
ଉତ୍କଳର କି ଦୁର୍ଗତି କଷ୍ଟ
ଉତ୍କଳୀୟେ ଦେଖ ହେ ଆଜ ।

( ୧୪ )

ଆଜି ଝାଡ଼ଖଣ୍ଡ ଜନପଦ
ଭଞ୍ଜଭୂମି ଆଦ ବର୍ଜେ,
ପୁରାତନ ଗୌରବ-ସମ୍ପଦ-
ଚିହ୍ନ ମାତ୍ର ଓଡ୍ରସମାଜେ ।

( ୧୫ )

ଏବେ ଦେଖ ବ୍ରିଟିଶ ଦୂରାଷ୍ଟ୍ରେ
ଧୀରେ ଲଭ ନବ ଚେତନା,
ପଞ୍ଜାବରେ ବଙ୍ଗେ ମହାରାଷ୍ଟ୍ରେ
ଲାଗିଛି କର୍ମର ସାଧନା ।

( ୧୬ )

ଅଳସ ନଶ୍ଚେଷ୍ଟ ମ୍ରିୟମାଣ
ଉତ୍କଳୀୟେ ନ ରହ ଆଉ,
କର୍ମର ସାଧନେ ଦଅ ଦଅ ପ୍ରାଣ,
ଲାଜ ହୀନତା ଚାଲି ଯାଉ ।

( ୧୭ )

ଅରଜ ହେ କର୍ମର ସମ୍ପଦ,
'କର୍ମହିଁ ଧର୍ମ' ମନ୍ତ୍ର ଜପି
ହୁଅ ସତ୍ୟଜ୍ଞାନ-ବିଶାରଦ
ବଳ ବୁଦ୍ଧି ସବୁ ଅରପି ।

( ୧୮ )

ଜ୍ଞାନ-କର୍ମ-ତପସ୍ୟାର ବଳେ
ଏ ଭାରତ-ମହୀ-ମଣ୍ଡଳେ
ଜିଣି ସିଦ୍ଧି ଉବରଙ୍ଗତଳେ
ଉଜ୍ଜ୍ୱଳ କର ହେ ଉତ୍କଳେ ।



( ୨୨ )

## ହିମାଚଳେ ଉଦୟ-ଉତ୍ସବ ।



ସଫଳ ହୋଇଲା ଆଜି ବ୍ୟାକୁଳ ବାସନା,
ଯାମିନୀର ଶେଷ ଯାମେ ଜାଗିଲା ଚେତନା ।
ପ୍ରାଚୀ ଚକ୍ରବାଳେ ସୂକ୍ଷ୍ମ ପ୍ରଭାର ପ୍ରକାଶ
ସେ ବ୍ରାହ୍ମ ମୁହୂର୍ତ୍ତେ ବକ୍ଷେ ଧରିଲା ଆକାଶ ।
ସେ ଉଦାର ସୂକ୍ଷ୍ମଜ୍ୟୋତି ସଞ୍ଚରିଲା ଶୃଙ୍ଗେ
ଊର୍ଦ୍ଧ୍ୱ ଲୋକେ ନୀଳକାନ୍ତ ଗଗନର ଦାଣ୍ଡେ ।
ମୁକ୍ତାର ପାଣ୍ଡୁର ଛଟା କି ଦିବ୍ୟ ଛଟକେ
ଭେଦି ଦିଗ୍‌ବଳୟ-ରେଖା ଦ୍ୟୁଲୋକେ ଝଟକେ ।
ଉଠି ଯେହ୍ନେ ହୀରକର ସୋପାନେ ସୋପାନେ
ହସ ହସ ମୁଖେ ଉଷା ଉଇଁଲେ ବିମାନେ ।
ଏ ଅମୃତ ଲଗ୍ନେ ଉଭା ହୋଇ ଗିରି-କକ୍ଷେ
ଉଦୟ-ଉତ୍ସବ ଲୀଳା ଦେଖିଲି ପ୍ରତ୍ୟକ୍ଷେ ।
ଏବେ ଦ୍ୟାବା-ପୃଥିବୀର ପରିଣୟୋତ୍ସବ !
ଚିର ପୁରାତନ ପୁଣି ନିତ୍ୟ ନବ ନବ ।
ଜ୍ୟୋତିର ପରମାଶ୍ଚର୍ଯ୍ୟ ଲୀଳାର ବିଳାସେ
ଲାବଣ୍ୟର ଇନ୍ଦ୍ରଜାଲ ପ୍ରକଟେ ଆକାଶେ ।
ଗିରିଆଡ଼େ କେତେ ପାଦଶୈଳ ଟେକି ଶିର
କି ପୁଣ୍ୟ ପ୍ରତୀକ୍ଷା-ଭରେ ନିସ୍ତବ୍ଧ ସ୍ଥିର !
ମହାମହିମାରେ ସେଥି ମଧ୍ୟେ ସର୍ବୋପରି
ଉତ୍ତରେ କାଞ୍ଚନଜଙ୍ଘା ଶୁଭ୍ର ମୂର୍ତ୍ତି ଧରି
ହିମଗୌର ପଞ୍ଚଶୃଙ୍ଗେ ଭେଦି ମହାକାଶ
ପାବନ ପଞ୍ଚାଗ୍ନି ବ୍ରତ ଅଙ୍ଗିରା-ସଙ୍କାଶ
ମହା ପ୍ରକୃତିର ମହା ପୁରୋହିତ ବେଶେ
ରାଜଇ ଶାଶ୍ୱତ ଶ୍ୱେତ ହିମାନୀ-ପ୍ରଦେଶେ ।
ସହସା ରହସ୍ୟମୟ ମହାମହୋଲ୍ଲାସେ
ସେ ଜ୍ୟୋତି ଉଠିଲା ଜଳି ପରାଚୀ ଆକାଶେ,
ପଶ୍ଚିମର ଦୂରତମ ଅତଳ ପାତାଳେ
ଘଉଡ଼ାଇ ଶର୍ବରୀର ଘନ ତମୋଜାଳେ ।

ଗିରିର ସ୍ଫଟିକ-ଗୌର ଯଜ୍ଞ-ବେଦି ପରେ
ଜଳି ଉଠିଲା କି ଅଗ୍ନି ନଭୋମଣ୍ଡଳରେ !
ସେ ଜ୍ୟୋତି ପରଶେ ଆହା ସେ ପରମ କ୍ଷଣେ
ଧବଳ ତୁଷାରମୟ ସେ ଊର୍ଦ୍ଧ୍ୱ ଭୁବନେ
ଅରୁଣ କିରଣ ସ୍ପର୍ଶେ ଶୁକ୍ଳ ଶତଦଳ,
ଅବା ଭକ୍ତିଯୋଗେ ଭକ୍ତ-ପ୍ରାଣ ସୁବିମଳ
ଯେସନ ଉଠଇ ଫୁଟି ମହାପୁଲକରେ,
ତେସନ ସେ ନୀଳକାନ୍ତ ଗଗନ-ସାଗରେ
କି ଦିବ୍ୟ ବିବର୍ତ୍ତେ ଆହା କି ପରମୋଲ୍ଲାସେ,
ଚନ୍ଦ୍ରମ ଶୋଭିର ଯେହ୍ନେ ଉତ୍ସବ-ଉଚ୍ଛ୍ୱାସେ
ପାଷାଣ ହିମାଦ୍ରି ଗୌର କାନ୍ତିରେ ଭାସ୍ୱର
ବିକଶି ଉଠିଲା ପୁଣ୍ୟତେଜେ ଗୌରତର ।
ଶୃଙ୍ଗୁଁ ଶୃଙ୍ଗୁଁ ଅରୁଣିତ ଉଦୟାଦ୍ରି-ତଟେ
ବିରାଜି ରାଜୀବ-ରୁଚି ମୟୂଖ ପ୍ରକଟେ ।
ନିଃଶେଷରେ ନୈଶତମଃ ବିନାଶି ସତ୍ୱରେ
ରବି ଅବତୀର୍ଣ୍ଣ ପ୍ରାଚୀ-ଅଶା-ଆକାଶରେ ।
ଅରୁଣ କିରଣରୂପ ଅତୁଲ୍ୟ ତୂଳରେ
ଉନ୍ମୀଳିଲା ମହାଚିତ୍ର ନଗେନ୍ଦ୍ରମୌଳିରେ ।
ଇନ୍ଦ୍ରନୀଳେ ପଦ୍ମରାଗ-ପରାଗ ମିଶାଇ
ଅବା ପଦ୍ମେ ଇନ୍ଦୀବର-ରୁଚିକୁ ରସାଇ
କିମ୍ବା କିସଲୟ ରୁଚି ରସାଣି ସିନ୍ଦୂରେ
ରଞ୍ଜିଲା ଗିରୀନ୍ଦ୍ରଶିର ମହାପ୍ରଭା-ପୂରେ ।
ସହସା ଉଚ୍ଛୁଳି ଦିବ୍ୟ ସୁଷମା ତରଙ୍ଗେ
ସେ ପ୍ରଭା-ପ୍ରବାହ ବେଗେ ବୁଡ଼ାଇଲା ରଙ୍ଗେ
ଉଷାର ମୁକ୍ତାଭଜ୍ୟୋତି-ବିମ୍ବିତ ରୁଚିରେ
ହିମାଦ୍ରିର ସ୍ଫଟିକାଭ ବିଶାଳ ଶରୀରେ ।
ପୁଣି କି ରହସ୍ୟମୟ ବିପୁଳ ପୁଲକେ
ସେ ନଗେନ୍ଦ୍ର କ୍ଷଣେ ଅବଲୋକି ଊର୍ଦ୍ଧ୍ୱଲୋକେ
ଥରି ଉଠିଲାକି ଯେହ୍ନେ ମହାପ୍ରେମାବେଶେ
ସାଶୀର୍ବାଦ ଭାନୁ-ଚୁମ୍ବ ଲଭି ଭାଲଦେଶେ ?
ପୁଣି ଶୃଙ୍ଗୁଁ ଶୃଙ୍ଗୁଁ ପରିବର୍ତ୍ତି ଅଭିନବ
ଦେଖି ଦେଖି କି ଅଦ୍ଭୁତ ଜ୍ୟୋତିର ବିଭବ ।
ତପତ କାଞ୍ଚନ କରେ କାଞ୍ଚନଜଙ୍ଘାର
ଧବଳ ଶିଖରରାଜି ଦିଶେ ମନୋହାର ।

ସେହି ପାଠଲମା କାହିଁ ଗଲା ସ୍ୱପ୍ନପ୍ରାୟେ
ମୂର୍ତ୍ତି-ଲହରୀ ମାତି ଗଲା ଗିରିକାୟେ ।
ଉଚ୍ଛ୍ୱସି ଉଠିଲା ଗିରି-ବକ୍ଷ ଆନନ୍ଦରେ,
କ୍ରମେ ଓହ୍ଲାଇଲା ଜ୍ୟୋତି ଭୂଧରେ ଭୂଧରେ
ପୂରୁବେ ଦକ୍ଷିଣେ ପୁଣି ପଶ୍ଚିମେ ଉତ୍ତରେ
ଶତ ଶତ କ୍ରୋଶବ୍ୟାପୀ ଶତ ମହୀଧରେ ।
କନକ କିରଣାସାରେ ସ୍ନାତ କଳେବର
ଢିଙ୍କଲେ ଧବଳ ମେଘ ପବିତ୍ର ଅମ୍ବର,
ଚଉତାଇ ରଖିଥିଲେ ଯାହା ଯତନରେ
ପାର୍ବତୀ ପ୍ରକୃତି ଦେବୀ ନିଜ ଗନ୍ତାଘରେ ।
ଏହିପରି ସୁଶୋଭିତ ହୋଇ ଶୁକ୍ଳାମ୍ବରେ
ନମିଲେ ଭାସ୍କର-ପଦେ ସକଳ ଭୂଧରେ ।
ଦେଖି ଏହି ମହାଭୂତ ଉଦୟ-ଉତ୍ସବ
ଜ୍ୟୋତିର ପରମାଶ୍ଚର୍ଯ୍ୟ ଶୋଭାର ବିଭବ,
ଏ ଦେହର ଅଙ୍ଗେ ଅଙ୍ଗେ ପ୍ରତି ଲୋମକୂପେ
ସଞ୍ଚରିଲା ନବ ପ୍ରାଣ ମହାହର୍ଷ-ରୂପେ,
ସେହି ପ୍ରାଣ ଅପରୂପ ତାଳ ମାନ ଲୟେ
ସହସା ଉଠିଲା ନାଚି ମହାଭାବୋଦୟେ ।
ଅହେତୁକ ଅମାୟିକ ମହାପ୍ରେମଭରେ
ପାର୍ବତୀ ପ୍ରକୃତି ସଙ୍ଗେ ମାହେନ୍ଦ୍ରଯୋଗରେ
ଏ ଜୀବନ ଗଲା ମିଶି ଅପୂର୍ବ ମିଳନେ
ନିବିଡ଼ ପ୍ରେମର ନବ ବିବାହ-ବନ୍ଧନେ ।
ଏ ଅକୂଳ ହୃଦସିନ୍ଧୁ ଆକୁଳ ତରଙ୍ଗେ
ହିରଣ୍ମୟୀ ଶରଣ୍ମୟୀ ପ୍ରକୃତିର ସଙ୍ଗେ
ସଙ୍ଗତ ମଙ୍ଗଳଲଗ୍ନେ ସେ ମହାସଙ୍ଗମେ
ସେ ପରମ ତୀର୍ଥେ, ଯହିଁ ମରମେ ମରମେ
ଜଡ଼ଜୀବ ସମ୍ମିଳିତ ଅଚ୍ଛେଦ୍ୟ ବନ୍ଧନେ
ବିଶ୍ୱନାଡ଼ୀ-ମୂଳାଧାର ଅନାଦ୍ୟ-ଚରଣେ,
ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ,
ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ,
ଦୁହେଁ ମିଶି କି ଅଦ୍ଭୁତ ଦିବ୍ୟ-ପରିଣୟେ
ପରିଣତ ସ୍ୱୟମ୍ବରା କୁମାରୀ-ହୃଦୟେ ;
ଶତ ଶତ ଶରତର ଶୁଭ୍ର ଶତଦଳେ
ଗ୍ରଥିତ ଯେ ବରମାଲ୍ୟ ହୃଦୟ-ଯୁଗଳେ,

ସେହି ବରମାଲ୍ୟ ଯେନ ଯୁଗଳ ହୃଦୟ,
ମୃଣ୍ମୟର ତପୋଧାନେ ନିଃଶେଷେ ତନ୍ମୟ,
ଦ୍ୱୈତ-ଅଦ୍ୱୈତର ଅନୁଭବ ମହୋତ୍ସବେ,
ପବିତ୍ରିତ ଜୀବନର ଅପୂର୍ବ ଗୌରବେ,
ଉଦାର ଗମ୍ଭୀର ସ୍ତବ୍ଧ ମୁଗ୍ଧ ପ୍ରେମାବେଶେ
ଅନାଇଲା ପରସ୍ପର ପତି ପରମେଶେ,
ଅନାଇ ରହିଛୁ ମହାବ୍ୟୋମେ ଯଥା ସତୀ
ସାଗର-ଅମ୍ବରା ମହାଦେବୀ ବସୁମତୀ,
କିରଣ-କଣ୍ଠୀ ରବି-ବିମ୍ବେ, କିମ୍ବା ଯଥା
ଅନାଏ ପଦ୍ମିନୀ ପଦ୍ମମୟୀ ଠିକ ତଥା ।
ପ୍ରକୃତି-ସଙ୍ଗତେ ମିଳି ଯହିଁ ଏହି ପ୍ରାଣ
ଅନୁଭବି କି ଅଦ୍ଭୁତ ଅମୃତ ଆହ୍ୱାନ
ଅନାଇଲା ପ୍ରେମନେତ୍ରେ, ସେ ପ୍ରେମ-ନିଧାନ
ସେ ଅନ୍ତରତମ ସଖା ନିଖିଳ-ନିଦାନ
ଅନନ୍ତ ପ୍ରେମରେ ମୁଗ୍ଧ ସ୍ନିଗ୍ଧ ଆକର୍ଷଣେ
ଅଲକ୍ଷିତେ ପାଶେ ପ୍ରାଣ ଟାଣିନେଲେ କ୍ଷଣେ ।
ରୋମାଞ୍ଚେ ପୂରିଲା ତନୁ, ପୁଲକେ ପରାଣ ।
ମର୍ମର ଉଠିଲା ମର୍ମ-ଭେଦୀ ସ୍ତବଗାନ
ଉତ୍ସପ୍ରାପ୍ତେ ଉତ୍ସାରିତ ନଦୀର ପାଷାଣ
ନୃତ୍ୟଗୀତେ କଲ୍ଲୋଳିତ ନିତ୍ୟବର୍ଦ୍ଧମାନ ।
ବୋଇଲି, ହେ ପ୍ରାଣସ୍ୱାମି, ଆହେ ଅନୁପମ,
ଧନ୍ୟ ହେଲା ଆଜି ଏ ଅଧମ ପ୍ରାଣ ମମ ।
ଅନନ୍ତ ଅପାର ତବ ପ୍ରାଣେ ପ୍ରାଣ-ଘ୍ରାଣ
ମିଳିଛି ନିଭୃତେ ଆଜି ଏ ମୋର ପରାଣ ।
ଅନନ୍ତ ସଙ୍ଗତେ ମୋର ଅନନ୍ତ ମିଳନ,
ମର୍ମେ ମର୍ମେ ପୁଲକିତ ସର୍ବ ଦେହ ମନ ।
କି ଅପୂର୍ବ କି ରହସ୍ୟମୟ ପରଶରେ
ଭରୁଅଛି ସର୍ବପ୍ରାଣ ମହାନନ୍ଦରସରେ ।
କି ନନ୍ଦନ-ଗନ୍ଧ ପ୍ରାଣ-ନିକୁଞ୍ଜ ନିବାସେ
ଫୁଟୁଅଛି ଋତୁରାଜ ବସନ୍ତ ଉଚ୍ଛ୍ୱାସେ ।
ହେ ଅନାଦି ହେ ଅନନ୍ତ ରସ-ପ୍ରସ୍ରବଣ,
ମୋର ଆଦି ଅନ୍ତ ରସେ ରସେ ନିମଗନ ।
ଆଜି ମୋର ନେତ୍ରୋତ୍ସବ, ଶ୍ରୀନେତ୍ରେ ତୁମ୍ଭର
ନିମଗନ ମୁଗ୍ଧ ଦୃଷ୍ଟି ଏ ମୋ ନୟନର ।

ଦେଖଇ ଏ ପ୍ରଭାତର ଦ୍ୟୁଲୋକେ ଭୂଲୋକେ
ପୂର୍ଣ୍ଣ ଏ ନିଖିଳ ତବ ଅଲୋକେ ଆଲୋକେ ।
ଦିଗଦିଗେ ବିରାଜିତ ମହାସ୍ୱର୍ଗପୁରୀ,
ଦିଗଦିଗେ ପ୍ରକାଶିତ ବିବାହ-ମାଧୁରୀ !
ସଙ୍ଗୀତ-ବିଭବେ ପୁଣି ସଙ୍ଗୀତ-ଗୌରବେ
ଧନ୍ୟ ମୋ ଜୀବନ ତବ ଜସ୍ପୃ-ଅନୁଭବେ ।
ଏ ନିଖିଳ ବିଶ୍ୱ ଆଜ ନିଜସ୍ୱ ମୋହର.
ଏ ବିଚିତ୍ର ଏ ସୁକାନ୍ତ ଧରଣୀ — ଅମ୍ବର ।
ଆଜି ମୋ ଶ୍ରବଣୋତ୍ସବ, ଏ ପ୍ରାଣ-କନ୍ଦରେ
କି ଅମୃତ ରାଗିଣୀରେ କି ମହାଛନ୍ଦରେ
ଏ ପ୍ରାଣ-ବୀଣାରେ ତବ ଶ୍ରୀକର-ପରଶେ
ଗାୟତ୍ରୀ ଓଁକାରମୟୀ ଧ୍ୱନିତ ରଭସେ ।
ବଂଶୀଧ୍ୱନି ଶୁଣୁଛି ମୁଁ ପ୍ରାଣର ଶ୍ରୀହର,
"ମୋହର ମୋହର ତୁହି ମୋହର ମୋହର ।"
ଅଣୁରେ ଅଣୁରେ, ନାଥ, ଏ ମହାବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀ ସ୍ୱର ।
ପ୍ରାଣେ ପ୍ରତିଧ୍ୱନି ତାର ଉଠୁଛି ସସ୍ୱର
"ମୋ ହର ମୋ ହର ତୁହି ମୋ ହର ମୋ ହର ।"
କି ଆଉ କହିବି ବିଶ୍ୱଦେବ ପ୍ରାଣଧବ,
ନିତ୍ୟ ଲାଗିଥାଉ ଏହି ମହାମହୋତ୍ସବ ।
ମୋର ଆଶା-ଆକାଂକ୍ଷାର ଅତଳ ବିତଳ
ତବ ସତ୍ତ୍ୱ-ରସେ ପୂର୍ଣ୍ଣ, ସାର୍ଥକ, ସଫଳ
ହେଉ ସଦା ସଙ୍ଗୀତର ପରମ ବିଶ୍ୱାସେ
ଦିବ୍ୟଜ୍ଞାନ-ଶୁଦ୍ଧପ୍ରୀତି - ପୁଣ୍ୟର ବିଳାସେ ।
କାଳର ଆରମ୍ଭ ଆଗୁଁ ହେ ପରମେଶ୍ୱର,
ବସିଅଛ ଅକିଞ୍ଚନ ଏ ପ୍ରାଣ ମୋହର ।
ପରମ ବରେଣ୍ୟ, ଏବେ ଏ କ୍ଷୁଦ୍ର ଜୀବନ
ପରମ ଶ୍ରୀପଦ ତବ ତରୁ ଅନୁକ୍ଷଣ ।



( ୧୮ )

## ଲୀଳାଚଳ ।



ଉତ୍କଳେ ଉଦୟାଚଳ   ଅୟି ତୀର୍ଥେଶ୍ୱର,
ହେଲୁ ଯେବେ ଉଭା ଉଇଁ   ଉଷାରାଣୀ ସରି,
ଇତିହାସ ଅଗୋଚର   ସେ ଆଦିମ କାଳେ
ଥିଲା ତୋର କି ସ୍ୱରୂପ   କବି ବସି ଭାଳେ ।

ଘନ ବନ-ରାଜି ନୀଳ   ନୀଳାଚଳତଟ
ମହୋଦଧି ବେଳାଭୂମି   ଯହିଁରେ ପ୍ରକଟ,
ମହାବଟମୂଳେ ମହା-   ଦାରୁ-ଆରାଧନା
ସରଳ ଶବରକୁଳ   ଭକତି-ସାଧନା ।

କାଳସ୍ରୋତ ପ୍ରତିକୂଳେ   ଭାସି କୁତୂହଳେ
କୁହୁକିନୀ କଳପନା   ଦେଖଇ ବିରଳେ,
ଊର୍ଦ୍ଧ୍ୱେ ବିରାଜିତ   ଜ୍ୟୋତିର୍ମୟ ମହାକାଶ,
ମହିମାର ମୂର୍ତ୍ତିମନ୍ତ   ମୁକ୍ତ ମହୋଲ୍ଲାସ ।

ସେ ମହାନ ନୀଳାମ୍ବରେ   ଆସକ୍ତ-ଲୋଚନା
ନିମ୍ନେ ଘନ ବନ-ରାଜି   ସୁନୀଳବସନା
ଅକ୍ଷତଯୌବନା ସତୀ   ବସୁଧା ସୁନ୍ଦରୀ
ବିରାଜିତା ଦିବ୍ୟସ୍ମିତା   ପଦ୍ମାଳୟା ସରି ।
ଅଗ୍ରତେ ଅବାରି ଦିଶେ   ନୀଳ ଅମ୍ବୁରାଶି
ମହୋଦାର ମହୋଦଧି   ତରଙ୍ଗବିଳାସୀ,
ଯାର ନିତ୍ୟ ନାଦମୟ   ଲହରୀ-ଉଚ୍ଛ୍ୱାସେ
ଅନନ୍ତ ପ୍ରଣବ ଧ୍ୱନି   ଶୁଭଇ ଆକାଶେ ।
ବକ୍ଷେ ବହି ସିନ୍ଧୁ ଧ୍ୱନି   କାନନ ମର୍ମର
ବିପୁଳ ପୁଲକେ ପୂରି   ଧରା କଳେବର
ସୁବିମଳ ସୁଶୀତଳ   ସିନ୍ଧୁ ସମୀରଣ
ଦଶ ଦିଶେ ନିରୁଦ୍ଦେଶେ   ଭ୍ରମେ ଅନୁକ୍ଷଣ;
ଉତ୍ତରେ ଅନାମା ସ୍ୱଚ୍ଛ-   ତୋୟା ସ୍ରୋତସ୍ୱତୀ
ସତତ ତ୍ୱରିତେ ଧାଏଁ   ସାଗର ସଙ୍ଗତି,
ଶାଖାଦ୍ୱୟେ ସୁବିଭକ୍ତା   ସେ ଗିରିତଟିନୀ
ପୂର୍ବେ ଧାଏଁ ଏକ, ଆନ   ଦକ୍ଷିଣବାହିନୀ ।

ବନଭୂମି-ମଧ୍ୟଭାଗେ ରାଜେ ଖଣ୍ଡାଚଳ
ଭାରତର ପୁଣ୍ୟଭୂମି ଭାବୀ ଲୀଳାଚଳ ।
ଏ ଗମ୍ଭୀର ଏ ବିରାଟ ଏ ଉଦାର ଧାମେ,
ଲୀଳାମୟୀ ପ୍ରକୃତିର ଏ ଲୀଳାଲହ୍ମେ
କଳ୍ପନା ଦେଖଇ କ୍ଷଣେ କ୍ଷଣେ ନବ ନବ
ପ୍ରକୃତିର ବିମୋହନ ବିଚିତ୍ର ଉତ୍ସବ ।
ଅରୁଣକିରଣମୟୀ ଦ୍ୟୁଲୋକନନ୍ଦିନୀ
ଚେତନାଦାୟିନୀ ଦେବୀ ଭୁବନମୋହିନୀ
ଉଷାର ତୁଷାରଶୁଭ୍ର ଆଲୋକ-ଉଲ୍ଲାସ,
ଅନ୍ଧ ଅନ୍ଧକାର ଗର୍ଭେ ବିଶ୍ୱର ପ୍ରକାଶ ।
ପ୍ରତି ପ୍ରଭାତର ପୂର୍ବ ଗଗନ ସୀମାରେ
ସହସା ଉଦିତ ପ୍ରଭାମୟ ମହିମାରେ
ସିନ୍ଧୁ ସରୋବରେ ଜ୍ୟୋତିର୍ମୟ ଶତଦଳ
ବିମଳ କିରଣ ଦଳେ ଭାନୁ ଢଳ ଢଳ,
ଯାର ଦରଶନେ ବିଶ୍ୱ— ସ୍ଥାବର ଜଙ୍ଗମ
ପାଷାଣ ପାଦପ ପଶୁ ପକ୍ଷୀ ପତଙ୍ଗମ
ନାନା ରୂପ ନାନା ବର୍ଣ୍ଣ ନାନା ଶବ୍ଦ ଛଳେ
ବିକଶି ଉଠନ୍ତି ଆହା ବିଚିତ୍ର କୌଶଳେ ।
ମଧ୍ୟାହ୍ନେ ମହିମାରେ ବ୍ୟୋମ ସିଂହାସନେ
ବିରାଜିତ ତପନର ପ୍ରତାପ ଶାସନେ
ଅଭିଭୂତା ସସାଗରା ଧରା କଳେବର
ମର୍ମେ ମର୍ମେ ଦୀପ୍ତ ତପ୍ତ ବିଶ୍ୱ ଚରାଚର ।
କ୍ରମେ ଦିବା ଅବସାନେ ଖଣ୍ଡଶୈଳ ଶିରେ
ଆଲୋକ କଳ୍ପନା ସଙ୍ଗେ ବିଲୋକଇ ଧୀରେ,
ମେଘ ସ୍ତର ଭେଦି ଅସ୍ତଗାମୀ ଭାନୁକର
ପଶ୍ଚିମ ଅମ୍ବରେ ରଚେ ଅଭୁତ ସୁନ୍ଦର,
ମାୟାବିନୀ କାମରୂପା କାଦମ୍ବିନୀ ବାଳା
ପ୍ରକଟଇ ଇନ୍ଦ୍ରଜାଲମୟ ଚିତ୍ରଶାଳା,

ହୀରକ-କଣ୍ଠ ଶତ ହିରଣ୍ମୟ ଗିରି
କ୍ଷଣେ କ୍ଷଣେ ପାଲଟଇ ଯାର ବର୍ଣ୍ଣଶିରୀ,

ହିରଣ୍ମୟ ବୈଜୟନ୍ତେ ହେମ-ହୋମଶାଳା
ନିଃସରଇ ଯହୁଁ ଶୁଭ୍ର ହୋମଧୂମମାଳା,

ଶତ ଶତ ହିରଣ୍ମୟ ମନ୍ଦିର ବିମାନ
ଦାନବ ମାନବ ପଶୁ ପକ୍ଷୀ ଛବିମାନ

କେତେ ନବନଦୀ ବହେ ହିରଣ୍ମୟ ସ୍ରୋତେ
ବକ୍ଷେ ଧରି ନାନା ବର୍ଣ୍ଣ- ବିଚିତ୍ରିତ ପୋତେ ।



( ୨୯ )

# ଉତ୍ତରରାମଚରିତ

(A SELECTION FROM THE TRANSLATION OF UTTAR RAMCHARITA)

ଯେତେ ଶୁଦ୍ଧ ହେଉ ପଛେ ରଚନା ତୁମ୍ଭର,
ନିନ୍ଦା କରିବାକୁ ଲୋକେ ସର୍ବଦା ତତ୍ପର ।
ନାରୀ ଆଉ ବାଣୀ ଦୁହିଙ୍କର ସାଧୁପଣ
ନ ମାନି ନିନ୍ଦନ୍ତି ସଦା ସକଳ ଦୁର୍ଜନ । ୧ ।

---

ଚନ୍ଦ୍ରିକା-ଚୁମ୍ବିତ ତେଣୁ ବିଗଳିତ
ଚନ୍ଦ୍ରକାନ୍ତହାର ସମ
ଉପ୍ତ ଶ୍ରାନ୍ତ ଯୋଗୁଁ ସ୍ୱେଦବିନ୍ଦୁମୟ
ତବ ଭୁଜ ମନୋରମ ।

ସେହି ଭୁଜଲତା ମୋ କଣ୍ଠେ ଅରପି
ସୁଖେ ଶୁଅ ପ୍ରିୟତମେ,
ନବ ସଞ୍ଜୀବନ— ରସେ ମୋ ଜୀବନ
ସିକ୍ତ ହେଉ ମର୍ମେ ମର୍ମେ । ୨ ।

---

କିବା ଗରଳ ଦେହେ ଯାଉଛି ଚରି
ଇନ୍ଦ୍ରିୟଗଣେ ଆହା ବିମୂଢ଼ କରି ।
ତବ ସ୍ପର୍ଶର ଏ କି ଅଦ୍ଭୁତ ଗୁଣ,
କ୍ଷଣେ ବୁଡ଼ାଏ ଜ୍ଞାନ, ଚେତାଏ ପୁଣ ! । ୩ ।

---

ବିବାହ ଦିନୁ ବାଲ୍ୟେ ପୁଣି ନବ ଯୌବନେ
ତୁମ୍ଭର ଶୟନାର୍ଥ ଗୃହେ ବା ବନେ
ଏ ବାହୁ ଉପାଧାନ ଏକା ତୁମ୍ଭର,
ତହିଁ ମସ୍ତକ ନିହି ଶୁଅ ସୁନ୍ଦରି । ୪ ।

ଗୃହେ ଲକ୍ଷ୍ମୀ ମୋର    ମୋ ନେତ୍ରର ପ୍ରତି
ଅମୃତ ଅଞ୍ଜନ ସାର,
ସେ ଅଙ୍ଗ ପରଶେ    ମଣଇ ଚନ୍ଦନ
ଦେହେ ବୋଳା ହେଲା ପରି ।
ସେ ଭୁଜ ମୋ କଣ୍ଠେ    ମୁକୁତାର ହାର
ପ୍ରାୟେ ସ୍ନିଗ୍ଧ ସୁଶୀତଳ,
ପ୍ରିୟାର ସବୁହିଁ    ପ୍ରୀତିକର, ଏକା
ବିରହ କରେ ବିକଳ । ୫ ।

---

ସୁଖେ ଦୁଃଖେ ଏକରୂପ ସେ ପ୍ରେମ ଅତୁଳ,
ସବୁ ଅବସ୍ଥାରେ ଯାହା ରହେ ଅନୁକୂଳ,
ବ୍ୟଥିତ ପ୍ରାଣର ଯାହା ବିଶ୍ରାମ ଅପାର,
ଜରା ହରି ନ ପାରଇ ସୁଧାରସ ଯାର,
କାଳବଶେ ଗଲେ ଗୁଚି ସର୍ବ ଆବରଣ
ସ୍ନେହସାରରୂପେ ଥାଏ ପ୍ରେମ ଚିରନ୍ତନ ।
ଏସନ କଲ୍ୟାଣମୟ ପ୍ରେମର ବିଭବ
ବିପୁଳ ବସୁଧା ମଧ୍ୟେ ଆହା କି ଦୁର୍ଲଭ ! । ୬ ।

---

ବାଲ୍ୟକାଳୁ ପ୍ରିୟ ସଖୀ ମୋ ସ୍ନେହେ ପାଳିତା,
ମୋ ବିନା ଶରଣ ଆନ ନ ଜାଣନ୍ତି ସୀତା ।
ଆଜି କି କପଟେ ମୁହିଁ ସହସା ଆଚରି
ମୃତ୍ୟୁମୁଖେ ପେଷୁଛି ସେ ପ୍ରାଣସହଚରୀ ।
ଜନ୍ତୁକୁ ପୋଷିଣ ଗୃହେ କଂସାଇ ଯେସନ
ଅବଶେଷେ ଗଳା ତାର କରଇ ଛେଦନ । ୭ ।

---

କାହିଁ ସ୍ନିଗ୍ଧ ଶ୍ୟାମ, କାହିଁ ବିଶାଳ, ଭୀଷଣ,
ନିର୍ଝର ଝଙ୍କାରେ କାହିଁ ପୂର୍ଣ୍ଣ ଦିଗଗଣ ।
ଚିର-ପରିଚିତ ମୋର କେତେ ତୀର୍ଥାଶ୍ରମ,
କେତେ ଗିରି, କେତେ ନଦୀ, କାନ୍ତାର ଦୁର୍ଗମ
ଆଜି ପୁଣି ବିରାଜିତ ମୋ ନେତ୍ର-ଅଗ୍ରତେ,
ସେ ଦୂର ଦଣ୍ଡକାରଣ୍ୟ ଦେଖୁଛି ମୁଁ ସତେ । ୮ ।

---

"ତୁମ୍ଭ ସଙ୍ଗେ ନାଥ, ରହିବ ସର୍ବଦା
କୁସୁମ-ସୁରଭି ବନେ ।"
କହୁଥିଲେ ସୀତା, ଆହା ତାହାଙ୍କର
କି ସ୍ନେହ ଥିଲା ଏ ବନେ !

କିଛି ନ କଲେହେଁ ହରେ ସର୍ବ ଦୁଃଖ
ଯାର ମୁଖ-ଦରଶନ,
ବଚନ-ଅତୀତ, ସେ କି ଧନ ତାର,
ଯେ ଯାହାର ପ୍ରିୟଜନ । ୯ ।

---

ଆଜି ପୁଣି ବିଲୋକଇ ଏହି ସେହି ବନ,
ଦୁହେଁ ଯହିଁ କଲୁଁ କିଛି ଦିବସ ଯାପନ ।
ବନବାସୀ ଗୃହୀ ପୁଣି ସ୍ୱଧର୍ମନିରତ,
ଭୁଞ୍ଜୁଥିଲୁଁ ସଂସାରର ଆନନ୍ଦ ସତତ ।

ଏହି ସେହି ଚିରନ୍ତନ କେକି-କେକାକୁଳ,
ଏହି ସେହି ନଦୀତଟ ମଞ୍ଜୁଳ-ବଞ୍ଜୁଳ ।
ମତ୍ତ ମୃଗଯୂଥେ ଦୃଷ୍ଟି ସେହି ଜନସ୍ଥଳ,
ନଦୀକୂଳେ ପୁଞ୍ଜୀଭୂତ ସେ ନୀଳ ହିଜ୍ଜଳ ।

ଅଦୂରେ ଦିଶଇ ଯାହା ମେଘମାଳା ସରି,
ପ୍ରସ୍ରବଣ ଗିରି ସେହି ଯହିଁ ଗୋଦାବରୀ ।
ଜଟାୟୁଙ୍କ ବାସଥିଲା ଏହି ଗିରି ଶିରେ,
ତଳେ ତାର ଥିଲୁଁ ଆମ୍ଭେ ପର୍ଣ୍ଣର କୁଟୀରେ ।

ଗୋଦାବରୀ ସ୍ୱଚ୍ଛ ଜଳେ ବିମ୍ବିତ ଯାହାର
ଶ୍ୟାମ ତରୁକୁଞ୍ଜ, ଏଇ ସେ ବନ ଉଦାର ।
ଯହିଁ ନାନା ଜାତି ପକ୍ଷୀ ମଧୁର କୂଜନେ
କରୁଛନ୍ତି ନିନାଦିତ ବିଶାଳ ଗହନେ । ୧୦ ।

---

ପ୍ରସ୍ତର ଘାତେ ଉଠୁଛି ଯାହାର
ଉଚ୍ଛଳ କଲ୍ଲୋଳମାଳା,
ସେ ନଦୀମାନଙ୍କ ପବିତ୍ର ସଙ୍ଗମ
ହରଇ ତ୍ରିତାପଜ୍ୱାଳା । ୧୧ ।

---

ଗମ୍ଭୀର ସ୍ୱଭାବ ଯୋଗୁଁ ନୁହେ ପ୍ରକାଶିତ,
ଅନନ୍ତର ଘନ ବ୍ୟଥା ଅନ୍ତରେ ପୋଷିତ ।
ରୁଦ୍ଧ ପାତ୍ର ମଧ୍ୟେ ଯଥା ଦ୍ରବ୍ୟର ଦାହନ,
ରାମଙ୍କ ବିରହ ଶୋକ ଅଟଇ ତେସନ । ୧୨ ।

---

ନନ୍ଦନ ବନର	ଚନ୍ଦନ ପଲ୍ଲବ
ରସ କି ପଡ଼ୁଛି ଝରି !
ସୁଧାକର-କର—	ନିକରୁ ନିର୍ଗତ
ସୁଧା କି ପଡ଼ୁଛି କ୍ଷରି !
ମୃତସଞ୍ଜୀବନ	ମହୌଷଧ ରସ
କେ ଦେଉଛି ଢାଳି ହୃଦେ ?
ଦଗ୍ଧ ପ୍ରାଣ ମୋର	ହେଉଛି ଶୀତଳ
ପରିତୃପ୍ତ ମହାମୁଦେ ।
ଚିର ପରିଚିତ	ଏ ସେହି ପରଶ
ସଞ୍ଜୀବନ ସମ୍ମୋହନ ।
ସନ୍ତାପ ମୋହରୁ	ବଞ୍ଚାଇ ଏ ପ୍ରାଣ
ହର୍ଷେ ମୋହେ ହରେ ମନ । ୧୩ ।

---

ହୃଦୟଦୋଷରେ ତୁ ପ୍ରାଣ ମୋହର,
ନେତ୍ର-କୌମୁଦୀ ତୁହି ସୁଧା ଅଗାର,
ଏସନ ଶତ ଶତ ପ୍ରିୟବଚନେ
ଭୁଲାଇଣ ସରଳା ଅବଳା ଜନେ,
ତାଙ୍କୁ କି ଫଳ ଅବା ସେ କଥା କହ,
ହୂର ତାହା ହୃଦୟ ହେଉଛି ଦହ । ୧୪ ।

---

ସୁଧାମୟ ଲେପ	ଅନ୍ତରେ ବାହାରେ
ରନ୍ଧ୍ରେ ରନ୍ଧ୍ରେ ଏ ଦେହର
କେ ଦେଉଛି ବୋଲି	କାର କରସ୍ପର୍ଶେ
ଜୀବିତ ହେଲି ଆବର;
କାର ସ୍ପର୍ଶ ଏହି	ଅମୃତ ସ୍ପନ୍ଦରେ
କରି ମୋତେ ସଞ୍ଜୀବିତ
ଆନନ୍ଦଜନିତ	ନୂତନ ମୋହକୁ
କରୁଅଛି ସଞ୍ଚାରିତ । ୧୫ ।

---

ସଂଗ୍ରାମ-ପ୍ରାଙ୍ଗଣେ ଧୂଳି-ପଟଳ ମଧ୍ୟରେ
ସୈନିକଙ୍କ ଶସ୍ତ୍ରଜାଳ ଚମକଇ ଖରେ ।
କନକ-କିଙ୍କିଣୀ ରଥେ ବାଜେ ଝଣ ଝଣ,
ମତ୍ତଗଜେ ଘୋରଛନ୍ତି ଯେସନେ ଘୋର ଘନ ।
ଏହି ସୈନ୍ୟବ୍ୟୂହେ ପରିବେଷ୍ଟିତ କୁମାର
ଯୁଝୁଛି ଏକାକୀ ଅହୋ ଅଦ୍ଭୁତ ବ୍ୟାପାର ! ।୧୬।

---

ବର୍ଦ୍ଧିତ ଦୁନ୍ଦୁଭି ରବେ ଏ ଯୋଦ୍ଧାର କୋଦଣ୍ଡ ଟଙ୍କାର
ଗିରି-ଗଜ-ବ୍ରଜ-କର୍ଣ୍ଣେ କରୁଥିବ ବ୍ୟଥାକୁ ବିସ୍ତାର ।
ଆଚ୍ଛନ୍ନ କଲାଣି ବୀର ରଣସ୍ଥଳୀ କବନ୍ଧନିକରେ,
କେତେ ମୁଣ୍ଡ ଅର୍ପିଲାଣି ବିକରାଳ କାଳର ତୁଣ୍ଡରେ ।୧୭।

---

ଯଶ ଭୂମିର ହେ ମହାବାହୁ.
ଏଥୁଁ ବଳି ଅଯଶ କି ଅଛି ଆଉ ?
ମୃଗନେତ୍ରୀର ଦଶା କି ହେଲା ବନେ ?
କହ ନରେଶ, କିସ ଭାଳୁଛ ମନେ ! ।୧୮।

---

ପ୍ରଳୟ ମାରୁତ ଯୋଗେ ଆସ୍ଫାଳିତ
ସିନ୍ଧୁର ପ୍ରବାହ ସମ,
ରୌଦ୍ରଗୁଁ ଉତ୍ଥିତ ଏ ବହଳ ସେନା
ମହାକୋଳାହଳ ସମ ।
ଶୈଳ ଅଭିଘାତ ଯୋଗେ ବିକ୍ଷୋଭିତ
ବାଡ଼ବ ବହ୍ନି ସମାନ
ପ୍ରଚଣ୍ଡ କ୍ରୋଧାଗ୍ନି — ଶିଖାର କବଳେ
ପଡ଼ନ୍ତୁ ନ ପାଇ ସ୍ଥାନ । ୧୯ ।

---

ଦର୍ପଭରେ କହୁହଲେ ଉଞ୍ଚାଇ କୋଦଣ୍ଡ
ସମ୍ମୁଖେ ମୋ ମୂର୍ଖେ ଲକ୍ଷ୍ୟ, ପଶ୍ଚାତେ ପ୍ରଚଣ୍ଡ
ଅନୁଗାମୀ ସୈନ୍ୟଗଣେ ରକ୍ଷି ତୀକ୍ଷ୍ଣ ଦୃଷ୍ଟି
ହସେ ନ କରନ୍ତୁ ଏହି ବୀର ଶରବୃଷ୍ଟି
ବାଟେ ଦ୍ୱିଧାକୃତ ବେନ ଜଳଦଭ୍ର ଯଥା
ମଧ୍ୟେ ଇନ୍ଦ୍ରଧନୁ ଧର ଶୋଭେ, ଏହି ତଥା । ୨୦ ।

# Selections from the writings

OF

# Fakirmohan Senapati

(B. 1843. D. 1918)

( ୧ )

## ବୌଦ୍ଧାବତାର କାବ୍ୟ

### ପ୍ରଥମ ସର୍ଗ



ପାପେ କଳୁଷିତ ଧର୍ମବିବର୍ଜିତ
ହେଲେ ସକଳ ମାନବ,
ପ୍ରଭୁ ବିଶ୍ୱପତି ଜଗତେ ହୁଅନ୍ତି
ଯୁଗେ ଯୁଗେ ସମ୍ଭବ ।

ଧାର୍ମିକ ରକ୍ଷଣେ ଦୁରିତ ଦଳନେ
ଗୋଲୋକବିହାରୀ ହରି
ଅବତାରରୂପେ ଜନମନ୍ତି ଆସେ
ମାନବ ଶରୀର ଧରି ।

ଦେଖୁଁ ପ୍ରତ୍ୟକ୍ଷରେ ଜଗତ ମଧ୍ୟରେ
ଦୟାମୟ ଭଗବାନ
ଘଟନାବିଶେଷେ ଆସି ଅବଶେଷେ
କରନ୍ତି ଦୁଃଖ ନିର୍ବାଣ ।

ହିମାଳୟ ପଦେ ଥିଲା ଜନପଦେ
କପିଳ ମୁନି ଆଶ୍ରମ,
ଧନ ଧାନ୍ୟ ପୂର୍ଣ୍ଣ ସୁଖ ଶାନ୍ତି ପୂର୍ଣ୍ଣ
କପିଳବାସ୍ତୁ ତା ନାମ ।

ରାଜା ଶୁଦ୍ଧୋଦନ ଧର୍ମପରାୟଣ
ଥିଲେ ତହିଁ ନରପତି,
ତାଙ୍କ କୁଳ ଜାୟା ସତୀ ମହାମାୟା
ପୁଣ୍ୟଶୀଳା ପ୍ରଜାବତୀ ।

ପୁଣ୍ୟ ଅଙ୍କେ ଯଥା ପ୍ରୀତି ପରିବୃତା,
ତେସନେ ସେ ବେନି ରାଣୀ;
ଶଙ୍କର ଅଙ୍କରେ ଥାନ୍ତି ଯେ ରୂପରେ
ଦେବୀ ଜାହ୍ନବୀ, ଭବାନୀ ।

ଆର୍ଯ୍ୟବଂଶୁ ଜାତ ଶାକ୍ୟବଂଶ ଖ୍ୟାତ
ଥିଲେ ଜଗତ ମଧ୍ୟରେ;
ବଂଶ ଅନୁରୂପ ଗୁଣ ନାନାରୂପ
ଥିଲା ନୃପତି ଦେହରେ ।

ଐଶ୍ୱର୍ଯ୍ୟ ମହିମା ସର୍ବ ଗୁଣସୀମା
ଥିଲେ ମଧ୍ୟ ଅଧିକାରୀ,
ସଦା ସନ୍ତାପିତ ବ୍ୟାକୁଳ ଦୁଃଖିତ
ଶୁଦ୍ଧୋଦନ ଦଣ୍ଡଧାରୀ ।

ପୁଷ୍ପହୀନା ଲତା, ଶଶିହୀନା ଯଥା
ଦିଶେ ମଳିନା ଶର୍ବରୀ;
ସନ୍ତାନ ଅଭାବେ ଥାନ୍ତି କଷ୍ଟଭାବେ
ବେନି ଦେବୀ ପାଟେଶ୍ୱରୀ ।

କପିଳ ନଗରେ ପ୍ରତି ସମ୍ବତ୍ସରେ
ଥିଲା ରୀତି ଚିରନ୍ତନ,
ମତ୍ତ ମଧୁମାସେ ଉତ୍ସବେ ଉଲ୍ଲାସେ
ଥାନ୍ତି ଦେଶବାସୀ ଜନ ।

ଏ ମହାଉତ୍ସବ ନବମୀ ଆରମ୍ଭ,
ଶେଷ ପୂର୍ଣ୍ଣିମା ଦିବସେ;
ଏ ଉତ୍ସବକାଳ ସ୍ଥବିର ଆବାଳ
କାଟନ୍ତି ମହାହରଷେ ।

ନରନାରୀ ସର୍ବେ ଆନନ୍ଦ ଉତ୍ସବେ
ମଗ୍ନ ଥିଲେ ଛଅ ଦିନ;
କେବଳ ରାଜାର ବେନି ରାଣୀଙ୍କର
ଶ୍ରୀମୁଖ ଦିଶେ ମଳିନ ।

ସପ୍ତମ ଦିବସେ ନିଶି ଅବଶେଷେ
ପୂର୍ଣ୍ଣିମା ତିଥି ଶେଷରେ
ଦେବୀ ମହାମାୟା ନୃପତିଙ୍କ ଜାୟା
ଦେଖିଲେ ସ୍ୱପ୍ନଯୋଗରେ —

ଗୃହ ଦେବଲୋକ ଦେବୀଙ୍କ ପର୍ଯ୍ୟଙ୍କ
ଶୂନ୍ୟମାର୍ଗେ ହିମାଳୟେ
ଘେନି ଶାଲବନେ ପ୍ରସ୍ତର ଆସନେ
ସ୍ୱର୍ଗୀୟ ଆଲୋକମୟେ

ଥୋଇଲେ ଆସନ, ସ୍ୱର୍ଗୁଁ ଦେବୀଗଣ
ଆସି ସମ୍ମୁଖେ ସେ ସ୍ଥଳେ
ରାଣୀଙ୍କୁ ସମ୍ମାନ କରାଇଲେ ସ୍ନାନ
ସୁଧା ସମ ସରଜଳେ,

ଗଲା ପାର୍ଥିବତା, ଦେବୀ ଉଜ୍ଜ୍ୱଳତା
ଯୋଗେ ମହିଷୀ ଶରୀର
ମୟୂଖମାଳାରେ ମଣ୍ଡିତ ପ୍ରକାରେ
ଦଶିଲା ଅତି ରୁଚିର ।

ରଜତ ଆଗାରେ କାଞ୍ଚନଶଯ୍ୟାରେ
ବସିଛନ୍ତି ପାଟରାଣୀ,
ସ୍ୱର୍ଗଦେବୀଗଣେ ସ୍ୱର୍ଗୀୟସୁମନେ
ମଣ୍ଡନ କଲେକ ଆଣି ।

ରାଣୀ ସୁସଜ୍ଜିତା ରତନମଣ୍ଡିତା,
ବେଢ଼ି ଦେବୀ ସହଚରୀ,
ତୁଷାରଧବଳ ଏକ ଦନ୍ତାବଳ
ଶ୍ୱେତପଦ ଏକ ଧରି

ରାଣୀଙ୍କ ପଯ୍ୟଙ୍କରେ ଭକ୍ତି-ବିନୟରେ
ପ୍ରଦକ୍ଷିଣ ତିନଥର,
ସବ୍ୟେତରଦେଶ କଲାକ ପ୍ରବେଶ
ବିଦାରି ଦେବୀ ଉଦର ।

କୁସୁମକାନନେ ଶଶାଙ୍କ ଯେସନେ
ଧୀରେ କରଇ ସଞ୍ଚାର,
ରାଣୀଙ୍କ ଉଦରେ ଭ୍ରମେ ଉଲ୍ଲାସରେ
ମାତଙ୍ଗ ସେହି ପ୍ରକାର ।

ଦେବୀ ମହାମାୟା ପୁଲକିତକାୟା
ଦେଖି ସ୍ୱପନ ସହସା
ରାଜା ଶୁଦ୍ଧୋଦନେ ବିନୟବଚନେ
ଜଣାଇଲେ ସର୍ବ ଦଶା ।

ରାଜା ସେହିକ୍ଷଣେ ଦୈବଜ୍ଞ ବ୍ରାହ୍ମଣେ
ସ୍ୱପନର ଫଳମାନ
ପୃଚ୍ଛନ୍ତେ, ସକଳେ ରାଣୀ ଭାଗ୍ୟବଳେ
ଲଭିବେ ଦିବ୍ୟ ସନ୍ତାନ -

ବୋଇଲେ ସମସ୍ତେ ଯେବେ ଗୃହାଶ୍ରମେ
ରହିବେ ରାଜନନ୍ଦନ,
ହୋଇବେ ଚକ୍ରବର୍ତ୍ତୀ, ଲଭିବେ ସମ୍ପତ୍ତି,
ଏକଛତ୍ର ଏ ଭୁବନ ।

ହେଲେ ସେ ସନ୍ନ୍ୟାସୀ ଜଗତନିବାସୀ
ମାନବ ଉଦ୍ଧାର ପାଇଁ
କରିବେ ବିଧାନ ତେଜି ଧନମାନ,
ବିଷୟେ ସଂଶୟ ନାହିଁ ।

ପୃଥ୍ୱୀ ପାପଭାର କରିବେ ସଂହାର,
ରାଜ୍ୟରେ ଶୁଭବାରତା
ହୋଇଲା ପ୍ରଚାର, ଆନନ୍ଦ ସଞ୍ଚାର
ଶଶାଙ୍କ ଉଦୟେ ଯଥା ।

ପଞ୍ଚଚତ୍ୱାରିଂଶ ପ୍ରାପତ ବୟସ,
ମହାମାୟା ଗର୍ଭବତୀ,
ଦିଶିଲେ ସୁଷମା ଲାବଣ୍ୟ ପ୍ରତିମା,
ବିକାଶିଲା ମୁଖଜ୍ୟୋତି ।

ପ୍ରୀତି ପବିତ୍ରତା ସ୍ନେହ ସରଳତା
ଆନନ୍ଦ ଜନମେ ମନେ ;
ଜାତ ସଙ୍କ୍ରାମିତ ନୃପତିଙ୍କ ଚିତ୍ତ,
ତେସନେ ପ୍ରଫୁଲ୍ଲ ଜନେ ।

ଆନନ୍ଦଉଲ୍ଲାସେ କ୍ରମେ ଦଶ ମାସେ
ପୂର୍ଣ୍ଣକାଳ ଗର୍ଭାଧାନ,
ପୌଷପୂର୍ଣ୍ଣିମାରେ ପୁଷ୍ୟାନକ୍ଷତ୍ରରେ
ଶୁଭଯୋଗ ବିଦ୍ୟମାନ ।

ଆନନ୍ଦେ ଲୁମ୍ବିନୀ ବନକୁ ଜନନୀ
ଗଲେ ସହଚରୀ ମେଳେ,
ବସନ୍ତ ଯୋଗରେ ଶୀତଳ ସମୀରେ
ଅମିୟ ହିଲ୍ଲୋଳ ଖେଳେ ;

ମଳୟ ଅନିଳେ ବ୍ରତତୀ ସକଳେ
ହେଉଛନ୍ତି ଆନ୍ଦୋଳିତ,
ନବ କିଶଳୟେ ଚାରୁ ପତ୍ରଚୟେ
ତରୁରାଜି କୁସୁମିତ ।

ବିମଳ ଆକାଶେ ବିହଗ ଉଲ୍ଲାସେ
ବିବିଧ ଲୀଳା ବିସ୍ତାରି
କରନ୍ତି ସଙ୍ଗୀତ କୋମଳ ଲଳିତ
ଡାଳେ ବସି ଶୁକ ସାରୀ ।

କମଳ କଳିକା ମାଧବୀ ମଲ୍ଲିକା
କୁସୁମ ବିବିଧ ଜାତି
ଫୁଟି ସମୁଜ୍ଜ୍ୱଳ ଦିଶେ ବନସ୍ଥଳ,
କି ଅବା କୌମୁଦୀ ଭାତି ।

ଭ୍ରମି ସେ କାନନେ ମାୟାଦେବୀ ମନେ
ଜାତ ଆନନ୍ଦ ଅପାର,
କିବା ବିଶ୍ୱପତି- ଙ୍କର ସ୍ନେହ, ପ୍ରୀତି
ବହେ ପ୍ରସ୍ରବଣ ଧାର ।

ଏକ ଶାଳମୂଳେ ଦେବୀ ଦୈବବଳେ
ପଡ଼ିଗଲେ ଅଚେତନେ,
ସ୍ୱର୍ଗୀୟ ସୁମନ ସମାନେ ନନ୍ଦନ
ପ୍ରସବିଲେ ଶୁଭକ୍ଷଣେ ।

ଶୋଭିଲେ କୁମର ପରମ ସୁନ୍ଦର
ମହାଦେବୀଙ୍କର କୋଳେ ;
ଫୁଟିଲା ସୁମନ ନନ୍ଦନ କାନନ
ଅବା ପାରିଜାତ ଗଲେ ।

ଶୁଭସମାଚାର ରାଜ୍ୟରେ ପ୍ରଚାର
ହେଲା ଲୋକେ ପରସ୍ପରେ,
ନିରେଖି ସେ ସୂନୁ ନୃପତି ନୟନୁ
ପ୍ରେମମୟ ଅଶ୍ରୁ ଝରେ ।

ଶାକ୍ୟରାଜ୍ୟବାସୀ ପରମ ଉଲ୍ଲାସୀ
କଲେ ଆନନ୍ଦ ଉତ୍ସବ,
ସେହି ପ୍ରତିଧ୍ୱନି ଅଛନ୍ତି ଯେ ଶୁଣି
ଜଗତ ମାନବ ସର୍ବ ।

ପୃଥିବୀ ଅର୍ଦ୍ଧେକ ଖଣ୍ଡବାସୀ ଲୋକ
ସେ ଶିଶୁଙ୍କୁ କରି ଧ୍ୟାନ
ଯାବତ ଯନ୍ତ୍ରଣା କରି ବଡ଼ମ୍ବନା
ଲଭିବେ ମୁକ୍ତି ନିର୍ବାଣ ।

ରାଜା ଶୁଦ୍ଧୋଦନ ଜ୍ୟୋତିର୍ବିଦଗଣ
ହକାରି ବୁଝିଲେ କୋଷ୍ଠୀ,
ବୋଇଲେ ସକଳେ ଅବନୀମଣ୍ଡଳେ
ହୋଇବେ ଧାର୍ମିକଗୋଷ୍ଠୀ ।

ଆହା ଦୈବବଶେ ସପ୍ତମ ଦିବସେ
ମହାମାୟା ମହାରାଣୀ
ପୁରୀ କରି ଖାଲି ଗଲେ ସ୍ୱର୍ଗେ ଚଳି
ଝୁରାଇ ଜଗତ ପ୍ରାଣୀ ।

ମାତା ମହାମାୟା ତେଜିଛନ୍ତି କାୟା,
କ୍ଷଣଭଙ୍ଗୁର ଶରୀର,
ରହିଛି ବା କେହି ? ଯାହା ଗଲେ ଦେଇ
ଯୁଗେ ଯୁଗେ ଥିବ ଚିର ।



## ଷଷ୍ଠ ସର୍ଗ



ବୈରାଗ୍ୟସଞ୍ଚାର ।

ନାହିଁ ଉଦବେଗ ଚିନ୍ତା କାହାର ଚିତ୍ତରେ,
ରାଜା, ରାଣୀ, ଗୋପା ଛନ୍ତି ଆନନ୍ଦମନରେ ।
ସୁଖଦ ଭ୍ରାନ୍ତିର କ୍ରୋଡେ ସର୍ବେ ଅଚେତନ,
ମଣିଲେ ଫେରିଛି ଏବେ ସିଦ୍ଧାର୍ଥର ମନ ।
ଗୌତମୀ କଦାଚ ମନେ ଭାଳନ୍ତି ବିଗୃର,
ସିଦ୍ଧ ମନସ୍କାମ ପ୍ରଭୁ ଶୁଣିଲେ ଗୁହାର ।
ଗୋପାର ମଧୁରପ୍ରେମେ ମୋର ଭାଗ୍ୟବଳେ
ଆବଦ୍ଧ ପ୍ରମତ୍ତ କରି ପ୍ରଣୟ-ଶୃଙ୍ଖଳେ ।
ସିଦ୍ଧାର୍ଥ ନିର୍ଜନେ ବସି କରେ ନାହିଁ ଧ୍ୟାନ,
କରନ୍ତୁ କରୁଣା ମହାପ୍ରଭୁ ଭଗବାନ ।
ମୋହାନ୍ଧ ମାନବ ବର୍ତ୍ତିମାନେ ବିମୋହିତ,
ନ ଜାଣେ କି ଭବିଷ୍ୟତ ପଟରେ ଲିଖିତ ।
ମାନବର ଭାଗ୍ୟଲିପି ନ ଥିଲେ ପ୍ରଚ୍ଛନ୍ନ
ଶୋଚନୀୟ କଷ୍ଟବହ ହୁଅନ୍ତା ଜୀବନ ।
ଆସେ କେତେ କାର୍ଯ୍ୟ ଭୟଙ୍କର ରୂପ ଧରି
ସାମାନ୍ୟ ଘଟନାସୂତ୍ର ଅବଲମ୍ବ କରି ।
ବିଶାଳ ମହାନ ତରୁ କଣିକା ବୀଜରେ
ରହିଛି ପ୍ରଚ୍ଛନ୍ନଭାବେ ଦେଖୁଁ ପ୍ରତ୍ୟକ୍ଷରେ ।
ଏକଦା ନିଶୀଥକାଳେ ବସି କକ୍ଷାନ୍ତରେ,
ବଜାଏ ରମଣୀ ଏକ ବୀଣା ଧରି କରେ ।
ସ୍ୱର ଗ୍ରାମ ମୂର୍ଚ୍ଛନାରେ ଦିଏ ସୁଧା ଢାଳି,
ପ୍ରମତ୍ତରେ ଅଛି ଆତ୍ମବିସ୍ମୃତା ସେ ବାଳୀ ।
ଗାଏ ଗୀତ ଭାବାବେଶେ ବିମୋହିତମନେ,
ସନ୍ନିପାତଗ୍ରସ୍ତ ରୋଗୀ ପ୍ରଳାପ ଯେସନେ ।
ସଙ୍ଗୀତଲହରୀ ମିଶି ମଳୟାନିଳରେ
ଖେଳି ଯାଉଅଛି ପୁରୀ ମଧ୍ୟେ ହିଲ୍ଲୋଳରେ ।
ନିସ୍ତବ୍ଧ ନିଶୀଥାକାଶେ ମୂର୍ଚ୍ଛନାର ତାନ
[illegible] ଲକ୍ଷ୍ୟମାନ ।

ବିଗତ ସନ୍ତାପ ତନ୍ଦ୍ରା କି ଭବ ଆବେଶେ
ସଞ୍ଚାରିତ ସୁପ୍ରୋତ୍ଥିତ ପର ହୃଦଦେଶେ ।
ବିଶେଷେ ବୈରାଗ୍ୟଭାବ ହୁଏ ହୃଦଙ୍ଗମ,
ଜାଙ୍ଗଲୀ ସଙ୍ଗୀତେ ବିଲଶାୟୀ ଭୁଜଙ୍ଗମ ।

ଅର୍ଦ୍ଧନିଦ୍ରା ଯୁବା, ଗୋପା ଅଚେତା ନିଦ୍ରାରେ,
ଯୁଗଳ କାଞ୍ଚନମୂର୍ତ୍ତି କୁସୁମଶଯ୍ୟାରେ ।
ଅବଶ୍ୟ ସଫଳ ହେବ ବିଧାତା ଲେଖନ,
ମାନବର ସାଧ୍ୟ କାହିଁ କରିବ ମେଣ୍ଟନ ?

ଶୂନ୍ୟକୁମ୍ଭ ଜଳମଗ୍ନ କଲେ ବିକ୍ରମରେ,
ଶିଥିଲେ ଉଠେ ସେ ଭାସି ଦ୍ୱିଗୁଣବଳରେ ।
ମଣିଲେ ସିଦ୍ଧାର୍ଥ, ଗୀତ ବୋଲୁଛି କଣ୍ଠରେ,
ବୃଥା ବିମୋହିତ ଅଛି—ଶଯ୍ୟାନ ସୁଖରେ

ଜରା, ବ୍ୟାଧି, ଦୁଃଖ, ମୃତ୍ୟୁପୂର୍ଣ୍ଣ ଏ ଭୁବନ,
ଦାରୁଣ ଯନ୍ତ୍ରଣା ଭୁଞ୍ଜେ ଜୀବ ଅକିଞ୍ଚନ ।
ଅନଳେ ପତଙ୍ଗ ସମ ବୃଥା ଲାଲସାରେ
ମରେ ଜୀବ ନିତ୍ୟ, ମନେ ଭାଳେ ନାହିଁ ବାରେ

ନିଜ ମୁକ୍ତିମାର୍ଗ ! ଆହା ! ପୃଥ୍ୱୀ ରଙ୍ଗାଳୟ,
କରେ ନିତ୍ୟ ଜୀବ ଜନ୍ମ ମୃତ୍ୟୁ ଅଭିନୟ ।
ଅବିଶ୍ରାନ୍ତ ନଦୀସ୍ରୋତ ସମାନେ ଜୀବନ
ଧାବିତ ମରଣସିନ୍ଧୁ ଗର୍ଭେ ଅନୁକ୍ଷଣ ।

ଘୂର୍ଣ୍ଣିତ କୁଲାଲଚକ୍ର ସମାନେ ମାନବ,
ପର୍ଯ୍ୟାୟରେ ଜନ୍ମ ମୃତ୍ୟୁ କରେ ଅନୁଭବ ।
ଅଜ୍ଞାନ ତିମିରେ ଘୋର ତୃଷ୍ଣାରେ ପୀଡ଼ିତ,
ନ ହେଲା ତଥାପି ଧିକ ଚେତନା କିଞ୍ଚିତ ।

ବ୍ୟାଧଜାଲେ ବଦ୍ଧ ମୃଗ ସମାନେ ଜୀବନ
ଜନମ ମରଣେ ବଦ୍ଧ ମୋହେ ଅଚେତନ ।
ସୁଖ ଲୋଡ଼ି ଦୁଃଖ ଭୁଞ୍ଜେ ଆପାତ ମଧୁର,
କାର୍ଯ୍ୟେ ଲିପ୍ତ ମୃଗତୃଷ୍ଣା ଦେଖି ତୃଷ୍ଣାତୁର ।

ଯୌବନ ଲାବଣ୍ୟ, ଜରା କରିବ ହରଣ,
ପର୍ଯ୍ୟୁଷିତ ତରୁଚ୍ୟୁତ ସୁନ୍ଦର ସୁମନ,
ସୌନ୍ଦର୍ଯ୍ୟ-ସାମର୍ଥ୍ୟ-ହାସ୍ୟ ଜରା କ୍ରମଶରେ
ଦାବାଗ୍ନି କୁସୁମ ବନେ ଦେହରେ ସଞ୍ଚରେ ।

ପ୍ରାଣ ବଲି ପ୍ରିୟତର ଜ୍ଞାତି ବନ୍ଧୁଗଣ,
ବିଚ୍ଛିନ୍ନ ବିନଷ୍ଟ ହେଉଛନ୍ତି ଅନୁକ୍ଷଣ ।
ଢାଳେ ଯେ ହୃଦୟେ ସୁଧା ପ୍ରେମର ଆଲୋକ;
ବିଶେଷେ ସେ ଲୋକ ହୁଏ ଯନ୍ତ୍ରଣାଦାୟକ ।

ନଦୀସ୍ରୋତେ ଶୁଷ୍କ ତୃଣ ସମାନେ ମିଳନ,
ଜଗତରେ ତଥା ଜ୍ଞାତି ବନ୍ଧୁ ପରିଜନ ।
ପ୍ରେମ ବୋଲି ପ୍ରୀତି ବୋଲି ଦୁଇ ଦିନପାଇଁ,
ମୃତ୍ୟୁ ଅନ୍ତେ ଛିନ୍ନଭିନ୍ନ, ଆଉ ଭେଟ ନାହିଁ ।

ଜନ୍ମ, ଜରା, ମୃତ୍ୟୁ ତିନି ବେଢ଼ିଛନ୍ତି ପ୍ରାଣ,
ନାହିଁ କି ଉପାୟ କିଛି ଏଥୁଁ ପରିତ୍ରାଣ ?
ମାନବର ଭାଗ୍ୟଲିପି—ଅନନ୍ତ ଯନ୍ତ୍ରଣା
ଭୁଞ୍ଜିବେ କିପରି ଏହା କରିବ କଳ୍ପନା ?

କରୁଣାନିଧାନ ହରି ସ୍ୱକୀୟ ସନ୍ତାନେ
ଦେବେ କଷ୍ଟ ? ବୁଝାଯାଉ ନାହିଁ ଅନୁମାନେ ।
ସ୍ୱଭାବସଂସ୍କାରାଧୀନ ତୁଚ୍ଛ ପ୍ରାଣିଗଣେ,
ମହୋଚ୍ଚ ମାନବ ଚଳେ ବିବେକ ଶାସନେ ।

ଭ୍ରାନ୍ତ ଜୀବ ମୋହପାଶେ ହରାଇ ବିବେକ
ଆତ୍ମକାର୍ଯ୍ୟ ଫଳ ଭୁଞ୍ଜେ ଯନ୍ତ୍ରଣା ଅନେକ ।
ଜରା, ମୃତ୍ୟୁ ହସ୍ତୁଁ ପ୍ରାଣୀ ପାଇବେ ଉଦ୍ଧାର,
କେ କରିବ ଏପ୍ରକାର ମାର୍ଗ ଆବିଷ୍କାର ।

ନିଶି ଅବସାନ ପ୍ରାୟ, ସଙ୍ଗୀତକାରିଣୀ
ଅନୁଭବେ ସୁଖନିଦ୍ରା ସନ୍ତାପହାରିଣୀ ।
ସିଦ୍ଧାର୍ଥ ଶୟାନ ଅବା ଛନ୍ତି ସଚେତନ,
ନିସ୍ତବ୍ଧ ନିଶ୍ଚଳ ଦେହ ମୁଦ୍ରିତ ନୟନ ।

ସ୍ୱପନ ବା ସତ୍ୟ କଥା ନ ପାରନ୍ତି ଜାଣି,
ଏହା କି ସଙ୍ଗୀତ ଗାଥା ଅବା ଦୈବବାଣୀ ?
ମାନବର ଭାଗ୍ୟେ ଘଟେ ଏରୂପ ଘଟନା
ଅଲକ୍ଷ୍ୟଭାବରେ, ତତ୍ତ୍ୱ ଯାଏ ନାହିଁ ଜଣା ।

ସିଦ୍ଧାର୍ଥ ସିଦ୍ଧାନ୍ତ କଲେ, ଜଗତ ସଂସାର
କରିବ ଉଦ୍ଧାର—ସତ୍ୟମାର୍ଗ ଆବିଷ୍କାର ।
ମାୟାବଶେ, ରସୋଲ୍ଲାସେ କାଟିଛି ସମୟ,
ଯାଇଛି ଯା ଯାଉ ! ତାହା ବାହୁଡ଼ି ନିଶ୍ଚୟ

ନ ଆସିବ ! ଏ ଦେହରେ ଲୋଡ଼ିବ ବିଧାନ,
ଗାଇବେ ଜଗତବାସୀ ଲୋକେ ପରିତ୍ରାଣ ।
ସୁକୁମାର ଦେହ ଶୁଷ୍କ ହେବ ତ ଅବଶ୍ୟ,
ନ ଥିବ ସାମର୍ଥ୍ୟ, ହେବି ଆପଣେ ଅବଶ ।

ଜୀବନର ଆଦି ଅନ୍ତ ଯାଏ ନାହିଁ ଜଣା,
ଆସେ ଯାଏ ଚକ୍ରବତ ଭୁଞ୍ଜିଣ ଯନ୍ତ୍ରଣା ।
ନିଜ କର୍ମଦୋଷେ କଷ୍ଟ ଭୋଗ କରେ ପ୍ରାଣ,
ଅଥବା ଈଶ୍ୱର ଏହା ଅଲଙ୍ଘ୍ୟ ବିଧାନ ?

ଶଯ୍ୟା ତେଜି ଶାକ୍ୟସିଂହ ଉଠିଲେ ସତ୍ୱରେ,
ପଡ଼ିଲା ସକଳ କଥା ମନେ ପର୍ଯ୍ୟାୟରେ ।
ଜୀବନର ଉଚ୍ଚ ଲକ୍ଷ୍ୟ ଆପଣା କର୍ତ୍ତବ୍ୟ
ନୂତନ ରୂପରେ ସର୍ବ କଲେ ଅନୁଭବ ।

ବିଳାସର ବିଷ-ବୃକ୍ଷ କରିବି ଛେଦନ,
ଧୃବାପର କଥା ଭଲ ଦୃଢ଼ କଲେ ମନ ।
ଅବସାନ ନିଶି—ଦୀପ ମଳିନ, ନିର୍ବାଣ,
ମଣିଲେ ଏ ଦୀପଶିଖା ସମାନରେ ପ୍ରାଣ ।

କାଳ ନିଭିଗଲା ଦୀପ – ନିଭିବ ଜୀବନ,
ଜଗତ ସମ୍ବନ୍ଧ ମାତ୍ର ମାୟାର ବନ୍ଧନ ।
ବୃଥା ଗତାୟାତ ମାତ୍ର କରେ କି ଜୀବନ ?
ଅବଶ୍ୟ ଏହାର ଅଛି ଶାନ୍ତିନିକେତନ ।

ନ ପାରିବି କରି ଯେବେ ଲୋକେ ପରିତ୍ରାଣ,
ଅଳୀକ ଐଶ୍ୱର୍ଯ୍ୟଭୋଗ, ବୃଥା ଏହି ପ୍ରାଣ !
ସମ୍ପୂର୍ଣ୍ଣ ରଜନୀ ଶେଷ—ଅରୁଣ ଉଦିତ
ହୋଇ ନାହିଁ, ଯୁବରାଜ ଶଯ୍ୟାରୁ ଉତ୍ଥିତ ।

ଜଗତ ନିସ୍ତବ୍ଧ, କଦାଚିତ ପକ୍ଷିପକ୍ଷ
ସ୍ଖଳିତ, ଶଙ୍କିତ—ଯଥା ଶାକ୍ୟସିଂହ ବକ୍ଷ ।
ଆନନ୍ଦରେ ବିଚରଣ କରନ୍ତି ସଧୀରେ,
ବିଷୟେ ନିର୍ଲିପ୍ତ ମନ ଉଦାସବୁଦ୍ଧିରେ ।
ନନ୍ଦନ ବିଳାସେ ମୁଗ୍ଧ ଭ୍ରାନ୍ତ ଶୁଦ୍ଧୋଦନ,
ଆନ ସର୍ବେ କରୁଛନ୍ତି ସୁଖରେ ଶୟନ ।



## ଅଷ୍ଟମ ସର୍ଗ



ମହାନିଶା

ଅସ୍ତାଚଳଶାୟୀ ରବି, ଆସେ ବିଭାବରୀ,
ଶାକ୍ୟ ବଂଶ ସୁଖରବି ଗମନ ସୂଚନା ।
କପିଳବସ୍ତୁରେ ଦେବାଳୟେ ଶଙ୍ଖଧ୍ୱନି,
ମଙ୍ଗଳ ଆଳତି ଶବ୍ଦଲହରୀ ବିସ୍ତାରେ ।
ପ୍ରବେଶିଲା ଯୁବରାଜ କର୍ଣ୍ଣରେ – ବପିନେ ।
ତେଜି ଧ୍ୟାନ ଉଠି ଧୀରେ ପ୍ରବେଶି ନଗରେ
ଦେଖିଲେ ଆଲୋକମାଳା ବାଦ୍ୟ ନିନାଦିତ,
ବିଚିତ୍ର ପତାକାବଳୀ ତରଙ୍ଗ ବିକାଶେ ।
ସୁନ୍ଦର ତୋରଣ କାରୁକାର୍ଯ୍ୟ ସ୍ଥାନେ ସ୍ଥାନେ,
ପୂର୍ଣ୍ଣକୁମ୍ଭ ଦ୍ୱାରେ ଦ୍ୱାରେ, ରମ୍ଭାତରୁ ପାଶେ ।
ଚୂତ, ଦେବଦାରୁ ଶାଖା, କୁସୁମଖଚିତ
ଲମ୍ବିତ ପ୍ରାଙ୍ଗଣେ – ସର୍ବେ ଉନ୍ମତ୍ତ ଉତ୍ସବେ ।
ରାଜମାର୍ଗ ବେନିପାର୍ଶ୍ୱେ ଆଲୋକର ମାଳା,
ପୁଷ୍ପ-ରାଣୀ କଣ୍ଠେ ଶୋଭେ ରତନର ହାର ।
ଲୀଳାମୟୀ ହାସ୍ୟମୁଖୀ ଆନନ୍ଦପ୍ରତିମା,
କମ୍ବୁହସ୍ତା କୁଳବତୀ ଅଙ୍ଗନା ସକଳେ;
କେ କରେ ସଙ୍ଗୀତ କେବା କରେ ହୁଳହୁଳି ଧ୍ୱନି;
ଲୀଳାମୟୀ ଦେବକନ୍ୟା ତ୍ରିଦିବ ନଗରେ ।
ଏହିକାଳେ ଯୁବରାଜ ବାଜୀ ଅରୋହଣେ
ଯାନ୍ତେ ରାଜମାର୍ଗେ ସର୍ବେ ଆନନ୍ଦେ ଉଲ୍ଲାସେ
ଦେଲେ ପୁଷ୍ପାଞ୍ଜଳି ଭକ୍ତିବିନମ୍ରଭାବରେ ।
ପଞ୍ଚୁଟି କୁସୁମରାଶି ଯୁବରାଜ ଶିରେ,
ଦେହେ ଅଶ୍ୱପୃଷ୍ଠେ ପଦେ ଅଜସ୍ରଧାରରେ ।
ନୃତ୍ୟଶୀଳ ତୁରଙ୍ଗମ କରି ଗ୍ରୀବାଭଙ୍ଗି
ଯାଏ ତାଳେ ତାଳେ ଚଳି, ଦେଲେ କରତାଳି
ସୁନ୍ଦରୀ ନାଗରୀବୃନ୍ଦେ ଆନନ୍ଦମନରେ ।
ସମ୍ମୁଖେ ପଶ୍ଚାତେ ଅଗ୍ରେ ଉଭୟ ପାର୍ଶ୍ୱରେ
[illegible]

ଭାସୁଛି ଆନନ୍ଦେ ପୁରୀ, ମାତ୍ର ଯୁବରାଜ
କ ଅଜ୍ଞାତ ଚିନ୍ତାବଶେ ଆକୁଳ ଅନ୍ତର ।
ଏତେ ଯେ ଉତ୍ସବ କିଛି ନୁହେ ଅନୁଭବ ।
ପ୍ରବେଶିଲେ ପୁରେ - ବେତ୍ରହସ୍ତ ପ୍ରତିହାରୀ
ଗଲେ ଅଗ୍ରେ ଅଗ୍ରେ ଡାକି ଉଚ୍ଚେ ସାବଧାନେ !
ଶ୍ରୀମାନ ମହିମା ଯୁବରାଜ ଶୁଭ ବିଜେ ।
ସମ୍ମୁଖେ ନାରୀଏ ଉଭା ଛନ୍ତି ବେନି ପାଶେ ।
ଧରି କୋଳେ ଆନନ୍ଦରେ ମାତା ପ୍ରଜାବତୀ
ଦେଖାଇଲେ ନବଜାତ ଶିଶୁ ଯୁବରାଜେ ।
ପଡ଼ିଲା କରୁଣା ଦୃଷ୍ଟି କୁମୁଦ କୋରକେ,
ଶଶାଙ୍କକୌମୁଦୀ ! ଦେଲେ ହୁଳହୁଳୀ ନାରୀ,
ଆନନ୍ଦେ ଉନ୍ମତ୍ତ ମାତା, ଗୋପା, ଶୁଦ୍ଧୋଦନ,
ସହଚର, ସହଚରୀ, ପୁରବାସୀ ଜନେ ।
ଉତ୍ସବ ଆନନ୍ଦସ୍ରୋତ ବହେ ଅବିରତ,
ସକଳ ମୁଖରେ ହାସ୍ୟ, ହୃଦୟେ ଆନନ୍ଦ,
ସର୍ବେ ଯେହ୍ନେ ଆନନ୍ଦରେ ପଡ଼ୁଛନ୍ତି ଢଳି ।
ହାସ୍ୟର ତରଙ୍ଗେ, ଶିଶୁ କାନ୍ଦିଲା ଉଚ୍ଚରେ —
ସେ କ୍ରନ୍ଦନ ମଧୁଧାର ଢାଳେ ସର୍ବ କର୍ଣ୍ଣେ ।
ଘୋଷିଲା, ଅଧିଲା, ଶିଶୁ ଭାସି ଉଲ୍ଲାସରେ ।
କେବଳ ସିଦ୍ଧାର୍ଥ ଶୁଣି ସେ କ୍ରନ୍ଦନ ଧ୍ୱନି
କଲେକ ସିଦ୍ଧାନ୍ତ ତଥା ଆପଣା ମନରେ—
ଆଜନ୍ମମରଣ କାନ୍ଦେ ମାନବ ସନ୍ତାନ ।
(ସୁଖ ଅନୁଭବେ ଯାହା ଦୁଃଖର ଅଭାବ)
ଲୋକଦେଖା ହସ କ୍ରନ୍ଦନର ରୂପାନ୍ତର,
ଅଥବା ନିର୍ବୋଧଗଣେ ହସନ୍ତି ନ ବୁଝି ।
ନୃପସ୍ତମ୍ଭ ପାଶେ ପଶୁ ଭକ୍ଷେ ବଲ୍ୱଦଲ ।
ଯାହାର ଯେ ସ୍ଥାନେ ବ୍ୟଥା ମନ ସେହି ସ୍ଥାନେ—
ନିରେଖି ସିଦ୍ଧାର୍ଥ ଭାବ ଗୋପା ଚିନ୍ତାମଗ୍ନା ।
ଆନନ୍ଦ, ଆତଙ୍କ, ଭୟ, ଭରସା ଉଭୟ
ଯୁଗପତ ହୃଦୟରେ ସେକାଳେ ଉଦୟ
ସ୍ୱାମୀ—ଶିଶୁ—ହୁଇ ମୁଖ କରି ନିରୀକ୍ଷଣ,
ଜୀବନପ୍ରତିମା ଶିଶୁ—ଜୀବନବଲ୍ଲଭେ ।
ଶିଶୁ ଜାତ ଶୁଭବାର୍ତ୍ତା ପ୍ରଚୁର ରାଜ୍ୟରେ,
ଉଚ୍ଛୁଳିଲେ ସାଗର ବାରି ଚନ୍ଦ୍ର ଉଦୟରେ,

ନର୍ତ୍ତନେ, ଗାୟନେ, ପ୍ରେମ ପ୍ରୀତ ଆଳାପନେ,
ପରସ୍ପରେ ଜ୍ଞାତ ବନ୍ଧୁ ଆହ୍ୱାନେ, ଭୋଜନେ,
ବିତରଣେ ଅର୍ଥ, ନାହିଁ ଦିବା ନିଶି ଜ୍ଞାନ ।
ଏ ଘୋର ଆନନ୍ଦୋତ୍ସବେ ମତ୍ତ ନରନାରୀ,
ବିରସହୃଦୟା ଗୋପା କି ଅଶୁଭ ଭାବି ।
ଚନ୍ଦ୍ରମା ଚନ୍ଦ୍ରିକା ବ୍ୟାପ୍ତ ଗଗନ ପ୍ରାଙ୍ଗଣେ,
ଅଲକ୍ଷେ ପ୍ରଳୟକାରୀ ମେଘଖଣ୍ଡ ଭାସେ ।
ବସିଲେ ସିଦ୍ଧାର୍ଥ ଯାଇ ରତ୍ନସିଂହାସନେ,
ସୁବର୍ଣ୍ଣ ଥାଳୀରେ କିବା କୁସୁମ ସ୍ତବକ ।
ନର୍ତ୍ତନକୁଶଳା ନାରୀ ସଙ୍ଗୀତ ପ୍ରବୀଣା,
ମହାର୍ଘ ଭୂଷଣ ବସ୍ତ୍ର କୁସୁମେ ମଣ୍ଡିତା,
ବେଢ଼ି ଉଭା ହେଲେ ଯୁବରାଜ ଚଉପାଶେ,
ପୂର୍ଣ୍ଣଚନ୍ଦ୍ର ଚଉପାଶେ ଯଥା ତାରାବଳୀ ।
ବୀଣାବିନିନ୍ଦିତ କଣ୍ଠସ୍ୱରେ ନାରୀଗଣେ
ଆରମ୍ଭିଲେ ନୃତ୍ୟ ଗୀତ । ପବନହିଲ୍ଲୋଳେ
ତାଳେ ପୁରବାସିକର୍ଣ୍ଣେ । ନୀଳାକାଶ ଭେଦ
ସେ ସ୍ୱର ମୂର୍ଚ୍ଛନା ତେଉ ପବନେ ବିଲୀନ ।
ସନ୍ତାପପାସୋରା ସେହି ସଙ୍ଗୀତଲହରୀ
ସୁପ୍ରଭାବ ମନେ କରି ଦିଏ ଜାଗରିତ,
ଜାଙ୍ଗଲୀ ସଙ୍ଗୀତେ ବିଲଶାୟୀ ଭୁଜଙ୍ଗମ;
ଅବା ଯଥା ପ୍ରସ୍ଫୁଟଇ ସୁମନ ବସନ୍ତେ ।
ମାତ୍ର ଯୁବରାଜ ସେହି ତାନ ଲୟ ଗୀତ
ନ ଶୁଣିଲା ପରି ବସିଛନ୍ତି କି ଉଦାସେ !
ମଣିଲେ ସିଦ୍ଧାର୍ଥ ଏହି ସଙ୍ଗୀତ ରାଗିଣୀ—
ଜଗତର ଜରା ମୃତ୍ୟୁ ହାହାକାର ବାଣୀ ।
ଦେଖିଲେ ଲାବଣ୍ୟମୟୀ ନର୍ତ୍ତକୀ ବଦନେ
ଜରା, ବ୍ୟାଧି, ଶୋକ, ମୃତ୍ୟୁ ରହିଛି ପ୍ରଚ୍ଛନ୍ନେ ।
ମୃଦଙ୍ଗର ତାଳେ ତାଳେ ଶୁଣିଲେ ଯେମନ୍ତ
ବୋଲେ ସେହି— ଉଠ ଲୋଡ଼ ସତ୍ୟ ତତ୍ତ୍ୱପଥ,
ନିଶୀଥେ ନର୍ତ୍ତକୀଗଣ କ୍ଳାନ୍ତ ନର୍ତ୍ତନରେ,
ନିଭଛି ଉତ୍ସବ, କ୍ରମେ ନିଭେ ଦୀପାବଳୀ,
ଆନନ୍ଦର ଅବସାନେ ଅବସନ୍ନ ପୁରୀ,
ନିଦ୍ରାଗତା କ୍ରମେ ସର୍ବ ନର୍ତ୍ତକୀ ସୁନ୍ଦରୀ ।
ଉନ୍ନିଦ୍ର ଭବନେ ଛନ୍ତି କେବଳ ଗୌତମ,

ସୂତିକାଗୃହରେ ଶିଶୁ ପାଶେ ନିଦ୍ରାଗତା
ସତୀ ଗୋପା, ଯଥା କୁସୁମିତା ସ୍ୱର୍ଣ୍ଣଲତା ।
ସଦ୍ୟଜାତ ଚନ୍ଦ୍ରାନନ ଦେଖିଲେ ଅନାଇ,
କିଵା ରୂ ଦେବତା ଶିଶୁ ଆସିଛି ଓହ୍ଲାଇ ।
ଅତୃପ୍ତନୟନେ ଗୋପା ଚନ୍ଦ୍ରାନନେ ଚାହିଁ
ବସି ଭାଳୁଛନ୍ତି କେତେ କଥା ଯୁବରାଜ ।
ଶୋଣିତବାହିନୀ ଶିରା ଛୁଞ୍ଚିବ କେସନେ ?
ସହଜରେ ଶୁଷ୍କ ହୋଇ ଯିବ ଉପଶିରା ।
ନାହିଁ ନାହିଁ, ନୁହେ ଏହା ନୃଶଂସ ବେଭାର;
ଅଙ୍ଗରକ୍ଷାପାଇଁ ଉପ ଅଙ୍ଗୁଳୀ ଛେଦନ ।
ନିଦ୍ରାବତୀ ଗୋପା ଦେବୀ ଦେଖିଲେ ସ୍ୱପନେ,
ସହସା ନିର୍ମଳାକାଶେ ପ୍ରଚଣ୍ଡ ଝଟିକା
ବହେ ପ୍ରବଳରେ, ଘନ । ମେଘେ ବଜ୍ରପାତ,
ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣେ ପ୍ରଚଣ୍ଡ ଭାବରେ
ଧାବିତ, ଆହତ ମହାବେଗେ ପ୍ରବଳରେ,
ଏକ ଏକ ତାରା ସବେ ପଡୁଛନ୍ତି ଖସି,
ନିଷ୍ପ୍ରଭ ଚନ୍ଦ୍ରମା ଜ୍ୟୋତି, ନିଷ୍ପ୍ରଭ ତପନ,
କମ୍ପିତା ମେଦିନୀ, ଗିରିରାଜ ଛିନ୍ନଭିନ୍ନ !
ଦାବାନଳେ ଦଗ୍ଧ ବନ ! ସର୍ବ ବିଶୃଙ୍ଖଳ ।
ଗୋପାକଣ୍ଠ ମୁକ୍ତାହାର ଛିଡ଼ିପଡ଼େ ଚୂର୍ଣ୍ଣ,
ବିଶୃଙ୍ଖଳ କେଶପାଶ, ସର୍ବ ଅଳଙ୍କାର ।
କଙ୍ଗାଳନୀ ପରି ପଡି କାନ୍ଦନ୍ତି ଭୂମିରେ,
ରାଜକୀୟ ଛତ୍ର ଦଣ୍ଡ କେତନ ଚାମର,
ଛିନ୍ନଭିନ୍ନ ସିଦ୍ଧାର୍ଥଙ୍କ ଦେହ ଅଳଙ୍କାର !
ଆଚ୍ଛାଦିତ ରାଜପୁରୀ ନିବିଡ଼ ତମରେ,
ଶାକ୍ୟବଂଶ ରାଜଲକ୍ଷ୍ମୀ ମଳିନବଦନା !
ପଡିଲେ ଚମକି ଗୋପା, ବସି ପାଶେ ଯାଇ,
ସ୍ୱାମୀଙ୍କୁ ସ୍ୱପନ କଥା ବୋଇଲେ ବିସ୍ତାରି—
ପୁଛିଲେ, ହେ ନାଥ ! ବୋଲ ଏ କି ଅମଙ୍ଗଳ ?
ଦେଖିଲି କୁକ୍ଷଣେ ସ୍ୱପ୍ନ ! କି ଦଶା ମୋହର
ହେବ ? ନୁହେ ସ୍ଥିର ବୁଦ୍ଧି— ମନ ଅନାୟତ୍ତ ।
କାନ୍ଦୁଛି ପରାଣ ଭୟେ ଦେଖି କୁସ୍ୱପନ ।
ବୋଇଲେ ସିଦ୍ଧାର୍ଥ, ପ୍ରିୟେ ! ତୁମ୍ଭେ ପୁଣ୍ୟବତୀ !
କରେ ଯେବା ଧର୍ମରକ୍ଷା, ଧର୍ମ ତା ରକ୍ଷକ ।

ଧର୍ମବଳେ ବଳୀୟାନ ଲୋକ କଦାଚିତ
ନ ହୁଅନ୍ତି ଜାଣ ପ୍ରିୟେ ! ବିପଦେ ପତିତ ।
ସ୍ୱାମିପ୍ରତ୍ୟୟିନୀ ଗୋପା ନ ବୁଝିଲେ ତତ୍ତ୍ୱ,
ନିଗୂଢ଼ ରହସ୍ୟମୟ ବାକ୍ୟ ଅର୍ଥ କିଛି,
ହେବ ଛିନ୍ନଭିନ୍ନ ପାପରାଜ୍ୟ ଏହିରୂପେ ।
ନିଦ୍ରାଗତା ଗୋପାଦେବୀ – ନିଃଶଙ୍କ ମନରେ
ଶଯ୍ୟା ତେଜି ଶାକ୍ୟସିଂହ ଚତୁର ଆବେଗେ
ଭ୍ରମିଲେ ଅଳିନ୍ଦ ମଧ୍ୟେ ଉଦାସ ମନରେ ।
କ୍ଷୀଣଜ୍ୟୋତି ଦୀପଶିଖା, ସର୍ବେ ଅଚେତନ,
ଶୁଭୁଛି କେବଳ ସୁପ୍ତ ନିଶ୍ୱାସ ପବନ.
ଗମ୍ଭୀର ରଜନୀ, ଜଳେ ସ୍ଥଳେ ପ୍ରାଣିଗଣେ
ସନ୍ତାପହାରିଣୀ ନିଦ୍ରା ଧରିଛନ୍ତି କୋଳେ ।
ନିପତିତା ନିଦ୍ରାବଶେ ନର୍ତ୍ତକୀ ସକଳେ—
ସ୍ତିମିତ ଆଲୋକ ଜ୍ୟୋତି ପତିତ ମୁଖରେ,
ସ୍ଖଳିତବସନା କେହି, ବିଚ୍ଛିନ୍ନକବରୀ,
ସ୍ୱପ୍ନାବେଶେ କରେ କେହି ଦନ୍ତ କଡ଼ମଡ଼,
କେ କରେ ପ୍ରଳାପ, କାହା ନାସିକାଗର୍ଜନ
ଶ୍ରବଣେ ବିକାର ଜାତ ସହଜେ ମନରେ,
ମୁଖରୁ ଗରଳ ବହି ଯାଉଛି କାହାର,
ଚାହିଁଛି ତରାଟି କେହି ପିଶାଚୀ ସମାନେ ।
ଦେଖି ଏ ବୀଭତ୍ସ ଦୃଶ୍ୟ ମହାଘୃଣା ଜାତ
କୁମାର ମନରେ – ଧିକ ! ବୋଇଲେ ସିଦ୍ଧାର୍ଥ ।
ପ୍ରହରକ ପୂର୍ବେ ଯେତେ ଅବନୀ-ଅପ୍ସରୀ,
କାମକଳାବତୀ, କେତେ ନୟନରଞ୍ଜନା
ନୃତ୍ୟେ ଥିଲେ ଉନମତ୍ତା—ଏବେ ମୃତପ୍ରାୟ
ନିପତିତା, ଧିକ ! ଜୀବନର ପରିଣାମ !
ଉତ୍ସବର ଲୀଳାଭୂମି ଥିଲା ଏହି ସ୍ଥାନେ,
ମୁହୂର୍ତ୍ତକେ ପରିଣତ ଶ୍ମଶାନ ସମାନ !
ଏହି ତ ସଂସାରସ୍ଥିତି ? ଅଜ୍ଞ ଲୋକଗଣେ
ନ ବୁଝି ଉନ୍ମତ୍ତ ସଦା ଅଳୀକ ଆମୋଦେ ।
ବରାହ ସମାନ ପଡ଼ି ଗଡ଼ନ୍ତି ପଙ୍କରେ,
ପତଙ୍ଗ ସମାନେ ମରେ ବିଳାସ-ଅନଳେ !
ଭାଳିଲେ ସିଦ୍ଧାର୍ଥ ପୁଣି ଚାହିଁ ନାରୀଗଣେ,
ନିତାନ୍ତ କରୁଣାପାତ୍ର ଅଙ୍ଗନା ସକଳେ,

ବ୍ୟାଧ ଜାଲେ ମୃଗୀସମା— ଛନ୍ଦ୍ରଶୃଙ୍ଖଳସା-
ପାଶେ ବଦ୍ଧା— ପଙ୍କ ମଧ୍ୟେ କରଣୀସମାନା !
ଯୌବନର ସ୍ରୋତ ବହିଯାଏ ଅନୁକ୍ଷଣ,
ନ ଭାଳନ୍ତି କିବା ଦଶା ହେବ ପରିଣାମେ ।
ଭୋଗ-ହଳାହଳ ପାନେ ଆପଣେ ଉନ୍ମତ୍ତ,
କ୍ଷଣସ୍ଥାୟୀ ରୂପାନଳେ ପୋଡ଼ନ୍ତି ଜଗତ ।
ଅସାର ସଂସାରସୁଖେ ନିମଜ୍ଜିତା ପାପେ,
କି ଭୀଷଣ ପରିଣାମେ ହେବେ ଉପନୀତ ।
ଯିବି ସତ୍ୟ ମୁକ୍ତିମାର୍ଗ ଅନ୍ୱେଷଣପାଇଁ,
ବିନା ସ୍ୱାର୍ଥବଳଦାନେ ମିଳେ କି ପରାର୍ଥ ?
ଅହୋ ! ମୋର ବୃଦ୍ଧ ପିତା ନୟନପ୍ରତିମା,
ହୃଦୟଶୋଣିତବିନ୍ଦୁ, ଜୀବନସର୍ବସ୍ୱ
ସମାନ ପାଳନ୍ତି ମୋତେ । କରିବି କିପରି
ବଜ୍ରାଘାତ ଅହୋ ! ଧିକ ! ତାଙ୍କ ହୃଦୟରେ ?
ଯିବି କି ଗୁପତେ ତ୍ୟାଗ କରି ରାଜପୁରୀ ?
ନାହିଁ, ନାହିଁ, ପାଦେ ପଡ଼ି ନେବି ମୁଁ ମେଲାଣି ।



# ନବମ ସର୍ଗ



## ମେଲାଣି

ରାଜ୍ୟବାସୀ ଜନଗଣ ଶୁଭାଶୁଭ ଭାର
ନ୍ୟସ୍ତଛିରେ—ନ୍ୟାୟାନ୍ୟାୟ ଯେ କରେ ବିଚାର,
କିପରି ସେ ଲୋକ ହେବ ସୁଖରେ ନିଦ୍ରିତ ?
ନ୍ୟାୟବାନ ନରପତି ନିୟତ ଚିନ୍ତିତ ।
ପୁଣି ରାଜା ଶୁଣିଲେଣି ପୁତ୍ର ଉଦାସୀନ—
ବିରକ୍ତ ବିଷୟେ ଧ୍ୟାନେ ବିଜନେ ଆସୀନ ।
ମହାରାଜ ଶୁଦ୍ଧୋଦନ ମହାର୍ଘ ଶଯ୍ୟାରେ
ଶୟାନ—ଉନ୍ନିଦ୍ର ନାନାବିଷୟ ଚିନ୍ତାରେ ।
ସୁଷୁପ୍ତିର ସୁଖ ଲୋକ କରେ ଅନୁଭବ -
ସହଜେ ଘଟିବା ନୃପପକ୍ଷେ ଅସମ୍ଭବ ।
ନିଶୀଥେ ନିଦ୍ରିତ ପୁରବାସୀ ଜନଗଣ,
କେବଳ ଜାଗ୍ରତ ରାଜପୁତ୍ର, ଶୁଦ୍ଧୋଦନ ।
ଅଲକ୍ଷେ ସୁଧୀରପଦେ ନୃପତିକୁମର
ବିନୟେ ବନ୍ଦିଲେ ଯାଇ ଜନକପୟର ।
ବିକାଶେ ଉଜ୍ଜ୍ୱଳ କାନ୍ତି ଦେବପ୍ରଭାବରେ,
ମହାର୍ଘ ମାଣିକ୍ୟ ଜ୍ୟୋତି ଅନ୍ଧକାରଘରେ ।
ଜନକ ଚରଣ ବନ୍ଦି ବୋଇଲେ ନନ୍ଦନ—
ଶୁଣିବାକୁ ଆଜ୍ଞା ହେଉ, କରେଁ ନିବେଦନ ।
ବାସନା ସାଧିବି ଇଷ୍ଟ, ଦିଅ ଅନୁମତି,
ମୋ ଭାଗ୍ୟରେ ଘଟୁ ସୁଖ ଦୁଃଖ ବା ଦୁର୍ଗତି ।
ଅନାବୃତ୍ତି ଯିବାପାଇଁ ଗନ୍ତବ୍ୟ ମାର୍ଗରେ,
ଆଜ୍ଞା କର ଏହି ମାତ୍ର ପ୍ରାର୍ଥନା ପୟରେ ।
ଅଲକ୍ଷରେ ଘଟେ ଭବେ ବିଧାତାବିଧାନ,
ଉପଲକ୍ଷ ମାତ୍ର ଲୋକ ଜାଣନ୍ତି ପ୍ରମାଣ ।
ସ୍ୱକାର୍ଯ୍ୟ ସାଧନେ ଯାଏଁ, କର ଅନୁମତି,
ନାହିଁ ମୁହିଁ ଆତ୍ମବଶେ, ନିୟନ୍ତା ନିୟତି ।
ପୂର୍ଣ୍ଣ ହେବ ମୋର ଈଶ ଆଦେଶେ ତପସ୍ୟା,
ହେ ଦେବ ! ପୋଷିଛୁ ମନେ ବିଶ୍ୱାସ ଭରସା ।

ଚମକି ପଡ଼ିଲେ ନୃପ ପୁତ୍ରମୁଖ ଚାହିଁ ;
ରହିଛନ୍ତି ଏକଦୃଷ୍ଟେ ସଂଜ୍ଞା ମାତ୍ର ନାହିଁ ।
ଜାଣି ସୁଦ୍ଧା ପୁତ୍ରବାଣୀ ମାତ୍ରକ ସମ୍ମତି
କୁଳଶୁଁ କଠୋର ମନେ ମଣିଲେ ନୃପତି ।
ସାଷ୍ଟମ ଲଭିଲେ ପୁଣି କ୍ଷଣକ ଉତ୍ତାରେ,
ଚାହିଁ ଛନ୍ତି ବେନନେତ୍ର ପୂର୍ଣ୍ଣ ଅଶ୍ରୁଧାରେ ।
ନିଶ୍ୱାସ ପକାଇ କଷ୍ଟେ ବୋଇଲେ ରାଜନ—
ରେ ପୁତ୍ର ! ତୋହର ଅଛି କିବା ପ୍ରୟୋଜନ ?
କି ଅଭାବ ଅଛି ତୋର, କିପାଇଁ ସଂସାର
ତେଜିବୁ ? ବୃଥାରେ ମୋତେ କର ନା ସଂହାର ।
ଲଲନା ଲାବଣ୍ୟମୟୀ ଗୋପା ସାଧ୍ୱୀ ସତୀ,
ଶାକ୍ୟକୁଳଲକ୍ଷ୍ମୀ ବଧୂ ସରଳା ଯୁବତୀ ।
ଦେବପୁଷ୍ପ ପାରିଜାତକୋରକ କୁମାର,
ବିତ୍ତଶାଳୀ ଶାକ୍ୟରାଜ୍ୟ ବିଖ୍ୟାତ ସଂସାର ।
କମଲାର ଲୀଳାସ୍ଥଳୀ ସୁବର୍ଣ୍ଣପ୍ରସବା,
ପ୍ରକୃତିର ଗନ୍ଧାଘର ମେଳଅଛି ଅବା ।
ଦୁର୍ଦ୍ଦଶା ଦାରିଦ୍ର୍ୟ ଚିହ୍ନ ଏ ଦେଶରେ ନାହିଁ,
ବୀରପ୍ରଜାବତୀ ଏହା ସମାନରେ କାହିଁ ।
ସୁଠାଣ କୋମଳ କାନ୍ତ ପ୍ରଫୁଲ୍ଲ ସୁମନ
ସମାନ ସ୍ୱରୂପ ତବ ନବ ଯଉବନ ।
ବିଜନ ଶ୍ୱାପଦପୂର୍ଣ୍ଣ ନିବିଡ଼ କାନନ,
କ୍ଲେଶ ସହି କରିବୁ ରେ ତପସ୍ୟା କେସନ ?
ଅରେ ମୋର ବାପଧନ ପ୍ରିୟ ପ୍ରାଣାଧିକ,
ଅନ୍ଧର ଲଉଡ଼ି ଶାକ୍ୟକୁଳର ମାଣିକ !
ତୋହର ଜନନୀଶୋକ ଯାଇଛି ପାସୋରି,
ତୋର ମୁଖଚନ୍ଦ୍ର ଦେଖି ଅଛି ପ୍ରାଣ ଧରି ।
ତିମିରଆଚ୍ଛନ୍ନ ଥିଲା ମୋର ଶାକ୍ୟରାଜ୍ୟ
ଉଦୟ ହୋଇଛୁ ବାପ ! ତୁହି ଦ୍ୱିଜରାଜ ।
ହୃଦୟର ଗ୍ରନ୍ଥି ମୋର ଜୀବନସମ୍ବଳ,
ଏକା ତୋହି ବିନା ବାପ ! ସକଳ ବିଫଳ ।
ପ୍ରଜାବତୀ ଗୋପା-ବଧୂ, ଗୌତମୀ ତୋ ବିନା
ହାହାକାର କରି ପ୍ରାଣ ହରାଇବେ ସିନା ?
ବୃଦ୍ଧ ପିତା ମାତାକୁ ତୁ ନ ଯାଅ ଭସାଇ,
ନ ଯାଅ ରେ ପ୍ରଜାଗଣେ କନ୍ଦାଇ କନ୍ଦାଇ ।

ନୟନପିତୁଳୀ ଅରେ ମୋର ଗଳାହାର,
ଆଶା-ଆକାଶରେ ଏକମାତ୍ର ଧ୍ରୁବତାର ।
କେତେ ଆଶା ଭରସା ରେ ବାନ୍ଧିଛୁ ଜୀବନେ,
ଭସାଇ ସକଳେ ବାପ ! ଯିବୁ ତୁ କେସନେ ?
ନବଜାତ ଶିଶୁଟିକୁ ଅନା ବାପ ଥରେ,
କି କରିବ ବଧୂଟି ମୋ ବିଗୃର ମନରେ ।
ଭସାଇ ଦେବୁ କି ତୁ ରେ ସୁଦ୍ଧବ୍ରତ ମାତାକୁ ?
ରହିବେ ଆଶ୍ରାୟୀ ଜନେ ଅନାଇ କାହାକୁ ?
ହେଲଣି ରେ ଜରାଜୀର୍ଣ୍ଣ, ନାହିଁ ଦେହେ ବଳ,
କେବଳ କରିଛୁ ତୋତେ ଜୀବନସମ୍ବଳ ।
ଛାଡ଼ ଦେ ତେ କଥା ମୋର, ଶାକ୍ୟରାଜ୍ୟ ଲୋକ —
କେ ପାଳିବ ସେମାନଙ୍କୁ କେ ହେବ ରକ୍ଷକ ?
କିବା ଲୋଡ଼ା ବୋଲ ତୋର ଦେବି ତାହା ଆଣି,
ବୋଲ ଫେଇ ମନକଥା ପାରେଁ ଯେବେ ଜାଣି ।
ପୁଣ ପୁଣ ବୋଲୁଛି ରେ ଭାଳ ଦେଲେ ମନେ,
ପ୍ରଜାବତୀ ଗୋପା ବଧୂ ବଞ୍ଚିବେ କେସନେ ?
ଏହି ଶାକ୍ୟବଂଶ କଳ୍ପପାଦପ ସମାନ,
ପୂର୍ବପୁରୁଷଙ୍କ ଯଶ-ପୁଷ୍ପ ବିଦ୍ୟମାନ ।
ଥିଲୁ ତୁହି ମୂର୍ତ୍ତିମନ୍ତ ସୌରଭ ସେଥିରେ,
ତୋହ ବିନା ବୃଥା ହେବ ଭାଳ ତୁ ବୁଦ୍ଧିରେ ।
ଶୁଖିଲା ରାଜାଙ୍କ କଣ୍ଠ ନ ଫୁଟିଲା ବାଣୀ,
ଅବିରଳ ବହେ ବେନି ନୟନରୁ ପାଣି ।
ନିତାନ୍ତ ସନ୍ତପ୍ତ ଯୁବରାଜ ଏହା ଦେଖି,
ଆକୁଳରେ ପିତା ମୁଖ ଅଛନ୍ତି ନିରେଖି ।
ବୋଇଲେ ଏ ଅନ୍ତେ ଧୀରେ କୋମଳ ବଚନେ,
ଅହେ ପିତଃ ! ମୋତେ କଲେ ଆଦେଶ ଏକ୍ଷଣେ;
ଦେଉନ୍ତୁ ମୋହର ଲୋଡ଼ା ଗୃରଟି ପଦାର୍ଥ,
ଈପ୍ସିତ ପାଇଲେ ଗୃହେ ରହିବି ଯଥାର୍ଥ ।
ନୃପତି ଭରସା ପାଇ ବୋଇଲେ ନନ୍ଦନେ,
ବୋଲ ବୋଲ ଲୋଡ଼ା ତୋର କି ଦ୍ରବ୍ୟ ଏକ୍ଷଣେ ।
ବୋଇଲେ ଗୌତମ, ପିତଃ ! କରନ୍ତୁ ଆଦେଶ,
ମୋ ଶରୀରେ ନ ବାଧିବ ଯେତେହେ ବ୍ୟାଧିକ୍ଲେଶ ।
ନ ମରିବି, ନ ତୁଟିବ ସମ୍ପଦ ଯୌବନ,
ଦେବାହେଉ ମୋତେ ଏହି ଗୃରି ଗୋଟି ଧନ ।

ବୋଇଲେ ନୃପତି କଷ୍ଟେ ପକାଇ ନିଶ୍ୱାସ,
ପାଇବୁ ଅପ୍ରାପ୍ୟ ବସ୍ତୁ, କହିଁ ଏ ବିଶ୍ୱାସ ?
ଜଗତ ମଧ୍ୟରେ ଯାହା ଦୁର୍ଲ୍ଲଭ ପଦାର୍ଥ,
ସେ ସମସ୍ତ ଦ୍ରବ୍ୟ ଲୋଡ଼ୁ କହିଁ ରେ ସିଦ୍ଧାର୍ଥ ?
ଯୋଗିଗଣ କରି କଳ୍ପକଳ୍ପାନ୍ତ ତପସ୍ୟା,
ଯାହା ଲଭିବାକୁ ପାଇ ନାହାନ୍ତି ଭରସା,
ଅପ୍ରାପ୍ୟ ପଦାର୍ଥ ଲଭେ କହିଁ ଅଭିଳାଷ ?
ପ୍ରାପ୍ୟ ଏହା କହିଁ କରୁ ମନରେ ବିଶ୍ୱାସ ?
ବୋଇଲେ ଗୌତମ ଶୁଣି ଆହେ ମହାମନା !
ଆନ ଏକ ବର ଏବେ କରୁଛି ପ୍ରାର୍ଥନା ।
ଗୃହ ତେଜି ଯିବି ବନେ ତପସ୍ୟାକାରଣେ,
ନ କରିବେ ଯେମନ୍ତେ କଷ୍ଟ ଅନୁଭବ ମନେ ।
ଆଶୀର୍ବାଦ କର ପିତଃ, ବନ୍ଦୁଛି ଚରଣ,
କର୍ତ୍ତବ୍ୟ ସାଧନେ ନୋହୁ ବିଚଳିତ ମନ ।
ଅନାଇ ଦେଖିଲେ ପୁତ୍ରବଦନ ରାଜନ
ଏ ନୁହେ ମୋ ପୁତ୍ର, ନରରୂପୀ ନାରାୟଣ ।
କି ସାଧ୍ୟ ମୋହର ତାଙ୍କୁ ରଖିବି ଅଯତ୍ନେ,
କରନ୍ତୁ କର୍ତ୍ତବ୍ୟ କାର୍ଯ୍ୟ ସାଧନ ଜଗତେ ।
କରନ୍ତୁ ସିଦ୍ଧାର୍ଥ ଯୋଗେ ମୁକ୍ତିଲାଭ ନରେ,
କହିଁଛି କଣ୍ଟକ ହେବି ପବିତ୍ର ମାର୍ଗରେ ।
ଅବଗତ ହୋଇ ସମାଗ୍ର ଜ୍ଞାନବଳେ,
ତଥାପି କାନ୍ଦିଲେ ସ୍ନେହମୋହରେ ବିକଳେ ।
ବାଷ୍ପରୁଦ୍ଧ କଣ୍ଠେ କଷ୍ଟେ ବୋଇଲେ ରାଜନ—
ଯାଅ ବାପା, କର ତୋର କର୍ତ୍ତବ୍ୟ ସାଧନ ।
ସିଦ୍ଧାର୍ଥ ଭକ୍ତିରେ ପିତୃଦେବ ଚରଣରେ
ଓଳଗି ହେଲେକ କାୟମନୋବଚନରେ ।
ପିତୃଦେବଙ୍କର ପଦ ସର୍ବତୀର୍ଥ ସାର—
ଗୌତମ କଲେକ ମନ ମଧ୍ୟରେ ବିଚାର ।
ପୁତ୍ରଙ୍କର କରପଦ୍ମ ଜନକ ପଦରେ,
ପିତାଙ୍କର କରପଦ୍ମ ପୁତ୍ର ମସ୍ତକରେ,
ପିତା ପଦଯୁଗ୍ମ ସିକ୍ତ ପୁତ୍ରନେତ୍ରନୀରେ,
ପିତାଙ୍କ ନୟନ ଅଶ୍ରୁ ପଡ଼େ ପୁତ୍ର ଶିରେ,
ଏ ମହାମହିମାମୟ ଚିତ୍ର ଜଗତରେ
ଚିନ୍ତି ମୁକ୍ତିକାମୀ ହେବେ ସର୍ବ ନାରୀ ନରେ ।

ଅତୁଳ ଜନକ ସ୍ନେହ ମମତା ମହାନ
ଜଗତ ହିତାର୍ଥ କରିବାର ବଳ ଦାନ—
ମେଲାଣି ଘେନିବା ଦେବା ସମସ୍ତ ଘଟନା—
ପିତା ପୁତ୍ର ଚକ୍ରବର୍ତ୍ତୀ କରନ୍ତୁ କଳ୍ପନା ।
ବଦନ ଫେରାଇ ପୁତ୍ର ଚଳିଛନ୍ତି ଧାନେ,
ନିପତିତ ପିତା ବଜ୍ରଆହତ ସମାନେ ।



## ଦ୍ୱାଦଶ ସର୍ଗ



ବିଳାପ ।

ପାହିଲା ରଜନୀ, ଉଦେ ଅରୁଣ ଗଗନେ,
ଜାଗ୍ରତ କପିଳବସ୍ତୁବାସୀ ଜଣେ ଜଣେ ।
ଚମକ ପଡ଼ିଲେ ଗୋପା ଉଠି ଧାଇଁକାରେ,
ଦେଖିଲେ ଅନାଇ ସ୍ୱାମୀ ନାହାନ୍ତି ଶଯ୍ୟାରେ ।
କାନ୍ଦିଲେ ବିକଳେ ସତୀ ଶିରେ ତାଡ଼ି ହାତ,
ଅଧିନୀକୁ ତେଜି କାହିଁ ଗଲ ପ୍ରାଣନାଥ !
ଉଠିଲେ ଦାସୀଏ ଶୁଣି କ୍ରନ୍ଦନର ଧ୍ୱନି,
ଅକସ୍ମାତ କି ଘଟିଲା ନ ପାରିଲେ ଜାଣି ।
କାନ୍ଦୁଛନ୍ତି ଗୋପା କାହିଁ ଗଲେ ପ୍ରାଣନାଥ !
ସଖୀଗଣ ମୁଣ୍ଡେ କିବା ହେଲା ବଜ୍ରାଘାତ ।
ମୁଦ୍ରିତନୟନା ଗୋପା ଉଚ୍ଚେ ଡାକ ପାଡ଼ି,
ପ୍ରାଣନାଥ ! ପ୍ରାଣନାଥ ! ଗଲ କାହିଁ ଛାଡ଼ି ?
ଧରାଧରି କରି ସଖୀ ପୁଚ୍ଛନ୍ତେ ବୃତ୍ତାନ୍ତ,
ଗୋପା ବୋଲେ କାହିଁ ଛାଡ଼ି ଗଲ ପ୍ରାଣକାନ୍ତ !
ପୁନଶ୍ଚ ପୁଚ୍ଛିଲେ ସଖୀ, କାହାନ୍ତି ସିଦ୍ଧାର୍ଥ ?
ଏକହିଁ ଉତ୍ତର  କାହିଁ ଗଲ ପ୍ରାଣନାଥ !
ଏକକୁ ଆରେକ ପୃଚ୍ଛା କଲେ ବାରମ୍ବାର,
ଘରେ ତ ନାହାନ୍ତି, କାହିଁ ଅଛନ୍ତି କୁମାର ?
କାହାନ୍ତି କୁମାର, ଏହି କଥାହିଁ କେବଳ
ପଡ଼ିଲା କପିଳବସ୍ତୁ ନଗରେ ଚହଳ ।
ଜନନୀ ଗୌତମୀ ଦେବୀ, ମାତା ପ୍ରଜାବତୀ
ମୂର୍ଚ୍ଛିତା; ଚେତନାହୀନ ବୃଦ୍ଧ ନରପତି ।
ସମସ୍ତଙ୍କ ମୁଖେ ଏକ କଥା ବାରମ୍ବାର—
ଘରେ ତ ନାହାନ୍ତି, କାହିଁ ଅଛନ୍ତି କୁମାର ?
ଧାଇଁଲେ ପଦାତି, ଅଶ୍ୱାରୋହୀ, ରଥୀଗଣ,
ଘରେ ଘରେ ସ୍ଥାନେ ସ୍ଥାନେ କଲେ ଅନ୍ୱେଷଣ ।
ଖୋଜିଲେ ପର୍ବତେ, ଗିରିଗହ୍ୱରେ, କାନନେ,
ପ୍ରାନ୍ତରେ, କାନ୍ତାରେ, ରାଜମାର୍ଗେ, ଉପବନେ ।

ସ୍ୱପନ ସମାନ ତଥ୍ୟ ଜଣାଗଲା ନାହିଁ,
ରାତ୍ରିମଧ୍ୟେ ରାଜପୁତ୍ର ଚାଲିଗଲେ କାହିଁ ?
ଆସିଲା ଛନ୍ଦକ, ବୋଲେ—କୁମାର ସନ୍ନ୍ୟାସୀ,
ଚାଲିଗଲେ ରାଜ୍ୟ ତେଜି ହୋଇ ବନବାସୀ ।
ଛନ୍ଦକ ମୁଖରୁ ଶୁଣି ଏହି ସମାଚାର,
ନର ନାରୀ ସର୍ବେ ଉଚ୍ଚେ କଲେ ହାହାକାର !
ନ ଛୁଇଁଲେ ଅନ୍ନ ଜଳ ସାତ ଦିନ ରାତି,
ସମସ୍ତଙ୍କ ଏକକଥା କୁମାର କାହାନ୍ତି ?
ସାତ ଦିନ ସାତ ରାତି ମାତା ପ୍ରଜାବତୀ
ଅଜ୍ଞାନ, ମୂର୍ଚ୍ଛିତା, ଭୂମିତଳେ ପଡିଛନ୍ତି ।
ଗୌତମୀ ଦେବୀଙ୍କ କଥା ଯାଇଅଛି ସରି,
ରାଜପୁରେ କେହି ଜଣେ ନାହିଁ ଧୈର୍ଯ୍ୟ ଧରି ।

ସଜ୍ଞାହୀନା ଭୂପତିତା ଗୋପା ଅଭାଗିନୀ,
ଅଜ୍ଞାନେ କାଟିଲେ ସାତ ଦିବସ ଯାମିନୀ ।
ସାତ ଦିନ ସାତ ରାତି ବୃଦ୍ଧ ନରପତି
ନିଶ୍ଚଳ, ନୀରବ, ସ୍ଥାଣୁ ପରି ବସିଛନ୍ତି ।
ବସିଛନ୍ତି ସର୍ବେ କାହା ନେତ୍ରେ ନାହିଁ ନୀର,
ଦିବା ନିଶି ଭେଦ କରି ନ ପାରନ୍ତି ସ୍ଥିର ।
ହତଜ୍ଞାନେ ଛନ୍ତି ରାଜପୁର ସର୍ବପ୍ରାଣୀ,
ନିଦ୍ରିତ ବା ଜାଗରିତ ନ ପାରନ୍ତି ଜାଣି ।
ସାତ ଦିନ ଅନ୍ତେ ରାଜା ପାଶେ ପ୍ରଜାବତୀ
ବୋଇଲେ, ହା ନାଥ ! କିବା ଘଟିଲା ଦୁର୍ଗତି ?
(ସିଦ୍ଧାର୍ଥ ସନ୍ନ୍ୟାସୀ, ବନବାସୀ, ଏହା ଶୁଣି
କାନ୍ଦିଲେ ବିକଳେ ମାତା ବାହୁନି ବାହୁନି । )

ଫନ୍ଦା କରିଥିଲୁଁ ଦୁଇଜଣ ବୁଢ଼ାକାଳେ,
ଜଉରି ଲଗାଇ ପୁଅ ଗଲୁ ସିନା ଗଲେ,
ମୋର ସିଦ୍ଧାର୍ଥ ରେ !

ଅପା ମାୟା ଦେବୀ ମୋର ବଡ଼ ଭାଗ୍ୟବତୀ !
ନିଶ୍ଚିନ୍ତରେ ସ୍ୱର୍ଗେ ବସିଛନ୍ତି ସାଧ୍ୱୀ ସତୀ,
ମୋର ଭଗିନୀ ଗୋ !

ମୁଁ ପାପିଷ୍ଠା ପୋଡିମଲି ଦାରୁଣ ଅନଳେ,
କାହିଁ ଗଲୁ ସିଦ୍ଧାର୍ଥରେ ଝୁରାଇ ସକଳେ,
ଦୁଃଖିସଙ୍ଖାଳି ରେ !

ଯେ ବାଟରେ ଗଲୁ ପୁଅ, ଯିବ ସେହି ପଥେ,
ଦେଶ ଦେଶାନ୍ତରେ ଭ୍ରମି ଭେଟିବ କି ସତେ !
ହୀରା ରତନ ରେ !
ପୁତ୍ର ହସ୍ତେ ରାଜ୍ୟଭାର ଦେଇ ବେନିଜନେ
ଯିବୁଁ ବାନପ୍ରସ୍ଥେ ଏହା ଭାଳିଥିଲୁଁ ମନେ,
ଅନ୍ଧଲଉଡ଼ି ରେ !
ନୟନପିତୁଳି ମୋର ହୃଦୟରତନ,
ଝୁରୁଥିବୁଁ ବସି ଘରେ ସିନା ବେନିଜନ,
ରଙ୍କରତନ ରେ !
ବୁଢ଼ାକାଳେ ପାଇଥିଲୁଁ କେତେ ତପସ୍ୟାରେ,
ମାୟା କାଟି ଗଲୁ ଟିକି ନ ଚାହିଁଲୁ ବାରେ,
ଦୁଃଖିସଙ୍ଗାଳି ରେ !
ହୃଦୟଶୋଣିତଧାର, ନୟନର ତାରା,
କୁଳର ଭୂଷଣ ମୋର ଗଳାକଣ୍ଠିହାର,
କୁଳମାଣିକ ରେ !
ଶିରୀଷକୁସୁମ ଦେହ ନବନୀତ ବଳି,
ଗୋପା ବନ୍ଧୁଟିକୁ ସିନା ଦେଲୁ ପଦେ ଦଳି,
ନେତ୍ରପିତୁଳି ରେ !
ଧନ ଧାନ୍ୟ ପରିପୂର୍ଣ୍ଣ ରତନ ଭଣ୍ଡାର,
ଏକା ତୋହ ବିନା ସିନା ସକଳ ଅନ୍ଧାର,
କୁଳଚନ୍ଦ୍ରମା ରେ !
ଗଲାବେଳେ କଥା ପଦେ ନ ବୋଇଲୁ ବାପ,
ପୂର୍ବ ଜନ୍ମେ ମୁଁ ପାପିଷ୍ଠା କେତେ କଲି ପାପ,
ଶାକ୍ୟଭରସା ରେ !
ଏହା କି ମୋ ଲଲାଟରେ ଲେଖିଥିଲେ ବିଧି,
ପଣନ୍ତ କାନିରୁ ଫିଟି ହଜି ଯିବ ନିଧି,
କୃପାବାରିଧି ରେ !
କାହୁଁ କାଳ ନିଦ ମୋତେ ଆସିଥିଲା ମାଡ଼ି,
ବେଳ ଛିଣ୍ଡି ବାପ ସିନା ପଳାଇଲୁ ଛାଡ଼ି,
ଜୀବଜୀବନ ରେ !
ବୋଇଲେ ଗଦ୍‌ଗଦ ସ୍ୱରେ ଖେଦେ ନରପତି,
ବିଳାପ କରୁଛ କିଆଁ ସିନା ଆଗୋ ସତି !
ମାନବ କି ଖଣ୍ଡି ପାରେ ବିଧାତା ନିର୍ବନ୍ଧ ?
ସମ୍ଭାଳି ପାରେ କି ସିନ୍ଧୁ ଢେଉ ବାଲିବନ୍ଧ ?

ଦେଖୁଛ ପ୍ରତ୍ୟକ୍ଷେ ରାଣି ! କଲ ମୁଁ ଯତନ,
ବାସବଭବନ ବଳ ମଣ୍ଡାଇ ଭବନ,
ଅତୁଳ ଐଶ୍ୱର୍ଯ୍ୟ ଗୃହେ ସୁଖର ଭଣ୍ଡାର,
ଶାକ୍ୟରାଜ୍ୟ ତୁଲ୍ୟ ରାଜ୍ୟ ଅଛି ବା କାହାର ?
ଲଳନାଲଲାମଭୂତା ପୁତ୍ରବଧୂ ଗୋପା,
ବେଷ୍ଟିତା ସୁନ୍ଦରୀ ନାରୀ ଅପ୍‌ସରାସ୍ୱରୂପା ।
ଅପତ୍ୟର ସ୍ନେହ ସାର ସଂସାରବନ୍ଧନ,
ଏତେ କରି ବାନ୍ଧି ନ ପାରିଲି ପୁତ୍ରମନ ।
ମାନବର ସାଧ ଯାହା ସାଧିଛି ସକଳ,
ମୁହୂର୍ତ୍ତି ମଧରେ ହେଲା ସକଳ ବିଫଳ !
ମାୟାଦେବୀ ମୁଖୁଁ ଶୁଣି ସ୍ୱପନବୃତ୍ତାନ୍ତ
ସେଦିନୁ ମଣିଛି ନୁହେ ମୋ ପୁତ୍ର ସିଦ୍ଧାର୍ଥ ।
ଜାଣିଥିଲି ଦେଖି ପୁତ୍ର ଦେହର ଲକ୍ଷଣ,
ଏ ନୁହେ ମୋ ପୁତ୍ର, ନରରୂପୀ ନାରାୟଣ ।
ଅସିତ ମହର୍ଷି ମୁଖୁଁ ଶୁଣି ସମାଚାର
ଜାଣିଥିଲି ପୁତ୍ର ମୋର ତେଜିବ ସଂସାର ।
ତରୁତଳେ ଶିଶୁସୁତ କରୁଥିଲା ଧ୍ୟାନ,
ଦେଖି ସବୁ କଥା କରିଥିଲି ଅନୁମାନ ।
ବାହୁଡ଼ିଲା ପୁତ୍ର ଦେଖି ଜରା, ବ୍ୟାଧି, ଶବ,
ସେଦିନ ଜାଣିଲି ମୋର ପୁତ୍ର, — ଅସମ୍ଭବ ।
ପତିତପାବନ ହରି ଏ ପତିତ ଘରେ
ଜନ୍ମିଛନ୍ତି ପରବ୍ରହ୍ମ ମାନବ ରୂପରେ,
ମହାସତୀ ମହାମାୟା ଦେବକୀ ସମାନ,
ଯଶୋଦା ଜନନୀ ତୁମ୍ଭେ,କରେଁ ଅନୁମାନ ।
ଏ କପିଳବସ୍ତୁ ହେବ ନବ ବୃନ୍ଦାବନ,
ପ୍ରତ୍ୟକ୍ଷ ସିଦ୍ଧାର୍ଥ ମୋର ଅଧମତାରଣ ।
ପରଦୁଃଖଭାର ଦେବ ! ସହିବାକୁ ଶିରେ
ନିଶ୍ଚୟ ପରମବ୍ରହ୍ମ ଜନ୍ମ ଅବନୀରେ ।
ବୃଦ୍ଧ ପିତା ମାତା ଦୁଃଖେ ନ କାନ୍ଦିଲା ପ୍ରାଣ,
ଲୋଡ଼େ ତୁଚ୍ଛ ପ୍ରାଣୀ କରିବାକୁ ପରିତ୍ରାଣ ।
ଯାହା ପ୍ରାଣ କାନ୍ଦେ ଦେଖି ପକ୍ଷିରକ୍ତପାତ,
କଲା ପିତା, ମାତା, ପତ୍ନୀ ଶିରେ ବଜ୍ରାଘାତ ।
ଅତ୍ୟନ୍ତ ନିଭୃତ ମାର୍ଗେ ଯାଇଛି କୁମାର,
ଏ ସମସ୍ତ ଚିନ୍ତା ଦୁଃଖ କର ପରିହାର ।

ମାନବ ଉଦ୍ଧାର ବ୍ରତେ ଯାଇଛି ନନ୍ଦନ,
ବୃଥା ତୁମ୍ଭ ହାହାକାର, ନିଷ୍ଫଳ କ୍ରନ୍ଦନ !
କ୍ଷୁଦ୍ର ଜୀବ ଆମ୍ଭେମାନେ ଯିବୁଁ ଦେବପାଶେ—
ଲଙ୍ଘିବ ଦୁସ୍ତର ସିନ୍ଧୁ ପତଙ୍ଗ ଆକାଶେ ?
ଜାଣ ପ୍ରିୟେ ! ସନ୍ନ୍ୟାସିଙ୍କ ପିତା ମାତା ନାହିଁ,
ଧାଇଁଛି ପବନ ହସ୍ତେ ଧରିବାର ପାଇଁ ।
ଧର୍ମମାର୍ଗୁଁ ପତିତ କି ହେବ ସେ ନନ୍ଦନ
ଦେଖି ବୃଦ୍ଧ ପିତା ମାତା ବିଫଳ କ୍ରନ୍ଦନ ?
ବୋଇଲେ ନୃପତି ବାକ୍ୟ ଶୁଣି ପ୍ରଜାବତୀ —
ଚାଲ ଯାଉଁ ଛାଡ଼ି ତୁଚ୍ଛ ଐଶ୍ୱର୍ଯ୍ୟ ସମ୍ପତ୍ତି ।
ଏ ଗୃହ ଶ୍ମଶାନ ତେଜି ଯାଉଁ ବାନପ୍ରସ୍ଥେ,
ନବୀନ ସନ୍ନ୍ୟାସୀ ମୋର ଗଲା ଯେଉଁ ପଥେ ।
ଯାଇଛି ନୟନମଣି ଜୀବନର ସାର,
ଶୋକାନଳେ ଦଗ୍ଧୀଭୂତ ଗୃହ ପରିବାର ।
ପ୍ରାଣେ ମୋର ନାହିଁ ପ୍ରାଣ, ହୃଦୟେ ହୃଦୟ,
ଦେହରେ ସାମର୍ଥ୍ୟ ନାହିଁ, ସର୍ବ ଶୂନ୍ୟମୟ ।
ଗୃହର ଆଲୋକ ମୋର ଜୀବନ ଆଲୋକ
ନାହିଛି, ଗୃହରେ କପାଁ ଥିବ ଅନର୍ଥକ ।
ବୋଇଲେ ରାଜନ, ରାଣି ! ବୋଲ କେଉଁ ବନେ
ଲଭିବ ଦେହରେ ବଳ, ସାନ୍ତ୍ୱନା ଜୀବନେ ?
ଏହି ଦେହ ଏହି ମନ ଏହି ଚିନ୍ତା ପ୍ରାଣ
ଯେନ କାହିଁ ଯିବ ଲଭିବାକୁ ପରିତ୍ରାଣ ?
ପାଇଛି ନନ୍ଦନ ମୋର, ପାଳିବ ନିୟତି,
ନିୟତି ପାଳିବୁଁ ଆମ୍ଭେମାନେ ଆସ ସତି !
ମାନବ ଉଦ୍ଧାର ମାର୍ଗ କରି ଆବିଷ୍କାର
ବାହୁଡ଼ି ଆସିବ ପୁଣି ଗୃହେ ପୁନର୍ବାର ।
ସେହି ଆଶାମାର୍ଗ ଚାହିଁ ପାଳୁଁ ଆସ ବ୍ରତ,
ଏହା ବିନା ସତି, ଦେଖୁ ନାହିଁ ଆନ ପଥ ।
ଯେଉଁ ସିଂହାସନେ ମୋର ବସିବ ନନ୍ଦନ—
ତୁଳନାରେ ଅତି ତୁଚ୍ଛ ରାଜସିଂହାସନ ।
ଆହା ରାଣି ! ପରିଣତ ବୟସ ବେଳକେ,
ସେହି ପୁଣ୍ୟାସନ କି ଗୋ ଦେଖିବୁଁ ନୟନେ ?
ହେଲେ ମଧ୍ୟ କ୍ଷୁଦ୍ରତମ— ସେହି ପୁଣ୍ୟ ରାଜ୍ୟେ
ପାଇବୁଁ ଆଶ୍ରୟ ଦେବ ! ବିଳାପ କି କାର୍ଯ୍ୟେ ।

ଜନ୍ମ ଜରା ବ୍ୟାଧି ମୃତ୍ୟୁ ହସ୍ତୁଁ ଲୋକଗଣେ
ପାଇଲେ ନିସ୍ତୃତି ନ ପାଇବୁଁ କେନିଜନେ ?
ବାଷ୍ପାକୁଳ କଣ୍ଠ ଅଶ୍ରୁ ପୂର୍ଣ୍ଣ ହିନୟନେ,
ନୀରବ ନୃପତି, ବାକ୍ୟ ନ ସ୍ଫୁରେ ବଦନେ ।
ନେତ୍ରୁ ପୋଛି ଅଶ୍ରୁ, କ୍ଷଣେ ଶୂନ୍ୟମାର୍ଗେ ଚାହିଁ
ବୋଇଲେ, ଗୌତମି ଅଗୋ ! କେଲେ ଦେଖ ଯାଇ—
କାଞ୍ଚନପ୍ରତିମା ଗୋପା ବଧୂ ଯହିଁ ପଡି
ଧୂଳିରେ ଯାଉଛି ଅଚେତନେ ଗଡଗଡି ।
ଅଚେତନା, ଦୀନା, ପତିବିୟୋଗବିଧୁରା,
ନାହିଁ ହବା ନିଶି ଜ୍ଞାନ, କାନ୍ଦେ ଶୋକାତୁରା ।
ସ୍ପର୍ଶ କରି ନାହିଁ ଅନ୍ନ ଜଳ ସାତ ଦିନ,
ସର୍ବେବ ଅପ୍ରତିକାର୍ଯ୍ୟ, ଫଳେ ଦୈବାଧୀନ ।
ହୃଦୟକୁସୁମ ସଦ୍ୟ ଶିଶୁଟିକି କୋଳେ
ଧରି ହବା ନିଶି ଉଚ୍ଚେ କାନ୍ଦୁଛି ବିକଳେ ।
ସିଦ୍ଧାର୍ଥ ପାଦୁକା କେନି, ବସନ ଭୂଷଣ
ଧରିଛି ହୃଦୟେ ରତି ମଣି ତା ଜୀବନ ।
ଛନ୍ଦକ ମୁଖରୁ ଶୁଣି ସବୁ ସମାଚାର
କରୁଛି କେବଳ ହବା ନିଶି ହାହାକାର ।
କବସନ ଭୂଷଣ ସବୁ ପାଇଛି କାଢ଼ି,
ପିନ୍ଧିଛି କଷାୟ, ଫିଙ୍ଗି ଦେଇ ପାଟଶାଢ଼ୀ ।
ପ୍ରଲମ୍ବ କୁନ୍ତଳ କାଟି ମୁଣ୍ଡିତମସ୍ତକା,
ଯୌବନେ ଯୋଗିନୀ, ନାହିଁ ଜୀବନରେ ଶଙ୍କା ।
ନୟନୁ ଲୋତକ ପୋଛି ଧୀରେ ଧୀରେ ଯାଇ
ଅଗୋ ଦେବି ! ଗୋପା ପାଶେ,ବୋଲିବ ବୁଝାଇ ।
ନୃପତି ବଚନ ଶୁଣି ଗଲେ ଧୀରେ ଧୀରେ,
ଅବଶ ଶରୀର ମନେ ଭାସି ଅଶ୍ରୁନୀରେ ।
ବୋଇଲେ ଗୌତମୀ,ମା ରେ ! ହେଲୁଣି ଯୋଗିନୀ,
ଦେଖିଲି ଏ ଦଶା ତୋର ମୁଁ ହତଭାଗିନୀ ।
ପୁତ୍ର ତ ସନ୍ୟାସୀ ହେଲା, ତୁ ବସିଲୁ ଧ୍ୟାନେ,
ଏ ବିଷାଦ ଛବି ଦେଖି ବଞ୍ଚିବ କି ପ୍ରାଣେ ?
ବଧୂ ତୁହି, ପୁତ୍ର ତୁହି, ଭାଳ ଏହି କଥା,
ବୁଢ଼ା ବୁଢ଼ୀ ତୁହେଁ ପାସୋରିବୁଁ ହୃଦବ୍ୟଥା ।
ନ ଚାହିଁଲେ କେଲେ ମା ରେ ! ତୁହି ମୁଖ ଟେକି,
ବୁଢ଼ା ବୁଢ଼ୀ ଦୁଇଗୋଟି ପ୍ରାଣେ ବଞ୍ଚିବେ କି ?

ନିର୍ଦ୍ଦୋଷ ଶିଶୁଟି ସ୍ୱର୍ଗ ଆସିଛି ଓହ୍ଲାଇ,
କେ କରିବ ରକ୍ଷା ତାକୁ ତୁହି ହେଲେ ବାଇ ।
ବୋଇଲେ ବିନମ୍ରେ ଗୋପା ଛିନ୍ନ ବୀଣାସ୍ୱରେ,
ଓଳଗି ହେଉଛି ମାତଃ ! ତୁମ୍ଭ ଚରଣରେ ।
ଅନିବାର୍ଯ୍ୟାପ୍ରତିକାର୍ଯ୍ୟ ବିଧାନ ନିୟତି,
ସେଥିନେ ସାମର୍ଥ୍ୟ କାହିଁ ମାନବ ଶକତି ?
ଶ୍ୱଶୁର ଶାଶୁଙ୍କ ପଦ ମୋର ଗୟା, କାଶୀ,
ଆଶୀର୍ବାଦ କର, ଗୋପା ହେଉ ସେବାଦାସୀ ।
ତୁମ୍ଭମାନଙ୍କର ପୁଣ୍ୟ ପଦଚ୍ଛାୟାତଳେ
ସନ୍ତତ ଅର୍ଜିତ ଥିବ ଜୀବନ ଶୀତଳେ ।
ଜପିବ ସ୍ୱାମିଙ୍କି ଯେତେ ଦିନ ପ୍ରାଣେ ଥିବ,
ଆଶୀର୍ବାଦ କର ଶିଶୁ ହେଉ ଦୀର୍ଘଜୀବୀ ।
ଗଲେ କଳ୍ପତରୁ ରଖି ସୁମନକୋରକ,
ମୁଁ ହେଲେ ଅସ୍ଥିର ତାର କେ ହେବ ରକ୍ଷକ ?
ପ୍ରାଣର ଦେବତା ଛାଡ଼ି ଯାଇଛନ୍ତି ମୋତେ,
ଯାଉନ୍ତୁ, ଲଭନ୍ତୁ ମୁକ୍ତି ମାନବ ସମସ୍ତେ ।
ଜଗତର ପ୍ରାଣୀପାଇଁ ପ୍ରଭୁଙ୍କ ଭାବନା,
ନାହିଁ— ନାହିଁ, ହେବ ନାହିଁ ସ୍ୱାର୍ଥପରାୟଣା ।
ସାଧନ୍ତୁ ଅଭୀଷ୍ଟ ପ୍ରଭୁ, ପାଳିବ କର୍ତ୍ତବ୍ୟ,
ଚିନ୍ତା କିବା ? ସ୍ୱଭାବରେ ଘଟେ ଭବିତବ୍ୟ ।
ମା ଗୋ ! ଜୀବଦୁଃଖେ କାନ୍ଦେ ଯାହା ପଞ୍ଚପ୍ରାଣ,
ଲୋଡ଼ିବ କି ସେହି ତୁଚ୍ଛ ରାଜ୍ୟ ଧନ ମାନ ?
ମୋ ସ୍ୱାମୀ ସନ୍ନ୍ୟାସୀ, ମୁହିଁ ହେବ ସନ୍ନ୍ୟାସିନୀ,
ସେବିବ ତୁମ୍ଭର ପଦ ଦିବସ ଯାମିନୀ ।
ମା ଗୋ ! ଗୋପା ସମା ନାରୀ କେବା ଭାଗ୍ୟବତୀ ?
ଯାଉ ସବୁ, ନାହିଁ ଲୋଡ଼ା ଐଶ୍ୱର୍ଯ୍ୟ ସମ୍ପତ୍ତି ।
ମୋ ସ୍ୱାମୀ ଦେବତା, ମା ଗୋ ! ବିଷ୍ଣୁ ନାରାୟଣ,
ଦେବତାର ପିତା ମାତା ତୁମ୍ଭେ ବେନିଜନ ।
ନ ଥାନ୍ତୁ ଦେବତା— ସେବି ଦେବ ମାତା ପିତା,
ହେବ ଦେବ ଦେବୀ ଦାସୀ ଜଗତେ ପୂଜିତା ।
ଦେବତା ମୋହର ସ୍ୱାମୀ ଉଦାସୀ ସନ୍ନ୍ୟାସୀ,
ସାଧନ୍ତୁ ତପସ୍ୟା ବନେ, ମୁହିଁ ତୁମ୍ଭ ଦାସୀ ।
ଲୋଡ଼ନ୍ତୁ ନିର୍ବାଣ ମୁକ୍ତି ସ୍ୱାମୀ ବସି ବନେ,
ସାଧିବ ତପସ୍ୟା ବସି ବିଳାସଭବନେ ।

ନିଃସଙ୍ଗେ ନିଷ୍ଠୁରେ ଥିଲେ ସନ୍ନ୍ୟାସିନୀ ପ୍ରାୟ,
ଐଶ୍ୱର୍ଯ୍ୟ ବିଳାସ ହେବ ନାହିଁ ଅନ୍ତରାୟ ।
ଜଗତତାରଣବ୍ରତେ ମୋ ସ୍ୱାମୀ ସନ୍ନ୍ୟାସୀ,
ପତି ପ୍ରାଣ, ପତି ଧ୍ୟାନ, ମୁହିଁ ତାଙ୍କ ଦାସୀ ।
ମୁହିଁ ତୁଚ୍ଛ କ୍ଷୁଦ୍ର ନାରୀ, ନାରାୟଣ ପତି,
ମା ଗୋ ! ମୋ ସମାନେ ନାରୀ କେବା ଭାଗ୍ୟବତୀ ?
ନ କାନ୍ଦିବ ଆଉ ମାତା, ନ କାନ୍ଦ ଆପଣ,
ପତି ଧ୍ୟାନ, ପତି ଜ୍ଞାନ, ପତି ମୋ ଜୀବନ ।
ଆଶୀର୍ବାଦ କର ମାତା ! ବ୍ରତ ଉଦ୍ୟାପନ
କରେଁ — ପତିପଦେ ଆତ୍ମା ମନ ସମର୍ପଣ ।



## ତ୍ରୟୋଦଶ ସର୍ଗ ।

### ମାର୍ଗ ଅନ୍ୱେଷଣ

ଅନୋମା ହିମାଳୟସୁତା,
ନୀଳାଭ୍ର ପୁଣ୍ୟା ଖରସ୍ରୋତା ।
ନୀରବେ ବଙ୍କିମ ଗତିରେ
ବାହିତା—ଲତା ତରୁ ତୀରେ
ବିରାଜେ । ପତ୍ର ପୁଷ୍ପରାଶି
ନିଯୁତ ସ୍ରୋତେ ଯାଏ ଭାସି ।
ଧାଏଁ ଉଦାସେ ଅବିରାମେ
ସାଗରଗର୍ଭେ ନିତ୍ୟଧାମେ ।
ପରମ ଯୋଗୀ ଚିତ୍ତ ଯଥା—
ପତି ସକାଶେ ପତିବ୍ରତା ।
କୁଳପାଳିକା ବଧୂ ପରି
ବାହିତା କୂଳକୁ ଆବୋରି ।
ଉଭୟ କୂଳବାସୀ ଜନେ
ପବିତ୍ର ଶୀତଳ ଜୀବନେ ।
ସ୍ରୋତରେ ସନ୍ତରେ ଶଫରୀ,
ସ୍ୱାମିନୀ ଆଶ୍ରିତା କିଙ୍କରୀ ।
ଗଭୀର କାହିଁ ସ୍ୱଳ୍ପଜଳା,
ଅବିଳା କାହିଁ ବା ନିର୍ମଳା ।
ଶୈବାଳଜାଲ ସ୍ଥାନେ ସ୍ଥାନେ
ଛନ୍ଦିଛି କବରୀ ସମାନେ ।
ସେ ନଦୀ କୂଳେ ରୂତବନେ,
ଗ୍ରାମାନ୍ତେ, ନିବିଡ଼ ନିର୍ଜନେ,
ବୃହତ ରୂତ ତରୁତଳେ
ନୂତନ ସନ୍ନ୍ୟାସୀ ନିଶ୍ଚଳେ
ବସିଣ ଅଛନ୍ତି ଉଦାସେ,
ଜନ ମାନବ ନାହିଁ ପାଶେ ।
କଦାଚ କୋକିଳ କାକଳି —
ରବେ ପୂରିତ ବନସ୍ଥଳୀ ।

ସଧୀରେ ଶୀତଳ ପବନ
ବହେ, ଆକାଶେ ତାରାଗଣ
ନୟନ ମେଲି ଛନ୍ତି ଚାହିଁ
ଯୋଗିଙ୍କୁ ଦେଖିବାର ପାଇଁ ।
ଅସଂଖ୍ୟ ଦାସଦାସୀଗଣେ
ବେଢ଼ି ଯାହାଙ୍କୁ ଅନୁକ୍ଷଣେ
ଥିଲେ — ଚନ୍ଦ୍ରକୁ ତାରାବଳୀ,
କୁସୁମେ ବେଷ୍ଟିତ ଭୃଙ୍ଗାଳୀ ।
ସେ ଏକା ଏବେ ନିର୍ଜନରେ
ଧ୍ୟାନନିମଗ୍ନ ନିରନ୍ତରେ ।
ଶିରୀଷକୁସୁମ ଶରୀର,
ଯୌବନ ଲାବଣ୍ୟ ରୁଚିର,
ରାଜନନ୍ଦନ ଯତନରେ
ପାଳିତ ସେବିତ ଆଦରେ;
ଅସୂର୍ଯ୍ୟମ୍ପଶ୍ୟ ଯେଉଁ ଅଙ୍ଗ
କରି ନ ଥିଲା କଷ୍ଟ ସଙ୍ଗ,
ସେ ଆଜି ଆଶ୍ରୟ ବିହୀନ
ଏକାକୀ ଶରୀର ମଳିନ ।
ବିପୁଳ ପୃଥିବୀ ମଧ୍ୟରେ
ନିର୍ଜନେ ଛନ୍ତି ଏକେଶ୍ୱରେ ।
କର୍କଶ କଷାୟ ମଳିନ
ବସନ ପରିଧାନ ଛିନ୍ନ ।
ନିକେଶ ମୁଣ୍ଡିତ ମସ୍ତକ,
ସହାୟବିହୀନ ଏକକ,
କେମନ୍ତେ ଭିକାରୀ ବେଶରେ
ମାଗିବେ ଭିକ୍ଷା ଘରେ ଘରେ ?
କାହିଁ ସେ ଯିବେ ? କେଉଁ ପଥେ ?
ଅରଣ୍ୟେ ରହିବେ କେମନ୍ତେ ?
କୋଟି ଲୋକର ଅନ୍ନଦାତା,
ସେ ଆଜି ବିଦେଶେ ଅନାଥା ।
କେ ଦେବ ତାଙ୍କୁ ଅନ୍ନଜଳ ?
ବିହୀନ ସହାୟ ସମ୍ବଳ ।
ସେ ଯୁବା ବସି ବୃକ୍ଷମୂଳେ
ନିଶ୍ଚିନ୍ତେ ମନ ଅନାକୁଳେ

ଅନୋମାକୂଳେ ପ୍ରତ୍ୟୁଷରେ
ଭାଳିଲେ ଆପଣା ମନରେ ।
ଥିଲି ମୁଁ ରାଜାର ନନ୍ଦନ,
ସୁଖରେ କାଟୁଛି ଜୀବନ ।
ଅତୀତପଟେ ଯାହା ଲେଖା,
ପ୍ରତ୍ୟକ୍ଷ ସମ ଯାଏ ଦେଖା ।
କୈଶୋରେ ନୂତନ ଯୌବନେ,
ଆଲସ୍ୟେ ପ୍ରମୋଦକାନନେ,
ଭୁଞ୍ଜିଲି ଯେଉଁ ସୁଖରାଶି,
ଯାଉଛି କାଳସ୍ରୋତେ ଭାସି ।
ଗୋପା ପ୍ରଣୟ, ପ୍ରେମ ମୁଖ,
ନନ୍ଦନ ଶଶାଙ୍କମୟୂଖ,
ଜନକ ଜନନୀ ହୃଦୟ
ପ୍ରେମ ଭଣ୍ଡାର ସୁଧାମୟ,
ଯୁବକ ସହଚରଗଣେ,
ଏ ସର୍ବ ଚିନ୍ତା କଲେ ଷଣେ,
କ୍ଷଣିକ ମନ ଉଚ୍ଚାଟନ,
କ୍ଷଣିକ ସଜଳ ନୟନ,
ମାତ୍ର ଭାବନ୍ତେ ଭବିଷ୍ୟତ,
ତତ୍କ୍ଷଣେ ହୃଦୁଁ ହେଲା ଗତ ।
ଶୀତଳ ମଧୁର ପବନେ,
ପ୍ରଭାତ ଅରୁଣ କିରଣେ,
ଦେଖିଲେ ବିସ୍ତୃତ ଅନନ୍ତ,
ନିଶ୍ଚୟହୀନ ଭବିଷ୍ୟତ,
ନୀଳ ଗଗନ ସମାନରେ
ଅନନ୍ତ କାଳ ସମ୍ମୁଖରେ ।
ଗମ୍ୟ ମାର୍ଗଣ ଅନିଶ୍ଚିତ,
ଏକାକୀ ସଙ୍ଗିବିରହିତ ।
ଯିବାକୁ ହେବ ଲକ୍ଷସ୍ଥାନେ,
କଲେକ ସ୍ଥିର ଅନୁମାନେ ।
ଏହି ଜଗତ କୋଲାହଳ
ପ୍ରାନ୍ତରେ ଅଛି ଏକସ୍ଥଳ,
ଜରା ମରଣ ହାହାକାର
ନାହିଁ ସେ ସ୍ଥାନ—ନିର୍ବିକାର ।

ସଂସାର-ମରୁ ଅତିକ୍ରମି
ଯିବ ମୁଁ ସତ୍ୟ ମାର୍ଗ ଭ୍ରମି ।
ଏ ମରୁପ୍ରାନ୍ତେ ଶାନ୍ତିମୟ
ସ୍ଥାନକୁ ଲଭିବ ନିଶ୍ଚୟ !
ଭରସା ଜାତ ହେଲା ମନେ,
କାନନ ତେଜିଲେ ତକ୍ଷଣେ ।
କାରାବିମୁକ୍ତ ବନ୍ଦୀପ୍ରାୟେ
ଶାନ୍ତି ଲଭିବା ଅଭିପ୍ରାୟେ
ଚଳିଲେ ଚିତ୍ତର ଉଲ୍ଲାସେ,
ବିହଗ ଆନନ୍ଦେ ଆକାଶେ ।
ପୂର୍ବ ଦକ୍ଷିଣ ମୁଖେ ଗତ
କଲେକ ସୁଖେ ମହାପଥ ।
କେମନ୍ତେ, କାହିଁ, କେଉଁ ମାର୍ଗେ
ଗମନ, ସ୍ଥିର ନାହିଁ ଆଗେ ।
ଏତିକି ଜଣା ଅନୁମାନେ,
ସଂସାର ପ୍ରାନ୍ତେ ଶାନ୍ତିସ୍ଥାନେ ।
କୋମଳ ଅନାବୃତ ପଦେ
ଫୁଟୁଛି ତୃଣ ପଦେ ପଦେ ।
କଠିନ କଣ୍ଟକ ବା କାହିଁ
ଫୁଟୁଛି, ତହିଁ ଦୃଷ୍ଟି ନାହିଁ ।
ରବିକରଣେ ଦେହ ଦହି
ଯାଉଛି ସ୍ୱେଦଧାରା ବହି ।
ସାକୀୟା ବ୍ରାହ୍ମଣୀ ଗୃହରେ
ରହିଲେ ମଧ୍ୟାହ୍ନ କାଳରେ ।
ନିର୍ବାଣ ଚିନ୍ତା ହୃଦେ ଗୁଣି
ଚଳିଲେ ପୂର୍ବ ଦିଗେ ପୁଣି ।
ତ୍ରିଯାମା କ୍ରମେ ସମାଗତ,
ତିମିରେ ଢାଙ୍କିଲା ଜଗତ ।
ପଦ୍ମା ବ୍ରାହ୍ମଣୀ ନିକେତନେ
ରହିଲେ ବିଶ୍ରାମକାରଣେ ।
ପର ଦିବସ ପ୍ରାତଃକାଳେ
ମିଳିଲେ ରୈବତର୍ଷି ଆଳେ ।
ଉଦ୍ୟାନେ ତହିଁ ତୃପ୍ତି ଲଭି
ଚଳିଲେ ତେଜି ଯୁଦ୍ରାଠକୀ ।

ପ୍ରାନ୍ତର ତେଜି କ୍ରମଶରେ
ମିଳିଲେ ବୈଶାଳୀ ନଗରେ ।
ଅଗ୍ନିତକାଲାମ ମହର୍ଷି
ସମୀପେ ନବୀନ ତପସ୍ୱୀ
ମିଳନ୍ତେ, ଡାକି ଶିଷ୍ୟଗଣେ
ମହର୍ଷି ମଧୁର ବଚନେ
ବୋଇଲେ, ଦେଖ ଏ ସନ୍ନ୍ୟାସୀ,
ସୌନ୍ଦର୍ଯ୍ୟ ଦେଖୁଁ ଯାଏ ଭାସି ।
ଏମନ୍ତ ରୂପ ମନୋହର
ମାନବ ମଧ୍ୟେ ଅଗୋଚର ।
ତିନଶ ଶିଷ୍ୟ ଋଷିବରେ
ବେଷ୍ଟିତ ଥିଲେ ସେ କାଳରେ ।
ନିଯୁକ୍ତ ସର୍ବେ ଅଧ୍ୟୟନେ,
ଦେଖିଲେ ସନ୍ନ୍ୟାସୀ ନୟନେ ।
ମହର୍ଷି ଆଶ୍ରମ ସୁଲଭ
ଆତିଥ୍ୟ କଲେ ଅନୁଭବ ।
ପ୍ରଣମି ଋଷିଙ୍କ ଚରଣେ
ସିଦ୍ଧାର୍ଥ ହେଲେ ଶିଷ୍ୟ ଜଣେ ।
ଦର୍ଶନ ଶାସ୍ତ୍ର ଅଧ୍ୟୟନ
ସମସ୍ତ କରି ସମାପନ,
ସିଦ୍ଧାନ୍ତ କଲେକି ମନରେ,
ନାହିଁ ସେ ତତ୍ତ୍ୱ ଦର୍ଶନରେ ।
ଜନ୍ମ ମରଣ ଜରା ବ୍ୟାଧି
ରୁନ୍ଧି ପାରିବ ମୁକ୍ତି ସାଧି ।
ସେ ମାର୍ଗ ଆବିଷ୍କାରପାଇଁ
ଦର୍ଶନଶାସ୍ତ୍ର ସାଧ୍ୟ ନାହିଁ ।
ତେଜି ବୈଶାଳୀ ଏଥୁଅନ୍ତେ
ଚଳିଲେ ଗଙ୍ଗାତଟ ପଥେ ।
ମଗଧପୁରୀ ରାଜଗୃହ,
ପୂରିତ ଐଶ୍ୱର୍ଯ୍ୟସମୂହ ।
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ମହତ୍ତ୍ୱେ
ମହିମା ପ୍ରକାଶେ ଜଗତେ ।
ଗଗନ ଭେଦି ଗିରି ପନ୍ତି,
ଅସଂଖ୍ୟ ଶୃଙ୍ଗ ଘନ ଘନ

ରହିଛି ଦକ୍ଷିଣ ପ୍ରାନ୍ତରେ,
ଭୀଷଣ ପ୍ରାଚୀର ରୂପରେ ।
ସେ ଗିରିବ୍ରଜପୁରୀ ରାଣୀ
ଜରାସନ୍ଧର ରାଜଧାନୀ ।
ଶୈଳନନ୍ଦିନୀ ସରସ୍ୱତୀ
ଶୈଳପଦରେ ସ୍ରୋତସ୍ୱତୀ ।
(ଭକ୍ତି ଯେସନେ ଦେବ ପଦେ)
ପ୍ରାଣଦାୟିନୀ ଜନପଦେ ।
ସ୍ୱଚ୍ଛସଲିଳା ସ୍ଥିରଗତି,
ପବିତ୍ର ଯଥା ସାଧୁମତି ।
ଦେଖିଲେ ଶାକ୍ୟସିଂହ ଚାହିଁ,
ଜରାସନ୍ଧର ପୁରୀ କାହିଁ ?
ଭୀଷଣ ଶ୍ମଶାନ ସମାନ
ଭଗ୍ନାବଶେଷ ବିଦ୍ୟମାନ ।
ଦ୍ୱାପର ଯୁଗେ ଜରାସନ୍ଧ
ଯା କଲା, ନାହିଁ ତା ସମ୍ବନ୍ଧ ।
କ୍ଷତ୍ରିୟ ମଧ୍ୟେ ମହାବଳୀ,
ଦେବାକୁ ରାଜାଗଣେ ବଳି,
ଶାନ୍ତିକୁ ଦେଇ କାରାଗାରେ
ଥିଲା ତ ରଖି ଏହିଠାରେ ?
ସେ ଜରାସନ୍ଧ ଗଲା କାହିଁ ?
ଚିହ୍ନ ମାତ୍ରକ ତାର ନାହିଁ ।
ମାନବ ସ୍ୱଭାବକୁ ଧିକ !
ମରଣ ମାର୍ଗର ପଥିକ !
ରାଜତ୍ୱ ଯଶ କାମନାରେ
ମାନବ ଜୀବନ ଫନ୍ଦାରେ ।
ନ ବୁଝେ ଜୀବନର ଗତି,
ଅଲଂଘ୍ୟ ଅଦୃଶ୍ୟ ନିୟତି ।
ସ୍ୱାର୍ଥ ସାଧନେ ପୀଡ଼େ ଲୋକ,
ନ ଜାଣେ ତାର ହନ୍ତାରକ
ରହିଛି ଜଗି କେଶ ଧରି,
କେ ପାରେ ଅତିକ୍ରମ କରି ?
ସିଦ୍ଧାର୍ଥ ପୁରରେ ପ୍ରବେଶି
ଦେଖିଲେ ନୟନ ନିବେଶି ।

ସ୍ୱକାର୍ଯ୍ୟେ ବ୍ୟସ୍ତ ଲୋକଗଣେ,
ଭ୍ରମିଲେ କ୍ଷଣେକ ଆପଣେ ।
ସୁନ୍ଦର ମାର୍ଗଣ ପ୍ରଶସ୍ତ,
କ୍ରୟ ବିକ୍ରୟେ ଲୋକେ ବ୍ୟସ୍ତ ।
ସନ୍ନ୍ୟାସୀ, ଯୋଗୀ ଅଛୁ କାହ୍ନ,
କେ ବା ଦେଖିବ ତାଙ୍କୁ ଚାହିଁ ?
କ୍ରମେ ଦିବସ ଅବସାନେ
ଦୀପାଳୀ ଜଳେ ସ୍ଥାନେ ସ୍ଥାନେ ।
ନୀରବ ନିର୍ଜନ ନଗରୀ,
ପ୍ରକୃତି ଶାନ୍ତ ମୂର୍ତ୍ତି ଧରି,
ପ୍ରାଚୀରେ ଚନ୍ଦ୍ରମା ପ୍ରକାଶି
ନୀଳ ନୀରଦେ ଯାଏ ଭାସି ।
ପ୍ରକୃତି ଶ୍ୟାମଳ ବସନେ
ଆବୃତା ହେଲେକ ଯେସନେ ।
ନୀରବ ଶାନ୍ତ ଚରାଚରେ
ସଧୀରେ ପବନ ସଞ୍ଚରେ ।
ନୈଶ ଅକାଶତଳେ ଶାକ୍ୟ
ସିଂହ ଏକାକୀ ମୁଖେ ବାକ୍ୟ—
ନାହିଁ; ପ୍ରଶାନ୍ତ ହୃଦୟରେ
ବିରଲେ ବସିଲେ ଧ୍ୟାନରେ ।
ସ୍ୱଭାବେ ନିଶି ଅବସାନ,
ଉଠିଲେ ଦେବ ତେଜି ଧ୍ୟାନ,
ପ୍ରଭାତେ ଭିକ୍ଷାପାତ୍ର କରେ
ସିଦ୍ଧାର୍ଥ ପ୍ରବେଶ ନଗରେ ।
ଛିନ୍ନ ବସନ ନତ ଶିର,
ସୁନ୍ଦର ବଦନ ରୁଚିର,
ମଣ୍ଡିତ ଦେବମହିମାରେ,
ବିରଳ ଏ ରୂପ ସଂସାରେ ।
ନଗରବାସୀ ଲୋକେ ଦେଖି
ରହିଲେ ସେ ରୂପ ନିରେଖି ।
ଅପୂର୍ବ ନବୀନ ସନ୍ନ୍ୟାସୀ
ଦେଖିଣ ମୁଗ୍ଧ ପୁରବାସୀ,
ପଥିକେ ବଣିକେ କୃଷକେ
ସେ ରୂପ ଦେଖିବାକୁ ଲୋକେ

ଅଛିଲେ—ଶିଶୁ ଛାଡ଼ି କ୍ରୀଡ଼ା,
କୁଳଲଳନାଗଣ ବ୍ରୀଡ଼ା,
ସେ ରୂପ ଦେଖିଣ ଚକିତ
ହେଲେ—ଯେସନେ ଚିତ୍ରାର୍ପିତ ।
ନଗରେ ପଡ଼ିଲା ଚହଳ,
ଧାବନ୍ତି ମାନବସକଳ,
ଯୋଗିଙ୍କ ଆଉ ସାଧ କାହିଁ
ଜନତା ଭେଦି ଯିବାପାଇଁ ।
ନାରୀଏ କାନ୍ଦିଲେ ବିକଳେ,
କେ ବୋଲେ ଘଟେ ଭାଗ୍ୟବଳେ ।
କପାଁ ଏ ତେଜିଲା ସଂସାର,
ଜନକ ଜନନୀ ଏହାର
ଥିଲେ କି ପାଷାଣ ହୃଦୟେ
ତେଜିଲେ ଏମନ୍ତ ତନୟେ ?
ସୁନାର ପିତୁଳୀ ସନ୍ନ୍ୟାସୀ
କାହୁଁ ଏଠାକୁ ଅଛି ଆସି ?
ଆସି ପ୍ରବୀଣା ଏକ ନାରୀ
ବୋଇଲା—ରେ ବାପ ଉଦାସୀ !
କପାଁ ତୁ ଯିବୁ ଅନ୍ୟ ସ୍ଥାନ ?
ସର୍ବସ୍ୱ କରୁଛି ପ୍ରଦାନ,
ଯେ ଦ୍ରବ୍ୟ ଲୋଡ଼ା ହେବ ତୋର,
ଦେବି—ତୁ ଭାବନା ନ କର ।
ଅବଗୁଣ୍ଠନେ ମୁଖ ଢ଼ାଙ୍କି
ଚାହିଁଛି କେବଣ ମୃଗାକ୍ଷୀ,
ବେନି ନୟନୁ ବହେ ପାଣି,
ବଦନୁ ନ ଛୁରଇ ବାଣୀ ।
କେ ନାରୀ ବୋଲେ, ସୁନାମଣି !
ନ ଥାଉ ତୋହର ଜନନୀ,
ମୁଁ ତୋ ମା, ତୁ ମୋର ନନ୍ଦନ,
ଭୁଞ୍ଜ ତୁ ମୋର ସର୍ବଧନ ।
କେ ନାରୀ ଝାଣେ ଧରି କରେ,
ଆସ ରେ ବାପ ମୋର ଘରେ,
ଅଭାଗୀ କେବେ ଯୁବା ପୁଅ
ଖାଇଛି, ଆସି ଘରେ ରହ ।

କେ ନାରୀ କାନ୍ଦେ ଡ଼କାପାଡି,
ବାପ ରେ ! ଦେବ ନାହିଁ ଛାଡି ।
ନବୀନା ଯୁବତୀ ସକଳେ
ପଡିଲେ ଆସି ପଦତଳେ ।
ଏକାଳେ ରାଜା ବିମ୍ବିସାର
ଅଟ୍ଟାଳୀ ପ୍ରାଙ୍ଗଣେ ସଞ୍ଚାର
କରୁଣ ଥିଲେ ପ୍ରଭାତରେ,
ଦେଖିଲେ ସନ୍ନ୍ୟାସୀ ମାର୍ଗରେ ।
ରହିଲେ ଏକ ଧ୍ୟାନେ ଚାହିଁ,
ପଲକ ମାତ୍ର ନେତ୍ରେ ନାହିଁ ;
ଭାଳିଲେ ଏ ନୁହେ ମାନବ,
ପ୍ରଚ୍ଛନ୍ନ ଚନ୍ଦ୍ର ବା ବାସବ ।
ବିନ୍ଧ୍ୟାଚଳର ଅଧିଷ୍ଠାତ୍ରୀ
ଦେବତା ନରଲୋକଯାତ୍ରୀ ।
ଧରିବା ଏ ରୂପ ମାନବ
ନିଶ୍ଚୟ ଅଟେ ଅସମ୍ଭବ ।
ମାତ୍ର ସନ୍ନ୍ୟାସୀ ଛନ୍ତି ଭୁଲି
କାହାରି ବଚନ ନ ଶୁଣି ।
ଉଷାନ୍ତେ ପାଣ୍ଡବ ପର୍ବତେ
ଗଲେ ବାହୁଡି ରାଜପଥେ ।
ନୃପତି ସାୟାହ୍ନ କାଳରେ
ମିଳିଲେ ସନ୍ନ୍ୟାସିପାଶରେ,
ନାହାନ୍ତି ପାତ୍ର ମନ୍ତ୍ରୀ ସଙ୍ଗେ,
ରାଜଭୂଷଣ ନାହିଁ ଅଙ୍ଗେ ।
ଦେଖିଲେ ଚାହିଁ ବିମ୍ବିସାରେ
ସନ୍ନ୍ୟାସୀ ଗିରିଗୁହାଦ୍ୱାରେ,
ବିସ୍ତାରି ସ୍ୱସ୍ତିକ ଆସନ
ନିଶ୍ଚଳେ ଧ୍ୟାନେ ନିମଗନ ।
ଶିଳାବେଦୀରେ ବସିଛନ୍ତି,
ସ୍ୱର୍ଣ୍ଣବେଦୀରେ ଦେବମୂର୍ତ୍ତି ।
ମେଲନ୍ତେ ସନ୍ନ୍ୟାସୀ ନୟନ,
ନୃପତି ବନ୍ଦିଲେ ଚରଣ ।
ଶୋଭିଲା ନରପତି ଶିର,
ଶ୍ୟାମଳ କମଳ ରୁଚିର ।

ପୁଚ୍ଛିଲେ ଭୂପତି ବିନୟେ—
ଭୋ ଯୋଗି ! କପାଁ ଅସମୟେ
ଆରମ୍ଭ କଠିନ ତପସ୍ୟା ?
ମୀମାଂସା ବିଷମ ସମସ୍ୟା ।
ନବୀନ ସୁକୁମାର ତନୁ,
ବିଳାସ ଆଶା ତ୍ୟାଗ ମନୁ;
ଦେଖି ତୁମ୍ଭର ଏ ବେଭାର
କରନ୍ତି ଲୋକେ ହାହାକାର ।
ମୁଁ ଅଟେ ମଗଧ-ଈଶ୍ୱର,
ଅତୁଳ ଐଶ୍ୱର୍ଯ୍ୟ ମୋହର ,
ନଷ୍ଟ କର ଅକାଳ ସନ୍ନ୍ୟାସ
ତେଜି ମୋ ରାଜପୁରେ ଆସ ।
ଦେଖି ତୁମ୍ଭର କଷ୍ଟମାନ
ଆକୁଳ ହେଉଛି ପରାଣ,
ମଗଧବାସୀ ନାରୀ ନରେ
କାନ୍ଦନ୍ତି ଆକୁଳେ କାତରେ ।
ତେଜ ଏ ଦୁର୍ବୁଦ୍ଧି ଦୁର୍ଯୋଗ,
ରାଜ୍ୟ, ଐଶ୍ୱର୍ଯ୍ୟ କର ଭୋଗ ।
ବୋଇଲେ ଶାକ୍ୟସିଂହ, ନୃପ !
ନ କର ପ୍ରସ୍ତାବ ଏରୂପ,
ସୁଖରେ କରନ୍ତୁ ରାଜତ୍ୱ,
ଲାଭ କରନ୍ତୁ ଅମରତ୍ୱ ।
ରାଜ୍ୟସୁଖରେ ଅଭିଳାଷୀ
ନୁହେ ମୁଁ, ସମ୍ପ୍ରତି ସନ୍ନ୍ୟାସୀ
ହୋଇଛି—ଶାନ୍ତିକାମନାରେ
ମନ ନିବେଶି ତପସ୍ୟାରେ ।
ବିସ୍ମୟ ମଣି ବିମ୍ବିସାର
ବୋଇଲେ, କ ବୋଲ କୁମାର !
ଶିରୀଷ-କୁସୁମ-ପେଲବ
ତୁମ୍ଭ ଯୌବନ ଅଭିନବ ।
ଦାରୁଣ ତପସ୍ୟାବ୍ରତରେ
ସହିବ କପାଁ ଏ ଦେହରେ ?
ନିର୍ଜନେ ପ୍ରସ୍ତର ଆସନେ
ନ ଦିଅ ଯନ୍ତ୍ରଣା ଜୀବନେ ।

ବୃଥା ନ ହୁଅ କଷ୍ଟଭୋଗୀ,
କୋମଳ ଶେଯ ଉପଯୋଗୀ
ଶରୀର କଣ୍ଟକ ବନରେ
ସହିବ କଷ୍ଟ କିରୂପରେ ?
ଲୋଡ଼ୁଛ ଶାନ୍ତି ? ମୋର ପୁରେ
ସହଜେ ଭୁଞ୍ଜିବ ପ୍ରଚୁରେ ।
ଏ କାମ ଭୋଗର ସମୟ,
ବୃଥା ନ କର ଅପଚୟ ।
ବୋଇଲେ ନବୀନ ସନ୍ନ୍ୟାସୀ—
ନୁହେ ମୁଁ କାମ ଅଭିଲାଷୀ;
କୁଶଳେ ରହନ୍ତୁ ଆପଣ,
ପାଳନ୍ତୁ ସୁଖେ ପ୍ରଜାଗଣ;
ଥିଲା ମୋ ବିତ୍ତ ଯେ ସମସ୍ତ,
ନ ଥିବ କାହାର ଏମନ୍ତ ।
କାମଭୋଗର ଉପଯୋଗୀ
ପଦାର୍ଥ ସର୍ବ ଅଛି ଭୋଗି ।
ମୋର ବିଭବ ତୁଳନାରେ
ନ ଥିବ କାହାର ସଂସାରେ;
କପିଳବସ୍ତୁ ରାଜ୍ୟ ସମ
ରାଜ୍ୟ ଅଭାବ ଉପମ ।
ଧାର୍ମିକା ମାତା ପୁଣ୍ୟବତୀ—
କରୁଣା-ପ୍ରେମ-ସ୍ରୋତସ୍ୱତୀ ।
ଧାର୍ମିକ ପିତା, ନିରୁପମା
ଧାର୍ମିକା ପତ୍ନୀ ଦେବୀସମା ।
କୋମଳ କୋରକ ସମାନ
ସ୍ୱର୍ଗୀୟ ସୁଷମା ସନ୍ତାନ ।
ସୁଖ ଐଶ୍ୱର୍ଯ୍ୟ—ଗୃହ ପୂର୍ଣ୍ଣ,
ତଥାପି ମୋ ହୃଦୟ ଶୂନ୍ୟ ।
କାମଭୋଗରେ ସୁଖ ଶାନ୍ତି-
ଲାଭ—କେବଳ ଚିତ୍ତଭ୍ରାନ୍ତି ।
କହିଁ ମୁଁ ନୋହି ଅଭିଳାଷୀ
ଭ୍ରମୁଛି ଅରଣ୍ୟେ ସନ୍ନ୍ୟାସୀ ?
ହେ ନୃପ ! ଶାନ୍ତି ଥିଲେ ଘରେ,
କପାଁ ଭ୍ରମନ୍ତି ଅରଣ୍ୟରେ ?

କାମରେ ସୁଖ ନାହିଁ ନୃପ !
ସୁପକ୍ୱ ଫଳର ସ୍ୱରୂପ
ଆପାତ ମଧୁର ରୁଚିର,
ମାତ୍ରକ ତାହା ନୁହେ ଚିର ।
ଦିନାନ୍ତେ ହୁଏ ପର୍ଯ୍ୟୁଷିତ,
ଦୁର୍ଗନ୍ଧ, ବିକୃତ, ଦୂଷିତ ।
କାମ ପ୍ରଫୁଲ୍ଲ ପୁଷ୍ପବନ,
ମରଣ ଝଞ୍ଜକା ପବନ,
ଯୌବନେ ଯେଉଁ କାମଭୋଗ,
ଚରମେ ଘଟାଏ ଦୁର୍ଯ୍ୟୋଗ ।
ଶରୀର ହୋଇ ଜରାଜୀର୍ଣ୍ଣ
ମୃତ୍ୟୁ କବଳେ ହୁଏ ଲୀନ ।
ଯେ କାମଭୋଗ କ୍ଷଣସ୍ଥାୟୀ,
ତହିଁକି ଲୋକ କହିଁ ଧାଇ ?
କାମ ଯେ ଅନନ୍ତ ଅସଂଖ୍ୟ,
ଲଭ ପାରିବ କେଉଁ ଲୋକ ?
ଲଭନ୍ତି କାମଭୋଗେ ଶାନ୍ତି,
ମାନବ ଜଗତେ ନାହାନ୍ତି ।
ବରଞ୍ଚ ଦେଖନ୍ତୁ ରାଜନ,
କାମ ଆଶାରେ ଲୋକଗଣ
ଧାବିତ, ନୈରାଶ୍ୟ ଯନ୍ତ୍ରଣା
ଭୁଞ୍ଜନ୍ତି, ଆଶା ବିଡ଼ମ୍ବନା ।
ଅଲାଭେ କାମ—ପ୍ରାଣ ଦଗ୍ଧ,
ଲାଭରେ ନୁହେ ଶାନ୍ତି ଲବ୍ଧ ।
ପାନରେ ଲବଣାକ୍ତ ଜଳ
ପିପାସା ବର୍ଦ୍ଧନ କେବଳ ।
ଦୈବେ ଲଭିଲେ କାମ ଏକ,
ଧାବିତ ଲାଭରେ ଅନେକ ।
ଜ୍ୱଳନ୍ତ ଅନଳେ ଆହୁତି
ଦେଲେ ବର୍ଦ୍ଧିତ ଅଗ୍ନିଜ୍ୟୋତି ।
କାମ ବିଷମ ପ୍ରତାରକ,
ନିଷ୍ଠୁର ଲୋକହନ୍ତାରକ ।
ମରୁଭୂମିରେ ମରୀଚିକା
ସମ ଦେଖାଏ ବିଭୀଷିକା ।

ପ୍ରାଚୀନ ଏ ମଗଧପୁରୀ,
ପଡ଼ିଛି ଦେଖ ଭାଙ୍ଗିଚୁରି ।
ଭାଳନ୍ତୁ ଗିରିବ୍ରଜପୁରେ
ପାମର ଜରାସନ୍ଧ କ୍ରୂରେ
କାମଲାଳସା ବଶବର୍ତ୍ତୀ
ହୋଇ କି ନ କଲା ଦୁର୍ମତି ।
ତୃପ୍ତି କି ହେଲା ତା ଲାଳସା ?
କରମେ ଚରମେ ଦୁର୍ଦ୍ଦଶା ।
ନୃପତି ଶତଅଷ୍ଟୋତ୍ତର
ଦେବାକୁ ବଳି ସେ ପାମର
ଇଚ୍ଛିଲା, ଲଭିଲା କେବଳ
ପାପ ଯନ୍ତ୍ରଣା ହଳାହଳ ।
କରାଳ କାଳସ୍ରୋତ ସାକ୍ଷୀ
ରହିଛି—ଦେଖ ମେଲି ଆଖି ।
ମଗଧପୁରି ଧ୍ୱଂସ ଶେଷ,
ଏହାର ପ୍ରମାଣ ବିଶେଷ ।
ଦେଖିବା ହେଉ ଦଣ୍ଡଧାରି !
କାମଭୋଗରେ ନର ନାରୀ
ଲଭନ୍ତି କରି ହାହାକାର
ଜରା ମରଣ ବ୍ୟାଧି ସାର ।
ଏ କଷ୍ଟସାଗରୁ ଉଦ୍ଧାର
ପାଇବେ ଲୋକେ ଯେପ୍ରକାର,
ଥିଲେ ତା ମାର୍ଗ ଅନ୍ୱେଷଣ
କାର୍ଯ୍ୟରେ ଯାପିବି ଜୀବନ ।
ଜାଣନ୍ତୁ ଅହେ ମହାରାଜ !
ତେଜିଛି ପୁଣି ଶାକ୍ୟରାଜ୍ୟ ।
ଲଭିଲେ ତତ୍ତ୍ୱଜ୍ଞାନ ସାର
ଲୋକରେ କରିବି ପ୍ରଚାର ।
ଶୁଣନ୍ତେ ଏତେ ବିମ୍ବିସାର,
ଜନ୍ମିଲା ଚେତନା ତାହାର,
ଫିଟିଲା ନେତ୍ର ଆବରଣ,
ବୁଝିଲା ତତ୍ତ୍ୱ ବିବରଣ ।
ବୋଇଲା ଯୋଡ଼ି ବେନି କର,
ହେ ପ୍ରଭୁ ! ଏବେ କୃପା କର,

ଲଭିଲେ ମାର୍ଗ,—ବୁଦ୍ଧଦେବ !
ସେ ତତ୍ତ୍ୱ ମୋତେ ଆଜ୍ଞା ହେବ ।
ଏ ଦାସ ଧରୁଛି ଚରଣ,
କରିବେ କରୁଣା ଆପଣ ।
ଦ୍ୱିତୀୟ ଉକ୍ଷା—ଏହି ସ୍ଥାନେ
ରହିନ୍ତୁ କଚ୍ଛନ୍ଦନମାନେ ।
ରହିଲେ ତହିଁ ଶାକ୍ୟପତି,
ମାତ୍ରକ ଘଟିଲା ଦୁର୍ଗତି ।
ପଡ଼ିଲା ବୈଶାଲୀନଗରେ
ଭୀଷଣ ମଡ଼କ ଲୋକରେ ।
କ୍ରମଶ ହେଲାକ ପ୍ରବଳ,
କାନନେ ଯଥା ଦାବାନଳ ।
ମଲେ ମାନବ ଅସୁମାର,
ପଡ଼ିଲା ଲୋକେ ହାହାକାର,
କରାଳ କାଳର ଭୀଷଣ
କ୍ରୀଡ଼ା—ଉପାୟେ ନିବାରଣ,
ବ୍ରାହ୍ମଣ ମୁନି ଋଷି ଯେତେ
କଲେକ ଯାଗ ଯଜ୍ଞ କେତେ ।
ମାତ୍ରକ ଭୀମ ଦାବାନଳ
କ୍ରମଶ ହେଲାକ ପ୍ରବଳ ।
ଏ ଅନ୍ତେ ବୈଶାଲୀନିବାସୀ
ଲୋଡ଼ିଲେ ନବୀନ ସନ୍ନ୍ୟାସୀ ।
ପାଣ୍ଡବ ପର୍ବତେ ସନ୍ନ୍ୟାସୀ—
ଶୁଣି ଧାଇଁଲେ ଦେଶବାସୀ ।
ତାହାଙ୍କ ପଦତଳେ ପଡ଼ି
ବୋଇଲେ ସର୍ବେ କର ଯୋଡ଼ି ।
ହେ ପ୍ରଭୁ ! କରୁଣାସାଗର !
ଘୋର ବିପଦୁଁ ରକ୍ଷା କର ।
କରୁଣହୃଦୟ ସନ୍ନ୍ୟାସୀ
ବୋଇଲେ, ଅହେ ପୁରବାସି !
ମେଣ୍ଟିବ ଦୁର୍ଦ୍ଦଶା ସକଳ;
ପଡ଼ିଲା ଅନଳରେ ଜଳ ।
ଶାନ୍ତ ଲଭନ୍ତେ ଲୋକଗଣେ,
ପଡ଼ିଲେ ସନ୍ନ୍ୟାସୀ ଚରଣେ ।

ନବୀନ ସନ୍ନ୍ୟାସୀ ଏ ଅନ୍ତେ
ବାହୁଡ଼ି ପାଣ୍ଡବ ପର୍ବତେ —
ସାତଶ ଶିଷ୍ୟେ ପ୍ରତିଷ୍ଠିତ,
ରୁଦ୍ରକ ମହର୍ଷି ପୂଜିତ;
ତାହାଙ୍କଠାରୁ ଶାକ୍ୟମୁନି,
ଲଭିଲେ ସମାଧି ଯେ ବେନି—
ଗୋଟିଏ ଯେ ନୈବସଂଜ୍ଞାନ,
ଅନ୍ୟଟି ଅସଂଜ୍ଞାପ୍ରତନ ।
ସିଦ୍ଧାର୍ଥ ଭାଳିଲେ ଏମନ୍ତ,
ଏ ନୁହେ ନିର୍ବାଣର ପଥ ।
ପାଞ୍ଚଟି ଶିଷ୍ୟ ସହିତରେ
ଚଳିଲେ ଗୟା ଉଦ୍ଦେଶ୍ୟରେ ।



## ପଞ୍ଚଦଶ ସର୍ଗ ।

ସିଦ୍ଧି

ଗତ ରଜନୀ ଅରୁଣୋଦୟ,
କ୍ରମେ ଅବନୀ ଆଲୋକମୟ,
ଜଗତର ଲୋକେ ପ୍ରଭାତେ ଆଲୋକେ
ରତ କାର୍ଯ୍ୟରେ ହେଲେ ତନ୍ମୟ
ସେ ସମୟେ ।

୨

ବହେ ଶୀତଳ ବାୟୁ ପ୍ରଭାତ,
ନବ ଅରୁଣ କିରଣ ଭାତ,
କରି ଗୁଞ୍ଜରଣ ମଧୁକରଗଣ
ମକରନ୍ଦପାନେ ଛନ୍ତି ମାତି
ସେ ସମୟେ ।

୩

ଧୀରେ ସିଦ୍ଧାର୍ଥ ମେଲି ନୟନ
ଗୃହୁଁ ଦେଖିଲେ କୁଞ୍ଜ କାନନ,
ଛଅ ବର୍ଷ ଗତ ପ୍ରଭାତେ ଏମନ୍ତ
ତରୁ ଲତା ପୁଷ୍ପ ସୁଶୋଭନ
ସେ କାନନେ ।

୪

ପ୍ରାତ ସୁନ୍ଦର ନୀଳ ଆକାଶ,
ପ୍ରକୃତିର କି ଚାରୁ ବିକାଶ,
ଚାରୁ ମନୋରମ ବସନ୍ତ କୁସୁମ
ଫୁଟି ଚହଟ ଯାଏ ସୁବାସ
ସେ ବନରେ ।

୫

ନବ ପଲ୍ଲବେ ତରୁ ବିଲସି,
ନବ ଯଉବନ ରୂପ ଧରି,
ବିକାଶେ ଯଥାର୍ଥ ମାତ୍ରକ ସିଦ୍ଧାର୍ଥ
ରୂପ ଲାବଣ୍ୟ ଯାଉଛି ସର
[illegible] ।

୬

ଗତ ସାମର୍ଥ୍ୟ ସିଦ୍ଧାର୍ଥ ତନୁ
ଗତ ବୟସ୍ତ ତାଦୃଶ ମନୁ,
ଶରୀର ଯେମନ୍ତ                କାଷ୍ଠରେ ନିର୍ମିତ,
ନୁହେ ସଞ୍ଚାଳିତ ମାତ୍ର ଅଣୁ
ସେ କାଳରେ ।

୭

କର ଚରଣ ଦୁର୍ବଳ ଅତି,
ଉଠିବାକୁ ତ ନାହିଁ ଶକତି,
ନାହିଁ କେହି ସାହା                ଧରି ଅବା ବାହା
ଉଠାଇବ ବା ଆସିଣ କତି
ସେ ସିଦ୍ଧାର୍ଥେ ।

୮

ଥିଲେ ପାଞ୍ଚଜଣ ଶିଷ୍ୟ ପାଶେ,
ପଳାଇଲେକ ଛାଡ଼ି ନିରାଶେ,
ସିଦ୍ଧାର୍ଥ ଏକାକୀ                ସାହା ନାହିଁ ଲୋକ,
କିଛି ବୋଲିବେ କାହାର ପାଶେ
ସେ ସିଦ୍ଧାର୍ଥ ।

୯

ବହୁ କାଳରେ ବହୁ କଷ୍ଟରେ
ଉଠି ବସିଲେ ଶରୀରଭରେ,
ନୈରଞ୍ଜନା ନୀରେ                ଯାଇ ଧୀରେ ଧୀରେ
ସ୍ନାନ କଲେ ଛଅ ବର୍ଷ ପରେ
ସେ ସିଦ୍ଧାର୍ଥ ।

୧୦

ଅନଳରେ କି ସୁଧା ବର୍ଷଣ
ହେଲା, ତେଜିଲେ ଜୀର୍ଣ୍ଣ ବସନ,
ନିକଟ ଶ୍ମଶାନ                ଶବର ବସନ
ଆଣି ଯତନେ କଲେ ଧାରଣ
ସେ ଅଙ୍ଗରେ ।

୧୧

ଆସି ବସିଲେ ସେ ତରୁତଳେ,
ଚନ୍ଦ୍ର ପ୍ରତିମା ସମ ନିଷ୍ଠଳେ,
ଅରଣ୍ୟ ଦେବତା  କିଅବା ସ୍ଥାପିତା
ଛନ୍ତି କି ସେ ବସିନେ ବିରଳେ
ସେ ସ୍ଥାନରେ ।

୧୨

ନନ୍ଦକପତି କନ୍ୟା ସୁଜାତା,
ଖ୍ୟାତ ପବିତ୍ର. ବଂଶସଂଜାତା,
ବେଷ୍ଟିତା ଆଲୀରେ  ସୁବର୍ଣ୍ଣ ଥାଲୀରେ
ପୂଜା ସମ୍ଭାରମାନ ସହିତା
ସେ ସ୍ଥାନରେ ।

୧୩

ବନଦେବତା ପୂଜିବା ଆଶେ
ଆସି ମିଳଲେ ସନ୍ନ୍ୟାସୀ ପାଶେ,
ଦେଖି ଯୋଗିବରେ  ଭାଳିଲେ ମନରେ,
ବନଦେବତା ମନାଙ୍କୁ ଆସେ
ଏ ସନ୍ନ୍ୟାସୀ ।

୧୪

ଭକ୍ତିପୂର୍ବକ ନମି ପାଦରେ,
ଥିଲା ପାୟସାନ୍ନ ସହିତରେ,
ଦେଇ ଉପହାର  ନମି ବାର ବାର
ଜଣାଇଲେ ବିନମ୍ର ବାକ୍ୟରେ
ସେ ଲମାକ୍ଷୀ ।

୧୫

ଘେନ ଦେବତା ମୋ ନିବେଦନ,
ପ୍ରଭୋ ! ବନ୍ଦଇ ତୁମ୍ଭ ଚରଣ,
ଦାସୀର ସାମାନ୍ୟ  ପୂଜା ପାୟସାନ୍ନ
କୃପାକଟାକ୍ଷେ କର ଗ୍ରହଣ,
ହେ ଦେବତା !

୧୬

ଯୋଗୀ ବୋଇଲେ, ଗୋ ସାଧ୍ୱି ! ସତି !
ଦେବ ନୁହେ ମୁଁ ସାମାନ୍ୟ ଯତି;
ରହି ଅନାହାରେ ତପସ୍ୟା ଏଠାରେ
କଲି ବହୁବର୍ଷ ସ୍ଥିରମତି,
ଗୋ କଲ୍ୟାଣି !

୧୭

କ୍ଷୁଧା-ଆକୁଳ ଆଜ ମୋ ପ୍ରାଣ,
ନେଲି ଆନନ୍ଦେ ଏ ପାୟସାନ୍ନ,
କରେଁ ଆଶୀର୍ବାଦ, ପୂରୁ ତୁମ୍ଭ ସାଧ,
ରକ୍ଷା କରନ୍ତୁ ଶ୍ରୀ ଭଗବାନ
ଗୋ ସୁଶୀଳେ !

୧୮

ସତୀ ସୁଜାତାଦତ୍ତ ଅନ୍ନରେ
ଯୋଗୀ ଲଭିଲେ ବଳ ଦେହରେ,
ନିକଟେ "ଗୋଚର" ଗ୍ରାମେ ଯୋଗିବର
ଭିକ୍ଷା କଲେକ ଏଥୁ ଅନ୍ତରେ
ସେ କାଳରେ ।

୧୯

କ୍ରମେ ଯୋଗକ୍ଷମ ହେଲେ ଯତି,
ଘୁଞ୍ଚିବ କି ଜଗତ ଦୁର୍ଗତି,
ଆଜ ସୁପ୍ରଭାତେ ସିଦ୍ଧାର୍ଥ ଏକାନ୍ତେ
ପୁନଃ ତପରେ ଦେଲେକ ମତି
ସେ କାଳରେ ।

୨୦

ସେହି ଅଶ୍ୱତ୍ଥ ବୃକ୍ଷର ତଳେ
ପର୍ବେ ଯୋଗାସନ ଯେଉଁ ସ୍ଥଳେ,
ସାତ ବାର ପୁଣ କରି ପ୍ରଦକ୍ଷିଣ
ପ୍ରଣମିଲ ସାତ ଥର ମୂଳେ
ସେ ତପସ୍ୱୀ ।

୨୧

ଭିକ୍ଷାଲବ୍ଧ ତୃଣରାଶି ଆଣି
ଶୁଦ୍ଧ ଆସନ ପାତିଲେ ପୁଣି,
ପୁନଶ୍ଚ ଯୋଗସ୍ଥ ହେଲେକ, ସମସ୍ତ
କାର୍ଯ୍ୟ ତେଜି ସେହି ମହାଜ୍ଞାନୀ
ସେ ସମୟେ ।

୨୨

ପୂର୍ବମୁଖ ଋଜୁକାୟ ମନେ
ନତ ଅଂସଯୁଗ ଧରାସନେ,
ହସ୍ତୋପରେ ହସ୍ତ ଅଙ୍କରେ ସ୍ଥାପିତ,
ବେନି କମଳ କାଞ୍ଚନାସନେ
ସେ ଯୋଗିର ।

୨୩

ଜଟା ମୁକୁଟ ଶୋଭେ ମସ୍ତକେ,
ନେତ୍ର ମୁଦ୍ରିତ ନାସ୍ତି ପଲକେ,
ଦେହ ଜୀର୍ଣ୍ଣବାସ ନାସା ଅନଶ୍ୱାସ
କର୍ଣ୍ଣେ ଶ୍ରବଣରହିତ ସ୍ତୋକେ
ସେ ଯୋଗିର ।

୨୪

ଦେହ ଅଚଳ ସ୍ଥାଣୁ ସମାନେ,
ସ୍ୱତନ୍ତ୍ରର ସେହି ବାହ୍ୟଜ୍ଞାନେ,
ପ୍ରଣିଧାନ ବଳେ ତପ ସୁକୃତ ଫଳେ
ଲଭି କଲେ ଗୃନ୍ଧୁଷ ସମାନେ
ସେ ଯୋଗୀନ୍ଦ୍ର ।

୨୫

ମନେ ସଙ୍କଳ୍ପ ହେଲାକ ସ୍ଥିର,
ଶୁଷ୍କ ନାଶ ବା ହେଉ ଶରୀର,
ଯାବତ ନିର୍ବାଣ ହୃଦେ ନୁହେ ଜ୍ଞାନ
ଏହି ଆସନେ ରହିବି ଚିର
ମୁଁ ଏ ସ୍ଥାନେ ।

୨୬

ବୃକ୍ଷ ନିଷ୍ପନ୍ଦ ସ୍ଥିର କାନନ,
ସ୍ତବ୍ଧ ପକ୍ଷିସଙ୍ଗୀତ, ପବନ,
ନୈରଞ୍ଜନାସ୍ରୋତ    କାନନ ସମସ୍ତ
ସ୍ଥିର ଅଛି କି ବିଶ୍ୱଭୁବନ
ସେ କାଳରେ ।

୨୭

ପୂର୍ବାଚଳ ଶିରେ ସ୍ଥିର ସୂର୍ଯ୍ୟ,
ବିଶ୍ୱଜଗତ ଶାନ୍ତ ଗାମ୍ଭୀର୍ଯ୍ୟ
ଅଜ୍ଞାତ ଆଶାରେ    ହୃଦେ ବାରେ ବାରେ
କିବା ବିମୋହନ ଧ୍ୱନି ତୂର୍ଯ୍ୟ
ସେ କାଳରେ ।

୨୮

କାମ ପରିକ୍ତ ଗତ ଚରେ,
ଅବିଚଳିତ ଚିତ୍ତ ସ୍ଫୂର୍ତ୍ତିରେ,
ସ୍ନିଗ୍ଧ ନିରମଳ    ଦର୍ପଣ ଉଜ୍ଜ୍ୱଳ
ଆବିଳତା ତ ନାହିଁ ତହିଁରେ
ସେ ମନରେ ।

୨୯

ଚିତ୍ତେ ଜ୍ଞାନଦୀପ ଉଦ୍ଭାସିତ,
ସ୍ୱଚ୍ଛ ଦର୍ପଣେ ତପନ ଦୀପ୍ତ,
ଚିତ୍ତବୃତ୍ତିଚୟ    ସମସ୍ତ ଇନ୍ଦ୍ରିୟ
କ୍ରିୟାକଳାପ ଯେ ଅପ୍ରମିତ
ସେ ଦେହରେ ।

୩୦

ସବିଶୃର ବିତର୍କ ପ୍ରଥମ
କଲେ ଧ୍ୟାନରେ ହୃଦୟଙ୍ଗମ,
ଭାବିଲେ କି ସତ୍ୟ    କି ଅବା ଅସତ୍ୟ
ତତ୍ତ୍ୱ ଲଭିଲେ ସେ କ୍ରମେ କ୍ରମେ
ସେ ଯୋଗୀନ୍ଦ୍ର ।

୩୧

ଆତ୍ମା ସମ୍ବନ୍ଧ ନିତ୍ୟ ସହିତ,
ଜଡ଼ ଚେତନ ଉଭୟେ ନିତ୍ୟ,
ସମ୍ବନ୍ଧବିହୀନ ଉଭ ଭିନ୍ନ ଭିନ୍ନ,
ଯୋଗୀ ଚିତ୍ତରେ କଲେ ନିଶ୍ଚିତ
ସେ ପ୍ରଥମେ ।

୩୨

ଯୋଗୀ ଚିତ୍ତରେ ଚିନ୍ତିଲେ ଦୃଢ଼େ,
ପରିବର୍ତ୍ତନ ସ୍ରୋତରେ ଜଡ଼େ
ହୁଏ ରୂପାନ୍ତର ନିତ୍ୟେ ନିରନ୍ତର,
ତାଙ୍କ ଅପ୍ରୀତି ଜନ୍ମିଲା ଜଡ଼େ
ସେ କାଳରେ ।

୩୩

ସୁଖ ଦୁଃଖ ଯାହା ଜଗତରେ
ନାଶ ଯାଏ ଜଡ଼ ସହିତରେ,
ସୁଖଦୁଃଖମାନ ମନେ ଯେବେ ସ୍ଥାନ
ଦେବ ନାହିଁ, ମୁକ୍ତି ସହଜରେ
ତ ଲଭିବ ।

୩୪

ମେଘବିମୁକ୍ତ ଚନ୍ଦ୍ର ସମାନେ
ଆତ୍ମା ସ୍ୱରୂପ ଦେଖିଲେ ଜ୍ଞାନେ,
ଦିବସ ସମସ୍ତ ହେଲା ଧ୍ୟାନେ ଗତ,
ଦୀର୍ଘକାଳ ପଲକ ସମାନେ
ସେ କାଳରେ ।

୩୫

ଧ୍ୱଂସଗଲା ଅଜ୍ଞାନାନ୍ଧକାର,
ଚିତ୍ତେ ଜ୍ଞାନାଲୋକ ହୋଇ ସଞ୍ଚାର,
ସେ ଜ୍ଞାନ ଆଲୋକେ ଦେଖିଲେ ପ୍ରତ୍ୟକ୍ଷେ
ଖଣି ଗର୍ଭରେ ମଣି ପ୍ରକାର
ସେ ଯୋଗୀନ୍ଦ୍ର ।

୩୬

ପୂର୍ବ ଜନମେ ଥିଲେ ଯେପର,
ଗତ ତମିରକୁ ଭେଦ କର,
ସୁଗତ, ଦୁର୍ଗତ, ସ୍ୱମତ, କୁମତ,
ନଖ ଦର୍ପଣ ପ୍ରତ୍ୟକ୍ଷ ପର
ସେ ଯୋଗୀନ୍ଦ୍ର ।

୩୭

ଧ୍ୟାନେ ଜାଣିଲେ ସେ ପୁନର୍ବାର
ନଜ ପୂର୍ବଜନ୍ମ ସମାଚାର,
ନାହିଁ ତାଙ୍କ ନାମ, ଗୋତ୍ର ଜାତି ବର୍ଣ୍ଣ,
ଜ୍ଞାନବଂଶରେ ଜନ୍ମ ତାଙ୍କର
ଯେ ପୂର୍ବରେ ।

୩୮

କାଳସ୍ରୋତରେ ଜନ୍ମ ମରଣ,
ଘଟୁଅଛୁ ନତ୍ୟ ଆବର୍ତ୍ତନ,
ଜନ୍ମି ଜୀବ ମରେ, ମର ଦେହ ଧରେ
ଦୁଃଖ ସହିବାକୁ ଜୀବଗଣ
ଏ ସଂସାରେ ।

୩୯

ଜୀବ ଜନ୍ମି ମରେ ବାରମ୍ବାର,
କରୁଛନ୍ତି ସଦା ହାହାକାର,
ଭାଳିଲେ ମନରେ, ଏ କି ଜଗତରେ,
ନାହିଁ ମାର୍ଗ କି ହେବା ଉଦ୍ଧାର
ଏ ଜଗତେ ?

୪୦

ଜନ୍ମ ମରଣ ଏ ଆବର୍ତ୍ତନେ
କିଆଁ ଭାସନ୍ତି ଏ ଜୀବଗଣେ ?
ଆରମ୍ଭିଲେ ଧ୍ୟାନ, ଲଭି ତତ୍ତ୍ୱ ଜ୍ଞାନ,
ସୁଖ ଦୁଃଖ ଘଟେ ଯେ କାରଣେ
ଏ ଜଗତେ ।

୪୧

ଜନ୍ମ ଅଟେ ଦୁଃଖର କାରଣ,
କର୍ମଫଳ ଯେ ଜନ୍ମକାରଣ,
ଚେଷ୍ଟାରୁ ଯେ ଜାତ କର୍ମଫଳବ୍ରାତ
ଦେହ ମାନସ ଚେଷ୍ଟା କାରଣ
ଏ ଦେହରେ ।

୪୨

ସୁଖତୃଷ୍ଣା ଯେ ଚେଷ୍ଟାକାରଣ,
ତୃଷ୍ଣାହେତୁ ସୁଖ ଦୁଃଖ ଜ୍ଞାନ,
ଜନ୍ମାଏ ଇନ୍ଦ୍ରିୟ ସୁଖଦୁଃଖଚୟ
ଅନୁଭବନ୍ତୁ ନଶ୍ଚୟ ଏ ଜାଣ
ଏ ଦେହରେ ।

୪୩

ବୃକ୍ଷ କାରଣ ଅଟଇ ବୀଜ,
ବୀଜ କାରଣ ବୃକ୍ଷକୁ ହେଜ,
ଉଭୟ ମଧ୍ୟରେ କାର୍ଯ୍ୟ କାରଣରେ
ଜାତ ସମ୍ବନ୍ଧ ଅଟେ ସହଜ
ଏ ସଂସାରେ ।

୪୪

ଜାତ ବୃକ୍ଷ ବୀଜବିକୃତିରେ,
ଜାତ ବୀଜ ସ୍ୱଭାବକ୍ରିୟାରେ,
ସେ କାର୍ଯ୍ୟ କାରଣ କ୍ରିୟା ନିବନ୍ଧନ,
ସର୍ବ କାର୍ଯ୍ୟ ଜଗତ ସଂସାରେ
ଏ ଜଗତେ ।

୪୫

ଜୀବକର୍ତ୍ତାର ନୁହେ ଉଦ୍ଦେଶ୍ୟ,
ଭୁଞ୍ଜୁ ଜୀବଗଣ ନାନା କ୍ଳେଶ,
ସ୍ୱକାର୍ଯ୍ୟ କାରଣେ ଦେଖୁଁ ଜୀବଗଣେ
ଭୁଞ୍ଜୁଛନ୍ତି ଯନ୍ତ୍ରଣା ଅଶେଷ
ଏ ସଂସାରେ ।

୪୬

ମୂର୍ତ୍ତି ଅଛି ଯାହା ଜଗତରେ,
ରୂପ ରସ ଗନ୍ଧ ମନୋହରେ,
ଇନ୍ଦ୍ରିୟ ସଂଯୋଗ    କରେ ଉପଭୋଗ
ସୂକ୍ଷ୍ମ ପରମାଣୁର ମାତରେ
ସେ ଦ୍ରବ୍ୟର ।

୪୭

ସର୍ବ ସଂସାର ଜ୍ଞାନର ମୂଳ,
ଭ୍ରମ ଜ୍ଞାନ ଅବିଦ୍ୟାସଙ୍କୁଳ,
ରୂପ ରସ ସତ୍ୟ    ନୁହେ ଜାଣ ତତ୍ତ୍ୱ,
ଚିତ୍ତ ବିକାର ମାତ୍ର ଅଟୁଲେ
ସେ ପଦାର୍ଥ ।

୪୮

ଏକ ଦେଖଇ ଯାହା ସୁନ୍ଦର,
ଅନ୍ୟ ମଣେ ତାହା ଅସୁନ୍ଦର,
ଅସତ୍ୟକୁ ସତ୍ୟ    ମଣେ ଲୋକ ନିତ୍ୟ,
ଭ୍ରାନ୍ତ ବିଶ୍ୱାସ ଏହା ଲୋକର
ଏ ଜଗତେ ।

୪୯

ମିଥ୍ୟା ଜ୍ଞାନରେ କେ କରେ ଦର୍ପ,
ଭ୍ରମେ ରଜ୍ଜୁକୁ କେ ମଣେ ସର୍ପ,
ଦୁଃଖକୁ ବା ସୁଖ    ମଣେ କେହି ଲୋକ,
ଏହିପରି କର ଜ୍ଞାନାଲୋକ
କେ ମାନବ ।

୫୦

ମୂଢ଼େ ହୋଇ ଇନ୍ଦ୍ରିୟବିଳାସୀ,
ଆତ୍ମକଣ୍ଠରେ ଲଗାନ୍ତି ଫାଶୀ,
ନ ବୁଝନ୍ତି ବାରେ    ଭୁଞ୍ଜି ଇନ୍ଦ୍ରିୟରେ
ଭୁଞ୍ଜେ କଷ୍ଟ ଜୀବ ଅବିନାଶୀ
ଏ ସଂସାରେ ।

୫୧

ଆୟୁ ପଦ୍ମପତ୍ର ବାରି ସମ,
ଜୀବ ଅନନ୍ତ ଅଟେ ଅସୀମ,
ଅନନ୍ତ ଯେ ସୁଖ     ତହିଁରୁ ବିମୁଖ
ହୋଇ ସୁଖ ଲୋଡ଼େ କ୍ଷୁଦ୍ରତମ
ଏ ସଂସାରେ ।

୫୨

ଜୀବ କାମନାଗାରେ ଆବଦ୍ଧ,
ତତ୍ତ୍ୱମାର୍ଗ ଦର୍ଶନରେ ଅନ୍ଧ,
ଇନ୍ଦ୍ରିୟ ବିଳାସ     ହୁଏ ଯେବେ ନାଶ,
ମୁକ୍ତି ବିଷୟ ସଙ୍ଗେ ସମ୍ବନ୍ଧ
ଏ ଜୀବର ।

୫୩

ଅବିଦ୍ୟାରୁ ଜାତ ଭ୍ରମ ଜ୍ଞାନ,
ଅହଂକାରରେ ହରଇ ଜ୍ଞାନ,
ଇନ୍ଦ୍ରିୟ ଓ ମନ     ମୋହେ ହତଜ୍ଞାନ
ହୋଇ ଅର୍ଜନ୍ତି ଅଧର୍ମମାନ
ଯେ ଅଜ୍ଞାନେ ।

୫୪

ମୋହ ଛେଦନ କରେ ଯେ ଲୋକ,
ରହେ ନାହିଁ ପାପର ସମ୍ପର୍କ,
ଜଗତ ଅନିତ୍ୟ     ଜାଣି ଜ୍ଞାନବନ୍ତ
ଜରା ମରଣୁ ମୁକ୍ତ ସେ ଲୋକ
ଏ ସଂସାରେ ।

୫୫

ଶାକ୍ୟସିଂହଙ୍କ ହୃଦୟେ ଜ୍ଞାନ
ଜାତ, ଯେପରି ମୁକ୍ତି ନିର୍ବାଣ
ଲଭିବେ ମାନବେ     ଏହି ବିଶ୍ୱଭବେ,
ଯୋଗ ଏତେକାଳ ସମାଧାନ
ସେ ଯୋଗିର ।

୫୬

ଛଅବର୍ଷ ତପସ୍ୟାର ଫଳ,
ଲାଭ କଲେକ ଜ୍ଞାନ ନିର୍ମଳ,
ଏହି ଜ୍ଞାନ ଲୋଭ    ରାଜ୍ୟ ସୁଖ ଛାଡ଼ି
ଥିଲେ, ମାନସ ହେଲା ସଫଳ
ସେ ଯୋଗିର ।

୫୭

ଅଲୌକିକ ତନ୍ତ୍ରର ଅତୀତ
ତପସ୍ୟାରେ ଦୀର୍ଘକାଳ ଗତ,
ତେଜି ସୁଖରମ୍ୟ    କଲେ ଦେହକ୍ଷୟ,
କଳ୍ପତରୁ ହେଲା କୁସୁମିତ
ସେ ଯୋଗିର ।

୫୮

ଅନାହାର ଅନାବୃତଦେହୀ,
ଶୀତ ଗ୍ରୀଷ୍ମ ବର୍ଷା କଷ୍ଟ ସହି,
କଠୋର ସାଧନା    କରି ମହାମନା
ଜ୍ଞାନ ଲଭିଲେକ ବନେ ରହି
ସେ ସନ୍ନ୍ୟାସୀ ।

୫୯

ହୃଦେ ଚଞ୍ଚଳତା ଆଉ ନାହିଁ,
ଆଶା ତୃଷ୍ଣା ଅନୁରାଗ କାହିଁ,
ଅବିଦ୍ୟାର ଭାବ    ହୃଦୟୁଁ ଅଭାବ,
ଏତେ ତପସ୍ୟା ତ ସେଥିପାଇଁ
ସେ ଯୋଗିର ।

୬୦

ଜ୍ଞାନାଲୋକରେ ହୃଦ ବିମଳ,
ହେଲା ସୁଶୀତଳ ସମୁଜ୍ଜ୍ୱଳ,
କେତେ ଜନ୍ମାନ୍ତରେ    ତପସ୍ୟା କଠୋରେ
କଲେ ତତ୍ତ୍ୱଜ୍ଞାନ ସମ୍ବଳ
ସେ ସନ୍ନ୍ୟାସୀ ।

୬୧

ନିର୍ବାଣର ପୂର୍ଣ୍ଣ ବୁଦ୍ଧି ଜାତ,
ବୁଦ୍ଧ ଅବତାରରୂପେ ଖ୍ୟାତ,
ସେ ଅଶ୍ୱତ୍ଥ ବୋଧି-    ଦ୍ରୁମତଳେ ସିଦ୍ଧି
ତତ୍ତ୍ୱଜ୍ଞାନକୁ କଲେ ଆୟତ୍ତ
ସେ ସନ୍ନ୍ୟାସୀ ।

୬୨

ମହାକାଳସ୍ରୋତେ କ୍ରମଶରେ
ସେ ପବିତ୍ର ନାମ ଜଗତରେ
ମହାଭବିଷ୍ୟତେ    ଅସୀମ ଅନନ୍ତେ
ପୂଜା କରିବେ ଯେ ନାରୀନରେ
ସେ ନାମକୁ ।

୬୩

ପୁଣ୍ୟ ପବିତ୍ରନାମ ଜଗତେ
ନର ନାରୀଙ୍କ ଶ୍ରବଣପଥେ
ମହାସମୀରଣ    କରିବ ବହନ,
ମୁକ୍ତି ଲଭିବେ ପ୍ରାଣୀ ସମସ୍ତେ
ଏ ଜଗତେ ।

୬୪

ନାମ ପ୍ଲାବି ବିଶ୍ୱ ଚରାଚରେ
ଶୂନ୍ୟ ଭେଦି ମିଳିଲା ସ୍ୱର୍ଗରେ,
ମିଳି ଦେବଗଣ    କୁସୁମ ବର୍ଷଣ
କଲେ ସର୍ବେ ଆନନ୍ଦ ମନରେ
ସେ କାଳରେ ।

୬୫

ବୁଦ୍ଧ ପ୍ରାଣ ପୂର୍ଣ୍ଣ ପୁଲକରେ,
ଶୀର୍ଣ୍ଣଦେହ ବୃଦ୍ଧି ପଲକରେ
ମାନସ ସଫଳ    ହୃଦୟ ନିର୍ମଳ
ନେତ୍ର ଉନ୍ମୀଳିତ ଆନନ୍ଦରେ
ସେ ଯୋଗିର ।

୫୬

ଛଅବର୍ଷ ତପସ୍ୟାର ଫଳ,
ଲାଭ କଲେକ ଜ୍ଞାନ ନିର୍ମଳ,
ଏହି ଜ୍ଞାନ ଲୋଡ଼ି          ରାଜ୍ୟ ସୁଖ ଛାଡ଼ି
ଥିଲେ, ମାନସ ହେଲା ସଫଳ
ସେ ଯୋଗିର ।

୫୭

ଅଲୌକିକ ଚମତ୍କାର ଅତୀତ
ତପସ୍ୟାରେ ଦୀର୍ଘକାଳ ଗତ,
ତେଜି ସୁଖଚୟ          କଲେ ଦେହକ୍ଷୟ,
କଳ୍ପତରୁ ହେଲା କୁସୁମିତ
ସେ ଯୋଗିର ।

୫୮

ଅନାହାର ଅନାବୃତଦେହୀ,
ଶୀତ ଗ୍ରୀଷ୍ମ ବର୍ଷା କଷ୍ଟ ସହି,
କଠୋର ସାଧନା          କରି ମହାମନା
ଜ୍ଞାନ ଲଭିଲେକ ବନେ ରହି
ସେ ସନ୍ନ୍ୟାସୀ ।

୫୯

ହୃଦେ ଚଞ୍ଚଳତା ଆଉ ନାହିଁ,
ଆଶା ତୃଷ୍ଣା ଅନୁରାଗ କାହିଁ,
ଅବିଦ୍ୟାର ଭାବ          ହୃଦୟୁ ଅଭାବ,
ଏତେ ତପସ୍ୟା ତ ସେଥିପାଇଁ
ସେ ଯୋଗିର ।

୬୦

ଜ୍ଞାନାଲୋକରେ ହୃଦ ବିମଳ,
ହେଲା ସୁଶୀତଳ ସମୁଜ୍ଜ୍ୱଳ,
କେତେ ଜନ୍ମାନ୍ତରେ          ତପସ୍ୟା କଠୋରେ
କଲେ ତତ୍ତ୍ୱଜ୍ଞାନ ସମ୍ବଳ
ସେ ସନ୍ନ୍ୟାସୀ ।

୬୧

ନିର୍ବାଣର ମୂର୍ତ୍ତି ବୁଦ୍ଧି ଜାତ,
ବୁଦ୍ଧ ଅବତାରରୂପେ ଖ୍ୟାତ,
ଯେ ଅଶ୍ୱତ୍ଥ ବୋଧି- ଦ୍ରୁମତଳେ ସିଦ୍ଧି
ତତ୍ତ୍ୱଜ୍ଞାନକୁ କଲେ ଆୟତ୍ତ
ସେ ସନ୍ନ୍ୟାସୀ ।

୬୨

ମହାକାଳସ୍ରୋତେ କ୍ରମଶରେ
ସେ ପବିତ୍ର ନାମ ଜଗତରେ
ମହାଭବିଷ୍ୟତେ ଅସୀମ ଅନନ୍ତେ
ପୂଜା କରିବେ ଯେ ନାରୀନରେ
ସେ ନାମକୁ ।

୬୩

ପୁଣ୍ୟ ପବିତ୍ରନାମ ଜଗତେ
ନର ନାରୀଙ୍କ ଶ୍ରବଣପଥେ
ମହାସମୀରଣ କରିବ ବହନ,
ମୁକ୍ତି ଲଭିବେ ପ୍ରାଣୀ ସମସ୍ତେ
ଏ ଜଗତେ ।

୬୪

ନାମ ପ୍ଲାବି ବିଶ୍ୱ ଚରାଚରେ
ଶୂନ୍ୟ ଭେଦି ମିଳନ୍ତା ସ୍ୱର୍ଗରେ,
ମିଳି ଦେବଗଣ କୁସୁମ ବର୍ଷଣ
କଲେ ସର୍ବେ ଆନନ୍ଦ ମନରେ
ସେ କାଳରେ ।

୬୫

ବୁଦ୍ଧ ପ୍ରାଣ ମୂର୍ତ୍ତି ପୁଲକରେ,
ଶୀର୍ଣ୍ଣଦେହ ବୃଦ୍ଧି ପଲକରେ
ମାନସ ସଫଳ ହୃଦୟ ନିର୍ମଳ
ନେତ୍ର ଉନ୍ମୀଳିତ ଆନନ୍ଦରେ
ସେ ଯୋଗିର ।

୬୬

ପୂର୍ବପରି ଅଛନ୍ତି ଆସନେ,
ଯୋଗୀ ଗୃହିଁଲେ ଧୀରନୟନେ,
ନବ ଧର୍ମାଲୋକେ ଜଗତ ପୁଲକେ,
ଆନନ୍ଦିତ ଯେସନେ ଜୀବଗଣେ
ସେ କାଳରେ ।

୬୭

ନଶି ପ୍ରଭାତେ ଧୀର ପବନ
ବହେ, ଯୋଗୀ ତେଜିଲେ ଆସନ,
ନିର୍ବାଣର ସୁଖେ ଜଗତର ଲୋକେ
ଯେସନେ ଛନ୍ତି ଆନନ୍ଦେ ମଗନ
ସେ କାଳରେ ।



## ସପ୍ତଦଶ ସର୍ଗ ।

### ସଂସାର ଶ୍ମଶାନ ।

ଗୌତମ ମଗଧ ଦେଶରେ
ଶିଷ୍ୟମାନଙ୍କ ସହିତରେ
ବସିଅଛନ୍ତି ବେଣୁ ବନେ,
ଗୁଳ୍ମରେ ଅଶ୍ୱଥ ଯେସନେ ।
ପିତୃପ୍ରେରିତ ଦୂତ ଜଣେ
ବିନୟେ ନମିଲା ଚରଣେ ।
ସେ ଦୂତ ବାଲ୍ୟସହଚର;
କପିଳବସ୍ତୁ ଦେଶେ ଘର ।
ବୋଇଲା ଆସି ଯୋଡ଼ି ହାତ,
ହେ ମହାପ୍ରଭୁ ! ତୁମ୍ଭ ତାତ
ପେଷିଲେ ଦୂତ ଦେଶେ ଦେଶେ
ପ୍ରଭୁଙ୍କୁ ଲୋଡ଼ିବା ଉଦ୍ଦେଶେ ।
ସକଳ ଗଲା ଅକାରଣେ,
ବାହୁଡ଼ି ନ ଆଇଲେ ଜଣେ ।
ସେ ଲୋକଗଣେ ନିରାଶାରେ
ବିରାଗେ ଗଲେ ପ୍ରବ୍ରଜ୍ୟାରେ ।
ଶୈଶବ ବନ୍ଧୁ ଏହି ଦାସ,
ଭାଗ୍ୟେ ଭେଟିଲା ଆସି ପାଶ ।
ହୃଦୟ ପାଷାଣରେ ବାନ୍ଧି
ଆସିଛି ଧାଇଁ କାନ୍ଦି କାନ୍ଦି ।
ବାଜୁଛି ତୁମ୍ଭ ଧର୍ମ ଭେରୀ,
ଦେଶେ ଦେଶାନ୍ତେ କର୍ଣ୍ଣ ଡେରି
ଅଛନ୍ତି ଲୋକ ଶୁଣିବାକୁ,
ଏଥକୁ ଅଇଲା ଏଠାକୁ ।
କପିଳବସ୍ତୁବାସିଗଣେ
କି ଦୋଷ କଲେ ବା ଚରଣେ ?
ପ୍ରଭୁଙ୍କ ନବ-ଧର୍ମ-ସୁଧା.
ପାନେ କି ନ ମେଣ୍ଟିବେ କ୍ଷୁଧା ?
ସକଳଦେଶବାସୀ ଲୋକ
ଲଭିଲେ ସେ ଧର୍ମ-ଆଲୋକ;

ଶାକ୍ୟ ରାଜ୍ୟ କ ଅନ୍ଧକାରେ
ରହିବ ? କୃପା କର ବାରେ ।
ଚଳନ୍ତୁ ପ୍ରଭୋ ! ଶାକ୍ୟ ରାଜ୍ୟେ,
ଜଗତର ମାନବସମାଜେ
ନୂତନ-ଧର୍ମ-ସୁଧାବିନ୍ଦୁ,
ଛିତିରେ ଉଦେ ହେଉ ଇନ୍ଦୁ ।
ପ୍ରଭୁଙ୍କ ଜନକ ଜନନୀ,
ରାହୁଲ ପୁତ୍ର, ଗୋପା ପତ୍ନୀ,
ଅଛନ୍ତି ବ୍ୟାକୁଳ ମନରେ
କପିଳବସ୍ତୁ ନାମ ନଗରେ ।
ରାଜାଙ୍କ ଦେହାନ୍ତ ସମୀପ—
ଲିଭୁଛି ଜୀବନପ୍ରଦୀପ—
ଅନ୍ତିମକାଳରେ ରାଜନ
ଦେଖିବେ ପ୍ରଭୁଙ୍କ ବଦନ ।
ପ୍ରଭୁଙ୍କ ଧର୍ମାମୃତପାନ
କରିଣ ଲଭିବେ ନିର୍ବାଣ ।
ହେ ପ୍ରଭୁ ! କରୁଣାର ସିନ୍ଧୁ,
ଜଗତର ତୁହିଁ ଏକବନ୍ଧୁ,
ଜନକ ଜନନୀ ଆକୁଳେ,
କାଞ୍ଚନପ୍ରତିମା ରାହୁଲେ ।

* * * * *

ଶିଶିର ବିଗତ ବସନ୍ତ,
ବିମଳ ନୀଳିମା ଦିଗନ୍ତ,
ଶିଶିର ଭୟେ ସଙ୍କୁଚିତା—
ପ୍ରକୃତି ସମ୍ପ୍ରତି ସଜ୍ଜିତା ।
ପ୍ରକୃତି ଦେବୀ ସହଚରୀ
ସଜ୍ଜିତା ଧରଣୀ ସୁନ୍ଦରୀ ।
ପର୍ବତେ, ପ୍ରାନ୍ତରେ, କାନନେ,
ସରିତେ, ସାଗରେ, ଗଗନେ,
ସଜଳ-ସ୍ଥଳେ ଶୋଭାରାଶି
ଅଜସ୍ରଧାରେ ଯାଏ ଭାସି ।
ବୃକ୍ଷ ବଲ୍ଲରୀ କିସଲୟେ
ମଣ୍ଡିତ କମଳା ଆଳୟେ ।

ମଧୁର ଅନିଳ ମଳୟ
ଧରା ପ୍ଳାବିତ ସୁଧାମୟ;
ସେ ସୁଧା ପରଶେ କୁସୁମେ
ମଣ୍ଡିତ ସର୍ବ ଲତା ଦ୍ରୁମେ ।
ପୁଲକେ ଚନ୍ଦ୍ର, ତାରାଗଣେ
ଭାସନ୍ତି ଗଗନ ପ୍ରାଙ୍ଗଣେ ।
ପ୍ରକୃତି ଶିଶିର ଭୟରେ
ଗୁପତେ ଜଳ ଅଭ୍ୟନ୍ତରେ
କମଳ, କୁମୁଦ, କହ୍ଲାରେ
ଲୁଚାଇଥିଲେ ପେଟିକାରେ ।
ଉତ୍ତମ ଦ୍ରବ୍ୟ ଲୋକମାନେ
ଯତ୍ନେ ରଖନ୍ତି ସାବଧାନେ ।
ବସନ୍ତ ଆଗମନ ଶୁଣି,
ଜଳ ଉପରେ ଦେଲେ ବୁଣି ।
ସମ୍ପତ୍ତି ସାଧୁଲୋକ ହସ୍ତେ
ଗଚ୍ଛିତ କରନ୍ତି ସମସ୍ତେ ।
କୋକିଳା ବସନ୍ତର ଦୂତୀ,
ଦେଖି କମଳବନଦ୍ୟୁତି
ସଙ୍ଗୀତ ଲହରୀ ବିସ୍ତାରି
କଲା ବସନ୍ତ ସମାଚାର ।
ବସନ୍ତେ ପୁଲକିତ ଜନେ,
ସାଧକ ଦେବ ଦରଶନେ ।
ବସନ୍ତ ପବନ ସହିତ
ନିର୍ବାଣ ବାର୍ତ୍ତା ସଞ୍ଚାରିତ ।
ଶିଷ୍ୟମାନଙ୍କ ସହିତରେ
ଗୌତମ କପିଳ ନଗରେ
ପ୍ରସ୍ତୁତ ହେଲେ ଯିବାପାଇଁ ।
ଅଛନ୍ତି ଲୋକେ ପଛେ ଧାଇଁ,
ବହୁତ ଦେଶ ଜନପଦ
ବିତରି ନିର୍ବାଣ ସମ୍ପଦ,
ମିଳିଲେ କପିଳ ନଗରେ;
ନଗର ପ୍ରାନ୍ତସ୍ଥ ବନରେ
ରହିଲେ ଶିଷ୍ୟଙ୍କ ସହିତ;
ସମ୍ବାଦ ହେଲା ପ୍ରଚାରିତ ।

ନୀରବ ଅନନ୍ତ ବଦନେ,
ଭୂଷିତ ଗୈରିକ ବସନେ,
ଭିକ୍ଷାପାତ୍ରେକ ଅଛି କରେ,
ଅନଳ ଆବୃତ ଭସ୍ମରେ ।
ଜଟା କଣ୍ଟକ ଶିରେ ଶୋଭେ,
ଶରୀର ସ୍ୱର୍ଗୀୟ ଗୌରବେ,
ଆକାଶେ ଦୈବ ଜ୍ୟୋତିଜାଲେ,
ତପନ ମେଘ ଅନ୍ତରାଳେ ।
ଯେ ଯୁବରାଜ ସ୍ୱର୍ଣ୍ଣ ଯାନେ
ରାଜନ୍ତ—ରତନ ଆମାନେ,
ରତ୍ନ ମୁକୁଟ ଥିଲା ଶିରେ,
ଭୂଷଣ କାଞ୍ଚନ ରୁଚିରେ,
ଆହା ! ସେ ଭିକାରୀ ବେଶରେ
ବସିଅଛନ୍ତି ଅରଣ୍ୟରେ,
ଧୂଳି ଲୁଣ୍ଠିତ ସ୍ୱର୍ଣ୍ଣଗାତ୍ର,
ହସ୍ତେ ବିରାଜେ ଭିକ୍ଷାପାତ୍ର,
ନଗରବାସୀ ନାରୀ ନରେ
ବେଢିଲେ ଆକୁଳ ମନରେ,
ସକଳେ ମ୍ରିୟମାଣ ଶୋକେ,
କେ ଦେବ ଭିକ୍ଷା ସେ ଭିକ୍ଷୁକେ ?
କପିଳବସ୍ତୁ ହାହାକାର
ପୂରିଲା କ୍ରନ୍ଦନ ଚିତ୍କାର ।
ନୃପତି ବ୍ୟାକୁଳ ହୃଦୟ,
ଦେଖିଲେ ଶୋକ ଅତନୟ,
ଉଭା ଅଛନ୍ତି ସିଂହଦ୍ୱାରେ,
ଚରଣ ନ ଚଳନ୍ତି ବାରେ,
ହୃଦୟେ ନାହିଁଟି ସ୍ପନ୍ଦନ,
ପଲକବିହୀନ ନୟନ ।
ନୟନୁ ଅଶ୍ରୁ ଧାର ବହେ,
ଶୋକ ସନ୍ତାପେ ହୃଦ ଦହେ ।
ସିଦ୍ଧାର୍ଥ ଧୀରେ ଅତି ଧୀରେ
ମିଳିଲେ ଜନକ କତିରେ ।
ରାଜାଙ୍କ ହଜିଗଲା ବୁଦ୍ଧି,
ବାଷ୍ପଗଦ୍ଗଦେ କଣ୍ଠ ରୁନ୍ଧି,

ସମ୍ଭାଳି ହୋଇ ଆପଣାକୁ,
ବୋଇଲେ ଯାଇ ପୁତ୍ରଠାକୁ—
ସିଦ୍ଧାର୍ଥ !—ସନ୍ନ୍ୟାସି !—ଗୌତମ !—
ଛୋ ଛିଡା ଏଡ଼େ କି ଅଧମ !
ଗୋଟିଏ ସନ୍ନ୍ୟାସିକୁ ଅନ୍ନ
ଦେବାକୁ ଏଡ଼େ ଅଭାଜନ ?
କିପାଇଁ ଭିକ୍ଷା ଦ୍ୱାରେ ଦ୍ୱାରେ
ମାଗୁଛୁ ସିଦ୍ଧାର୍ଥ ! ବାପା ରେ !
ବିନୟେ ବୋଇଲେ ଗୌତମ—
ଏ ବଂଶେ ଭିକ୍ଷାବୃତ୍ତି ଧର୍ମ,
ପାଳିବା ବଂଶଧର୍ମ ରୀତି,
ଏହାହିଁ ସନାତନ ନୀତି ।
ବୋଇଲେ ଶୋକେ ନରନାଥ—
କି କଥା ବୋଇଲୁ ସିଦ୍ଧାର୍ଥ ?
ମହାଗୌରବ ସୂର୍ଯ୍ୟବଂଶେ
ଜନ୍ମିଛୁ ସେହି ରାଜଅଂଶେ,
ଏ ବଂଶେ ବୋଲି କେ ରାଜନ
କରୁଛି ଭିକ୍ଷା ଆଚରଣ ?
ସିଦ୍ଧାର୍ଥ ସୁସ୍ଥିର ହୃଦୟେ
ବୋଇଲେ ଜନକେ ବିନୟେ,
ହେ ପିତଃ ! ପୂର୍ବେ ଶାକ୍ୟବଂଶେ
ଜନ୍ମିଲେ ଥୋକେ ବୁଦ୍ଧ ଅଂଶେ,
ସେମାନେ ଭିକ୍ଷାବ୍ୟବସାୟୀ
ଥିଲେ, ସେ ନୀତି ଅନୁଯାୟୀ
ଦୁର୍ଲଭ ପୈତୃକ ସମ୍ପତ୍ତି
ଲଭୁଛି ଆହେ ନରପତି !
ଅପାର ସାଧନା ବଳରେ
ସେ ଧନ ଲଭୁଛି ମୁଁ କରେ ।
କପିଳବସ୍ତୁ ଜନଗଣ
କରନ୍ତୁ ସେ ଧନ ଗ୍ରହଣ ।
ରାଜା ଆଗ୍ରହେ ଅତିମାତ୍ର
ସିଦ୍ଧାର୍ଥ ହସ୍ତୁଁ ଭିକ୍ଷାପାତ୍ର
ଧରି ପବିତ୍ର ନିଜ କରେ
ସଧୀରେ ଚଳିଲେ ନଅରେ ।

ଏ ଚିତ୍ର ଦେଖି ପ୍ରଜାବତୀ
କାନ୍ଦିଲେ ବକଳରେ ଅତି ।
ସଧୀରେ ପୁତ୍ର ପାଶେ ଯାଇ
ପଡ଼ିଲେ ଚେତନା ହରାଇ ।
ଉଠ ମା ! ଉଠ ମା ! ସିଦ୍ଧାର୍ଥ
ବୋଇଲେ, ଆକୁଳେ ନିତାନ୍ତ ।
ଜନନୀ ମୁଖକୁ ଅନାଇ
ବସିଅଛନ୍ତି ପାଶେ ଯାଇ,
ସ୍ୱପ୍ନ ସମାନ ଗଲା ଜଣା,
ଜନନୀ ଲଭିଲେ ଚେତନା ।
ବୋଇଲେ—କେ ମା ମା ଶବ୍ଦରେ
ଢାଳିଲା ସୁଧା ମୋ କର୍ଣ୍ଣରେ ?
ହେ ନୃପ ! ବୋଲନ୍ତୁ ଯଥାର୍ଥ—
ଏହି କି ମୋ ପ୍ରାଣ ସିଦ୍ଧାର୍ଥ ?
ସିଦ୍ଧାର୍ଥ ପରି ଯାଏ ଜଣା,
ଅଥବା ଦେବତା ଛଳନା ?
ଆଜକୁ ସାତ ବର୍ଷ ଗତ,
ଯାଇଛି ଛାଡ଼ି ତଥାଗତ,
ବରଷେ ଯୁଗକ ସମାନ
ପରି ମୁଁ କରେଁ ଅନୁମାନ,
ହୃଦୟେ ସାତ ବର୍ଷ ଜାଣ
ଜ୍ୱଳୁଛି ଅଗ୍ନି ଅନିର୍ବାଣ,
ଦେଖି ମୋ କଷଣ ନିତାନ୍ତ,
ଆସିଛ କରିବାକୁ ଶାନ୍ତ ?
କେଉଁ ଦେବତା ଛଳ କରି
ଆସିଛ ପୁତ୍ର ରୂପ ଧରି ?
ଏହି ତ ମୋ ପୁତ୍ର ବଦନ,
ଏହି ତ ସିଦ୍ଧାର୍ଥ ନୟନ,
ସିଦ୍ଧାର୍ଥ ପରି ବୋଲ କଥା,
ବୋଲନ୍ତୁ ତୁମ୍ଭେ କେ ଦେବତା ?
ଦେହରେ ଅଛୁ ବୋଳ ଧୂଳି,
ତୁହି କି ମୋ ନେତ୍ରପିତୁଳି ?
ନ ସହୁ ତୁଚ୍ଛ ପ୍ରାଣୀ-ଦୁଃଖ,
ମୋ ପ୍ରତି ହେଲୁ ରେ ବିମୁଖ ?

ମୋ କଥା ଥିଲା କି ମନରେ ?
ଆସ ରେ ବାପ ଦେଖେଁ ଥରେ !
ବସ ରେ ପାଶେ ବାପଧନ;
ଶୀତଳ ହେଉ ମୋ ଜୀବନ ।
ଗୋପା ରେ ! ଗୋପା ରେ ! ମା-ଆ-ଆ!
ବିଚିତ୍ର ଚିତ୍ର ଦେଖି ଯାଆ ।
ମୋ ବଧୂ ଯୌବନେ ଯୋଗିନୀ,
କାନ୍ଦେ ଝୁରଣ୍ଟି ବିରହିଣୀ ।
ପୁତ୍ର ମୋ ବନେ ଅନାହାରେ
ଭୂମିଶଯ୍ୟାରେ ତପସ୍ୟାରେ
ବସିଛି ବଧୂ ପତି ଧ୍ୟାନେ,
ବାରଦେ ଗୃହକୀ ସମାନେ ।
ହେ ପ୍ରାଣନାଥ ମହାରାଜ !
ଆଉ ଗୃହରେ କିବା କାର୍ଯ୍ୟ !
ଏ ରାଜପୁରୀ କର ଧ୍ୱଂସ !
ଫୋପାଡ଼ି ଦେଉନ୍ତୁ ସର୍ବସ୍ୱ ।
କି କାର୍ଯ୍ୟ ପ୍ରମୋଦ ଉଦ୍ୟାନେ ?
ଯିବୁଁ କାନନେ ଅମ୍ଭେମାନେ ।
ହେ ନୃପ ଶୁଣ ନିବେଦନ,
ରହୁ ଗୃହରେ ମୋ ନନ୍ଦନ ।
ଫୋପାଡ଼ି ଦିଅ ଭିକ୍ଷାପାତ୍ର,
ଗୃହରେ ରହୁ ମୋ ସିଦ୍ଧାର୍ଥ ।
ପୁତ୍ରର ଏହି ବେଶ ଆଉ
ଦେଖିବି ନାହିଁ ପ୍ରାଣ ଥାଉଁ ।
ସିଦ୍ଧାର୍ଥ ବସିଛନ୍ତି ସ୍ଥିରେ,
ପାଷାଣ ପ୍ରତିମା ମହୀରେ ।
ବୋଇଲେ ରାଜା ଶୁଦ୍ଧୋଦନ—
ଗୋ ଦେବି ! କାନ୍ଦ ଅକାରଣ ।
ଦେଖ ଏ ତୁମ୍ଭର ନନ୍ଦନ
ପ୍ରତ୍ୟକ୍ଷେ ନର-ନାରାୟଣ,
ଭୁଲାରେ ଗେରୁଆ ବସନ—
ସାମାନ୍ୟ ରାଜ-ଆଭରଣ ।
ଏ ଜଟା କିରୀଟର ପର
ରାଜମୁକୁଟ ନୁହେ ସତ୍ୟ ।

ଏ ଭିକ୍ଷାପାତ୍ର ସମାନରେ
ଅଛି କି କୋଷ ଜଗତରେ ?
ସଞ୍ଚିତ ଅମୂଲ୍ୟ ରତନ,
ପାଳିବ ଅସଂଖ୍ୟ ଜୀବନ ।
ଯେ ରାଜ୍ୟ ପାଇଛି କୁମର,
ଅସୀମ ସ୍ଥିର ଅନଶ୍ୱର ।
ଏ ମହାରାଜ୍ୟର ମହିମା
ଅତୁଳ ଐଶ୍ୱର୍ଯ୍ୟ ଅସୀମା ।
ଅକ୍ଷୟ ଧନ ବିତରଣ
କରିବ ରକ୍ଷା ପ୍ରାଣିଗଣ ।
କରୁଣା କରି ରେ ସିଦ୍ଧାର୍ଥ,
ଦେ ତୋ' ମାତାକୁ ଭିକ୍ଷାପାତ୍ର ।
ଏ ବୃଦ୍ଧ ବୃଦ୍ଧା ପିତା ମାତା—
ହୁଅ ରେ ବାପ ପରିତ୍ରାତା ।
ଉଭୟେ କାଟି ମାୟାପାଶ
କରିବୁଁ ଘୋରବନେ ବାସ ।
ପାଳିବା ବାନପ୍ରସ୍ଥ ଧର୍ମ,
ଅନ୍ତିମେ ନରପତି କର୍ମ ।
ବୋଇଲେ ନମ୍ରେ ସିଦ୍ଧାର୍ଥ—
ହେ ପିତଃ ! ନିଅ ଭିକ୍ଷାପାତ୍ର,
ନ ଯାଅ ବନେ ରହି ଗେହେ,
ତୁମ୍ଭର ଜରାଜୀର୍ଣ୍ଣ ଦେହେ
କଠୋର ସନ୍ନ୍ୟାସ ଦାହନ
ସହିବ ନାହିଁ ଗଲେ ବନ ।
ଅଶ୍ରମ ରାଜସିଂହାସନ,
ଉଭୟେ ହେଉନ୍ତୁ ଶ୍ରାମଣ ।
ସମସ୍ତ ଶିଷ୍ୟ ପୁରବାସୀ,
ରାଜାନୁଚର, ଦାସ, ଦାସୀ,
ବେଷ୍ଟିତ ବୃନ୍ଦେ ସେ ସମୟେ
ଜନକ ଜନନୀ ଉଭୟେ ।
କାହାନ୍ତି ଗୋପା ? ମାନ ଗୋପା
ଲୁଣ୍ଠିତା ଛିନ୍ନା ଲତାରୂପା ।
ଶୟନ ଗୃହେ ପୁଣ୍ୟବତୀ
ଧ୍ୟାନେ ନିମଗ୍ନା ରହିଛନ୍ତି ।

ବୋଇଲା ଜଣେ ସହଚରୀ—
ଉଠନ୍ତୁ ରାଜରାଜେଶ୍ୱରୀ !
ବହୁତ ବରଷ ଉତ୍ତାରେ
ଅଇଲେ ପ୍ରଭୁ ଦେଖ ବାରେ ।
କରନ୍ତୁ ଚରଣ ଦର୍ଶନ,
ସାର୍ଥକ ଆପଣା ଜୀବନ ।
ଅରୂପ ବରଣ ପୂଜିତ,
ସ୍ୱର୍ଗୀୟ ମହିମା ମଣ୍ଡିତ ।
ବୋଇଲେ ଗୋପା, ନାହିଁ ସଖି,
ପ୍ରଭୁଙ୍କ ପଦେ ଚିତ୍ତ ରଖି
କରଛି ସୁଦୀର୍ଘ ତପସ୍ୟା,
ଲଭଛି ସକଳ ଭରସା,
ମୋହର ହୃଦୟ ଦେବତା
ଆସି ବୋଲନ୍ତୁ ମୋତେ କଥା ।
ବସି ମୁଁ ଏ ପୂଜା ଆସନେ
ଧ୍ୟାନ କରୁଛି ମନେ ମନେ ।
ନୁହେ ତ ସାତ ବର୍ଷ— ସହି !
ଶାତଶ ଯୁଗ ଗଲା ବହି ।
ସମାନେ ମୋତେ ଯାଏ ଜଣା,
କରୁଛି ପ୍ରଭୁଙ୍କୁ ଭାବନା ।
ବସି ମୁଁ ଏ ପୂଜା ଆସନେ
ଓଲଗି ହେବି ସେ ଚରଣେ ।
ଶିଷ୍ୟଯୁଗଳ ସହିତରେ
ସିଦ୍ଧାର୍ଥ ଗୋପାଙ୍କ ପାଶରେ
ମିଳିଲେ, ପୁଷ୍ୟା ତାରା ପାଶେ
ପୂର୍ଣ୍ଣିମା ଚନ୍ଦ୍ରମା ବିକାଶେ ।
ସେ ଦେବରୂପ ଗୋପା ଦେଖି
କ୍ଷଣେକ ରହିଲେ ନିରେଖି ।
ସଭକ୍ତି, ଧୀରେ, ଅତି ଧୀରେ,
ପ୍ରଭୁଙ୍କ ପଦେ ଲଗ୍ନଶିରେ
ବେନି ଚରଣେ ବେନି ହାତ
ସାଷ୍ଟାଙ୍ଗେ କଲେ ପ୍ରଣିପାତ ।
ଦେଖିଲେ ବୁଦ୍ଧ, ପୂର୍ବ ଗୋପା
ନୁହେ—ଏ ମୂର୍ତ୍ତି ଅନ୍ୟରୂପା ।

ଦେହରେ ଗୈରିକ ବସନ,
ମସ୍ତକେ ଜଟା ବିଭୂଷଣ,
ଯୋଗିଙ୍କ ବେଶେ ଛନ୍ତି ବସି,
ପ୍ରତ୍ୟୂଷେ ଯଥା ମ୍ଳାନ ଶଶୀ ।
ସୁନ୍ଦର ବିଳାସଭବନ
ସନ୍ନ୍ୟାସକ୍ଷେତ୍ର ତପୋବନ,
ନୀରବ ବୁଦ୍ଧଦେବ ସ୍ଥିର,
ନିଷ୍ପନ୍ଦ, ନିଶ୍ଚଳ ଶରୀର ।
ଶିଷ୍ୟଯୁଗଳ ନିଷ୍ପନ୍ଦରେ
ଉଭା କି ପ୍ରତିମା ରୂପରେ ।
ଶ୍ରୀପଦେ ଗୋପା ଛନ୍ତି ପଡ଼ି,
ପାଦପ ମୂଳେ ପୁଷ୍ପ ଝଡ଼ି ।
ଅଷ୍ଟମ ବର୍ଷୀୟ ରାହୁଲ
ସ୍ଥିର ଚକିତ ମନାକୁଳ ।
ଦେଖିଲେ ଗୋପା, ସେ ସନ୍ନ୍ୟାସୀ
ଯେମନ୍ତ ଅନ୍ତଃପୁରେ ଆସି
କଲେକି ହୃଦୟେ ପ୍ରବେଶ,
ନିଶାନ୍ଧକାରେ କୁମୁଦେଶ ।
ତିମିର ଆଚ୍ଛନ୍ନ ମନ୍ଦିରେ,
ତପନ ପ୍ରବେଶିଲେ ଧୀରେ ।
ଯେ ଚିତ୍ର ହୃଦୟେ ଅଙ୍କିତ,
ମୂର୍ତ୍ତି ସ୍ୱରୂପେ ଅଧିଷ୍ଠିତ ।
ହୃଦୟ-ପଦ୍ମାସନେ ମୂର୍ତ୍ତି
ସ୍ଥାପିତ, ମନେ କଲେ ସ୍ତୁତି;
ଭାବିଲେ ଗୋପା ପୁଣି ମନେ,
ଏ ମୂର୍ତ୍ତି ଛୁଇଁବି କେସନେ,
ଏ ମୂର୍ତ୍ତି ନର ନାରାୟଣ,
କେମନ୍ତେ ବନ୍ଦିବି ଚରଣ ?
ଏ ଦେବ ଜଗତର ପତି,
ତୁଚ୍ଛ ଅବଳା ହୀନମତି,
ମୋ ସ୍ୱାମୀ ବୋଲିବି କେସନେ ?
ଅବା ମୋ କର ପରଶନେ
ପ୍ରଭୁଙ୍କ ଚରଣ ଦୂଷିତ
ହେବଟି କି ? ଭାବିଣ ଶଙ୍କିତ ।

ରାହୁଲ ସୁନାର ପ୍ରତିମା,
ନ ବୁଝେ ପ୍ରଭୁଙ୍କ ମହିମା,
କମଳକୋରକ ବଦନେ
ଚାହିଁଛି ଚକିତ ନୟନେ ।
କ୍ଷୁଦ୍ର ଦେହଟି ମାତା ପାଶେ,
କାଞ୍ଚନେ ହୀରକ ବିକାଶେ ।
ପତିତା ବୃତମୂଳେ ଲତା,
ସଦ୍ୟ ପ୍ରସ୍ଫୁଟ ପୁଷ୍ପ ଯଥା ।
ଗୋପା ପୁତ୍ରକୁ ଧରି ଅଙ୍କେ
ଚୁମ୍ବନ କଲେକ ମସ୍ତକେ ।
ନିଜ ଗୈରିକ ବସ୍ତ୍ର ଚିରି
ପୁତ୍ର ମସ୍ତକେ ଧୀରି ଧୀରି
ମଣ୍ଡାଇ ଦେଲେ ଚୂଡ଼ା ଏକ,
ପିନ୍ଧାଇ ଦେଲେକ ଅର୍ଦ୍ଧେକ ।
ଦେଖିଲେ ସେ କ୍ଷୁଦ୍ର ସନ୍ନ୍ୟାସୀ
କୈଳାସୁ ଶରଜନ୍ମା ଆସି—
ଧରି ସେ ପୁତ୍ରକୁ ଗର୍ବେ
ଶୁଆଇ ଦେଲେ ପିତୃପଦେ ।
ବୋଇଲେ ପୁତ୍ରେ – ରେ ନନ୍ଦନ !
ମାଗି ନେ ତୋ ପୈତୃକ ଧନ ।
ପୁଚ୍ଛିଲା ଆକୁଳେ କୁମର,
ମାତା ଗୋ ! କିଏ ମୋ ପିଅର ?
ମୋର ଜନକ ଥିଲେ କାହିଁ ?
ତାଙ୍କୁ ତ କେବେ ଦେଖି ନାହିଁ !
ବୋଇଲେ ଗୋପା, ରେ କୁମର !
ଏହି ସନ୍ନ୍ୟାସୀ ତୋ ପିଅର ।
ଭକ୍ତିରେ ଚରଣ ବନ୍ଦନ
କର ଏହାଙ୍କୁ ଦରଶନ ।
ଅନନ୍ତ ଅମୃତ ସମ୍ପତ୍ତି
ତୋ ପିତା ପାଶେ ରଖିଛନ୍ତି ।
ଜଗତବାସୀ ଲୋକଗଣ
ଲଭୁ ଅଛନ୍ତି ସେହି ଧନ ।
ଅବଶ୍ୟ ଅମ୍ଭେ ବେନିଜନ
ଲଭିବୁଁ ସେ ଅକ୍ଷୟ ଧନ ।

କରୁଣାମୂର୍ତ୍ତି ଗୋପା ଦେବୀ,
ବସିଲେ ସ୍ୱାମିପଦ ସେବି ।
ଶିଶୁଟିଲ ବହିଛନ୍ତି କୋଳେ
ପିତୃବଦନ ଚାହିଁ ଡ଼ୋଳେ ।
ବୋଇଲା କରୁଣ କ୍ରନ୍ଦନ,
ଦେଉନ୍ତୁ ବାବା ପିତୃଧନ ।
ହସ୍ତ ବୁଲାଇ ପୁତ୍ର ଶିରେ
ଗୌତମ ବୋଇଲେ ସଧୀରେ,
ପାଳିବ ଧର୍ମ ରେ ନନ୍ଦନ !
ଦେବି ସପତଗୋଷ୍ଠ ଧନ ।
ସାରପୁତ୍ର ଯେ ଅଙ୍କମାନ
ଗୋପା ଚାହିଁଲେ ଭିକ୍ଷାପାତ୍ର
ଦିଅନ୍ତେ, ସଜଳ ନୟନେ
ଗ୍ରହଣ କଲେ ବେନିଜନେ ।
ପ୍ରଜାବତୀଙ୍କ ପୁତ୍ର ନନ୍ଦ,
କାଲି ତାହାର ମହାନନ୍ଦ,
ଦିବସ ବିବାହ ତାଙ୍କର,
ହୋଇଛି ସଜ ବେଶ ବର ।
ଦେଖି ସେ ଏ ସର୍ବ ସନ୍ଦେଶ,
ଫୋପାଡ଼ି ଦେଲା ବର ବେଶ ।
ଧାଇଁଣ ଉନ୍ମତ୍ତ ସମାନ
ଗୈରିକ ବସ୍ତ୍ର ପରିଧାନ,
ଭିକ୍ଷାପାତ୍ରେକ ଧରି କରେ
ବୋଇଲା ଗୋପାଙ୍କ ପାଶରେ—
ଗୋ ଦେବି ! ତୁମ୍ଭ ନନ୍ଦ ଭାଇ
କୃତାର୍ଥ ଭ୍ରାତୃଧନ ପାଇ
ହେଉ । ତାହାରି ଅଧିକାରୀ
କରନ୍ତୁ ଧର୍ମରେ ଭିକାରୀ ।
ଧୀରେ କୋମଳେ ବୁଦ୍ଧଦେବ
ବୋଇଲେ, ନନ୍ଦ ତାହି ହେବ ।
ମାତ୍ର ତୁ କର ଏହି ପଣ,
ପିତା ଜନନୀ ବେନିଜନ
ଯାବତ ଅଛନ୍ତି ଜୀବିତ,
ଥିବୁ ତୁ ପାଶେ ଉପସ୍ଥିତ ।

ବୃଦ୍ଧ ଜନକ ବୃଦ୍ଧା ମାତା,
ସେବକୁ ପାଶେ ଥାଇ ଭ୍ରାତା ।
ସେବିବା ଜନକ ଚରଣ
ପୁତ୍ରର ଧର୍ମ ସନାତନ ।
ନିର୍ବାଣ ଧର୍ମରେ ଦୀକ୍ଷିତ
ହେବାର ଏ ଅନ୍ତେ ଉଚିତ ।
ବୋଇଲେ ନନ୍ଦ, ଦୟାମୟ !
ନ ହୁଅ କଠିନହୃଦୟ !
ଜୀବରେ ଦୟା ତବ ଧର୍ମ,
ନନ୍ଦ ନିତାନ୍ତ କ୍ଷୁଦ୍ରତମ,
ଆଜହୁଁ ତୁମ୍ଭେହିଁ ନନ୍ଦର
ସର୍ବସ୍ୱ, ଜନନୀ, ପିଅର ।
ହେ ଦେବ ନର-ନାରାୟଣ !
ପଶିଲି ଶ୍ରୀପଦେ ଶରଣ ।
ବହୁତ ଛନ୍ତି ଗୃହେ ଲୋକେ,
ସେବିବେ ଜନମା ଜନକେ ।
ସର୍ବଦା ନନ୍ଦ ଥିବ ପାଶେ,
ପ୍ରଭୁ ଚରଣ ସେବା ଆଶେ ।
ଗୋପାକୁ ଗୃହୀଁ ଧର୍ମାଚାର୍ଯ୍ୟ
ବୋଇଲେ, ଦେବ ! ତୁମ୍ଭ କାର୍ଯ୍ୟ—
ଜନନୀ ଜନକ ପଦରେ
ଖଟି ରହିବ ନିରନ୍ତରେ ।
ତପସ୍ୟା ସ୍ଥାନ ତୁମ୍ଭ ଗୃହ,
ହେବେ ଶ୍ରାମଣ ଲୋକବ୍ୟୂହ ।
ଗୋପା ପ୍ରଭୁଙ୍କ ଆଦେଶରେ
ରହିଲେ ଆପଣା ଗୃହରେ ।
କେବଳ ବୋଇଲେ ରାହୁଲେ,
ପ୍ରଶାନ୍ତଚିତ୍ତେ ଅନାକୁଳେ —
ଯାଅ ରେ ବାପ ପ୍ରାଣାଧିକ !
କି ଆଉ ବୋଲିବି ଅଧିକ ।
ଥିବୁ ପିତାଙ୍କ ପଶ୍ଚାତରେ,
ପୁଣ୍ୟକୁ ସୁଖ ଅନୁସରେ,
ତାହାଙ୍କ ଆଦେଶ ମେଣ୍ଟନ
କରିବୁ ନାହିଁ କଦାଚନ ।

ତୋ ପିତା ଦେବ ନାରାୟଣ,
ଶିଶୁ ଦେବତା ତୁ ନନ୍ଦନ ।
ମୋ ନାରୀଜନମ ସଫଳ,
ଲଭିଲି ତପସ୍ୟାର ଫଳ ।
ଚଳିଲେ ବୁଦ୍ଧ ସ୍ଥାନାନ୍ତରେ,
ନନ୍ଦ ରାହୁଲ ପଶ୍ଚାତରେ—
ପୁଣ୍ୟ ପଶ୍ଚାତେ ଶାନ୍ତି, ସୁଖ,
ବ୍ୟାସ ପଶ୍ଚାତେ ବେଦ ଶୁକ ।
ନଗରବାସୀ ସେ ସମୟେ
ଉଦ୍ବେଳ ଉଚ୍ଛ୍ୱାସ ହୃଦୟେ
ବୁଦ୍ଧଙ୍କ ଚରଣ ପ୍ରାନ୍ତରେ
ନମିଲେ ଭକ୍ତି ବିନମ୍ରରେ ।
ଯୁବକ ବୃଦ୍ଧ ଶତ ଶତ
ନିର୍ବାଣ ଧର୍ମ ଅନୁଗତ,
ଚଳିଲେ [illegible] ହୃଦୟରେ,
ବେଳା ଲଙ୍ଘିତ ତରଙ୍ଗରେ ।
ଗୋପାଙ୍କ ଭବନ ସମସ୍ତ
ମହାତୀର୍ଥରେ ପରିଣତ ।
କପିଳବସ୍ତୁରେ ରୋଦନ
ଉଠିଲା ବାରିଦ ଗର୍ଜନ ।
ସକଳ ନେତ୍ରେ ବହେ ନୀର,
କେବଳ ଗୋପା ଛନ୍ତି ସ୍ଥିର ।
କପିଳବନେ ତଥାଗତ
ବିଶ୍ରାମେ ଥୋକେ କାଳ ଗତ,
ପିତାଙ୍କ ଚରଣ ଦର୍ଶନ
କରୁ ସେ ଥାନ୍ତି ଅନୁକ୍ଷଣ ।
ପ୍ରତ୍ୟକ୍ଷ ଦେବତା ପିଅର,
ଏହାହିଁ ପ୍ରତ୍ୟୟ ତାଙ୍କର ।
ଅଛି ଅସଂଖ୍ୟ ନର ନାରୀ,
ନିର୍ବାଣ ନବ ବ୍ରତଧାରୀ
ହେଲେ ସ୍ୱେ ଦେଶବାସୀ ଜନ,
ଆପଣେ ମଧ୍ୟ ଶୁଦ୍ଧୋଦନ ।
କୌଶମ୍ବୀ ଦେଶେ ଅତଃପରେ
ଚଳିଲେ ବୁଦ୍ଧ ସଶିଷ୍ୟରେ ।

ସେ ସ୍ଥାନେ କଲେକ ଶ୍ରବଣ
ଅନ୍ତିମ ଶଯ୍ୟା ଶୁଦ୍ଧୋଦନ
ଲଭିବା ! ଅଇଲେ ବାହୁଡ଼ି
ଶାକ୍ୟର ଶେଷ ରବି ବୁଡ଼ି
ଯିବା ସମୟେ ସେ ନୟନେ
ଦେଖିଲେ ପୁତ୍ର ନାରାୟଣେ ।
ଶାନ୍ତିପୁଲକପୂର୍ଣ୍ଣ ଦେହେ
ନୟନଁୁ ଆନନ୍ଦାଶ୍ରୁ ବହେ ।
ଅନନ୍ତ ନିର୍ବାଣ ମାର୍ଗରେ
ଚଳଲେ ନୃପ ସନ୍ଧାନରେ ।
ଦିଗା ଅନ୍ତ୍ୟେଷ୍ଟିକ୍ରିୟାମାନ
କଲେକ ବୁଦ୍ଧ ସମାଧାନ ।
ଶାକ୍ୟ ବଂଶର ନାରୀଗଣେ
ମହର୍ଷି ଗୌତମ ଚରଣେ
ବୋଇଲେ କାନ୍ଦି, ଦୟାମୟ !
ଦେଉନ୍ତୁ ଚରଣ ଆଶ୍ରୟ ।
ଅନାଥା ରମଣୀମଣ୍ଡଳେ
ସମ୍ପୂର୍ଣ୍ଣ ଶାକ୍ୟ ଗୃହସ୍ଥଳେ ।
କପିଳବସ୍ତୁ ଅନାଶ୍ରୟ
ହୋଇଛି ଲୋକଙ୍କ ଆଳୟ ।
କିଧବା ନାରୀ ଧର୍ମ, ମାନ
ରକ୍ଷା କେ କରେ ବର୍ତ୍ତମାନ ?
ଗୌତମ ଶୁଣି ଏ ପ୍ରସଙ୍ଗ
ସୃଜିଲେ ସନ୍ନ୍ୟାସିନୀସଂଘ ।
ଅପରେ ସନ୍ନ୍ୟାସିନୀ ପାତ୍ରୀ,
ଗୋପା ସେଥିରେ ଅଧିଷ୍ଠାତ୍ରୀ ।
ସନ୍ନ୍ୟାସୀ ସନ୍ନ୍ୟାସିନୀଗଣେ ।
ରଖି ବିହାର ମହାବନେ
ନିର୍ଜନେ କୌଶମ୍ବୀ ପର୍ବତ
ସମାଧିମଗ୍ନ ତଥାଗତ ।
କପିଳବସ୍ତୁ ସ୍ୱର୍ଗ ଅଂଶ,
ହେଲା ଶ୍ମଶାନ ଶାକ୍ୟବଂଶ ।



(୬)

## ସନ୍ନ୍ୟାସୀ



କଲହଂସ କେଦାର ।

ସଂସାର ସୁଖେ ନୁହେ ଯେ ଅଭିଳାଷୀ,
ସେ ବ୍ରହ୍ମ ଉପାସକ ସେହି ସନ୍ନ୍ୟାସୀ,
ଜଗତେ ତାର କିଛି ନାହିଁ କାମନା,
କେବଳ ପରବ୍ରହ୍ମେ ନିତ୍ୟ ଭାବନା ।

୨

ତାହାର କେହି ନାହିଁ ବିଶ୍ୱ ସଂସାରେ,
ସର୍ବ ସମ୍ପତ୍ତି ସୁଖ ତୁଚ୍ଛ ତାଠାରେ,
କ୍ଷୁଦ୍ରେ କ୍ଷୁଭିତ ନୁହେ ତାହାର ପ୍ରାଣ,
ବିଶ୍ୱ ବ୍ରହ୍ମାଣ୍ଡ କରେ ଆପଣା ଜ୍ଞାନ ।

୩

ନାହିଁ ବାସନା ବାସ ଦିବ୍ୟ ଭବନ,
ସୁଖରେ କରେ ପୃଥ୍ୱୀ ମଧ୍ୟେ ଭ୍ରମଣ,
ବିଶେଷ ନାହିଁ ତାର ବନ୍ଧୁ, ବାନ୍ଧବ,
ଜ୍ଞାତି, କୁଟୁମ୍ବ, ବନ୍ଧୁ ସର୍ବ ମାନବ ।

୪

ତାହାର ନାହିଁ ଧର୍ମ ଅଧର୍ମ ଜ୍ଞାନ,
ସମ୍ପଦ ବିପଦକୁ ମଣେ ସମାନ,
ତା ପ୍ରତି ଯାହା କିଛି ହୁଏ ଘଟଣା,
ପ୍ରଭୁଙ୍କ ଦତ୍ତ ବୋଲି କରେ କଳ୍ପଣା ।

୫

ନ ଲୋଡ଼େ ସେହି ମୃତ୍ୟୁ ଅବା ଜୀବନ,
କେବଳ ବିଭୁ ଆଜ୍ଞା କରେ ପାଳନ,
ଉଦର ଭରଣରେ ନାହିଁ ଭାବନା,
ପ୍ରଭୁଙ୍କ ଆଦେଶକୁ କରେ କାମନା ।

୬

ସେ ଜାଣେ ତା ଜନକ ଜଗତପତି,
ନିଯୃତ ରଖେ ତାଙ୍କ ଚରଣେ ମତି,
ଯା ଅନ୍ନଦାତା ବିଶ୍ୱ ବ୍ରହ୍ମାଣ୍ଡେଶ୍ୱର,
ଚିନ୍ତା କି ତାର ପୋଷିବାକୁ ଉଦର ।

୭

ବିଶ୍ୱାସ ବିଭୁ ବିଶ୍ୱ ବ୍ରହ୍ମାଣ୍ଡମୟ,
କିପାଁ କରିବ ତବେ କାହାକୁ ଭୟ ?
ବିଶେଷେ ବୁଝିଅଛି ଆପଣା ଜ୍ଞାନେ,
ତା ବିଭୁ ବର୍ତ୍ତମାନ ସକଳ ସ୍ଥାନେ ।

୮

ଜଗତେ ସର୍ବ ଦ୍ରବ୍ୟ ଭୁଞ୍ଜ ତାଠାରେ,
ସଁପିଛି ମନ ପ୍ରାଣ ପ୍ରଭୁସେବାରେ,
ହୃଦୟେ ବୁଝିଅଛି ତତ୍ତ୍ୱ ଯଥାର୍ଥ,
ବିଶ୍ୱ ବ୍ରହ୍ମାଣ୍ଡେ ସାର ବ୍ରହ୍ମ ପଦାର୍ଥ ।

୯

ସରିତେ ସଲିଲ ତ ଅଛି ସଞ୍ଚିତ,
କେ କରି ପାରେ ତାକୁ ତହୁଁ ବଞ୍ଚିତ ?
ଶୀତଳ ଅନିଲ ଯେ ତାହା ସକାଶେ,
ଦିଅନ୍ତି ଜ୍ୟୋତି ଚନ୍ଦ୍ର ସୂର୍ଯ୍ୟ ଆକାଶେ ।

୧୦

ଅନନ୍ତ କୋଟି ପ୍ରାଣୀ ଲଭନ୍ତି ଅନ୍ନ,
ରକ୍ଷା କି ନ ପାଇବ ତାହା ଜୀବନ ?
କରନ୍ତି ନାହିଁ ପଶୁ ପକ୍ଷିଏ କୃଷି,
କାହିଁକି ରହିଅଛି କେ ଉପବାସ ?

୧୧

ଶରୀର ରକ୍ଷାପାଇଁ ନାହିଁ ଯତନ,
ଯା ପାଏ ଆନନ୍ଦରେ କରେ ଭୋଜନ,
ଆପଣା ମନ ମଧ୍ୟେ କରିଛି ସ୍ଥିର,
ପ୍ରଭୁଙ୍କ ଦତ୍ତ ଅଟେ ଏହି ଶରୀର ।

୧୨

ନ ଜାଣେ କ୍ଷଣସ୍ଥାୟୀ ପ୍ରୀତି ମାଧୁରୀ,
ବିଶ୍ୱ ପ୍ରେମରେ ଅଛି ତା ପ୍ରାଣ ପୂରି ।
ବନ୍ଧୁବିଚ୍ଛେଦ କଷ୍ଟ ଯେ ତ ନ ଜାଣେ,
ମଣେ ହୃଦୟବନ୍ଧୁ ସେ ଭଗବାନେ ।



( ୩ )

## କବି ଏବଂ ଚିତ୍ରକର



ଚନ୍ଦ୍ରକେଳ

କବି ଚିତ୍ରକର ଦୁଇଟି ଭାଇ,
ନାନା ଚିତ୍ର ଆଣି ଦେବେ ଦେଖାଇ ।
କେ ବଡ଼ କେ ସାନ ନାହିଁଟି ଜଣା,
ମାତ୍ର ଦୁହିଙ୍କର ଅସ୍ତ୍ର କଳ୍ପନା ।

କେତେକ ଦୃଷ୍ଟାନ୍ତ ଦେଖି ଜଗତେ,
କବି ବଡ଼ ବୋଲି ହୁଏ ପରତେ ।
ଜଣକ ହାତରେ ରହିଛି ତୂଳି,
ଆନ ଜନ ହାତେ ଲେଖନୀ କାଳି ।

ଦେଖାଏ ଯେ ଜଣେ ବାହାର ଛବି,
ଅନ୍ୟ ରାଜ୍ୟ ଚିତ୍ର ଦେଖାଏ କବି ।
ଜଗତରେ ଯେବେ ନ ଥାନ୍ତେ କବି,
ପାଆନ୍ତେ କି ଲୋକ ଉଚ୍ଚ ପଦବୀ ?

ଅତି ନୀଚଜାତି ପଶୁର ବଂଶ,
ବର୍ତ୍ତମାନ ଯାର ଅଟେ ସର୍ବସ୍ୱ,
ମାନବେ ଜାଣନ୍ତି ଭୂତ ଘଟନା,
ଏହା ତ କେବଳ କବି କଳ୍ପନା ।

କେତେ ମହାବୀର କେତେ ଧାର୍ମିକ,
କେତେ ମହାରାଜ ଖ୍ୟାତ ବଣିକ,
ଭାସି ଯାଇଛନ୍ତି କାଳସ୍ରୋତରେ,
ମାତ୍ର ଦେଖୁଅଛୁଁ କବି ଚିତ୍ରରେ ।

ସାବିତ୍ରୀ ଆଦର୍ଶ ସତୀ ଚରିତ,
ଏହା ତ କେବଳ କବି ସଙ୍ଗୀତ ।
ଅପୂର୍ବ ଶ୍ରୀରାମ- ସୀତା କାହାଣୀ,
ବାଲ୍ମୀକି ପ୍ରସାଦେ ପାରୁଛୁଁ ଜାଣି ।
କୁରୁ ପାଣ୍ଡବଙ୍କ ଯୁଦ୍ଧ ଘଟଣା,
ଜଗତେ ଯା ସଙ୍ଗେ ନାହିଁ ତୁଳନା,

| | |
|---|---|
| ବହୁ କାଳ ଗତ | ହୋଇଛନ୍ତି ଯାଇ, |
| ଭୂତ ଅନ୍ଧକାର | ଦେଲା ଘୋଡ଼ାଇ, |
| କୃଷ୍ଣ ଦ୍ୱୈପାୟନ | ଲେଖଣୀ ଧରି |
| ଦେଖାଉ ଅଛନ୍ତ | ପ୍ରତ୍ୟକ୍ଷ ପରି । |
| | |
| ପ୍ରକୃତିର କେତେ | ସୁନ୍ଦର ଦ୍ରବ୍ୟ, |
| ଜଗତ ଆତ୍ମୀୟ | କେତେ ମାନବ, |
| ଯାଇଛନ୍ତ ମିଶି | ପଞ୍ଚଭୂତରେ, |
| ଦେଖୁଅଛୁଁ ଚତ୍ର— | କରଙ୍କ ବରେ । |
| | |
| କବ ଚତ୍ରକର | ଏ ବେନି ଜନ |
| ଦଅନ୍ତ ଜଗତ | ହିତେ ଜୀବନ । |
| କବ ଚତ୍ରକର | ମାନବେ ତୋଷି |
| ପଦବୀ ଲଭନ୍ତ | ଜଗତେ ଋଷି । |



( ୪ )

## ରାଜା ଓ ଫକୀର



ରାଗ – ମଙ୍ଗଳ

ଥିଲା ଗୋଟେ ବଡ଼ ରାଜ୍ୟ ତା ନାମ ଶରୀର,
ସେ ଦେଶର ରାଜା ନାମ ଆତ୍ମାରାମ ବୀର ।

ରାଜାଙ୍କର ଥିଲା ମନ୍ତ୍ରୀ ତାହା ନାମ ଜ୍ଞାନ,
ବିବେକ ନାମରେ ଜଣେ ଥିଲା ଦରୁଆନ ।

ଧର୍ମ ଧନ ରାଜା ରଖିଥିଲେ ଗନ୍ତାଘରେ,
ବିବେକ ପ୍ରହରୀ ଜଗିଥାଏ ନିରନ୍ତରେ ।

ଧୈର୍ଯ୍ୟ ନାମେ ଥିଲା ରାଜାଙ୍କର ପାଖଲୋକ,
ତାହାର ଖଟଣି ଥିଲା ଶରୀରରକ୍ଷକ ।

ରାଜାଙ୍କ ଦୁଇଟା ରାଣୀ ସୁମତି କୁମତି,
କରନ୍ତି ସୌତୁଣୀ ଦୁହେଁ କଳି ନିତି ନିତି ।

ରାଜା ବିଚରା ତ ନିତି ନିତି ଶୁଣି କଳି
ସମ୍ଭାଳି ନ ପାରି ଦିନେ ଦିନେ ହୁଏ ଚଳି ।

ସୁମତି ରାଣୀକୁ ଦିନେ ଦିନେ ଭଲ ପାଏ,
କୁମତି ନଅରେ ଦିନେ ଦିନେ ଶୋଇଥାଏ ।

ସୁମତି ମନ୍ତ୍ରଣା ଧନ ରଖ ଗନ୍ତାଘରେ,
କୁମତିର ମତ ସୁଖେ ରହ ଆମୋଦରେ ।

ସୁମତି ବୋଲଇ କର ରାଜ୍ୟେ ସୁବିଚାର,
କୁମତି ବାସନା ସୁଖେ ଆହାର ବିହାର ।

କୁମତି ରାଣୀଟା ଦିନେ ନିର୍ଜନରେ ପାଇ
ରାଜାକୁ ମଣାଇ ନେଲା ଘରେ ପୁସୁଲାଇ ।

ଛାଡ଼ିଦେଲା ନାହିଁ ସେହି ସୁମତି ପାଶକୁ,
ଆପଣା ଆୟତ୍ତେ ରଖିଥାଏ ରାଜନକୁ ।

ରାଜା ଶୁଣୁଥାଏ ସେହି କୁମତି ମନ୍ତ୍ରଣା,
ରାଜ୍ୟ କଥା କିଛି କଲେ ନାହିଁ ବୁଝାମଣା ।

ଲୁମଡ଼ି ରାଣୀଟା ଥିଲା ଭାରି କଳହୁଡ଼ୀ,
କଳ କର ଦେଲା ମନ୍ତ୍ରୀ କଣ୍ଟୁଆଲେ ଛଡ଼ି ।

କେତେ ଦିନୁ ଲୁଚି ରହିଥିଲେ ଥୋକେ ଚୋର
ଲୁଟିକରି ନେବାପାଇଁ ରାଜା ଗନ୍ତାଘର ।

ମନ୍ତ୍ରୀ କଣ୍ଟୁଆଳ ଦୁହେଁ ନାହାନ୍ତି ରାଜ୍ୟରେ,
ବେଳ ଉଣ୍ଡି ବାହାରିଲେ ସେହି ସର୍ବ ଚୋରେ ।

କାମ କ୍ରୋଧ ଲୋଭ ଆଦି ଛଅଟା ତସ୍କର
ବଳେ ପଡ଼ି ଲୁଟି ନେଲେ ରାଜା ଗନ୍ତାଘର ।

ଆହା ଆହା ଗୃଳଗଲା ରାଜତ୍ୱ ଶରୀର,
ଗନ୍ତାଘରେ ଧନ ନାହିଁ ରାଜା ତ ଫକୀର ।



( ୪ )

## ଧ୍ରୁବ ବିଶ୍ୱାସ



କି ନିର୍ବୋଧ ଅର୍ବାଚୀନ !        ଭଲ ବସି ପ୍ରିୟଜନ—
ଯାହାଙ୍କୁ ଦେଇଛୁ କାଳ ଶ୍ମଶାନ ଚିତାରେ,
ଝୁରି ଝୁରି କାନ୍ଦୁ, କାଳ କପାଁ ତା ଚିନ୍ତାରେ !

ଦେଖୁଛୁଁ ତ ପ୍ରତ୍ୟକ୍ଷରେ,        ଲୋକ ପ୍ରିୟଜନ ମରେ,
କାହିଁ କେବେ ଗତ ଲୋକ ଆସେ କି ବାହୁଡ଼ି ?
ଭୁଲି କାହିଁ କରୁ ଚିନ୍ତା ଦୃଷ୍ଟିମାର୍ଗ ଛୁଡ଼ି ।

ପ୍ରଥମରେ ବନ୍ଧୁଗଣେ        ଆସି ପାଶେ ଜଣେ ଜଣେ
ବୋଲୁଥିଲେ ଏ ଭୂମିର ବେଭାର କପଟ,
ନ ପାସୋର କଷ୍ଟ ଭୋଗ ତାହା ନାମ ସ୍ମର ।

ପାଇଛି ମୁଁ ନିଦର୍ଶନ,        ଭୁଲିବାକୁ କଲେ ମନ,
ଘାଣ୍ଟି ହୁଏ ମନ ପ୍ରାଣ ଆତଙ୍କେ ଆକୁଳେ,
ମନଟା ଯେମନ୍ତ ବୋଲ ମାନେ ନାହିଁ ମୂଳେ ।

ଥିଲା ଯେ ନୟନତାରା        ବ୍ୟାପ୍ତ ମନପ୍ରାଣ ସାରା,
ଚିତ୍ରିତ ରହିଛି ଛାୟା ହୃଦୟପଟରେ,
ପାରିବି କି ରହି ଚିନ୍ତା ବିନା ନିଶ୍ଚିନ୍ତରେ ।

ବ୍ୟର୍ଥ କି ଭାବନା ମୋର ?        ହୋଇ କି ଯାଇଛି ପର ?
ନାହିଁ—ପ୍ରାଣେ ପ୍ରାଣେ ଯାହା ଅଚ୍ଛେଦ୍ୟ ବନ୍ଧନ,
କେ କରିବ ନିବାରଣ ପୁନଶ୍ଚ ମିଳନ ।

ଚିତାଗ୍ନିରେ କାୟା ପର        ସବୁ ନ ଯାଇଛି ସର,
କେ ବୋଲେ ନିର୍ବୋଧ ପରକାଳେ ସେ ତ ନାହିଁ ?
ମିଳନର ପାଇଁ ବୃଥା ଅଛୁ ବାଟ ଚାହିଁ ।

ବିଶ୍ୱ ଅଣୁ ପରମାଣୁ        ଅବିନାଶ୍ୟ ଧ୍ରୁବ ଜାଣୁ,
କାଳଚକ୍ରେ ହୋଇଥାନ୍ତି ରୂପାନ୍ତରଧାରୀ,
ପରିବର୍ତ୍ତି ମାତ୍ର, ନାହିଁ ବିନାଶ କାହାରି ।

ଜଡ଼ ଭିନ୍ନ, ପ୍ରାଣ ଭିନ୍ନ,        ଦେଖୁଛ ପ୍ରତ୍ୟକ୍ଷ ଚିହ୍ନ,
ପର୍ଯ୍ୟାୟରେ ଜଗତରେ ଘଟେ ରୂପାନ୍ତର,
ପରିଣାମେ ସ୍ୱ ସ୍ୱ ଧର୍ମେ ମେଳ ପରସ୍ପର ।

ସ୍ନେହ ପ୍ରୀତି ଭକ୍ତି ଜ୍ଞାନ ଜୀବନର ଧର୍ମ ଜାଣ,
ନ ବୁଝି ପାରୁଛ କିଛି ଏଥିର ପ୍ରମାଣ,
ଜଡ଼ ଚେତନର ଭାବ ଭିନ୍ନ ଭିନ୍ନ ଜାଣ ।

ଅମୃତ ସନ୍ତାନ ସେ ତ, ସର୍ବଗୁଣେ ସମବେତ,
ହେବାକୁ କି ପାରେ କେବେ ତାହାର ଅଭାବ,
ବିଶ୍ୱଜନନୀର କ୍ରୋଡ଼େ ଯେ ଦ୍ରବ୍ୟର ଠାବ ?

ବର୍ବର ବଣୁଆ ଜାତି ମହାଜ୍ଞାନିଗଣ ଜ୍ଞାତି
ଦେଖନ୍ତି ସମସ୍ତେ ପରକାଳେ ପରିଜନେ,
ସ୍ୱଭାବେ ହୃଦୟେ ଭାବ ଉଦେ କି କାରଣେ ?

ନାହିଁ ପରି ବିଦ୍ୟମାନ, ଇହ ମାତ୍ର ସର୍ବ ଜାଣ,
ଜଗତର ସର୍ବ ଧର୍ମଶାସ୍ତ୍ର ହିଅ ଯୋଡି,
କିବା ପ୍ରୟୋଜନ ସେହି ଗ୍ରନ୍ଥମାନ ପଢ଼ି ।

କ୍ଷୁଧା ତୃଷ୍ଣା ମନ ଭାବ ସ୍ୱଭାବରେ ଆବିର୍ଭାବ,
ସେହିପରି ପରକାଳ ଚିନ୍ତା ହୃଦେ ଜାଣ,
ଏହାହିଁ ଯେ ପରକାଳ ଅକାଟ୍ୟ ପ୍ରମାଣ ।

ଯାବତ ଜଗତ ନିତ୍ୟ ଗୁଣଧାରୀ ବିପରୀତ,
ବିଶ୍ୱ ପରିବର୍ତ୍ତିଶୀଳ ବିଧିର ନିୟମ,
ତଥା ଜାଣ ମାନବର ମରଣ ଜନମ ।

ଯାଇଛି ସେ ଚଳି ଆଗେ ନବଧର୍ମ ଅନୁରାଗେ,
ନିଶ୍ଚୟ ମିଳିବି ଯାଇ ମୁହିଁ ତାହା ପାଶେ,
ରହିଛି ଧଇର୍ଯ୍ୟ ଧରି ଏ ଦୃଢ଼ବିଶ୍ୱାସେ ।



(୨)

## ଉତ୍କଳ କୃଷକ



ଦେଖିଛ କି ଭାଇ ! କେବେ ଉତ୍କଳ କୃଷକ ?
କଙ୍ଗାଳ କଙ୍କାଳସାର ଦେଖ ଏହି ଲୋକ ।

ମଳିନ ବସନ ଖଣ୍ଡେ ଆଣ୍ଠୁ ଲୁଚୁ ନାହିଁ,
ଧନ କାହିଁ ଲୁଗା ଖଣ୍ଡେ କିଣେ ପିଲାପାଇଁ ?

ଧୂଳିରେ ଧୂସର ପିଲାଗୁଡ଼ିକ ଉଲଗ୍ନ,
କି କଥା ବୋଲିବି ଅବା ଘରଣୀ ପ୍ରସଙ୍ଗ !

ଅଣ୍ଟାରେ ଦେଇଛି ପିନ୍ଧା ଲୁଗା ଖଣ୍ଡ ଅଣ୍ଟି,
କାଦୁଅ ପାଣିରେ ଦିନଯାକ ହୁଏ ଘାଣ୍ଟି ।

ଅଣ୍ଟୋଇ ପଡ଼ୁଛି କାଦୁଅରେ ବଳ ବାଛି,
ପିଠିରୁ ରକତ ଶୋଷି ଖାନ୍ତି ମଶା ମାଛି ।

ଜ୍ୟେଷ୍ଠମାସ ମୁଣ୍ଡଫଟା ଖରା ତାହାପାଇଁ,
ମାତ୍ର ବସିଥାଏ ଛିଷ ଚଳକୁ ଅନାଇ ।

ବଳଦ ହଳକ ସାହା, କ୍ଷାଡ଼, ବନ୍ଧୁ, ଆଶା,
ସବୁବେଳେ ସେମାନଙ୍କ ସଙ୍ଗେ କଥା ଭାଷା ।

ବାରମ୍ବାର ଅକାଶକୁ ଚାହୁଁଥାଏ ଚଷା,
କେବଳ ତାହାର ଇନ୍ଦ୍ରଦେବତା ଭରସା ।

ଦେବତା କୃପାରେ ଯେବେ କାଠେ ଗୃହଛେଲା,
କି ହେବ ସେଥିରେ ପରପାଇଁ ଘର ମେଲା ।

ଖଳାମୁଣ୍ଡେ ଆସି ଜଗି ବସିଥାଏ ସାହୁ,
ଘେନିଯାଏ ଅଧେ, ମୂଳ କଳନ୍ତର ଆଉ ।

ପାଞ୍ଚପଣୁ ଅଧିକରେ ଯାଏ ରାଜକରେ,
ବଳକା ମୁଠାକ ମାତ୍ର ପଶେ ଆସି ଘରେ ।

ଲୁଗାପଟା ତେଲ ଲୁଣ ଗଲା ଦୁଇପଣି,
ଫଗୁଣ ପାହାନ୍ତୁ ପଡ଼ିଗଲା ଠଣାଠଣି ।

ଆହା ରେ ! କି ପାପ କରିଥିଲୁ ଜଣା ନାହିଁ,
ଚଷାକୁଳେ ଜନ୍ମ ଦେଲା ବିଧାତା କପାଇଁ ?

ଆନନ୍ଦ ଉତ୍ସବ ତୋତେ କିଛୁ ନାହିଁ ଜଣା,
ସମାଜର ନିମ୍ନଶ୍ରେଣୀ ମଧ୍ୟେ ତୋ ଗଣନା ।
ଜଗତକୁ ଦେଉ ଅନ୍ନ ଆପେ ଉପବାସୀ,
ସୁଖ ଦୁଃଖ ବେଳେ କେହି ନ ପଚ୍ଛରେ ଆସି ।
ରାଜା ବୋଲ ମନ୍ତ୍ରୀ ବୋଲ ଅମଲା କରଣ,
ଯାହା କୃପାବଳେ ସମସ୍ତଙ୍କ ବଡ଼ପଣ !
ହାକିମ, ଓକିଲ, ମହାଜନ, ଗ୍ରନ୍ଥକାର,
ସମସ୍ତଙ୍କୁ ଦିଏ ଏହି କୃଷକ ଆହାର !
ଯାହା କୃପାବଳେ କର ଜୀବନ ଧାରଣ,
ଯାହା କୃପାବଳେ ସମସ୍ତଙ୍କ ବଡ଼ପଣ,
ଏକମାତ୍ର ପ୍ରାଣରକ୍ଷାକାରୀ ଯେ ଲୋକର,
ଧିକ ! ଧିକ ! କର ତାକୁ ଏଡ଼େ ହତାଦର !
ସମସ୍ତଙ୍କୁ ବାଣ୍ଟେ ଅନ୍ନ, ସମସ୍ତଙ୍କୁ ଭୟ !
ଆହା ରେ ସମାଜ ! କେଡ଼େ କଠିନ ନିର୍ଦ୍ଦୟ !
ଆଜିକାଲି ବାବୁମାନେ ଲାଗି ପଡ଼ିଛନ୍ତି,
ଦଶ ଦିନେ କରିଦେବେ ଦେଶର ଉନ୍ନତି !
କେହି ଭାଳେ ଶିଳ୍ପକଥା, କେହି ବା ସ୍ୱଦେଶୀ,
ମାତୃଭାଷା ଉନ୍ନତିଟା କେହି ଭାଳେ ବେଶି,
କୃଷକ ଆଡ଼କୁ କେହି ନ ଅନାଏ ବାରେ,
ଭାତ କଣ ମିଳୁ ନାହିଁ ? ଚିନ୍ତା ସେ କଥାରେ ?
କୃଷକ ତ କରୁ ନାହିଁ ବକ୍ତୃତା, ରଚନା ?
କେ କରିବ ତାହା କଥା କପାଇଁ ଭାବନା ?
ବାହାରେ ମଳିନ ବେଶ ଅନ୍ତରେ ସରଳ,
ମୁଣ୍ଡଝାଳପୋଛା ଶସ୍ୟମୁଠାକ ସମ୍ବଳ ।
ଦୁଃଖେ ରାମ ! ସୁଖେ ରାମ ! ଯାଉଥିଲା ଚଳି,
ଏଣିକି ଚଷାର ଦଶା ପଡ଼ିଲାଣି ବଳି !
ଜମି ପାଞ୍ଚମାଣ ଖାଉଥିଲା ଚଷି ମସି,
ଟିଲାପିଲା ମୁହଁ ଦେଖୁଥିଲା ଘରେ ବସି ।
ଖଜଣା ଗଣ୍ଡାକ ଜମିଦାରକୁ ବୁଝାଇ
ଖାଉଥିଲା କଏ ଜମି ନିଅନ୍ତା ଛଡ଼ାଇ ?
ପାଞ୍ଚ ପୁରୁଷର ଜମିଖଣ୍ଡ ଥିଲା ପୁଞ୍ଜି,
ତେଭିକ ବଳରେ ପଡ଼ିଥିଲା ମୁଣ୍ଡ ଗୁଞ୍ଜି !
ସରକାର ବାହାଦୁର କଲେ ଦୟା ଭାରି,
ପ୍ରଜାସ୍ୱତ୍ୱ ଆଇନଟା କରିଦେଲେ ଜାରି ।

କୃଷକର ବଢ଼ିଗଲା ଗୋଟାଏ ଜୀବିକା,
ରେଜେଷ୍ଟ୍ରୀ ଅଫିସରେ ଜମି କଣା ବିକା ।
ସବୁଦିନେ ଠାଣ ଠୁଣ ଘରେ ନାହିଁ ଭାତ,
ଜମିଖଣ୍ଡ ବିକିବାକୁ ବଢ଼ାଇଲା ହାତ ।
ଗଲା ଅଙ୍କ ପୁଅବାହା ବିକିଥିଲା ମାଣେ,
ବାପଶ୍ରାଦ୍ଧି ବେଳେ କେତେ ବିକିଲା କେ ଜାଣେ ?
ବାକି ଖଣ୍ଡିକରେ ହେଲା ଭାର ଠାଣ ଠୁଣ,
ମାଘ ଫଗୁଣରେ ଘରେ ନାହିଁ ଲେମ୍ବୁଲୁଣ !
ଭାଗରେ ଲଗାଇଦେଲା ଜମା ଦେଢ଼ମାଣ,
ହିଡ଼ା ହଳକର ହାଲ ଏଥୁଁ ସବୁ ଜାଣ !
ବାହାରିଲା ଘର ଛାଡ଼ି ଲାଗିବାକୁ ମୂଲ,
ଜୟ ! ଜୟ ! ପ୍ରଜାସ୍ୱତ୍ୱ ହରି ହରି ବୋଲ !



( ୭ )

## ମିଷ୍ଟ କଥା



ଯେତେ ସୁଖକର ଦ୍ରବ୍ୟ ଅଛି ଜଗତରେ,
କେହି ନୁହେ ଶ୍ରେଷ୍ଠ ମିଷ୍ଟ କଥା ସମାନରେ ।
ମୋ ହୃଦୟ ନିରନ୍ତର ସୁଖଶାନ୍ତିଶୂନ୍ୟ,
ଜ୍ଞାନଗାରିମା ବା ଅର୍ଥେ ହେବ ନାହିଁ ପୂର୍ଣ୍ଣ ।
ଚନ୍ଦ୍ରମା-କିରଣ ଅବା କୁସୁମ-ସୌରଭ,
ଲୋକରେ ସୁଖ୍ୟାତି, ପଦମର୍ଯ୍ୟାଦା ଗୌରବ ।
ଏଥିରେ ତ ସୁଖ ଶାନ୍ତି ନ ଲଭେ ଜୀବନ,
କେବଳ ମୁଁ ଲୋଡେଁ ମିଷ୍ଟ ସରଳ ବଚନ ।
ମିଷ୍ଟ କଥା ନୁହେ ପରା ପାର୍ଥିବ ପଦାର୍ଥ,
ଦେବତାର ଉପଭୋଗ୍ୟ ଅମିୟ ଯଥାର୍ଥ ।
ଶୁଣୁଛି ଲୋକଙ୍କ ମୁଖୁଁ କେତେ ମିଷ୍ଟ କଥା,
ନୁହେ ତ ସରଳ—ପ୍ରବଞ୍ଚନା କପଟତା ।
ସେଥିରେ ତ ହୁଏ ନାହିଁ ଜୀବନ ଶୀତଳ,
ପ୍ରାଣହନ୍ତାରକ ବ୍ୟାଧସଙ୍ଗୀତ କେବଳ ।
ଥିଲା ଯେବେ ମୋର ପଦମର୍ଯ୍ୟାଦା ସମ୍ପତ୍ତି,
ଆସି ପାଶେ ଲୋକେ ମିଷ୍ଟ କଥା କହୁଛନ୍ତି ।
ସେହି ମିଷ୍ଟ କଥା ଶୁଣି ଯାଉଥିଲି ଭୁଲି,
ନ ବୁଝିଲି ଏହାଁ ସ୍ୱାର୍ଥସାଧନର ବୋଲି !
ମୁଁ ତ ଏବେ ସେହି ମିଷ୍ଟ କଥାର କଙ୍ଗାଲୀ,
ଥାଉ ମିଷ୍ଟ—ଲୋକେ ବୃଥା ଦେଉଛନ୍ତି ଗାଳି ।
ସନ୍ତପ୍ତ, ଉନ୍ମତ୍ତ, ଦଗ୍ଧ ହୃଦୟ ଉନ୍ମନା,
କପଟ କଥାରେ ଲଭ ପାରେ କି ସାନ୍ତ୍ୱନା ?
ହତାଶ ଉଦାସ ଦୁଃଖ ଯନ୍ତ୍ରଣା କାଳରେ
ମିଷ୍ଟ ବାକ୍ୟେ ତୁଷ୍ଟ କେହି ନ କଲା ତ ଥରେ ।
ବନ୍ଧୁରୂପେ, ଜ୍ଞାନରୂପେ ଆସି କେତେ ଜଣ
ସଜାଇ ରଞ୍ଜାଇ କେତେ ବୋଲନ୍ତି ବଚନ !
ସେଥିରେ କି ମାନେ ମନ ? ବରଞ୍ଚ ଯନ୍ତ୍ରଣା
ବଢ଼ି, ମଣେ ଏ ତ କପଟତା ପ୍ରତାରଣା ।

କୋକିଳ କାକଳୀ କମ୍ବା ସୁକଣ୍ଠ ସଙ୍ଗୀତ
ଶୁଣି ତ ଶୀତଳ ହେଲା ନାହିଁ ଦଗ୍ଧଚିତ୍ତ ?
ପ୍ରଜ୍ୱଳିତ ନହିଁ ତ ହୃଦ ମଧ୍ୟେ ଦୁଃଖରାଶି
ଶୁଣି ସେ ସଙ୍ଗୀତ ତାନ ଉଠେ ଭାସି ଭାସି ।
ଯିବ କାହା ପାଶେ ଶୁଣିବାକୁ ମିଷ୍ଟ କଥା ?
ଜଗତ ଯେ ପୂର୍ଣ୍ଣ ସ୍ୱାର୍ଥପରତା ଶଠତା !
ଯାହାପାଇଁ ଥିଲି ପ୍ରାଣ ଦେବାକୁ ପ୍ରସ୍ତୁତ,
ତାହାଙ୍କ ବ୍ୟଭାର ଦେଖେଁ ଆଶ୍ଚର୍ଯ୍ୟ ଅଦ୍ଭୁତ !
ହୃଦୟ ନିଭୃତ ସ୍ଥଳେ ଯାକୁ ରତ୍ନଧନ
ସଞ୍ଚି ରଖିଥିଲି କରି ଜୀବର ଜୀବନ;
ସର୍ବସ୍ୱ ଦେଇଛି ତାଳ ଯାହା ମଙ୍ଗଳରେ,
ଡ଼ାକୁଛି ପ୍ରଭୁଙ୍କୁ କେତେ ବସି ନିର୍ଜନରେ;
ମୁଖ ଅର୍ଦ୍ଧ ଗ୍ରାସ କାଢ଼ି ଦେଇଛି ଖୁଆଇ,
ଆପଣା ପିନ୍ଧିଲା ବାସ ଦେଇଛି ପିନ୍ଧାଇ;
ନିମେଷ ବିଚ୍ଛେଦ ହେଲେ ଲଭେଁ ମୁଁ ମରଣ,
ସ୍ୱର୍ଗ ଅନୁଭବେଁ ହେଲେ ପୁନଶ୍ଚ ମିଳନ;
ଯାହାପାଇଁ କରିଛି ମୁଁ ଅସାଧ୍ୟସାଧନା,
ହବା ନାହିଁ କରେଁ ଯାହା ଉନ୍ନତିକାମନା;
ଧିକ ! ଧିକ ! ସେହି ମୋତେ କହେ କଟୁ କଥା,
ମୋ ଜୀବନେ ନାହିଁ ତାର ମାୟା ବା ମମତା !
ବିଧାତା ଗଢ଼ିଲେ ରକ୍ତ ମାଂସରେ ହୃଦୟ,
ପାଷାଣରୁ ବଳି ଦେଖେଁ କଠିନ ନିଶ୍ଚୟ !
ଛନ୍ତି ଲୋକ କେତେ ପଶୁ ପିଶାଚ ସମାନ,
ସ୍ୱାର୍ଥରେ ଦିଅନ୍ତି ପରସୁଖ ବଳିଦାନ ।
ତେବେ କି ଜଗତ ସ୍ୱାର୍ଥପରତାରେ ପୂର୍ଣ୍ଣ ?
ନାହିଁ କି ସହାନୁଭୂତି ? ଦେବଭାବଶୂନ୍ୟ ?
ପିଶାଚରାକ୍ଷସଧର୍ମୀ ହେଲେ ସର୍ବ ନର,
ହୁଅନ୍ତା ଯେ ଜଗତଟା ନରକ ଆକର !
ନାହିଁ ନାହିଁ, ଭ୍ରାନ୍ତ ମନ ! ଈଶ୍ୱରରାଜ୍ୟରେ
ଅଛନ୍ତି ଦେବତା ନରନାରୀସ୍ୱରୂପରେ ।
ନ ଥିଲେ ସ୍ୱର୍ଗୀୟ ଭାବ — ମାନବସମାଜ
ଲଣ୍ଡଭଣ୍ଡ ନଷ୍ଟ ହୋଇ ଯାଇଥାନ୍ତା ଆଜ;
ଛିନ୍ନ ହୋଇଯାନ୍ତା ଲୋକସମାଜ-ବନ୍ଧନୀ,
ଅଶାନ୍ତି ଦୁର୍ଦ୍ଦଶା ପୂର୍ଣ୍ଣ ହୁଅନ୍ତା ଅବନୀ ।

ପ୍ରତ୍ୟକ୍ଷ ଦେବତାରୂପା ଅଟନ୍ତି ଜନନୀ,
କେବଳ ତାହାଙ୍କ ମିଷ୍ଟବାକ୍ୟ ସୁଧା ମଣି ।
ତାଙ୍କ ମିଷ୍ଟବାକ୍ୟ ସଙ୍ଗେ ଦେବାକୁ ତୁଳନା
ଜଗତେ ପଦାର୍ଥ ନାହିଁ କରେଁ ବିବେଚନା ।
କେ ଅଛି ଜଗତେ ଆଉ ଜନନୀ ସମାନେ
ନିସ୍ୱାର୍ଥେ ପ୍ରସୁତ ପୁତ୍ରପାଇଁ ପ୍ରାଣଦାନେ ?
ଆହୁରି ଅଛନ୍ତି ମଧ୍ୟ ଦେବୀ ଜଗତରେ,
କଦାଚିତ ବିରାଜିତା ଭାଗ୍ୟବନ୍ତ ଘରେ ।
ନ ଥିଲେ ତପସ୍ୟା ଘୋର, ସେ ଦେବୀ ଦର୍ଶନ
ପାଇବାର ଅସମ୍ଭବ ମାନବ ଜୀବନ ।
ବିପଦ ଯନ୍ତ୍ରଣା ବ୍ୟାଧି ସନ୍ତାପ କାଳରେ
ଚକିତେ ଆତଙ୍କେ ଉଭା ଥାଏ ଯେ ପାଶରେ,
ସେ ପରଶମଣି ଗୁଣ ଜାଣେ ଯେ ମାନବ,
ସ୍ୱର୍ଗୀୟ ପୀୟୂଷ କରିଅଛି ଅନୁଭବ ।



(୮)

## ମୁଁ ହାଟବାହୁଡ଼ା !



ରାଗ—ଚକ୍ରକେଳି

ଦେଖିଲି ସଂସାରେ ବସିଛି ହାଟ,
ଲୋକଗହଳରେ ନ ମିଳେ ବାଟ ।
ଦୋକାନ ପସରା ଧାଡ଼ିକି ଧାଡ଼ି
ବାଟ ଦୁଇ ପାଶ ବସିଛି ମାଡ଼ି ।
ଭୁଲାଇବାପାଇଁ ଗରାକ ମନ
ହାଟୁଆଙ୍କ ଦେଖ କେଡ଼େ ଯତନ ।
ହାଟୁଆ ବାଟୁଆ ଅଛନ୍ତି ଧାଇଁ
ହାଟେ କିଣା ବିକା କରିବାପାଇଁ ।
ହାଟ କରିବାକୁ ବଳିଲା ମନ,
ମାତ୍ରକ ନାହିଁ ତ ହାତରେ ଧନ ।
ବାହାରିଲି ହାଟ ଦେଖିବାପାଇଁ,
ଦୋକାନମାନଙ୍କୁ ଦେଖିଲି ଚାହିଁ ।
ଘାଟି କରୁଛନ୍ତି ଦୋକାନମାନେ,
ଆସ ଗରାକଏ ମୋହ ଦୋକାନେ ।
ଅଳପ ଲାଭରେ ଛାଡ଼ୁଛି ମାଲ,
ଭଣ୍ଡାଭଣ୍ଡି ନାହିଁ ଚିଜ ଅସଲ ।
ବୁଲି ବୁଲି ହାଟେ ମୁଁ କ୍ରମେ କ୍ରମେ
ଗୋଟାଏ ଦୋକାନେ ଗଲି ପ୍ରଥମେ ।
ଏହି ଦୋକାନଟା ଭାରି ଗହଳ,
ଧାଇଁଛନ୍ତି ଲୋକ ଦଳକୁ ଦଳ ।
ହାତେ ବିଶାକାଠି ଦୋକାନୀ ଧରି
ବସିଛନ୍ତି ଯମରାଜାଙ୍କ ପରି ।
ଦୋକାନରେ ମାଲ ନ୍ୟାଯ୍ୟ ବିଚାର,
କ୍ଷଣେ ସେ କପାଳ ଫାଟେ ଯାହାର ।
ଦୋକାନୀ ବହୁତ ନ କହେ କଥା,
ବସିଛନ୍ତି ପୋତି ତଳକୁ ମଥା ।
ଯୋଡ଼ାଏ ଗରାକ ଅଛନ୍ତି ଧାଇଁ
ଦୋକାନଙ୍କଠାକୁ ସଉଦାପାଇଁ ।

ଦୁଇ ଦଣ୍ଡିଦାର ଛିଡ଼ା ଆଗରେ,
ଡକାପାଡ଼ୁଛନ୍ତି ଭଷି ଉଚ୍ଚରେ ।
ସଉଦା ଯେ ନେବ ରହିଣ ଭୁନି
ଦଣ୍ଡିଦାର କଥା ଯାଉଛୁ ଶୁଣି ।
ଦୋକାନୀ ପ୍ରଭୁ ତ ନିଜ ବୁଦ୍ଧିରେ
ଫଉଲିଲେ ମାଲ ଲଥ ନଜୀରେ ।
ଚଉକରେ ବସି କଲେ ପ୍ରଗୃର,
ଏହି ନିଅ ମାଲ ନ୍ୟାଯ୍ୟ ବଗୃର ।
ଜଣେ ଦେଇ ଶଏ ଟଙ୍କା କୋର୍ଟଫିସ
କିଣିଲା ବଗୃର ତନ୍ତୁଁ ଉସ୍ମିସ ।
ଜଣେ କଉ ଘରଦ୍ୱାର ବିକଉ
ମାଲ କିଣି ଘରେ ନେଲା ଉକଉ ।
ଦଣ୍ଡିଦାର ଥାଏ ପଛରେ ଧାଇଁ
ବକସିସ ଫିସ ନେବାର ପାଇଁ ।

*　*　*

ଦେଖିଲି ଗୋଟାଏ ଗୃଳ ଦୋକାନ,
ଦୋକାନର ନାମ ଯେ ଅବଧାନ ।
ଦେଶୀ ସଡ଼ାମାଲ ବିକଇ ସେହି,
ପିଲାଏ କିଣନ୍ତି ପଇସା ଦେଇ ।
ଦେଶୀ ମାଲ ନାହିଁ ତା ଗୁଣ କିଛି,
ଦୋକାନୀ ବାପୁଡ଼ା ଯାଚି ଦେଉଛି ।
ସଉଦା ସହିତ ଲାଭ ଦୋକାନୀ
ଦୁଇ ଗୃର ବେତ ଦିଅଇ ଟାଣି ।

*　*　*

ପାଶେ ଅଛି ଆଉ ଗୋଟେ ଦୋକାନ,
ପିଦ୍ଧଣ୍ଡ ଦୋକାନୀ କୋର୍ଟ ପେଣ୍ଟ୍‌ଲୁନ ।
ମାଷ୍ଟର ପର୍ ସେ ଦୋକାନୀ ନାମ,
ପାଠବିକା ଅଟେ ତାହାର କାମ ।
ବିଲାତି ମାଲ ଯେ ବିକଇ ସେହି,
କିଣୁଛନ୍ତି ପିଲା ପଇସା ଦେଇ ।
ଏହି ମାଲ ଦାମ ବହୁତ ବଡ଼ା,
ତଟକା ସେ ନୁହେ ପୁରୁଣ ସଡ଼ା ।
ନଗଦା ନଗଦ ଦେଇ କଉଡ଼ି
କିଣୁଛନ୍ତି ପିଲା ଉଭଡ଼ା ପଡ଼ି ।

ଦେଖିଲି ବୁଝିଲି, ଏହି ଦୋକାନ
କେବଳ ନୋହେଁ ଟିଲା ଭଣ୍ଡାଣ ।
ସୁନ୍ଦର ପାଚିଲା ଫଳ ବହୁତ
ଦୋକାନ ଭିତରେ ଅଛି ମଜୁତ ।
ବାଇରଣ ପୋପ ସେକ୍ସପିୟର,
ବାଡ଼୍ସାର୍ଥ ମିଲ୍ଟନ ହୋମର ।
ହ୍ଵିଷ୍ଟଲ୍ଟା ଫିଲସଫି ବୋର୍ଟାନ,
ବଳାତୁ ହୋଇଛି ଏ ଆମଦାନ ।
ଟିଲାଏ ଖାଆନ୍ତି ଏ ସବୁ ଫଳ,
ବାପ ଟଙ୍କା ଗଣି ଦିଏ କେବଳ ।
ଏସବୁ ଫଳର ଗୁଣ ଓଲଟା,
ହୁଏ ଦେହ ସରୁ, ବୁଦ୍ଧିଟା ମୋଟା ।
ମାତ୍ରିକ ହଜମ ଯେ କରି ଜାଣେ,
ଜଗତ ଜିଣେ ସେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ,
ବହୁତ ଖାଇଲେ ଫିଟେ କପାଳ ।

* * *

ତାହା ପାଖେ ବସି ଗୋଟେ ଦୋକାନୀ,
ହାତରେ ଧରିଛି ସେ ନାସଦାନୀ ।
ଅଣ୍ଟୁ ଲୁଗ୍ରି ସାନ ଲୁଗା ସେ ଟିକେ,
ପୁରୁଣା ଗାମୁଛା ପଡ଼ିଛି କାନ୍ଧେ ।
ଦେଖିଲି ଦୋକାନେ ମାଲ ସକଳ,
ନହାତି ପୁରୁଣା ଶୁଖିଲା ଫଳ ।
ଶୁଖିଲା ନଡ଼ିଆ କଲି ବିଶ୍ୱାସ,
ଉପରଟା କଡ଼ା ଭିତରେ ରସ ।
ମାତ୍ରିକ ଦୋକାନୀ କରିଛି ଫନ୍ଦି,
ସଳାତ ରଖିଛି ଶବଦ ସନ୍ଧି,
କାଳିଦାସ ଭବଭୂତି ଶ୍ରୀହର୍ଷ,
ତାହା ଗୋଦାମର ମାଲ ସର୍ବସ୍ୱ ।
ଘଟଚ୍ଚି ଷଟଚ୍ଚି ବେଦାନ୍ତ ବହି
ଦେଖି ନ ପାରୁରେ ଗରାଖ କେହି ।
ଡୋର ଦେଇ ରଖିଅଛି ଗମ୍ଭୀରେ,
ପୋଡ଼ି ପଡ଼ିଲାଣି ମୂଷାମାଟିରେ ।

ଦେବାପାଇଁ ସେହି ଗୋଦାମ ଝାଡ଼
ଭୁଷ୍‌ଷାରେ ମାଲ ଦେଉଛି ଖଡ଼ ।
ପୁରୁଣା ମାଲରେ ଶରଧା ନାହିଁ,
କଏ ଯେନ ଯିବ ତାହା କପାଇଁ ?
ମାଡ଼ୁକ ଦେଖିଣ ଫଳ ପାଚିଲା,
ଯେନଗଲେ ଥୋକେ ବ୍ରାହ୍ମଣ ପିଲା ।

* * *

ପଇସା ପାଇବେ କରି ଭରସା
ଖବରକାଗଜ ଲେଖା ବେବସା
କରି ବସିଛନ୍ତି କେତେ ଦୋକାନୀ,
ଦେଖିଲି ସେଗୁଡ଼ା ଭାରି ଅଜ୍ଞାନୀ ।
ଯାଚି ଯାଚି ମାଲ ଦଅନ୍ତି କାଳ,
ଠଙ୍କା ମାଗି ଯାଇ ଖାଅନ୍ତି ଗାଳି ।
ଏପରି ଗହକ ଥୋକେ ଅଛନ୍ତି,
ଆଗ ମୂଲ ଦେଇ ମାଲ ନଅନ୍ତି ।
ଆହୁରି ଦେଖିଲି, ସବୁ କଥାରେ
ଡରି ମରଥାନ୍ତି ଲୋକଙ୍କଠାରେ ।
ମାଡ଼ୁକ ଯେ ବକେ ବିଲାତି ମାଲ,
ଖାଇ ପିଇ ତାର ଫୁଲିଛି ଗାଲ ।
ତାକୁ ଡରି ଥାନ୍ତି ବହୁତ ଲୋକ,
କାଳେ ବୋଲିଦେବ କଥାପଦକ ।
ଦେଖି ଲାଗିଲାଣି ତାଟଙ୍କା ମୋତେ,
ଦେଶୀ ବିଲାତିରେ ପ୍ରଭେଦ ଏତେ ।

* * *

ଦୋକାନ ଦୁଆରେ କେହି ରୂପସୀ
ଆପଣା ସଉଦା ବକୁଛି ବସି ।
ହସି ହସି ପ୍ରେମସଙ୍ଗୀତ ଗାଇ
ଗହକମାନଙ୍କୁ ନଏ ଭୁଲାଇ ।
କୁତ୍ସିତ ବ୍ୟାଧି ଜନନା ଅଧର୍ମ
ମାଲ ବିକିବାର ତାହାର କର୍ମ ।
ବାପ ଅରଜିଲା ବଡ଼କୁ ଦେଇ
କିଣୁଛି ସେ ମାଲ ଭେଣ୍ଡିଆ କେହି ।

* * *

ଦେଖିଲି ହାଟରେ କେତେ ମୋକ୍ତିଆ,
କେହି ବସିଅଛୁ, କେହି ବା ଠିଆ ।
କେହି ଲୋକ ଯେବେ ଡାକିବ ଜଣେ,
ଦରଖାସ୍ତ ଧରି ଧାଇଁବେ ପଣେ ।
ମୋକ୍ତିଆଙ୍କ ନାମ ଅଟେ ଅମଲା,
ସତେ ସତେ ତାଙ୍କ ବଂଶ ଅମଲା ।

❊ ❊ ❊

ଆଉ ଏକଭଳି ଛନ୍ତି ଦୋକାନୀ,
ସେମାନଙ୍କ ନାମ ଅଟେ କରଣୀ ।
ମୁଣ୍ଡ ଗୁଞ୍ଜି ଲେଖୁଥାଆନ୍ତି ବସି,
ବେଳ କାହିଁ କଥା କହିବେ ହସି ?
ଯାହା ସେ ପାଆନ୍ତି ଅଲପ ମୂଲ,
ଘରଖରଚକୁ ନୁହଇ ଭୁଲ ।
ପନ୍ଦର ଦିନରେ ସରଇ ଭାତ,
କରଜ ସକାଶେ ବଢ଼ାନ୍ତି ହାତ ।
ପାଆନ୍ତି ସେ କିଛୁ ଉପରି ବଟା—
ହେଟ କରଣୀଙ୍କ ଦାନ୍ତନକଟା ।

❊ ❊ ❊

କେତେଜଣ କରିଛନ୍ତି ଜୀବିକା,
ତାହାଙ୍କ ବେବସା ଯେ କଥାବିକା ।
ପଇସା ପାଇଲେ ବିକନ୍ତି କଥା,
ବସ୍ଥ ବିଚ୍ଛ ନାହିଁ ସତ ବା ମିଥ୍ୟା ।
କାଖେ ଯାକିଛନ୍ତି ଲଥ ନଜୀର,
ଡାକିବା ମାତ୍ରକେ ହେବେ ହାଜର ।
ବଡ଼ ହୁସିଆର ସେହି ଦୋକାନୀ,
ଅଚ୍ଛା ଦିପଇସା ନଥଇ ଠାଣି ।

❊ ❊ ❊

ଦୋକାନ ମେଲିଛି ଗୋଟାଏ ଲୋକ,
ପୁରୋହିତ ସେହି ଧର୍ମଯାଜକ ।
ଦହିଚୂଡ଼ା ଭୋଜି କିଛି ଦକ୍ଷିଣା
ମୂଲ ଦେଲେ ହୁଏ ତା ମାଲ କଣା ।
ତା ଦୋକାନ ମାଲ ଯେବେ ନ ଆଣି,
ସବୁ ଅଟକିବ ବାହା ପୁହାଣି ।

ଆହୁର ତା ମାଲ ଯେ ପିଣ୍ଡବଡ଼ା,
ପିତୃଲୋକପାଇଁ ବହୁତ ଲୋଡ଼ା ।
ଦେଖିଲ ତା ପାଶେ ହୋଇଣ ଠିଆ,
ଦିନୁ ଦିନୁ ହୁଏ ମାଲ ପଡ଼ିଆ ।

* * *

ଦେଖିଲ ବସିଛି ଗୋଟେ ଦୋକାନୀ,
ଅନୁମାନ କଲ ହେବ ସେ ଜ୍ଞାନୀ ।
ବୁଢ଼ାଟା ହେଉଛି ସେ ଥୁରୁ ଥୁରୁ,
ପଚାର ଜାଣିଲ ତା ନାମ ଚାରୁ ।
ଶାସ୍ତ୍ର କଥା ବକା ତାହାର କାମ,
ପୁଣି ସେ ବକଇ ଶ୍ରୀହର ନାମ ।
ମାଲ ଛଡ଼ି ଦିଏ ଅଳ୍ପ ମୂଲରେ,
ଗହକ ଅଳପ ତାହା ପାଶରେ ।

* * *

ହାଟେ ବୁଲ ବୁଲି ଜନ୍ମିଲା ଜ୍ଞାନ,
ମୁଁ ମଧ୍ୟ ମେଲଲ ଗୋଟେ ଦୋକାନ ।
ଅରଜୁଅଛନ୍ତି ଲୋକେ ପଇସା,
ମୁଁ ମଧ୍ୟ ପାଇବ କଲି ଭରସା ।
ଝାଡ଼ଝୁଡ଼ ଦେଇ ଦୋକାନ ଚାଲ,
ଗୋଦାମେ ଭରଲ ସାହିତ୍ୟ ମାଲ ।
ବିଲାତି ମାଲକୁ ନାହିଁ ତ ପୁଞ୍ଜି,
ଦେଶୀ ମାଲ ଦେଲି ଗୋଦାମେ ଗୁଞ୍ଜି ।
ଛାପାଖାନାଠାରୁ ଆଣିଲି କାଳ,
ଲାଭ ହେଲେ ଶୁଝି ଦେବ ମୁଁ ଭାଲ ।
କାଢ଼ିଆ ମାଲରେ ବହୁତ ଦୋଷ,
କଲନ୍ତର ବଢ଼ି ବୁଡ଼େ ସର୍ବସ୍ୱ ।
ଭୁଲାଇବାପାଇଁ ଗହକ ମନ
ଟାଙ୍ଗି ଦେଲି କାନ୍ଥେ ସେ ବିଜ୍ଞାପନ ।
ପାଟି କରି ଦ୍ୱାରେ ଡାକିଲି ବସି,
ଭଲ ମାଲ ଭାଇ ନିଅ ହେ ଆସି ।
ଆଇଲେ ଗହକ ଶୁଣି ମୋ ଡାକ,
ପଚାରଲେ ତୁମ୍ଭେ କି ଫଳ ବିକ ?
ବୋଇଲି ମୁଁ, ଅନୁବାଦ ପୁରାଣ,
ଆଛା ମିଠା ଫଳ ଏହାକୁ ଜାଣ ।

ବୋଇଲା ମୋ କଥା ଶୁଣି ଗରିଖ,
ବିରକ୍ତିରେ କରି ଅଳପ ରାଗ ।
ଏଗୁଡ଼ା ସବୁ ତ ପଶ୍ଚି ପୁରୁଣା,
ଏ ସବୁର ମୂଲ ନାହାନ୍ତି ଊଣା ।
ଯେବେ ଦେବ ତୁମ୍ଭେ ବିନାମୂଲ୍ୟରେ,
କୃପା କରି ନେଇ ରଖିବୁଁ ଥରେ ।
ଦେଖାଇଲି ତାକୁ ନେଇ ନଭେଲ,
ବୋଇଲା ସେ କଞ୍ଚା ପ୍ରକୃତି ବେଲ ।
ପୁଣି ଦେଖାଇଲି ତାକୁ କବିତା,
ବୋଇଲା ଏଗୁଡ଼ା ନାହାନ୍ତି ହିତ ।
ଗରିଖ ମୁଖରୁ ଏ କଥା ଶୁଣି
ନିଶ୍ୱାସ ପକାଇ ହେଲି ମୁଁ ତୁନି ।
ଭୁଲିଲି ମୋହର ସକଳ ପାଠ,
ଆଉ କରିବ ମୁଁ କଅଣ ହାଟ !
ବେଭାର ଦେଖୁଛୁ ଯେ ଲୋକଙ୍କର,
ଦେଶୀ ଜିନିଷରେ ନାହିଁ ଆଦର ।
କେତେ ଲୋକ ଟଙ୍କା ପଇସା ଦେଇ
ଯାଆନ୍ତି ବିଲାତି ଜିନିଷ ନେଇ ।
ଆହୁରି ଶୁଣନ୍ତୁ ଗୋଟାଏ ମଜା,
ମାଲ କାଳ ନେଲେ ଯୋଡ଼ାଏ ରଜା ।
ଯେଉଁମାନେ ନେଲେ ମାଲ କାଢ଼ିଆ,
ଅବଶ୍ୟ ସେମାନେ ଜାତି ଓଡ଼ିଆ ।
ତୁନିତାନି ହୋଇ ରହିଲେ ଘରେ,
ଚଟିରେ ଉତ୍ତର ନ ଦେଲେ ଥରେ ।
ଏଡ଼େ ହାଟଟାରେ ଦେଖିଲି ଜଣେ,
ଗରିଖ ବୋଲି ମୁଁ ତାହାକୁ ଗଣେ ।
ଜାଣିଲି ପରି ମୁଁ ସେହି ଚହଲରା,
ଚହନ୍ତି କେ କାଚ, କେଉଁଟା ହୀରା ।
ବାଛି ବାଛି ନେଲେ ଗୋଟାଏ ଫଳ,
ବାହାନ କଲି ମୁଁ ଏହା କେବଳ ।
ଲୋକେ ତ ଶୁଣନ୍ତୁ ଏହି ବାରତା,
ଲାଭ ଲୋକସାନ କପାଳ କଥା ।
ଛାପାଖାନା ତଳେ ଲାଭ ନ ଲୋଡ଼ି
ମୂଲେ ମୂଲେ ଦେଲି ମାଲକୁ ଛାଡ଼ି ।

ହେଲେ ହେଉ ପଛେ ବହୁତ ଲୁଟି,
ଛାପାଖାନା ଏଣେ ଧରିଛି ଚୋଟ ।
ଲୁଟି ସହି ମାଲ ବିକିଲେ ବଳେ,
ଏଥିରେ କି ଭାଇ ବଣିଜ ଚଳେ ?
ଦେଶୀ ସାହିତ୍ୟ ଯେ ବଣିଜ କଲା,
ଜାଣିଥିବ ସେହି ଲୋକଟା ମଲା ।
ଲାଭ କଥା ଭାଇ ଥାଉ ପଛକୁ,
ବୁଡ଼ାଇ ବସିବ ନିଜ ମୂଳକୁ ।
ଭାଳିଲି ହାଟରେ ଥିବ କିପାଇଁ ?
ଦେଲି ବେଳେ ଚାର ଆଡ଼କୁ ଚାହିଁ ।
ଗୋଟାଇ ପସରା ବୋଝ ମୁଣ୍ଡାଇ
ଘରମୁହାଁ ହୋଇ ଗଲି ପଳାଇ ।
ଝାଡ଼ଝୁଡ଼ ମାଲ ରଖିଲି ଘରେ,
ପଚାରିବ ଦିନେ କେହି ବା ଥରେ ।
ଏଣେ ତ ବୁଡ଼ିଲା ସବୁ ଭରସା,
ଆହୁରି କପାଳେ ଅଛି ଦୁର୍ଦ୍ଦଶା ।
କାଲି ଦୁଆରକୁ ଆସି ପ୍ରିଣ୍ଟର
କରିବ ବହୁତ ସେ ହରବର ।
ତାହାଠାରୁ ମାଲ ଆଣିଛି କାଲି,
ନ ପାଇଲେ ଟଙ୍କା ଦେବ ସେ ଗାଳି ।
ଛାପାଖାନା ଲୋକ ନିହାତି ମନ୍ଦ,
ପଇସା ସକାଶେ ଲଗାନ୍ତି ଦ୍ୱନ୍ଦ ।
ଲେଖିବ କବିତା ଦେବୁ ଛପାଇ,
ପଇସା କିପାଇଁ ନେବୁ ରେ ଭାଇ ?
ନିହାତି ତୁ ଯଦି ଛାଡ଼ିବୁ ନାହିଁ,
ରହି ବସି ଦେବି, କଳ କିପାଇଁ ?
ଲାଗିଛି ସଂସାର ମଧ୍ୟରେ ହାଟ,
ମାତ୍ରକ ମୋହର ପଡ଼ିଲା ବାଟ ।
ନାହିଁ ଦେହେ ବଳ, ହେଲିଣି ବୁଢ଼ା,
ମୋହ ନାମ ଭାଇ, ହାଟବାହୁଡ଼ା ।



( ୯ )

## ଜଗତ ସୁଖମୟ

ମାୟାବାଦୀ ବୈଦାନ୍ତିକେ କରନ୍ତି ପ୍ରଚାର,
କେବା ତବ କାନ୍ତା ପୁତ୍ର, ବିଚିତ୍ର ସଂସାର ।
ନାସ୍ତିକ ମତରେ କର୍ମ ଜଗତର ମୂଳ,
କର୍ମସୂତ୍ରେ ବଦ୍ଧ—କର୍ମେ ବ୍ୟସ୍ତ ନରକୁଳ ।
ମାନବର ଜନ୍ମ ଲାଭ ଘୋର ବିଡ଼ମ୍ବନା
ତହିଁ ମୁକ୍ତିକାମୀ କରେ କୈବଲ୍ୟ ସାଧନା ।
ଅନନ୍ତ ନରକବାଦୀ ବାଇବେଲ ଶାସ୍ତ୍ର;
ପାପିଷ୍ଠ ଆଦମଠାରୁ ଜନ୍ମ ଲାଭ ମାତ୍ର,
ପ୍ରତ୍ୟେକ ମାନବ ପାପୀ— ନ ଭଜିଲେ ଖ୍ରୀଷ୍ଟ—
କୁପିତ ଈଶ୍ୱର ହେବେ ତୁମ୍ଭ ପ୍ରତି ରୁଷ୍ଟ ।
ଧାର୍ମିକ ବିବେକୀ ହେଉ ସଚ୍ଚରିତ୍ର ଲୋକ—
ନ ଭଜିଲେ ଖ୍ରୀଷ୍ଟ, ଭୋଗ ଅନନ୍ତ ନରକ ।
ନୈୟାୟିକ ମତେ ସୁଖ ଜଗତରେ ନାହିଁ,
ଦୁଃଖର ଅଭାବ ସୁଖ ବୋଲି ସେଥିପାଇଁ ।
ଶାସ୍ତ୍ରରେ ପ୍ରକାଶ ଶାକ୍ୟସିଂହ ମହାବାଣୀ—
ଦୁଃଖାର୍ଣ୍ଣବେ ଭାସମାନ ଜଗତରେ ପ୍ରାଣୀ ।
ମହାଚୀନେ ପ୍ରକାଶିତ କଂଫୁସିୟ ମତ—
ଦୁଃଖ ଯାତନାରେ ପୂର୍ଣ୍ଣ ନିଖିଳ ଜଗତ ।
ତେବେ ବୋଲି ଜଗତଟା କଣ୍ଟକନିକେତନ ?
ଯନ୍ତ୍ରଣାଜଡ଼ିତ ସର୍ବ ମାନବ ଜୀବନ ।
ଦୟାମୟ ପ୍ରେମମୟ ଜଗତର ପତି—
ସୃଜିଲେ କି ନର ଭାଗ୍ୟେ କେବଳ ଦୁର୍ଗତି ?
ନାହିଁ ନାହିଁ, ଅକୃତଜ୍ଞ ନ ହୁଅ ମାନବ,
ଜଗତରେ ପୂର୍ଣ୍ଣ ଦେଖ ଆନନ୍ଦ ଉତ୍ସବ ।
ଧର୍ମଶାସ୍ତ୍ର ମହାବାକ୍ୟ ଥାଉ ମୋ ମସ୍ତକେ—
ପ୍ରତ୍ୟକ୍ଷରେ ଦେଖୁଁ ସୁଖ ଭୁଞ୍ଜୁଛନ୍ତି ଲୋକେ ।
ଧାର୍ମିକ ବିବେକୀ ଜ୍ଞାନୀ ସୁଖେ କାଟେ କାଳ,
ତାହାଠାରେ ଅତି ତୁଚ୍ଛ ଜଗତଜଞ୍ଜାଳ ।
ବାଲ୍ୟେ ଜନନୀର ସ୍ନେହ, ଯୌବନେ ସଙ୍ଗିନୀ—
ପ୍ରୀତିସୁଖ ପ୍ରେମଧାରା ଭ୍ରାତା ଓ ଭଗିନୀ ।

ପୂଜ୍ୟପାଦ ପିତା ମାତା ଈଶ ପ୍ରତିନିଧି —
ସନ୍ତାନ ସକାଶେ ସ୍ନେହକରୁଣାବାରିଧି ।
ଗୃହ ପରିବାରେ ସୁଖ ପୂର୍ତ୍ତି ଜଗତରେ,
ନ ପାର କି ଅନୁଭବି ଆତ୍ମଜୀବନରେ ?
ଆନନ୍ଦର ଧାରା ବହେ ବାହ୍ୟ ଜଗତରେ—
କୁସୁମେ ସୌରଭ, ଜ୍ୟୋତି ରବି ଶଶାଙ୍କରେ ।
ଏ ସମସ୍ତ ସୁଖ ମୂଳେ ପ୍ରଚ୍ଛନ୍ନ ନିହିତ
ରହିଛି କାହାର କୃପା ଅଛି କି ବିଦିତ ?
ଯେଉଁ ସୁଖ ଯେଉଁ ପ୍ରେମ ସାଗର କଣିକା
ଗ୍ରହଣେ ମାନବ କାଟେ ଜଗତେ ଜୀବିକା —
ପ୍ରେମମୟ ସୁଧାମୟ ସେ ଆନନ୍ଦସିନ୍ଧୁ,
ସାର୍ଥକ ଜୀବନ ତହୁଁ ଲଭି ମାତ୍ର ବିନ୍ଦୁ,
ଆନନ୍ଦର ଉତ୍ସ ନିତ୍ୟ ଯହୁଁ ପ୍ରବାହିତ,
ଚିନ୍ତ ତାଙ୍କୁ ନ ରହିବ ଯାତନା କିଞ୍ଚିତ ।
ଇହ ପର କାଳେ ସୁଖୀ ସେହି ଭାଗ୍ୟବାନ,
ପବିତ୍ର ମନରେ କରେ ବ୍ରହ୍ମପଦ ଧ୍ୟାନ ।



( ୧୦ )

## ଭାଇ କଳି



ଉତ୍କଳେ ଜନମ ଉତ୍କଳେ ମରଣ,
ଉତ୍କଳ ଅନ୍ନରେ ଜୀବନ ଧାରଣ ।
ପରସ୍ପର ଭାବ ପୋଷିବୁଁ କିପାଇଁ,
ମାତା ସମ୍ବନ୍ଧରେ ସର୍ବେ ଭାଇ ଭାଇ ।
ଭିନ୍ନାଭିନ୍ନ ଭାବ ବହିବାର ଜନ —
ମୋ କ୍ଷୁଦ୍ର ବୁଦ୍ଧିରେ ସେ ତ ଅକିଞ୍ଚନ ।
କର ଯୋଡ଼ି ତାକୁ ବୋଲୁଅଛୁ, ଭାଇ !
ଏକକୁ ଆରେକ ଦ୍ୱନ୍ଦ ଭୁଲିଯାଇ,
ଆସ କରୁଁ ମାତୃଦେଶର ଉନ୍ନତି,
ଫେଡ଼ୁ ଜନ୍ମଭୂମି ଦୁର୍ଦ୍ଦଶା ଦୁର୍ଗତି ।
ଯେତେ ଦିନ ଭାଇ ନ ହେବ ମିଳିତ,
ନ ମେଣ୍ଟିବ ଦେଶ ଦୁର୍ଦ୍ଦଶା କିଞ୍ଚିତ ।
ହିନ୍ଦୁ ମୁସଲମାନ ଖ୍ରୀଷ୍ଟିଆନ ଜଇନ—
କେବଳ ଧର୍ମରେ ସିନା ଭିନ୍ନାଭିନ୍ନ ।
ଧର୍ମ ଜାଣ ଭାଇ ପରକାଳପାଇଁ,
ପୃଥ୍ୱୀର ସନ୍ତାନ ଏହା ଭୁଲ ନାହିଁ ।
ଯା ପୂର୍ବପୁରୁଷ ବିଦେଶୀ ନିଶ୍ଚୟ,
ନ ଭୁଲୁ ସେ ଲୋକ ଉତ୍କଳତନୟ ।
ହେଉନ୍ତୁ ବଙ୍ଗାଳୀ ତେଲଙ୍ଗା ମାରାଠି—
ତୁମ୍ଭ ଦେହ ଗଢ଼ା ଉତ୍କଳର ମାଟି ।
ଦୁଇ ଦିନ ପାଇଁ ନାହିଁ ତ ଏ ଦେଶେ,
ବଂଶ ଅନୁକ୍ରମେ ରହିବ ବିଶେଷେ ।
ଦୁର୍ଭିକ୍ଷ ଦୁର୍ଦ୍ଦଶା ପଡ଼ିଲେ ଉତ୍କଳେ,
ମିଳିମିଶି ଭାଇ ଭୁଞ୍ଜିବୁଁ ସକଳେ ।
ଭାଇ ଭାଇ ମଧ୍ୟେ ନ ଲଗାଅ କଳି,
ପରିଚୟ ଦିଅ ନିଜକୁ ଉତ୍କଳୀ ।
ସାକସନ ଜର୍ମନ ଗ୍ରୀକ ଓଲନ୍ଦାଜ,
ଇଂଲଣ୍ଡର ବାସୀ ସମସ୍ତେ ଇଂରାଜ ।

ଉତ୍କଳେ ଜନମି ବୋଲ ଅନ୍ୟ ଜାତି,
ହାମବଡ଼ା ଏଠା ନିଶ୍ଚୟ ଅଖ୍ୟାତି ।
ହିଂସା ଦ୍ୱେଷ ବହି ଦ୍ୱନ୍ଦ୍ୱ ପରସ୍ପର
କଲେ ନିଶ୍ଚେ ହେବ ଦୁର୍ଦ୍ଦଶା ତୁମ୍ଭର ।
ହେଉ ପଛେ ତୁମ୍ଭେ ଥିଲ ବଡ଼ ଜାତି,
ଏବେ ତ ଉତ୍କଳଦେଶ ପୁଅ ନାତି ।
ଜନ୍ମଭୂମି ଆଉ ଜନନୀ ଏମାନେ
ଶାସ୍ତ୍ରରେ କଥିତ ସ୍ୱରଗ ସମାନେ ।
ଯେ ବୋଲେ ନିଜକୁ ବିଦେଶୀୟ ଲୋକ —
ନିଶ୍ଚେ ସେହି ଜନ୍ମଭୂମିର ନିନ୍ଦୁକ ।
ଆସ ଭାଇମାନେ, କରୁଛି ଜୁହାର,
ମିଳିମିଶି କରୁଁ ଦେଶ ଉପକାର ।



## ଚିତ୍ରୋତ୍ପଳା

BY

**Late Sir Sudhal Deo K. C. I. E.**

( Born 1848, Died 1903 )



ଚିତ୍ରୋତ୍ପଳା ଜଳ ରାୟପୁର ଜିଲ୍ଲା
ସିହାବା ଗ୍ରାମ ପାଶରୁ ,
ମନୋହର ଧାର ବାହିତ ହେଉଛି
ବହୁଅଛି ଅତି ସରୁ ।
ପବିତ୍ରହୃଦୟା ପୁଣ୍ୟାଶ୍ରମ ଦେଖି
ଚଳୁଥାଇ ଧୀରେ ଧୀରେ,
ରାଜୀବନଗର ନିକଟରେ ଯାଇ
ମିଳିଲା ସ୍ୱଚ୍ଛ ମତିରେ ।
ରାଜୀବଲୋଚନ ପ୍ରଭୁ ବିରାଜିତ
ସୁନ୍ଦର ବୈଷ୍ଣବୀ ଛବି,
ଚରଣ ପଖାଳି କୃତାର୍ଥ କରୁଛି
ନଗ, ନଗର, ଅଟବୀ ।
ଶୌରିନାରାୟଣ-ବିଷ୍ଣୁ ପ୍ରତିମୂର୍ତ୍ତି
ବାମ ତଟେ ପ୍ରତିଷ୍ଠିତ,
ତାହାଙ୍କ ନାମରେ ସୁବିଖ୍ୟାତ ହୋଇ
ନଗର ଅତି ଶୋଭିତ ।
ବୈଷ୍ଣବୀ-ପ୍ରତିମା-ଶ୍ରୀଅଙ୍ଗ ଧଉତେ
ପବିତ୍ର ପ୍ରବାହରାଜି,
ଯାହାର ମାହାତ୍ମ୍ୟ ବଳେ ସ୍ନାନଶୀଳ-
ପାପ ହୋଇଯାଏ ମାଜି ।
ଗୋଧୂମ ତଣ୍ଡୁଳ ନାବ ନାବ କରି
ଚିତ୍ରୋତ୍ପଳା ସେ ନଗରୁ
ଆଣି ଯୋଗାଉଛି ସହରମାନଙ୍କୁ
ଦୁଃଖ ହରୁଛି ଦେଶରୁ ।

ପ୍ରସାଦ ଲାଲସେ ଶିବନଦୀ ଆସି
ମିଳିଅଛି ଏହିଠାରେ,
ନିଜ ତରଙ୍ଗକୁ ମିଳାଉଛି ନେଇ
ଅତ୍ୟନ୍ତ ସୁହୃଦାକାରେ ।
ଚନ୍ଦ୍ରପୁରେ ଚନ୍ଦ୍ରାସନୀ, ପଦ୍ମପୁରେ
ପଦ୍ମାସନୀ, ଦେବୀଙ୍କର
ଚରଣପଙ୍କଜ—ମଧୁ ନିଃସ୍ୟନ୍ଦରେ
ପବିତ୍ର ନଦୀ ଉଦର ।
ମାତୃସ୍ନେହ-ପରିପ୍ଲୁତା ଇବ ନଦୀ
ଲହରୀ-କର ପ୍ରସାରି
ଆଲିଙ୍ଗନ ସୁଖେ ଜନନୀ କୋଳରେ
ରହିଲା ନୋହିଲା ବାରି ।
ଜନନୀବତ୍ସଳା ଇବ ବିନୋଦିନୀ-
ବଘରା ଗ୍ରାମ ବସତି,
ଉଭୟ ନଦୀର ସ୍ୱାଦୁ ଜଳପାନେ
ହୁଅଇ ଆମୋଦବତୀ ।
ଚନ୍ଦ୍ରୋପଳା-ଅସ୍ଥି କଙ୍କାଳ ସ୍ୱରୂପେ
ରହିଅଛି ହୀରା-କୁଦ,
ବିଷମ ପ୍ରସ୍ତରେ ଘଟିତ ହୋଇଛି
ନାବିକଙ୍କ ନାଶି ମୁଦ ।
ପ୍ରପାତ ଉତ୍ପ୍ଲାବ, ଭୀଷଣ-କଲ୍ଲୋଳ
ଦେଖି ଜାନୁ ଯାଏ ଥରି,
ଛଗଲ ମନାସି ତରଣୀ ଆଣନ୍ତି
ଧୀରେ ଧୀରେ ଧରି ଧରି ।
ଦ୍ୟୁମଣି-ପ୍ରଭମ-ହୀରା ଜାତ ହୁଏ
କୈବର୍ତ୍ତ ବୁଦ୍ଧି କୌଶଳେ,
ସମଲାଈ ପୁର-ମଣ୍ଡନ-ଭୂପତି-
କପୋଳ ଉପରେ ଝୁଲେ ।
ନିର୍ମଳ,ଶୀତଳ, ପ୍ରବାହସ୍ପର୍ଦ୍ଧିନୀ
ସୁପୂଜିତ ରକ୍ତକାୟା,
ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ
ସମଲାଈ ମହାମାୟା ।
ଦେବୀ ଅଭିଧାରେ ଖ୍ୟାତ ହୋଇଅଛି
ସମ୍ବଲପୁର ସହର,

ଧନୁ ଆକାରରେ ଗବ୍ୟୂତ ପ୍ରମାଣେ
ନଗର ଅତି ସୁନ୍ଦର ।
ସଉଧମାଳାରେ ମଣ୍ଡିତ ହୋଇଛି
ରୁଚିର-ତୀର-ସରଣୀ,
ମହା ଉତ୍ସବରେ ଧବଳ ତୋରଣେ
ହୋଇଅଛି କି ବରଣୀ ?
ନିଜ ରୂପ ଚନ୍ଦ୍ର ନିତି ଯା ଦେଖୁଛି
ନଗର ହ୍ରଦ-ଦର୍ପଣେ,
ସ୍ୱକୀୟ ମୂରତି ଦ୍ୱିଗୁଣିତ କରି
ଦେଖାଏ ସୁନ୍ଦରପଣେ ।
ସଉଧାବଳୀରେ ରମଣୀୟକତା
ସ୍ତରେ ସ୍ତରେ କରେ ଖେଳା,
ଅର୍ଦ୍ଧାଙ୍ଗ ଭୂଷିତ ହେଲା ପରି ଦିଶେ
ତଟିନୀର ସବ୍ୟ ବେଳା !
ସ୍ଥାନୀୟ ଶାସନ-କରତାଙ୍କ ଯତ୍ନେ
ନଗରରଞ୍ଜନା ସଭା.
ଭିକ୍ଟୋରିୟା ଘାଟ ନାମ ଦେଇଛନ୍ତି
ସୋପାନେ କରି ସୁପ୍ରଭା ।
ବୈଦ୍ୟନାଥମିଶ୍ର-ଆଦି ଧନିଗଣ
କଲେ ଏହାର ସାହାଯ୍ୟ,
ସୁଧାମୟୀ କୀର୍ତ୍ତି ରଖିବାର ସିନା
ଧନାଧିକାରୀର କାର୍ଯ୍ୟ ।
ରାଜଘାଟ, ରାଜ-ବଂଶିଙ୍କ ଶ୍ରୀଅଙ୍ଗ-
ମାଜଣା ପାଇଁ ରଚିତ;
ଚୌହାଣତିଲକ ଭୂପତିନିକର
ଯହିଁରେ ସଦା କ୍ଷାଳିତ ।
ଅଧୁନା ସେ ଘାଟ ଶ୍ମଶାନ ହୋଇଛି
ସେ ଜଳ ଏବେ ଗରଳ,
ଈଶ୍ୱର ଘଟନା କେ ଆନ କରିବ
ସାଗର ହେଉଛି ସ୍ଥଳ ।
ସ୍ୱର୍ଣ୍ଣ କଳଶରେ ଶୋଭମାନ ବ୍ରହ୍ମ-
ପୁରୀ ମନ୍ଦିର ବିଦିତ,
ଦାରୁବ୍ରହ୍ମ ରୂପ ଅରବିନ୍ଦନେତ୍ର
ତହିଁ ସଦା ବିରାଜିତ ।

ମନ୍ଦିର ଦୁଆରୁଁ ନଦୀଗର୍ଭଯାଏ
ଚୂନ ପାବଚ୍ଛ ଗଠିତ,
ଚନ୍ଦ୍ରୋପଳା ନୀର-ତରଙ୍ଗ କରରେ
ପରିଷ୍କୃତ ସୁରଞ୍ଜିତ ।
ଉଷାକାଳେ ସ୍ନାନଶୀଳା ନାରୀବୃନ୍ଦେ
ତୀର ହୋଇଯାଏ ଘନ,
ଅମଳ ତରଙ୍ଗେ ଦଳ ହେଉଥାଏ
ରମଣୀ-ଲାବଣ୍ୟ-ବନ ।
ମୁଗ୍ଧା ମଧ୍ୟା ବୃଦ୍ଧା ପ୍ରଭୃତି ଲଳନା
ଶ୍ରେଣୀ ଶ୍ରେଣୀ ମାଳ ମାଳ,
ଘଣ୍ଟାଙ୍କିତଶିର କଟି-ହସ୍ତ ହୋଇ
ଯାଉଛନ୍ତି ବାମା ଜାଲ ।
ଉଦନ୍‌ବତୀ-ହ୍ରଦ ଦର୍ପଣେ ଦଶନ୍ତି
ଶତ ଶତ ନାରୀକୁଳ,
କବି ଭାବୁଥାଇ ଯେଉଁ ଉପମାକୁ
ହ୍ରଦ ଉତରେ ସେ ଠୁଳ ।
ଚନ୍ଦ୍ର, ପଦ୍ମକଳୀ, ଖଞ୍ଜନ, ପାଟଳୀ
ପଳାଶ-କୁସୁମ ଦଳ,
ରମଣୀ-ଉପମା, ଉପମେୟ ଦିଶି
ଦିଶୁଥାଇ ଜଳସ୍ଥଳ ।
ଅପଘନଲିପ୍ତ ହରିଦ୍ରା-ଯୌତରେ
କର୍ବୁରିତ ନୀରଜାଲ,
ପ୍ଳବନ, ମଜ୍ଜନେ ବାରି ହୁଏ ନାହିଁ
ତରୁଣୀ, ତରଙ୍ଗମାଳ ।
ଜଳେ ଅପଘନ ମଜ୍ଜାଇ ରଖନ୍ତି
ଦିଶୁଥାଇ ମାତ୍ର ମୁଖ,
ତା ଦେଖି ମଧୁପ ପଙ୍କଜଲୋଭରେ
ବେଢ଼ନ୍ତି ନୋହି ବିମୁଖ ।
କେଶକୁ ଶୈବାଳ ମନେ କରି ମୀନା-
ବଳୀ ଧାଆଁନ୍ତି ସଭୟରେ;
ବରଟା ସହିତ ମରାଳ ଆସଇ
ବାହୁ ମୃଣାଳ ଧ୍ୟାନରେ ।
ତଟ ବାଟିକାରୁ ଉପହାର ପୁଷ୍ପ
ତରଙ୍ଗ-କରରେ ଧରି

ଭୁରୁମୁ ସମୀପେ ଅଙ୍ଗନଦୀ ଆସି
ଭେଟିଲା ସେବାଙ୍କୀ ପର ।
ଦକ୍ଷିଣ କୂଳରେ ରହିଅଛି ସ୍ୱର୍ଣ୍ଣ-
ପୁର ସୁନ୍ଦର ନଗର,
ନାଦେୟ, ପାନୀୟ, ବିହାର ଆସ୍ୱାଦେ
ପ୍ରମୋଦିତ ସର୍ବ ନର ।
ପୁର ଅନ୍ତେ ସ୍ୱଚ୍ଛ-ନୀର ତେଲନଦୀ
ସପତ୍ନୀ ଭାବରେ ମିଶେ,
ଦ୍ୱେଷଭରେ ଦେହ ଫୁଲାଇ ରହିଛି
ନ ଚଳନ୍ତି ପର ଦିଶେ ।
ବଳହୀନ ଦେଖି ଘନକାଳେ ନିଜ
ପ୍ରବଳ ବେଗ ଭଙ୍ଗରେ
ଚିତ୍ରୋତ୍ପଳା ରୁଦ୍ଧ ସ୍ୱପତି ପାଶକୁ
ଚଳଇ ଅତି ରଙ୍ଗରେ ।
ନ ବୁଝି କଳୁଷ-ଉଦର୍କ, ସତ୍ୱରେ
ଆଗ ହେଉଥାଇ ଖରେ;
ସତେ କି ପତିଙ୍କି ପାଇ ପ୍ରିୟବତୀ
ହେବ ସପତ୍ନୀ ମଧ୍ୟରେ ।
ଉଦାରହୃଦୟା ଚିତ୍ରୋତ୍ପଳା ନିଜ
ସପତ୍ନୀମାନଙ୍କୁ ଧରି
ସ୍ୱପତି ଜଳଧି ପାଶକୁ ଯାଉଛି
ଦ୍ୱେଷଭାବ ପରିହରି ।
ମହତ ଲୋକର ଏହିପରି ସିନା
ମହତ ଅଟେ ବେଭାର,
କ୍ଷୁଦ୍ର ହୋଇ କିଛି କ୍ଷମତା ପାଇଲେ
ହିଂସା ବଢ଼େ ଭାର ଭାର ।
ତେଲନଦୀ ତୀରନିବାସୀ ସୁବର୍ଣ୍ଣ-
ମେରୁ ଶିବଲିଙ୍ଗ ରୂପ,
ସ୍ୱର୍ଣ୍ଣପୁରବାସି-ମନୋରଥସିଦ୍ଧି
କରୁଛନ୍ତି ଅନୁରୂପ ।
ପ୍ରତି ସପ୍ତାହରେ ଭୂପତି ମୁକୁଟ-
ମଣି ଆଲତିଜାଲରେ
ପାର୍ବତୀ-ପତିଙ୍କ ପାଦ ନୀରାଜନା
ହେଉଛି ଯଥାକାଳରେ ।

ସମ୍ବଲ-ପୁରର ଧର୍ମମଣି ମଧୁ-
କର ସାଏ, ନରପତି,
ତାହାଙ୍କ ଅଂଶରୁ ଖ୍ୟାତ ହୋଇଅଛି
ସ୍ୱର୍ଣ୍ଣପୁର ରାଜପଂକ୍ତି ।
ଚିତ୍ରୋତ୍ପଳା କୂଳେ ସୁଖେ ବିହରନ୍ତି
ସୁପାନ ସ୍ନାନ ଲାଳସେ,
ଜଳକେଳି, ନାବକେଳି କରି ଦିନ
ହରନ୍ତି ଅତି ହରଷେ ।
ବାମେ ଶୋଭେ ଅଷ୍ଟ-ମଲ୍ଲିକ ଭୂରେଖା
ଦକ୍ଷେ ବୌଦ ଜନପଦ,
ଉଭୟ ତଟକୁ କରଛି ନଗାଳ,
ଅଗାଧ ଶୋଭା ଆସ୍ପଦ ।
ବଉଦ ନିକଟ ଉପଲେ ଗଠନ
ଅତିଶୟ ଅସମାନ,
କୀଲାଳ ସରଣୀ ବିଷମ ପ୍ରସ୍ତର-
ରାଶି ପରେ ବିଦ୍ୟମାନ ।
କାହାର ମସ୍ତକ ଉପରେ କାହାର
ସ୍କନ୍ଧତଳେ ପାଦତଳେ,
ପତନ, ଉତ୍ପାତ, ଝାଙ୍କାର, ଧାଙ୍କାର,
ଛଙ୍କାର ଘୂଙ୍କାରେ ଚଳେ ।
ଶିଳାଗହ୍ୱରରେ ପଡି ଭ୍ରମୁଅଛି
ଇତସ୍ତତେ ପୟସ୍ୱିନୀ,
ନିରୁଦ୍ଧ ପଦବୀ ହେବାରୁ ପ୍ରଖର-
ବେଗା, ଭୈରବନାଦିନୀ ।
କାହିଁ ଘୁଘୁ, କାହିଁ ଧୁଧୁ, କାହିଁ ହୁହୁ,
କାହିଁ ବାର-ବାହ ଧ୍ୱାନ,
ବୌଦବାସିମାନେ ଯେପରି ଭାବନ୍ତି
ଶୁଣନ୍ତି ତଦ୍ରୂପ ତାନ ।
ନୀଳାକାଶ ସମ ନୀଳ ତରଙ୍ଗରେ
ଘନାଳି ଛଟା ବିସ୍ତାରି,
ସପ୍ତକୋଶି ଗଣ୍ଡ ସପ୍ତ କ୍ରୋଶଯାଏ
ହୋଇଛି ଅତଳସ୍ପର୍ଶୀ ।
ଉଭୟ ତଟକୁ ଆଲିଙ୍ଗନ କରି
ଚାଲୁଅଛି ଧୀରେ ଧୀରେ,

ତଟଜୀବୀ ତରୁ ବିନମ୍ର ମସ୍ତକେ
ବନ୍ଦୁଛନ୍ତି ସବ୍ବଧ୍ୱରେ ।
ତଳାତଳ ସ୍ପର୍ଶି ଶୀତଳ କୋଳରେ
ଖେଳୁଛନ୍ତି ହଂସ ଦଳ,
ଧୀବର ଧୀଷଣା ଧୂଳ ହେଉଅଛି
ଧରିବାକୁ ନାହିଁ ବଳ ।
ସ୍ଥିରତର ଜଳେ ହିଣ୍ଡୀର-ପଟଳ
ଏକତ୍ର ହୋଇଲେ ଜୁଣ୍ଡ,
ବଳହୀନ ଯେତେ ଜଳଚରକୁଳ
ତହିଁ ଲୁଚ୍ଚଇଲେ ମୁଣ୍ଡ ।
ଏହି ଗଣ୍ଡ ମଧ୍ୟେ ଠୁଳ ହୋଇଛନ୍ତି
ମୀନାଳୀ ହୋଇ ନିର୍ଭୟ,
ନାବିକଜନଚୟ ଭାବନ୍ତି ମନରେ
ଏହି କଲ୍ପଜୀବଚୟ ।
ଚିତ୍ତଭାବେ ନଦୀ ମଣିଭଦ୍ରା ଗିରି-
ପାଦ ଧୋଇଲା ସତ୍ୱରେ,
ଦୁହିତା ସଂସର୍ଗେ ପୁଲକିତ ହେଲା
ତରୁ ପଲ୍ଲବ ବ୍ୟାଜରେ ।
ପ୍ରତିବିମ୍ବ ଛଳେ ଆଲିଙ୍ଗନ କରେ
ବଲ୍ଲଲତା ହୃଦେ ବହି,
କଦମ୍ବ କୁସୁମ ଫୁଟି ଜଣାଉଛି
ଅନୁରାଗ ଚିହ୍ନ ଯହିଁ ।
ଗିରିବର ମହା-ସୌଭାଗ୍ୟ ସମ୍ଭାରେ
କରୁଅଛି ଅଭ୍ୟର୍ଥନା,
ପଲାଶ-ସ୍ତବକ-ଦୀପେ କରାଉଛି
ବାତ ହାତେ ବନ୍ଦାପନା ।
ପଲାଶ ଥାଳୀରେ ପୁଷ୍ପଗୁଚ୍ଛ ରଖି
ଦେଉଛି ଶାଖା ହସ୍ତରେ,
ଲୂତା ସୂତା ଗୁନ୍ଥା ପ୍ରସୂନ ମାଳିକା
ଝୁଲଏ ଉର ଉପରେ ।
ଗାଉଛନ୍ତି ଯହିଁ ପଞ୍ଚମ ସ୍ୱରରେ
କୋକିଳ ମଧୁପ ଆଳୀ,
ଭୂଧର ଶିଖରେ ବାଜୁଛି ସୁସ୍ୱରେ
ମଧୁର ଗଳ-ଜାହାଳୀ ।

କେକୀ ପୁଚ୍ଛ ଟେକ ଶିଖରିବକ୍ଷରେ
ନାଚୁଅଛି ଫେରି ଫେରି,
ଗିରି କନ୍ଦରୁଁ ଉଚ୍ଛୁଳି ପଡ଼ୁଛି
ଋକ୍ଷ ବଦନ ଭେକି ।
ଉପଦ୍ୱୀପପ୍ରାପ୍ତ ନାନା ଜାତି ଫଳ
ପ୍ରବାହେ ଆସଇ ଭସି,
ପକ୍ୱ ଜମ୍ବୁଫଳ ନୟନେ ବାହିନୀ
ଦେଖେ ପିତୃଶୋଭାରାଶି ।
କଣ୍ଟିଲୋ ଗ୍ରାମରେ ଶ୍ରୀନୀଳମାଧବ
ଦକ୍ଷିଣରେ ବିରାଜିତ,
ଖଣ୍ଡପଡ଼ନର ଧରିତ୍ରୀପାଳଙ୍କ
ଧନ ଗୌରବେ ପୂଜିତ ।
ନଦୀଗର୍ଭୋତ୍ଥିତ ଶୀତଳ ସମୀର
ମନ୍ଦେ ମନ୍ଦେ ଯାଉଅଛି,
ଶ୍ରୀଅଙ୍ଗ ତୁଳସୀ ସୁରଭି ପ୍ରସାଦ
ଘରେ ଘରେ ଦେଉଅଛି ।
ବାମପାର୍ଶ୍ୱେ ଗିରି ତଳେ ବସିଛନ୍ତି
ବଡ଼ାମ୍ବା-ଶ୍ରୀଭଟ୍ଟାରିକା,
ଧନଦ ତଟସ୍ଥ ତିଗିରିଆ ରାଜ୍ୟେ
ବିଜୟେ ଆଦ୍ୟ ଚର୍ଚ୍ଚିକା ।
ଏହି ତିଗିରିଆ ଚମ୍ପୂ ପୃଷ୍ଠେ ବସି
ଭାରତେ ହେଲା ପ୍ରକାଶ,
ମୃଗନାଭିଟିଏ ଧରିବାରୁ ଦିନ
ଚହଟି ଗଲା ତା ବାସ ।
ସେ ଚମ୍ପୂ ରଚକ ତୋ ଅଙ୍ଗ ବର୍ଣ୍ଣନ
କରିଛନ୍ତି ସ୍ରୋତସ୍ୱତି !
ସୁଧା ବାହିନୀର ତରଙ୍ଗ-ଜୟିନୀ
ଯାହାଙ୍କର ସରସ୍ୱତୀ ।
ନଦୀ ମଧ୍ୟେ, ତଟେ, ଶୈଳେ ସିଦ୍ଧନାଥ
ସୋମନାଥ ବୈଦ୍ୟନାଥ,
ତ୍ରିଭୁଜ କ୍ଷେତ୍ରରେ ବିରାଜି ଅଛନ୍ତି
ଅନାଥମାନଙ୍କ ନାଥ ।
ଯମଦଗ ତଟ-କ୍ଷୁଦ୍ରଗିରି କୂଟେ
ରଣ ଚର୍ଚ୍ଚିକାଙ୍କ ବାସ,

ବାଙ୍କୀ ଦେଶବାସୀ ବଳିଦାନ କରି
ସଂକଟ କରନ୍ତି ନାଶ ।
ବାମେ ସ୍ୱପ୍ନେଶ୍ୱର ବିଜେ କରିଛନ୍ତି
ଅଡାଗଡ଼ ଗିରି ଶିରେ,
ଜଳୀୟ ଶୀକର ନେଇ ସମୀରଣ
ଅଭିଷେକ କରେ ଧୀରେ ।
ସୁବର୍ଣ୍ଣପୁରର ତୀର ଅଧିଦେବ
ମାଧବ ଭୂତିଆ ଦେବ,
ସୁବର୍ଣ୍ଣକେତକୀ ନାମରେ କେତକୀ-
ପ୍ରିୟ ସେହି ମହାଦେବ ।
ଡ଼ମପଡ଼ନର ନଦୀ ଦକ୍ଷତୀର
ଘଣ୍ଟୋଲମା ଗିରିତଟେ
ମହାସମାରୋହେ ଚୈତ୍ର ପୌର୍ଣ୍ଣମାସୀ-
ଦିନେ ଉତ୍ସବ ପ୍ରକଟେ ।
ଦେବୀ ରାମଚଣ୍ଡୀ ଦକ୍ଷତୀର ମଣ୍ଡି
ହୋଇଛନ୍ତି ଦୌବାରିକା,
ଦେଉଛନ୍ତି ଯେଉଁ ଅନୁଗ୍ରହ ଫଳ
ହେଉଅଛୁ ତହିଁ ବିକା ।
ବାଙ୍କୀ ଶେଷସୀମା ଅଚଳେ ମହିମା
ପ୍ରକାଶି ଅମାଙ୍ଗୀ ନାମ,
ସର୍ବ ଦୁଃଖରାଶି ଦେଉଛନ୍ତି ନାଶି
ନଦୀମଧ୍ୟେ କରି ଧାମ ।
ବାମତଟ ଅଷ୍ଟ-ଦୁର୍ଗେ ମହାଦେବ
ସର୍ପେଶ୍ୱର ଦୟାମୟ,
ଦେଇ ଜ୍ଞାନାଞ୍ଜନ ଭକତ-ନୟନ
କରୁଛନ୍ତି ସୁଖମୟ ।
ନାରାୟଣୀ ଦେବୀ ରହି ବାମଭାଗେ
ଆମ୍ରକାନନବାସିନୀ,
ସାଧକମାନଙ୍କ ସୁଭପ୍ରିୟା ହୋଇ
ସର୍ବାପଦ-ନାଶିନୀ ।
ମହାନଦୀ ଜଳ-ଅଭିଷେକପ୍ରିୟ
ବାମେ ମଙ୍ଗେଶ୍ୱରଦେବ,
ନିତ୍ୟ ଅଭିଷେକ-କାରିର କପାଇଁ
ଦୁଃଖ ବିନାଶ ନ ହେବ ।

ନଦୀ ଉଦରରେ ଧବଳ-ଈଶ୍ୱର
ଗୁହାରି-ଜନ-ପୂଜିତ,
କାଳା ବଳଦକୁ ଧଳା କରିବାରୁ
ଧବଳ ନାମ ଉଦିତ ।
ଦୁଇ ତୀରେ ଯେତେ ଦେବ ଦେବୀମାନେ
ରହିଛନ୍ତି ଆମୋଦରେ,
ଚଣ୍ଡୀପୀଠର ପୁଣ୍ୟ ପବିତ୍ରତା
ପ୍ରକାଶୁ ଅଛି ଲୋକରେ ।
କଟକ ଛଟକ ଦେଖି ଅଟକିଲା
ଦ୍ୱୀପବତୀର ସୁମନ,
କାଠଯୋଡ଼ି ବାହୁ ବିସ୍ତାରି କୁତୁକେ
କରି ଅଛି ଆଲିଙ୍ଗନ ।
ଭୁଜ ଅନ୍ତରାଳେ ଆଦରେ ଧରିଛି
ପ୍ରକୃତି-ସାଧୁସ୍ୱଭାବ ।
କାହିଁ ବ୍ରାହ୍ମସଭା କାହିଁ ଖ୍ରୀଷ୍ଟସଭା
କାହିଁ ହରିଭକ୍ତି ଭାବ ।
ଶ୍ୱେତାଙ୍ଗ-ସଦନ-ଶୁଭ୍ର ଅଟ୍ଟାଳିକା-
ମଣ୍ଡିତ ତୀର-ବିପଣୀ,
ବିଭବ ସମ୍ପତ୍ତିରେ ନଗର ହୋଇଛି
ଅମରାବତୀ-ବରଣୀ ।
କାଠଯୋଡ଼ି ତୀରୁଁ ବଡ଼ାନାଟି ଯାଏ
ଉପଲରେ ରୋଧସଙ୍କା,
ତୋ ଅଙ୍ଗେ କୀରତି ରଖି ଯାଇଛନ୍ତି
ମର୍କତକେଶରୀ ରାଜା ।
ତୋ ତୀରବିହାରୀ ରାୟ କବିବର
ଚିନ୍ତାଶୀଳ ଅନ୍ତରତେ,
"ମହାନଦୀ ନାମ ରହିଲା ଗୁପତେ"
ବୋଲି ଭାବୁଥାନ୍ତି ତୋତେ ।
ତୋ ଦେହରୁ ଶୈତ୍ୟ ନେଇ ଗନ୍ଧବାହ
ତୀରବାସିଙ୍କୁ ଦେଇଛି,
ତାହାଙ୍କ ସନ୍ତାପ ନେଇ ଅବ୍ଧିଗର୍ଭେ
ବାଡବ ଛଳେ ଥୋଇଛି ।
ସିକ୍ତ କରି ଜଳ ଶ୍ରେଣୀଇ ବଣିକେ
ବିକନ୍ତି ପ୍ରଜାବର୍ଗରେ,

ବନ୍ଧା ହୋଇ ପଡ଼ିଅଛି ଚନ୍ଦ୍ରୋତ୍ପଳା
ଯୋବର୍ ଘାଟ ମଧ୍ୟରେ ।
କଟକୁଁ ବାହାରି ବହୁଶାଖା ହୋଇ
ଚଳଇ ଉଲ୍ଲାସଭରେ,
ଶାଳପୁର ଯାଇ ଭଗବତୀ ପାଦେ
ଲୋଟଇ ଭକ୍ତି ବେଗରେ ।
ସରସ୍ୱତୀ ନାଦ ଶ୍ରବଣେ ପଡ଼ନ୍ତେ
ଗତି ହୋଇଲା ସ୍ତିମିତ,
ଅବସର ପାଇଁ ବାଟ ଦେଖୁଅଛି
ମାନସ କରି ଚକିତ ।
ମହାଗିରିରାଜ ସଦୃଶ୍ୟ ଅସଂଖ୍ୟ
କଲ୍ଲୋଳ-ବାହୁ ପ୍ରସାରି
ଜୁଆର ଛଳରେ ପାଶ୍ଚେଟି ଆସଇ
ସେ ପାଶ୍ଚାତ୍ୟ ସଭ୍ୟତାସ୍ତ୍ରୀ ।
ତରଙ୍ଗେ ତରଙ୍ଗ ସ୍ୱଭଙ୍ଗରେ ଭଙ୍ଗ
ଊର୍ମି ଊର୍ମି ମିଶାମିଶି,
ଉଭୟ ମିଳନ ଈଶ୍ୱର କାରିତ
ରହିଅଛି ଦବା ନଶି ।



# ହରିଆ ତନ୍ତି

BY

**Govind Rath.**

( Born 1848, Died 1918)

କହିବା ଅଳ୍ପ    ତନ୍ତିର ଗଳ୍ପ
ଶୁଣ ହେ ସକଳ ଭାଇ ।
ହରିଆ ତନ୍ତି    ମାଡିଲା ମତି
ବସିଲା ମନରେ ଧାଇ । ୧ ।

ନଗର ପ୍ରାନ୍ତ    ବସି ଏକାନ୍ତ
ହରିଆ କରଇ ଧାନ ।
କି କାର୍ଯ୍ୟ କଲେ    ସହଜେ ଭଲେ
ମିଳିବ ବହୁତ ଧନ । ୨ ।

ସକାଳୁ ଉଠି    ଖରାକୁ ପିଠି
ଦେଖାଇ ବସିଣ ପଥେ ।
ଯାହାକୁ ଦେଖେ    ପାଖକୁ ଡାକେ
ପଚାରେ କହିବ ମୋତେ । ୩ ।

କପଟ କଲେ    ସହଜେ ଭଲେ
ମିଳିବ ବହୁତ ଧନ ।
ହସିଲେ ଥୋକେ    କହିଲେ ଲୋକେ
ପାଗଳ ହେଲା କି ମନ । ୪ ।

ଗୋଟିଏ ଲୋକ    ଆସିଲା ପାଖ
କହିଦେଲା କାନେ କାନେ ।
କରିବୁ ଗୃପ    ଗୋଟିଏ ଘାସ
ନ ଥିବ ଏକା ଯେ ସ୍ଥାନେ । ୫ ।

ଖରଡ଼ି ବୁଣା    ଅଟଇ ସୁନା
ସେ ଯୋଗ ମିଳଇ ନାହିଁ ।
ବହୁର ବୁଣା    ଚଷାକୁ ଜଣା
ନ ହୁଅଇ କେବେ କାହିଁ । ୬ ।
ହରିଆ ଶୁଣି    ଉଠିଲା ପୁଣି
ଘରଠାରେ ହେଲା ଯାଇ ।

ଆନନ୍ଦ ମନ ମିଳିବ ଧନ
ପୁଅକୁ କହିଲା ଚୁହିଁ । ୭ ।
ଆରେ ମୋ ଧନ ବଳାଅ ମନ
କରିବାକୁ ଚୁଷ ଯାଇ ।
ଆମ୍ଭର ଭାତ ଖାଇବେ ସାତ
କାହାକୁ ମାଗିବା ନାହିଁ । ୮ ।
ଚୁଷ ବିଷୟର ବାପ ପୁଅର
ନିଷ୍ପତ୍ତି କରିବା ହେଲା ।
ଚଷିବା ପାଇଁ ହରିଆ ଯାଇ
ହଳ ସଜ କରି ନେଲା । ୯ ।
ସେ ବାପ ପୁଏ ମିଳିଣ ଦୁହେଁ
ଖୋଜିଲେ ନିଘାସ ଜମି ।
ଯହିଁକି ଗଲେ ତାହା ଦେଖିଲେ
ସବୁ ଅଟେ ଘାସ ଭୂମି । ୧୦ ।
ରବି କିରଣ ଦେହେ ବାଜିଣ
ବୋହିଲା ଦେହରୁ ଝାଳ ।
ଲଭିଲେ ପୀଡ଼ା ହୋଇଲେ ଛାଡ଼ା
ଖୋଜିଲେ ତୃଷାରେ ଜଳ । ୧୧ ।
ନଦୀର ତୀରେ ମିଳିଲେ ଧୀରେ
ଜଳ ପାନ କରିବାକୁ ।
ଦେଖିଣ ଖାଲି ନଦୀର ବାଲି
ହରିଆ କହେ ପୁତ୍ରକୁ । ୧୨ ।
ଦେଖ ରେ ଧନ କେମନ୍ତ ସ୍ଥାନ
ଗୋଟିଏ ନାହିଁ ରେ ଘାସ ।
ଭାଗ୍ୟକୁ ଚୁହିଁ ମିଳିଲା ଯାଇ
କର ହଥ ଓଡ଼େ ଚୁଷ । ୧୩ ।
ବାପର କଥା ଶୁଣିଣ ମଥା
ହଲାଇ କହଇ ପୁଅ ।
ବାହା ବାହା ବା ଠିକ ରେ ବାବା
ବନ୍ଧନ ଆଣିଣ ଥୁଅ । ୧୪ ।
ଶୁଣ ସୁଜନେ ଏକାନ୍ତ ମନେ
ପୁଅ ବାଲି ଚୁଷ କଲା ।
ହରିଆ ଚିନ୍ତ ପ୍ରଭୁଙ୍କୁ ଚିନ୍ତ
ଗୃହରେ ପ୍ରବେଶ ହେଲା । ୧୫ ।

ଘରଣୀ ଖାଇ ଦେଲା ବଢ଼ାଇ
ବାହନ ଧାନକୁ କାଢ଼ି ।
ହାଣ୍ଡିରେ ଭରି ସୁନ୍ଦର କରି
ଖରଡ଼ ଗୋ କେତେ ଭାଡି । ୧୬ ।

ଚଉଷି ନାଷି ଶ୍ରବଣ କରି
ସେହିପରି ସବୁ କଲା ।
ହରିଆ ଧାନ କରି ବନ୍ଧନ
ବାଲରେ ପ୍ରବେଶ ହେଲା । ୧୭ ।

ଗୁଣିରତନ ହରିନନ୍ଦନ
ଆନନ୍ଦରେ ଧାନ ବୁଣି ।
ହଳୁଆ ଗୀତ ଗାଇ ଭୁରିତ
ମଇରେ ଚଢିଲେ ପୁଣି । ୧୮ ।

ପଟାଏ ମଇ ତହିଁରେ ଦେଇ
ଆନନ୍ଦ ମନରେ ହୁନ୍ଦେଁ ।
ଜଳରେ ମିଳି ଛଡ଼ାଇ ଧୂଳି
ଫିଲଲେ ଆସିଣ ଗୃହେ । ୧୯ ।

କଲେ ଭୋଜନ ଉଭୟ ଜନ
ହରି ଖୁସି କଥା କହେ ।
ଖରଡ ବୁଣା ଅଟଇ ସୁନା
ସେ ଫଳ ସମ୍ଭାଳ ନୁହେ । ୨୦ ।

ଗୋବର ଜେନା କହନ୍ତି ସିନା
ଢଇଠା ନାଳିଆ ଧାନ ।
ଆମ୍ଭର ଦେଖ ବଢ଼ିବ ଭେକ
ଖାଲି ଧାନ ଘରମାନ । ୨୧ ।

ଖରଡ ବୁଣା ଶୁଖିଲା ସୁନା
ନାହିଁ ରେ ମନରେ ଧୋକା ।
ଖାମ୍ଭୁଡ ହୋଇ କାମ୍ଭୁଡ ହୋଇ
ମରିବ ଗୋବର୍ କାକା । ୨୨ ।

ହରିଆ ଅନ୍ଧ ଆଶାରେ ବନ୍ଧ
ବାନ୍ଧିଲା ହରଷେ କେତେ ।
ସ୍ୱରଗପୁର ନୁହଇ ଦୂର
ହରିର ଭାବନାମତେ । ୨୩ ।

ସେ କଥା ଯାଉ   କହିବା ଆଉ
ଏଣିକି ଯେ କଥା ହେଲା ।
ଦ ଭିନ ଦିନ   ଘୁଡ଼ିଣି ପୁଣି
ହିର ବଲ ଦେଖି ଗଲା । ୨୪ ।

ଖରଡ଼ା ଧାନ   ବୁଣା ଦେଖିଣ
ବାଇଆ ଚଢ଼ାଇ ଦଳ ।
ଖୁମ୍ପି ଖୁମ୍ପିଣ   ଥଣ୍ଟେ ଧରିଣ
ଖାଉଛନ୍ତି କଳ କଳ । ୨୫ ।

ଧାନକ କ୍ଷେତ   ଆଉଠା ମାତ
ବସନ୍ତ କରନ୍ତି ମଜା ।
ତାଙ୍କର ଭୟ   କାହିଁକି କହ
ନୁହନ୍ତି ରଜାର ପ୍ରଜା । ୨୬ ।

ହିରିଆ ଦେଖି   ହୋଇଲା ଦୁଃଖୀ
ହୋ ହୋ ଡାକ କେତେ କରି ।
ବିରସ ମନ   ବଲ ଘୁଡ଼ିଣି
ଘରକୁ ଅଇଲା ଫେରି । ୨୭ ।

ପୁଅ ଆଗରେ   ଦୁଃଖଭରରେ
କହିଲା ସକଳ କଥା ।
ପାଞ୍ଚଣି ବାଉ   ଧରି ଦଉଡ଼ି
ପୁଅ ଉଠେ କ୍ଷୀର ଯଥା । ୨୮ ।

ବାପ ପୁଅର   ବିଚାର ସ୍ଥିର
ଦଉଡ଼ିରେ ବାନ୍ଧ କରି ।
ଗୋଟାକୁ ଗୋଟା   ଧରିଣ ପିଠା
ପିଟି କରି ଦେବା ମାରି । ୨୯ ।

ବିଲରେ ଯାଇ   ପ୍ରବେଶ ହୋଇ
ଚଢ଼ାଇଙ୍କି ଗୋଡ଼ାଇଲେ ।
ଏ ପାଖେ ଗଲେ   ସେ ପାଖେ ଗଲେ
କାହିଁ ଧରି ନ ପାରିଲେ । ୩୦ ।

ସୁବୁଦ୍ଧି ପୁତ   ଭାବି ବହୁତ
ବାପକୁ ସମ୍ବୋଧି କହେ ।
ଉପାୟ ଅଛି   ଧରିବା ବାଛି
ବୁଦ୍ଧି ନ ଖଟିଲେ ନୁହେ । ୩୧ ।

ହାଟକୁ ଯିବା     କିଣି ଆଣିବା
ପାଚିଲା କଦଳୀ କିଛି ।
ଏହାଙ୍କୁ ଦେବା     ଜଗି ବସିବା
ପଛ ଆଡ଼େ ଲୁଚି ଲୁଚି । ୩୨ ।

ଖାଇଲା ବେଳେ     ଧରିବା ବଳେ
କୁଆଡ଼େ ଯିବେ ପଳାଇ ।
କଦଳୀ ରସ     ବଡ଼ ସରସ
ଥଣ୍ଟ ଲାଗି ଯିବ ତହିଁ । ୩୩ ।

ଏତେ ବିଚାରି     ଅଇଲେ ଫେରି
ହାଟରୁ କଦଳୀ କିଣି ।
ଚୋପା ଛଡ଼ାଇ     ବିଲରେ ନେଇ
ପକାଇଲେ ଫେଣି ଫେଣି । ୩୪ ।

ଚଢ଼ାଇଗଣ     ଆନନ୍ଦ ମନ
ଫରଫର ହୋଇ ଉଡ଼ି ।
ଏଠାରେ ଖାଇ     ସେଠାରେ ଖାଇ
ଯାଆନ୍ତି କେଉଁଠା ଛାଡ଼ି । ୩୫ ।

ହରିଆ ତନ୍ତି     ମାତିଛି ମତି
ପୁଅଟି କଡ଼ରେ ଥାଏ ।
ଅତି ସଧୀରେ     ପଦ ସଞ୍ଚାରେ
ଛପି ଛପି ପଛେ ଯାଏ । ୩୬ ।

ଚଢ଼ାଇ ପାଶ     ହେଲେ ପ୍ରବେଶ
ଚଢ଼େଇ ହୁଅଇ ଫୁରୁଁ ।
ହରିଆ ତନ୍ତି     ବିକଳ ମତି
ପିଲା ପୁଅ ହସେ ଖୁରୁଁ । ୩୭ ।

ଏମନ୍ତ କରି     ବହୁତ ଫେରି
ଚଢ଼ାଇ ଧରିବା କଥା ।
ନୋହେ ସଫଳ     ମନ ବିକଳ
ରମ୍ଭାଫଳ ହେଲା ବୃଥା । ୩୮ ।

ବ୍ୟଥିତ ମନେ     ଆସି ସଦନେ
ତୋଡ଼ାଣି ଟିକଏ ସାରି ।
ଛନ୍ତର ପାଶେ     ବସି ହରଷେ
ସୂତା କାଟେ କଣ୍ଠା ଧରି । ୩୯ ।

ଏ ଅନ୍ତେ ଶୁଣ  ସୁଜନ ଜନ
ବେଳ ହୋଇଲା ଅବସାନ ।
ରଙ୍ଗ ବସନ  ପିନ୍ଧି ତପନ
ଅସ୍ତଗିରି କଲେ ସ୍ଥାନ । ୪୦ ।

ଅଳପ କ୍ଷଣେ  ଆସି ଗଗନେ
ଘୋଟିଲାକ ମେଘମାଳ ।
ହୋଇଲା ବରଷା  ମାଡ଼ିଲା ରସା
ସମ୍ଭାଳି ନୁହଇ ଜଳ । ୪୧ ।

ହରିଅ ଭାବେ  ଏଥର ତେବେ
କାଦୁଅରେ ଲକ୍ଷି କର ।
ଚଢ଼ାଇ ଦଳ  ହୋଇ ବିକଳ
ଯିବେ ଜୀବନରେ ମରି । ୪୨ ।

ସେ ଦିନ ଗଲା  ରାତି ପାହିଲା
ବାପ ପୁଏ ଉଠି କରି ।
ଧାନ ବିଲରେ  ମିଳି ବେଗରେ
ଦେଖିଲେକ ଫେରି ଫେରି । ୪୩ ।

ସବୁ ନିର୍ମଳ  ଟିକଏ ଜଳ
ବିଲର ଉପରେ ନାହିଁ ।
ଚଢ଼ାଇ ଯାଇ  ଅଛନ୍ତି ତହିଁ
ମାଛ ଗୋଠ ଗୋଠ ହୋଇ । ୪୪ ।

ସକଳ ପଡ଼ି  ଯାଇଛି ସଡ଼ି
କଦଳୀ ଖରଡ଼ା ଧାନ ।
ସ୍ୱଭାବତରେ  ହେବେ ତହିଁରେ
ମାଛ ବସି ଭଣ ଭଣ । ୪୫ ।

ହରିଅ ମତି  ତା ବିପରୀତ
ଭାବିଣ ପୁତ୍ରକୁ କହେ ।
ଚଢ଼ାଇ ଗଲେ  ମାଛ ଅଇଲେ
ଏ ଦୁଃଖ ହୃଦୟୁ ଦହେ । ୪୬ ।

ଧାନର ଗଜା •  ଖାଇଣ ମଜା
ମାରନ୍ତି ଅଭୟ ମନେ ।
ଏହାଙ୍କ ପାଇଁ  ଉପାୟ କାହିଁ
ଗତି ମିଳେ ଏ କେମନ୍ତେ । ୪୭ ।

ପୁଅ କହିଲା ଉପାୟ ଭଲ
କରିବା ଗୃଦର ପାଡ଼ି ।
ଏଥି ବସିଲେ ବାନ୍ଧିବା ଭଲେ
ମାରିବା ମାଛରେ ପୋଡ଼ି । ୪୮ ।

ପିତା ପୁତ୍ରର ମଧ୍ୟରେ ସ୍ଥିର
ଏହି କଥା ଯହୁଁ ହେଲା ।
ହରଷ ଯାଇ ଅନନ୍ଦ ହୋଇ
ଗୃଦର ପକାଇ ଦେଲା । ୪୯ ।

ବସିଲେ ଲୁଚି କେତେକ ମାଛ
ଆସିଲେ ଲୁଗାକୁ ଯହୁଁ ।
ପିତା ପୁତ୍ରରେ ଅତି ସଧୀରେ
ମିଳଲେ ଅଧିଣ ତହୁଁ । ୫୦ ।

ଗୃଦର କାନ ଠେକନ୍ତେ ଝାଣି
ମାଛ ଉଡ଼ି ଗଲେ ତହୁଁ ।
ଗଳାରେ ଗଳା ହରି ଡ଼ାକଲା
ମାଛଙ୍କି ଧରିବ କାହୁଁ । ୫୧ ।

ଉପାୟ ବ୍ୟର୍ଥ ହେଲା ଅନର୍ଥ
ଭାବିଲେ ବାଲିରେ ବସି ।
କବା ଉପାୟ ମକ୍ଷିକାରିପୁ
ମାରିବା ସହଜେ କଷି । ୫୨ ।

ସୁବୁଦ୍ଧି ପୁତ୍ର ଭାବି କହୁଛି
ଉଠି ଉଚ୍ଚେ କହେ ବାଣୀ ।
ଅଛି ରେ ବୋପା ଭାବନା କପାଁ
କାଣ୍ଡ ଘଟେ କାଲ ଆଣି । ୫୩ ।

ଦେଖିବା ଥରେ ମାଛ ନ ମରେ
କେତେ ବାହାଦୁର ସେହି ।
ମୁଁ ତ କହୁଛି ନୁହେ ତୋ ବସି
ରହିବେ ଯେବେ କ କେହି । ୫୪ ।

ସେଠାରୁ ଗଲେ ଶୁହେ ମିଳଲେ
ସେ ଗ୍ରାଉଳ ଘରେ ରହି ।
ସକାଳୁ ଉଠି ଅଇଲେ ପିନ୍ଧି
ବୀରବେଶ ସାଜ ତହିଁ । ୫୫ ।

ହାତରେ କାଣ୍ଡ ଧର ପ୍ରଚଣ୍ଡ
ହୁଙ୍କାରେ ସେ ହରସୁତ ।
ଭାବଇ କବ ଦେଖି ସେ ଛବ
ସ୍ତବଣ କ ହେବ ହତ । ୫୬ ।
ଶୁଣ ସୁଜନ ଦେଇଣ ମନ
ଏ ଅନ୍ତେ ଅପୂର୍ବ ରସ ।
ବନତ କରେ ଧରବ ଥରେ
ମୁଖରେ ମୁଡ଼ୁକ ହସ । ୫୭ ।
ହନଅ ତନ୍ତ୍ର ମାଉଛୁ ମତ
ବଲ ଗୃର ପାଶେ ବୁଲ ।
ଏଣି ଢେଣିକ ଚଡ ମାଛୁଙ୍କି
ଛୁଡ଼ା ହେଲ ଗୃଲ ଗୃଲ । ୫୮ ।
ହର ଖ୍ରତରେ ଅଡ ସ୍ଥିରେ
ବସିଲ ମାଛୁଏ ଆସି ।
ପୁଅକୁ ଠାର କହିଲ ହର
ମାର କାଣ୍ଡ ଧର କଷି । ୫୯ ।
ଫୁଟିଲ କାଣ୍ଡ ହର ବ୍ରହ୍ମାଣ୍ଡ
ଦେଖିଲେ ଚକ୍ଷୁକୁ ମେଲ ।
ପଡଲେ ଶୋଇ ସ୍ୱନ୍ଦର ହୋଇ
ବାଲକୁଦ ଠେଲ ଠେଲ । ୬୦ ।
ଆରେ କ ହେଲ ବାପ ତ ମଲ
ଚନ୍ଦ୍ରପୁଅ କାନ୍ଦେ ଗୃହିଁ ।
କବ ବଚନ ନବୋଧ ଜନ
ଏହିମତେ ଫଲ ପାଇ । ୬୧ ।
ହେ ଶିଶୁଗଣ ବିନୟ ଘେନ
ଜ୍ଞାନମଞ୍ଜି ସବୁ ଧର ।
ହୃଦ କେଦାରେ ସ୍ଥିର ବର୍ଷରେ
ଗୃଷ ବାସମାନ କର । ୬୨ ।



# Selections from the writings

OF

# Nandakishor Bal B. A.

( ୧ )

## ଗ୍ରାମ-ଚାଟଶାଳୀ

ଗ୍ରାମ ମଧ୍ୟେ ଗ୍ରାମ-ଚାଟଶାଳୀ,
ଯମଦଣ୍ଡ ଅବଧାନ ନାଳୀ,
ବାଲମେ ଯେତେ ଅସିବ "ଶୂନ" ଖାଇ ପ୍ରାଣ ଯିବ,
'ଏକ' 'ଦୁଇ' ମାଗି ଛଡ଼େ ହୁଅନ୍ତି ବାହାର,
"ଛପ ନ ଶୁଖୁଣୁ ବଧି ଖାଇ ଅସିବାର"।

ଗୁରୁଙ୍କର ବିଦ୍ୟା ଅପ୍ରମିତ,
ଜାଣନ୍ତି ସେ ଶ୍ଳୋକ ଛନ୍ଦ-ଗୀତ,
ମହାଜନୀ-ଜମିଦାରୀ — ହିସାବରେ ଅଣ୍ଟ ଭାରି,
ଲେଖା ଯୋଖା ଖଡ଼ିପାଠେ ଅଛି ଧୁରନ୍ଧର,
'ପୁରି' 'ଭଉଁରିଆ' ଲେଖା ଅପୂର୍ବ ସୁନ୍ଦର।

କମିଜରିବରେ ଅଛି ଜ୍ଞାନ,
ଗ୍ରାମେ "ଗୁଣିବିଦ୍ୟା"ରେ ପ୍ରଧାନ,
ଅପାର ତାଙ୍କ ମହିମା, ନାହିଁ ସେ ବିଦ୍ୟାର ସୀମା,
ଏକାଧାରେ ସମାବିଷ୍ଟ ଅହା କେତେ ଗୁଣ,
ଅମୂଲ୍ୟ ଅଟଇ ଅହା ଅତୁଲ ନୈପୁଣ୍ୟ।

ମନେ ପଡ଼େ ଶୈଶବର ଦିନ,
( ଅତୀତ ଗର୍ଭରେ ଯାହା ଲୀନ ),
ଯେବେ ମାତାଙ୍କୁ ଲୁଚାଇ ଲେମ୍ବୁ ଅଗର ଚୋରାଇ
ଦେଇ ବେଣ୍ଟାଧାରୀଙ୍କୁ ଛଡ଼େ ପାଉଥିଲେ ତ୍ରାହି,
ଏଭଳ ସୁଯୋଗ କଏ ଛାଡ଼ ପାରେ ଭାଇ।

'ଠ' — ପଢ଼େ ବସି କେଉଁ କୋଣେ,
'ଫିକିରସ୍ତୁ' ପଢ଼େ ଅନ୍ୟ ଜଣେ,
ଚର୍ଚ୍ଚା ହୁଏ ନାନା ପାଠ — ସଙ୍ଗେ ଅପ୍ରମିତ ଶାଠ,—
'ସତରଫଲା' ପଢ଼ିଣ ଅଲପ ବରଷେ
ଶାଢ଼ୀ ଦେଇ 'ମାତ୍ରା' 'ବନା' ପଢ଼େ ବେ ହରଷେ

ପଣିକିଆ-ସାଦା-କଡ଼ା-ପାହି,
ସୋଧି, ଓଡ଼ାଙ୍କ, ମେଲାଙ୍କ ଗାଇ
ହରିଗୁଣ, ଫେଡ଼ିମିଶା, ଅଙ୍କଗୁଣା, ଧରି ଦିଶା
ସାଦା-କାଣି-ଦସ୍ତି-ହାତ-ସମ-ବିଷମାଦି—
ଜଲ ପଢ଼ିଛନ୍ତି ଥୋକେ ଛାନ୍ଦ କାନ୍ଦି କାନ୍ଦି ।

ଉଆଣି, କୁଠା, କ୍ରୟ-ବିକ୍ରୟ,
ମହାଜନୀ-ହିସାବନିରୂପ,
ଶେଷରେ ଅସଲ୍-ହିବ୍, ପଢ଼ିଲେ ଯା ଶେଷ ସବୁ,
ଲୀଲାବତୀସୂତ୍ର ପୁଣି ଘୋଷେ କେଉଁ ଗୃହେ,
ମହାକୋଳାହଳେ କମ୍ପେ ଗ୍ରାମ, ବାଟ, ଘାଟ !

ଲେଖି ଅପରାହ୍ନେ ତାଳପତ୍ର
ବୋଲି ପୁଣି ରସ ଭାଗବତ
ନାନାବିଧ ଛାନ୍ଦମାନ ଧରି ଉଚ୍ଚ ତାନମାନ
ଗାଉଥାନ୍ତି ଛାତ୍ରବୃନ୍ଦ ବସାଇ ରାଗିଣୀ,
ଗୃହେ ବସି ଶୁଣନ୍ତି ତା ଗ୍ରାମସୀମନ୍ତିନୀ ।

ପ୍ରଦୋଷେ ବାଳକେ ଶ୍ଳୋକ ସ୍ତୁତି
ପୂର୍ବପାଠ କରନ୍ତି ଆବୃତ୍ତି,
ନିଃଶେଷି ସର୍ବ ସାହିତ୍ୟ ପଢ଼ନ୍ତି ପୁଣି ଗଣିତ,
ଗୁରୁଙ୍କ ଭୋଜନାସନ କରଣ ବିଧାନ
ଯଥାକାଳେ କରନ୍ତି ସେ ସ୍ୱଗୃହେ ଗମନ ।

ହାଟ ଦିନ 'ହାଟଗଣ୍ଡା' ନେଇ
ପ୍ରଣମନ୍ତି ଗୁରୁ ପାଶେ ଦେଇ,
ଜ୍ୟୋତିଷ 'ବଡ଼ଗୃହେ' ଯାଉଁ ଗୃଲ ଗୁରୁ ହାଟେ
'କ-କା-କେ-କୈ' ବଜନ୍ତି ସକଳ,
ସେ ଘୋର ଗର୍ଜନେ କମ୍ପେ ବ୍ରହ୍ମାଣ୍ଡମଣ୍ଡଳ ।

କେହି ଯେବେ ବଡ଼ଗୃହେ କାମ
ନ କରନ୍ତି ବିଧି ତାର ବାମ,
ଆସିଲେ ଗୁରୁ 'ଛିଙ୍କିଆ' 'ଏକଗୋଡ଼କିଆ-ଠିଆ'
'ମଡ଼ୁଆ-ଶାଙ୍ଖୁଳ' ଆଦି କେତେ କେତେ ଦଣ୍ଡ
ଦେଇଣ କରନ୍ତି ତାଙ୍କୁ ମହାଲଣ୍ଡଭଣ୍ଡ ।

ଯେଉଁ ଧନ ପଢ଼ଇ କମାଇ
ଶିଷ୍ୟଗଣ ଇନ୍ଦ୍ରସୁଖ ପାଇ
ଛାଡ ଖଡ ମେଣ୍ଢା ଧରି          ଗାଆନ୍ତି ରାଗିଣୀ ଧରି
ଭଞ୍ଜ-ଦୀନକୃଷ୍ଣ-କୃତ ଛନ୍ଦବନ୍ଧମାନ,
ସେ ଗୀତ ଶ୍ରବଣେ ଆହା ମୋହିତ ମୋ ପ୍ରାଣ ।

ଭାଦ୍ରେ ପଡ଼େ ଗଣେଶଚତୁର୍ଥୀ,
ଧରନ୍ତି ବାଳକେ ମହାସ୍ଫୂର୍ତ୍ତି,
ଦେଇ ନାନା ଉପାଦାନ          ସଜାଡ଼ି ଶୃଙ୍ଗଡ଼ାମାନ,
'ପେଡ଼ିଲୁଗା' ପିନ୍ଧି, ଶିରେ ଘେନଣ ଚନ୍ଦନ,
ଇଷ୍ଟପୂଜା ଅର୍ଥେ ହର୍ଷେ କରନ୍ତି ଗମନ ।

ପୁଣ୍ୟ-ଶ୍ରୀପଞ୍ଚମୀ ମାଘମାସେ
ପୂଜନ୍ତି ସେ ଇଷ୍ଟ ଉପବାସେ,
ଘେନ ଚଡ଼ା ନାରିକେଳ          ହୋଇ ଛାତ୍ରବୃନ୍ଦ ମେଳ
ନାନାରଙ୍ଗେ ଗାଇ ଗୀତ ଫେରି ଘରେ ଘରେ
ଅର୍ଜନ୍ତି ଗୁରୁଅର୍ଥେ ଅର୍ଥ ମହାହର୍ଷଭରେ ।



( ୬ )

## ବର୍ଷା ଗୀତ



ମେଘ ବରଷଇ ଝିପିର ଝିପିର
କେଶୁର ମାଇଲା ଗଜା,
କେଉଁ ଗାଇଜରେ ରହିଲେ ରଜା ଗୋ
ତେଲଙ୍ଗୀ ବାଇଦ ବଜା ।
ମେଘ ବରଷଇ ଝିପିର ଝିପିର
ସୁଅରେ ବହଇ ପାଣି,
ପାଣିରେ ଡାକନ୍ତି କେଏଁ କଣ୍ଠର ହୋ
ବେଙ୍ଗ ଓ ବେଙ୍ଗୁଲି ରାଣୀ ।
ନୂଆ ପାଣି ପାଇ ଦାଣ୍ଡେ ଦୁବଘାସ
ଚକା ଚକା କଅଁଳଲା,
ନାଲି ଗୁଲୁ ଗୁଲୁ ପାଟଶାଢ଼ୀ ପିନ୍ଧି
ସାଧବବହୂ ହସିଲା ।
ଅଳତା ସମାନ ରକତ ବନର
ଓଳପାଣି ପଡ଼େ ତଳେ,
ତଳ ପାଣି ସଙ୍ଗେ ମିଶି ଗଲାବେଳେ
ମୋତି ଫୁଲ ପରି ଝଲେ ।
ପାଣିର ଫୁଟୁକା ଫୁଟି ଯାଏ ଭାସି
କ୍ଷଣକେ କାହିଁ ଉଭାଏ,
'ସାଧବଘରର ବହୂ ବୁଡ଼ି ମଲା'
ବୋଲି ନାଚନ୍ତି ପିଲାଏ ।
ନୂଆ ପାଣି ପାଇ ଫୁଟି ଉଠେ ଛତୁ
ହୁଙ୍କା ବାଲଅର୍କ ବଳେ,
ସକାଳୁ ଉଠିଣ ଗୁଙ୍ଗୁଡ଼ା ଧରିଣ
ପିଲାଏ ଛତୁ ତୋଳଲେ ।



( ୩ )

## ଡାମରା କାଉ

୧

ଡ଼ାମର୍ କାଉ ରେ ଡ଼ାମର୍ କାଉ,
ଉଞ୍ଚ ପରବତେ ବୋବାଉ ଥାଉ ।
ଉଞ୍ଚ ପରବତ ଘୂଞ୍ଚିଘୂଞ୍ଚିକା,
ତହିଁରେ ବସିଛୁ ଭଜନମଞ୍ଜିକା ।
ଭଜ ଭଜ ପଣ ଅଠର ପଣ,
ଭାଇଙ୍କୁ ଡ଼ାକାଇ କଉଡ଼ି ଗଣ ।
କଉଡ଼ୀ ଗଣାରେ ପାହିଲା ରାତି,
ଗୋରେ ନେଇଗଲା କଜଳପାତି ।
ଷାଠିଏ ଟଙ୍କାର ବଳଦ ମଲା,
ଏକା କାଲୀ ଗାଈ ମଥାନ କଲା ।
ଆସ ଗୋ ସଙ୍ଗାତ ଗାଧୋଇ ଯିବା,
କାଇଞ୍ଚକାକୁଡି ତୋଳ ଆଣିବା ।
କାଇଞ୍ଚକାକୁଡି ମୁଣ୍ଡରେ ପିନ୍ଧା,
ଛଅ ବୋହୂଙ୍କର ଛଅ ଦୁହିତା ।
ମଝିଆ ବୋହୂ ଯେ ଲବଙ୍ଗଲତା,
ସବାସାନ ବୋହୂ ଗଜମୁକୁତା ।
ଲବଙ୍ଗଲତାକୁ ଗଜମୁକୁତା
କହିଲେ ଭଉଣୀ କହ ଗୋ କଥା ।
ସୁଖ କହିବ କି ଦୁଃଖ କହିବ,
ଅଙ୍ଗେ ନଭଇବା କଥା କହିବ ।

୨

ସାଧବ ଘରର ଛଅଟି ପୁଅ,
ରଜାଘର ଥିଲେ ଛଅଟି ଝିଅ ।
ଛଅ ଭାଇଯାକ ବୋଇତେ ଗଲେ,
ଦେଶ ବିଦେଶରେ ବଣିଜ କଲେ ।
ଅଣ୍ଟିଧାରୁ ନବରତନ କେତେ
ଜାହାଜେ ଭରିଲେ ଯାହାକୁ ଯେତେ ।

ମଝି ଦରିଆରେ ଝଡ଼ ବହିଲା,
ଅଥପାମଣ୍ଡପେ ବୋଇତ ଗଲା ।
ଅଥପାମଣ୍ଡପେ ଅସୁର ପୁଅ,
ଜଗିଅଛି ଛଅ ରଜାର ଝିଅ ।
ଅସୁରକୁ ମାରି ହୋଇଲେ ବାହା,
ଛଅ ଭଉଣୀ ଯେ ଛଅଟି ଜାଆ ।
ପରଶପଥର ମାଆ ଯେ ଦେଲେ,
ଛଅ ଝିଅଯାକ ପଣନ୍ତେ ନେଲେ ।
ପକ୍ଷିରାଜ ଘୋଡ଼ା ଛଅଟି ଭାଇ
ରଜାଘରୁ ନେଲେ ଯୌତୁକ ପାଇ ।
ଛଅ ବର କନ୍ୟା ଚଢିଣ ଗଲେ,
ଆପଣା ରାଇଜେ ମିଳିଲେ ଭଲେ ।
ଦୁବ ବରକୋଳି ବନ୍ଦାଣଥାଳି,
ବନ୍ଦାଇଲେ ସାତ ସଧବା ବାଳୀ ।
ଧନରତ୍ନ ଘେନି କଲେ ସେ ଘର,
ସରିଗଲା ଏଠି କଥା ମୋହର ।



( ୪ )

## ହୋଓ ରେ ବାଇଆ ହୋଓ



( ୧ )

ବିଲରେ ପାଚଇ ରଙ୍ଗିଣୀ ଧାନ ଗୋ
ହୋଓ ରେ ବାଇଆ ହୋ,
ଯେଉଁ କିଆରରେ ବହୁତ ଧାନ ଭୁ
ସେଇ କିଆରରେ ଶୋଓ ।
ଝୁଣୁ ଝୁଣୁ ପାଚ ବାସନା ଧାନ ଗୋ
ନାଲି ଗୁଲ୍ଲୁ ଗୁଲୁ ଦିଶେ,
ଥାଳି ଗୁଳ ଦେଲେ ଗୋଟିଏ ପାଖରୁ
ବୁଲିଣ ଆସିବ କି ସେ ?

( ୨ )

ଭେଦୁଅ ମାସରେ ମାଣ୍ଡିଆ ପାଚଇ
ହୋଓ ରେ ବାଇଆ ହୋଓ,
ଯେଉଁ କିଆରରେ ଗହଲ ମାଣ୍ଡିଆ
ସେଇ କିଆରରେ ଶୋଓ ।

( ୩ )

ମାଣ୍ଡିଆ ବାଡରେ ଶଲର୍ ବାଡ଼ ଗୋ
ଝୋକେଇଲୁଣ୍ଡେଇ ଫୁଲ୍,
ଝୋପଲ ଧରଣ କୃଷ୍ଣ ତୋଳବେ ଗୋ
କିଏ ଦେବ ତାର ମୂଲ ?
ଥିର ଥିର କର ତୋଳବୁ କୃଷ୍ଣ ରେ
କଣ୍ଟା ପଶିଯିବ ହାତେ,
ଲକ୍ଷେ ଚକ୍ଷା ଦେଇ କେତେ ଆଉରରେ
ଧନ ରେ ପାଇଛୁ ତୋତେ ।

( ୪ )

ବାଡ ଗୁରପାଖ କଣ୍ଟେଇ କୋଳି ଗୋ
କୃଷ୍ଣ ତୋଳି ଯିବ କୋଳି,
କୋଳି ଖାଉଁ ଖାଉଁ ଶିଆଳି ଲଟାରେ
କୃଷ୍ଣ ଖେଳୁଥିବ ଦୋଳି ।

ଶିଆଳି ବଣରେ ବାଇଆ ବସା ଗୋ
ହୋଓ ରେ ବାଇଆ ହୋଓ,
ଯେଉଁ କିଆରିରେ ଗହଳ ଧାନ ଭୁ
ସେଇ କିଆରିରେ ଶୋଓ ।

( ୫ )

ବାଇଆ ପୁଅର କିସ ଯାଉଛୁ ସେ
ବାଆ କଲେ ଦୋହଲୁଛି,
ଲମ୍ବ ତାଳଗଛ ବାଉଁ ବରଡ଼ାରେ
ବସାରେ ବହିଛି ଲୁଚି ।
ଗଜା ବଉଦଳୁ ଖର ପବନ ଗୋ
ଉଡ଼ାଇ ନିଏ ବହନ,
ଦାଣ୍ଡ ତାଳଗଛେ ଦୋହଲି ଦୋହଲି
ବାଯ୍ଥା ଗ୍ରବେ ଘନ ଘନ ।

( ୬ )

ଦୁଇ କୂଳ ଖାଇ ବହିଅଛି ନଈ
ପାଲରେ ପାଚିଛି ଧାନ,
ପଲ ବାନ୍ଧି ପକ୍ଷୀ ଅକାଶେ ଉଡ଼ନ୍ତି
ଶୁଭୁଥାଏ ତାଙ୍କ ଗାନ ।
ତା ଶୁଣି ପିଲାଏ ଗାଉଥାନ୍ତି ଗୀତ
ହୋଓ ରେ ବାଇଆ ହୋଓ,
ଯେଉଁ କିଆରିରେ ବହୁତ ଧାନ ଭୁ
ସେଇ କିଆରିରେ ଶୋଓ ।



( ୫ )

## ଅତୃପ୍ତ-ପ୍ରେମ



କାହିଁ ବିଶ୍ୱସଂସାର ଏଡ଼େ ସୁନ୍ଦର—
ନିର୍ଜୀବ ଅଚେତନ ଚେତନ ନର ?
କହିଁ ବାର ମାସରେ ପ୍ରକୃତିରାଣୀ
ପ୍ରକାଶନ୍ତି ଅଶେଷ ଲାବଣ୍ୟ ଠାଣି ?
କପାଇଁ ଊଷା ସନ୍ଧ୍ୟା ମୋହନବେଶେ
ହସନ୍ତି ଆସି ନିତି ଏ ବିଶ୍ୱଦେଶେ ?
ନୀଳ ଘନ-ଅଙ୍କରେ ଚପଳାସରି
ମଣ୍ଡଇ ଧରା କହିଁ ନାରୀ ସୁନ୍ଦରୀ ?
କପାଇଁ ରବେ "କୁହୁକୁହୁ" କୋକିଳ,
କାହିଁକି ବହେ ମୃଦୁ ମଳୟାନିଳ ?
କପାଇଁ କଅଁଳଇ ଦ୍ରୁମଲତିକା,
କପାଇଁ ଚହଟଇ ପୁଷ୍ପକଳିକା ?
ରବେ କପାଇଁ ବସି ବିହଙ୍ଗ ଡାଳେ,
କହିଁ ଗଗନୁଁ ଇନ୍ଦୁ ଅମୃତ ଢାଳେ ?
କାହିଁକି ବିଶ୍ୱପ୍ରାଣ ବିମୁଗ୍ଧ କରି
ରମଣୀ-କଣ୍ଠୁଁ ଉଠେ ତାନଲହରୀ ?
ଏ ସୁଖେ ମୋ ପ୍ରାଣର ତୃପତି ନାହିଁ,
ଅନ୍ତର ଲୋଡ଼େ ଯାହା ସେ ମୋର କାହିଁ ?
ଥିଲେହେଁ ବନ୍ଧୁ ତୋୟ ନଦୀ ସାଗରେ,
ଚାତକ-ଆଶା ହିନା ଘନନୀରରେ ।
ମେଣ୍ଟିବାର ନୁହଇ ମୋ ପ୍ରାଣ-ଆଶ,
ନୈରାଶ୍ୟସିନ୍ଧୁ ଜଳେ ଦେଇଛି ଝାସ ।
ନିୟତି-ନୀରେ ଭାସିଗଲା ମୋ ଆଶା,
ପ୍ରକାଶି ନ ପାରଇ ମୋ ଦୁଃଖ ଭାଷା ।
ଛିନ୍ନ ହୋଇଛି ମୂଳୁଁ ମୋ ସୁଖ-ଦ୍ରୁମ,
ପଡ଼ିଛି ବୃନ୍ତୁଁ ଝଡ଼ି ପ୍ରୀତି-କୁସୁମ ।
ଗଲା କଥା ଭାବିଲେ କି ହେବ ଆଉ,
ବିସ୍ମୃତି ଗରଭେ ସେ ଡୁବେଇ ଯାଉ ।

ଉଜାଣି ସନ୍ତରଣ କାଳସ୍ରୋତର
ବାଞ୍ଛିତ ଧନ ପାଇ ପାରେ କି ନର ?
ଦେଲ କାମନା ଯେବେ ହେ ଭଗବାନ,
ନୈରାଶ୍ୟେ ଭାଙ୍ଗି ଦେଲ କପାଁ ଏ ପ୍ରାଣ ?
ଯେ ଯାହା ଲୋଡ଼େ ଭବେ ନ ମିଳେ ତାହା,
ପ୍ରବଞ୍ଚେ ପ୍ରାଣ ତାର ଆଶାର ମାୟା ।
ତୃଷାରେ ଜର୍ଜ୍ଜରିତ ହୁଏ ଅନ୍ତର,
ଆଶା-ମରୀଚିକାରେ ବିଭ୍ରମେ ନର ।
ଯାହାକୁ କରିଥାଇଁ ପ୍ରାଣର ଧନ,
ଏଡ଼ି ସେ ନିଜ ପଥେ କରେ ଗମନ ।
ଜୀବନ-ବସନ୍ତରେ ପ୍ରେମର କଢ଼ି,
ଫୁଟି ଅକାଳେ ତଳେ ପଡ଼ଇ ଝଡ଼ି ।
ନୈରାଶ୍ୟେ ଭଗ୍ନ ହୁଏ ଆଶାଯୃ-ପ୍ରାଣ,
ନୁହେ ସଂସାର ସୁଖଶାନ୍ତିର ସ୍ଥାନ ।
ତଥାପି ଭାଙ୍ଗି ନ ଯା ଆରେ ଅନ୍ତର,
ମହାଶୁଭ ଉଦ୍ଦେଶ୍ୟ ଏ ବ୍ରହ୍ମାଣ୍ଡର ।



## ( ୭ )

## ଶର୍ମିଷ୍ଠା

### ଷଷ୍ଠ ସର୍ଗ



ଦିନେ ନରନାଥ ଗହନ କାନନେ
ମୃଗୟା ଉଦ୍ଦେଶେ ଗଲେ,
ପିପାସା-ଆତୁର ନହୁଷନନ୍ଦନ
ମିଳିଲେ ବିବିକ୍ତସ୍ଥଳେ ।
ଲାବଣ୍ୟର ହାଟ ବସିଛି ତହିଁରେ
ଫୁଟେ ଶୋଭାଫୁଲମାଳା,
ବନକ୍ରୀଡ଼ା ଅବା କରୁଛନ୍ତି ବନେ
ଶର୍ମାଗୋଷ୍ଠୀ ବନବାଳା ।
ଅଳପବୟସୀ ଅଳପକେ ହସି
ଗଳପ କରନ୍ତି ବସି,
ଛନ ଛନ ମନ ନବ ଯଉବନ—
ନବରସେ ଛନ୍ତି ରସି ।
ଧନ୍ୟ ରେ ଯୌବନ ଧନ୍ୟ ତୋ ଉନ୍ମାଦ
ଧନ୍ୟ ତୋ ମୋହ-ଆବେଶେ,
ଯାହା ଯୋଗୁଁ କ୍ଷଣ ବିଭାସଇ ଜନ-
ନେତ୍ରେ ମଧୁମୟ ବେଶେ !
ଲତିକାଗହଳେ ତରୁଶାଖାତଳେ
ବସିରୋହା ତିନ ଶ୍ୟାମା
ନିବିଷ୍ଟଭାବରେ ବିଶ୍ରବ୍ଧ ଆଳାପେ
ରତ ସେ ନବୀନା ରାମା ।

ଏକ ଅଟେ ଗୁରୁ ଶୁକ୍ରାଚାର୍ଯ୍ୟସୁତା,
ବେନି ପ୍ରିୟ ସହଚରୀ,
ଇତର ସଖୀଏ ମଧୁପାନରତା
ସୁଦୂର ବନେ ବିଚରି ।
ଦୈତ୍ୟଗୁରୁ ଶୁକ୍ର- ସୁତା ଦେବଯାନୀ
ଧରିଛି ସଙ୍ଗିନୀ-କର,

ଶୁକ୍ରମୁଖ ଦର୍ଶେ    ଅଧିକ ସୁନ୍ଦର
ଲଭେ ଶୁଷ୍କା ବିଷାଦର ।
ଅନ୍ତରାଳେ ରହି    ବିଶ୍ରମ୍ଭ-ଆଳାପ
ଶୁଣିଲେ ହସ୍ତିନାରାଣ,
ଶିରେ ଉଠେ ନୃପ—    ହୃଦୟଶୋଣିତ,
କୋଟମୁଖ ତାଙ୍କ କାନ ।
ପ୍ରିୟା-ସୁଧାବାଣୀ    ପିଇ ଯାଆନ୍ତି ସେ
ଶୋକ ସର୍ବ ଇନ୍ଦ୍ରପୁରେ ?
ପ୍ରିୟା-ତନୁ ଶୋଭା    ନେତ୍ର ମାତ୍ର ହୋଇ
ଦେଖନ୍ତି ଅପଲକରେ ?
ପୁଚ୍ଛଇ ସଜନୀ    "ସଖି ଦେବଯାନି,
କହ ଏ ରୋଗନିଦାନ,
ଅନୁଦିନ ସହି !    ଶୁଖିଯାଉ କିପାଁ
କହ ତୋତେ ମୋହ ରାଣ ।
କହ ସଖି ! ଆଉ    ନ ଲୁଚାଅ ମୋତେ
କିପାଁ ତୋ ମଳିନ ମୁଖ,
ଥିଲୁ ଗରବିଣୀ    ଚିର ହରଷିତା
ଭୋଗୁ କି ନୀରବ ଦୁଃଖ ?"
ସଖୀ ମଧୁବାଣୀ    ଶୁଣି ଦେବଯାନୀ
କହେ ବ୍ରୀଡ଼ାନତ ମୁଖେ,
"ଆଉ କେତେ କାଳ    ବିଷ ପେଟେ ଭରି
ରହିଥିବ ସଖି! ଦୁଃଖେ ?
ନ କହି ତୋ ଆଗେ    କା ଆଗେ କହିବି
ତୁ ଦୁଃଖଭାଗିନୀ ମୋର,
ପରାଣବେଦନା    ଊଣା ହେବ ହେଲେ
କହିଲାରୁ ଆଗେ ତୋର ।
ଯେଉଁ ଦିନୁ ସହି !    ଅଜ୍ଞାତ ପଥିକ
ଛୁଇଁଲେ ଏ ମୋର ତନୁ,
ମନ୍ତ୍ର ଇନ୍ଦ୍ରଜାଲ    ଲୁହିଲେ ଯେସନ
ସୁଖ ଶୁଖିଗଲା ମନୁ ।
ଅଧିକ ଦିନ ମୁଁ    ବଞ୍ଚିବି ନାହିଁ ଲୋ,
ଖରବେଗେ ମୃତ୍ୟୁପଥେ
ଯାଉଛି ଏ ପ୍ରାଣ    ସଖି ! ଅନୁଦିନ
[illegible] ।

ବନ ପୋଡ଼ିଗଲେ          ଜାଣନ୍ତି ସକଳେ,
    ନୀରବରେ ପୋଡ଼େ ମନ,
ମନ ପୋଡ଼ିଗଲେ          ସଙ୍ଗେ ସଙ୍ଗେ ହୁଏ
    ଦଗଧ ବିଶ୍ୱଭୁବନ ।
ମନ ସିନା ସବୁ          ସୁଖର ନିଦାନ
    ମନଟି ଦୁଃଖକାରଣ,
ମନେ ଯେବେ ନାହିଁ          ସୁଖ ଏ ସଂସାରେ
    ସବୁ ହୁଏ ଅକାରଣ ।
ନାହିଁ ଯାହା ପିଣ୍ଡେ          ନାହିଁ ତା ବ୍ରହ୍ମାଣ୍ଡେ
    ସୃଷ୍ଟି ମନ-ଅନୁଯାୟୀ,
ସାରା ସୃଷ୍ଟି ଶୂନ୍ୟ          ଶୁଷ୍କ ମରୁ ସମ
    ମନେ ଯେବେ ସୁଖ ନାହିଁ ।
ପ୍ରାଣପ୍ରିୟତମ          ପାଶେ ଯେ ସୁଧାଂଶୁ
    ଅମୃତ ଚନ୍ଦ୍ରିକା ଢାଳେ,
ସେ କୌମୁଦୀ ପୁଣି          ହୁଏ ହଳାହଳ
    ପ୍ରଣୟି-ବିରହ-କାଳେ ।
ସୁଖେ ଯାହା ଯୋଗେ          ସୁଖ ବଢ଼େ, ଦୁଃଖେ
    ଦୁଃଖ ବଢ଼େ ତାହାପାଇଁ,
ଗରଳୁଁ ଅମୃତ          ହଳାହଳୁଁ ସୁଧା
    ମିଳେ ଭାଗ୍ୟ-ଅନୁଯାୟୀ ।
ନାହାନ୍ତି ଜନନୀ          ମନ-କଥା ଜାଣି
    ଜନକଙ୍କୁ ଯେ ବୁଝାନ୍ତେ,
ଅଭାଗୀ ମୁଁ ସଖି !          ଅଛି ନିରମାଖୀ
    ଗଲେ ମାତା ମୋ ଜନ୍ମାନ୍ତେ ।
କିପରି କହିବି          ପିତାଙ୍କୁ ଲୋ ମୋର,
    ଚିରଭକ୍ତ ତାଙ୍କ ସୁତା
ଅଜ୍ଞାତ ପୁରୁଷେ          ପରାଣ ଅରପି
    ହେଲା ତାଙ୍କ ଅଙ୍କଚ୍ୟୁତା !
ପାଇବ ଯେବେ ସେ          ପ୍ରିୟ ଦରଶନ
    ପଦେ ପ୍ରାଣ ସମର୍ପିବ,
ନୋହିଲେ ଆଜନ୍ମ          ସଂସାର ବର୍ଜି
    ମୁନିବ୍ରତ ଆଚରିବ ।
ଅବା ଏ ଜୀବନ—          ତରୁ କାଳସ୍ରୋତେ
    ଖସି ପଡ଼ି ଯିବ ବୁଡ଼ି,

ପ୍ରାଣବିହଙ୍ଗମ ନିମନ୍ତ୍ରିତ ନୀଡ଼
ତେଜି ଯିବ ଶୂନ୍ୟେ ଉଡ଼ି ।"
ବିହରିଣୀ ବାଣୀ ଶୁଣି ନୃମଣିଙ୍କ
ଦୁଲୁ ଦୁଲୁ ପଡ଼େ ଛାତି,
ସଂଶୟ ଦୋଳାରେ ଦୋଳାୟିତ ଖରେ
ଆଶାୟୀ ଯୁବା ଯଯାତି ।
ପୁଚ୍ଛିଲେ ମନକୁ କେଉଁ ଭାଗ୍ୟବନ୍ତ
ରମାହୃଦସିଂହାସନେ
ଅଭିଷିକ୍ତ ? ନିଜେ ନିଜକୁ ବସାନ୍ତି
ଓହ୍ଲାନ୍ତି ସନ୍ଦିଗ୍ଧମନେ ।
କହଇ ଚପଳା ବିଧବା ମଲ୍ଲିକା
ପରିହାସମୟୀ ବାଳା,
ହସି ହସି ଯେହ୍ନୁ ଶୁଣି ସଖୀବାଣୀ
ଗୁନ୍ଥୁଥିଲା ବନମାଳା ।
ପ୍ରିୟତମା ସଖୀ- ବିଷମ ସଙ୍କଟ
ଦେଖିଣ ଚିନ୍ତିତମନା,
ପ୍ରେମେ ତା ନିବୃତ୍ତି ଆଶେ କଲା ବ୍ୟାଜେ
ପ୍ରେମେ ସଂଶୟ ସୂଚନା ।
"କହିବା କେମନ୍ତେ ଏଡ଼େ ବଡ଼ ମିଥ୍ୟା
ଗୁରୁଙ୍କ ଆଗରେ ଯାଇଁ,
ଏ ସଂସାରେ କେହି ଅଳ୍ପଯାଏ ସହି !
ବିରହେ ତ ମରେ ନାହିଁ ।
କେତେ ନର ନାରୀ ମରୁଛନ୍ତି ଭବେ,
ଦେଖୁଅଛୁ ମୁହିଁ ନିତି,
ରୋଗ, ଜରା, ଜନ୍ତୁ— ଦଂଶନ, ଦୁର୍ଯୋଗ
ତା ହେତୁ; ନୁହଇ ପ୍ରୀତି ।
କେବେ ଶୁଣି ନାହିଁ ବିରହେ ପ୍ରଣୟୀ—
'ପ୍ରଣୟିନୀ-ତନୁତ୍ୟାଗ,
ଅନୁରାଗେ ସତୀ ନ ମରନ୍ତି କେବେ,
ଦଗ୍ଧ ନୋହୁଁ ଦେହ ଆଗ ।
ରତି ଦମୟନ୍ତୀ ପାର୍ବତୀ ସାବିତ୍ରୀ
ଦୁଃଖେ ମଲେ କେତେ ଜଣ,
ପ୍ରେମ ଉନ୍ମତ୍ତତା ଯୌବନର ଗୁଣ,
ଉଲ୍ଲ-ଅ[illegible]-ପକ୍ଷ ।

କାମ ପ୍ରେମ ଦୁହେଁ    ପ୍ରୀତି-ଛନ୍ଦାଛନ୍ଦ
ଅନୁରାଗ ହୁଏ ଅଙ୍ଗେ,
ଦେଖିଁ ଦେଖିଁ ସଙ୍ଗ-    ଲାଳସା ଜନ୍ମଇ
ପ୍ରଣୟୀର ଅଙ୍ଗସଙ୍ଗେ ।
ଦର୍ଶନେ ପୀରତି    ବିଚ୍ଛେଦେ ବିସ୍ମୃତି
ପ୍ରୀତି-ରହସ୍ୟ ମୁଁ ଜାଣେ,
ତେଣୁ କାହା ମୁଖ    ଦେଖି ହେଲେ ସୁଖ
ସ୍ଥାନ ନ ଦିଏଁ ତା ପ୍ରାଣେ ।
ଅଙ୍ଗରାଗ ସୁଖ    ଅତେଇ ଦିନର,
ବଢ଼ଇ ଅଳପକାଳେ,
ସମ୍ଭୋଗେ ବିତୃଷ୍ଣା    ଜନ୍ମେ କାଳକ୍ରମେ
ମୋହ ତୁଟିଯାଏ ଡ଼ାଳେ ।
ଦେଖିଅଛି ମୁହିଁ    କତ ବିରହରେ
ହୋଇଥିଲୁ ସହି ! ବାଇ,
ସଂକଳ୍ପ କଲୁ ତୁ    ପ୍ରାଣବିସର୍ଜନ,
ଚିର ବଇଧବ୍ୟପାଇଁ ।
ଗଲା କଥା ସହି !    ଗଲଣି ଭୁଲିଇ,
ଜଗତର ଏ ବେଭାର,
ସର୍ବେ ସ୍ୱାର୍ଥବଶ    ବାସନାର ଦାସ,
ନୁହନ୍ତି କେହି କାହାର ।
ଶଙ୍କର ବିବାହେ    ଦ୍ୱିତୀୟ ବିବାହ
ମଣି କାଞ୍ଚନରେ ମିଶି,
ତୋର ଶୁଭ୍ରଯଶ    ଯୁଗ ଯୁଗାନ୍ତର
ରହିଥିବ ଦିଶି ଦିଶି !
ଭୁଲିଯାଏ ଯାହା    ନ ପଶୁରେ କେହି
ଏ ଜଗତ ବିନଶ୍ୱର,
ଅବ୍ୟର୍ଥ ଔଷଧ    ବିସ୍ମୃତି ସଖି ଲୋ !
ଭବେ ସର୍ବ ବିଷାଦର ।
ଯଯାତି ନୃପତି    ଶତଦାର-ପତି,
ନୃପତିଙ୍କ ପ୍ରୀତି କାହିଁ ?
ଶିଶିରେ ସନ୍ତରୁ    ବୃଥା କପାଁ ସଖି !
ସପତ୍ନୀ ହେବାକୁ ବାଇ ?
ନ ଜାନ ନ ଜାନ    ପ୍ରିୟ ସଜନ ଲୋ !
ଛଦ୍ମବେଶେ ମୁହିଁ ଯିବି,

ଯଯାତି ନୃପତି ଚରଣ ଠାଣିଣ
ତୋହ୍ମ ଦୁଃଖ ନିବେଦିବ ।
କହିବ, "ଶୁଣ୍ରାଜ ସଖୀ ନଗ୍ନ ତନୁ
କୂପୁଁ ଉଠାଇ ରାଜନ !
କରଣ ଗାନ୍ଧର୍ବ ବିଧାନେ ବିବାହ
କଲ କପାଁ ବରଜନ ?
ଘେନ ଆସ ତାକୁ ନୋହିଲେ ମୁଁ ଆଜ
ହସ୍ତିନା-ଅଧିକରଣେ
ଅବେଦନ କରି ଦିଆଇବ ଦଣ୍ଡ
ମହାଧର୍ମୀଙ୍କ ହାସନେ ।
ନ ଶୁଣିଲେ ମୋର ଗୁହାରି ରାଜନ
ଦେଶେ ଦେଶେ ମୁଁ ବୁଲିବ,
ନାରୀହନ୍ତା ବୋଲି ଅକୀର୍ତ୍ତିନାଗରା
ବଜାଇବ ଡିବ ଡିବ ।"
କହନ୍ତି ସଜନୀ, "ସଖି ଦେବଯାନି !
ବିଷମ ସମସ୍ୟା ହେଲା,
ଅନ୍ଧ ପରି ମନ କନ୍ଦର୍ପ ଚଣ୍ଡାଳ
ଅମୃତେ ଗରଳ ଦେଲା ।
କପଟ ସହି ଲୋ ! ବିକଳୁ ପରାଣ
ଏଡେ ଗୃଣ୍ଡେ ଏ ପ୍ରକାରେ,
ଏଡ଼େ ପଥରକୁ ଛାଡି ପଡାଇବା
ଦେଖା ନାହିଁ ଏ ସଂସାରେ ।
ଯଯାତି କ୍ଷତ୍ରିୟ ତୁ ବ୍ରାହ୍ମଣକନ୍ୟା
ବିଷମ ସମସ୍ୟା ହେଲା,
ବିଷମ କ୍ଷେତ୍ରରେ ବିଷମବିଶିଖ
ଫୁଲଶର ପେଷି ଦେଲା ।
ଅଗାଧ ଜଳକୁ ଗୋଡ଼ ବଢ଼ାଇଲୁ
ବୁଡି ଯିବୁ ନ ଉଠିବୁ;
ସର୍ବବର୍ଣ୍ଣଶ୍ରେଷ୍ଠ ବ୍ରାହ୍ମଣକୁଳରେ
କଳଙ୍କ କାଳି ଲେପିବୁ ?
ତୋର ପିତା ଗୁରୁ. ଶୁକ୍ରାଚାର୍ଯ୍ୟ, ଦେବ
ଦାନବେ ଯା ଅନୁଚର,
ଛତ୍ରପତି ଦାନ— ବେଶ ବୃଷପର୍ବା
ଅଟନ୍ତି ଶିଷ୍ୟ ତାଙ୍କର ।

ଦୂତ ମୁଖୁଁ ଶୁଣା    ଅଚ୍ଛ ନରେଶ୍ୱର
ଚହ୍ନା ନ ଦେଇ ସେ ଧୀର
କୂପୁଁ ଉଦ୍ଧାରିଲେ    ତୋତେ ସେ ଯଯାତି
ହସ୍ତିନାଧିପତି ବୀର ।
ବ୍ରାହ୍ମଣତନୟା    ନ ଜାଣି ନ ଶୁଣି
କ୍ଷତ୍ରିୟ ପୁରୁଷେ ଅହା
ବରିଲୁ ପରାଣ—    ପସରି ସଜନ !
ଧର୍ମଭୀରୁ ନରନାହା ।
ଗୁରୁ ଶୁକ୍ରାଚାର୍ଯ୍ୟ    ଶାସ୍ତ୍ରଶେଷଦର୍ଶୀ
ଶଙ୍କିବ ବିବାହମତେ
ଏଡ଼େ କୁଳାଚାର    ନିକୃଷ୍ଟ ବିବାହ
ଦେବେ ତୋତେ ସେ କେମନ୍ତେ ।"
ସଖୀ ବାଣୀ ଶୁଣି    କ୍ଷୁଣ୍ଣା ଦେବଯାନୀ
କହେ ବିଷଣ୍ଣ ବଦନେ,
"କ୍ଷତେ କ୍ଷାର ଦେଲ    କିପାଁ ପ୍ରାଣସହି !
ଦହୁ ଏ ଦଗଧମନେ !
ମନାଇଲ ଯେତେ    ଅବୋଧ ମନକୁ
ମନା ତ ମାନିଲା ନାହିଁ,
କହ ସହି ! କେଉଁ    ରାଜ୍ୟେ ପଳାଇବ,
ପ୍ରୀତି ଦାଉ ନାହିଁ କାହିଁ ?
ଗଲା ଜାତି ମାନ    ଗୁରୁ ଗଉରବ,
ପ୍ରୀତି କଲା ଏତେ ସର,
ଏଡ଼େ ବଡ଼ କୁଳେ    କଳଙ୍କ ଲେପିଲି !
ନ ଗଲି କିପାଁ ମୁଁ ମରି ?
ସମ ଜାତି କୁଳେ    ସମ ଅବସ୍ଥାରେ
ପ୍ରୀତି ସିନା ସୁଶୋଭନ,
ମୋର ପ୍ରୀତି ସମ    ହଟହଟା କଥା
ନ ଥିବ ଏ ତ୍ରିଭୁବନ ।
କେଉଁ ଦୋଷେ ମୋତେ    ନିଦାରୁଣ ବିଧି
ଠେଲିଲେ ପାପଜନ୍ମାଳେ,
ବିରହେ ବିଦଗ୍ଧ    ହେଉଛି ହୃଦୟ
ମେଣ୍ଟିବ କି ତୃଷା କାଳେ ?
ମୁହୂର୍ତ୍ତିକ ମଣେ    କୋଟି ଯୁଗ ସରି
କି କରିବି ଯିବି କାହିଁ,

ରଖିବ କି ଏହି ପରାଣ ଚେଳବ,
କିଛି ବୁଝି ଦିଶୁ ନାହିଁ ।
କହ ପ୍ରାଣସଖି ! ସେ ସ୍ୱର୍ଗଲୋକରେ
ପ୍ରୀତି-ଦାଉ ଅଛି କି ନା,
ପ୍ରାଣେଶ-ବିଚ୍ଛେଦେ ନିଦିବ ଭାବିବ
ଅଶାନ୍ତି-ନରକ ସିନା ।
ପୂର୍ବଜନ୍ମକର୍ମ— ଫଳେ କି ପଡ଼ିଲି
ଘୋର ପାପ-ସିନ୍ଧୁ ଜଳେ,
ଉଠିବାକୁ ମୋର ମନ ବଳୁ ନାହିଁ
ବୁଡ଼ି ଯାଉଛି ଅତଳେ !
ପାପ ବୋଲି ଯାହା କହେ ଜାତିମାନ
ଲାଗେ ମୋତେ ପୁଣ୍ୟଫଳ,
ଦେଜ ପ୍ରେମ ସଖି ! ଅଣିବାକୁ ଶ୍ରେୟ
ପରାଣେ ମୋ ନାହିଁ ବଳ ।
ମରିବାକୁ ମୋର ପ୍ରିୟ ସଜନ ଲୋ !
କେତେଁ ସତ ବଳୁ ନାହିଁ,
ମରେ ଅଶା-ହୀନ, ମରିବ ସେ କିପାଁ
ପ୍ରେମେ ଯେ ହୋଇଛି ବାଇ ।
ଚଉଦଭୁବନ ପୂର୍ଣ୍ଣ କରେ ପ୍ରେମ
କିଛି ଶୂନ୍ୟ ନ ଦିଶଇ,
ପ୍ରେମିକ ପ୍ରେମିକା ପରସ୍ପରେ ଭୁଲି
ନ ପାରନ୍ତି କାହିଁ ରହି ।
ପ୍ରୀତି ନ ମାନଇ ଜାତି ସଜନ ଲୋ !
ପ୍ରୀତି ନ ଲୋଡ଼ଇ ପଦ,
ଦେଶ କାଳ ପାତ୍ର ବିଗୁର ନ ରହେ
ପିଇଦେଲେ ପ୍ରୀତିମଦ ।

* * *



( ୭ )

## ସୀତାବନବାସ

ତୃତୀୟ ସର୍ଗ



### ଶୁଦ୍ଧାନ୍ତ ସୁଖ

ରାଗ—ରାମକେରୀ

ସଖୀ ସଙ୍ଗେ ସୀତା ଶୀତାଂଶୁ- ମୁଖୀ ସାକେତପୁରେ
ବସି ବନବାସ-ବାରତା ବାହୁନନ୍ତି ମଧୁରେ ।
ଯୋଡ଼ି କର ପରିଚାରିକା ଆସି କହେ ବାରତା,
"ବିଜେ ହେବେ ପୁରେ ନରେନ୍ଦ୍ର, ରଘୁକୁଳକରତା ।"
ଶୁଣି ଅଳୀବ୍ରଜ ରାଣୀଙ୍କ ପାଶୁଁ ହେଲେ ଅନ୍ତର,
ଭାନୁ ଉଦେ ଯଥା ପରାଚୀ- ପୁରୁଁ ତାରାନିକର ।
ପ୍ରଶାନ୍ତ ମୂରତି ଶ୍ରୀରାମ ସୁପ୍ରସନ୍ନ ଶ୍ରୀମୁଖ
ରାଜୀବନୟନା ଜାନକୀ ଚାହିଁ ଲଭନ୍ତି ସୁଖ;
ପ୍ରଶାନ୍ତ ସୁନୀଳ ଅମ୍ବରେ ଶୋଭାବତୀ ଧରଣୀ
ବିକଚକୁସୁମ ଲୋଚନେ ନିରେଖଇ କି ଧନୀ ?
ଆସନ୍ତେ ପ୍ରାଣେଶ ପାଶକୁ ଉଠି ଆୟାସେ ସତୀ
କୋକନଦ କରେ ନମନ୍ତି କାନ୍ତେ ଦୋହଦବତୀ ।
"ବସ, ବସ" ବୋଲି ଶ୍ରୀରାମ ଆସି କଲେ ବାରଣ,
ନିରେଖିଲେ ସ୍ନିଗ୍ଧନୟନେ ପ୍ରିୟା-ପଦ୍ମବଦନ ।
ଭାନୁକରେ ନବନଳିନୀ ଯେହ୍ନେ ଉଠଇ ହସି
କାନ୍ତଦରଶନେ ତେସନ ହେଲେ ରାମ-ପ୍ରେୟସୀ ।
କୁଶଳ-ପ୍ରଶନ ପଚାରି ବସି ଅଯୋଧ୍ୟା-ରାଣ
କଉତୁକ କଥା କହିଲେ ତୋଷି ପ୍ରେୟସୀ-ପ୍ରାଣ ।
ନବଘନ ପାଶେ ଯେସନ ଶୋହେ ଚୋରା ଦାମିନୀ,
ରାମ ପାଶେ ତେହ୍ନେ ଶୋଭନ୍ତି ସୀତା ବରବର୍ଣ୍ଣିନୀ ।
ପ୍ରିୟାଙ୍କୁ ସେନେହେ ଶ୍ରୀରାମ ବୋଲୁଛନ୍ତି ବଚନ,
"କହ ଗୋ ପ୍ରେୟସି ! କି ଦ୍ରବ୍ୟେ ତବ ବଳୁଛି ମନ ?"
ଶୁଣି ତା ଜନକ-ତନୁଜା- ଗଣ୍ଡ ଲଜ୍ଜା-ପାଟଳ,
ମଧୁ ଦରହାସେ ଜାନକୀ ଶିର ପୋତନ୍ତି ତଳ ।
କହନ୍ତି ଶ୍ରୀରାମ "ସୁନ୍ଦରି ! ଏତେ ଲଜ୍ଜା କପାଇଁ,
" 'ନାହିଁ ନାହିଁ' କର ଈଷତ ହସି ମୁହିଁ ହଲାଇ ।"

ବୋଲନ୍ତି ବୈଦେହୀ "ହେ ପ୍ରଭୋ ! ନାହିଁ କାହିଁରେ ମନ,
"ତୁମ୍ଭ ଶ୍ରୀଚରଣ ଶୃହିଁଣ ଯାଉ ଏ ମୋ ଜୀବନ ।
"ତୁମ୍ଭ କୋଳେ କୁଳନନ୍ଦନ ରଖି ହେ ରଘୁତ୍ରାଣ,
"ତୁମ୍ଭ ମୁଖ ଦେଖି ହେ ସ୍ୱାମି, ଯାଉ ଏ ଦାସୀ-ପ୍ରାଣ ।"
ପୋଛି ପ୍ରେମ-ଅଶ୍ରୁ ଶ୍ରୀରାମ ବୋଲୁଛନ୍ତି ଆଦରେ,
"କହ କହ ପ୍ରିୟେ ! ଶରଧା ତବ କେଉଁ ଦ୍ରବ୍ୟରେ ।
"ଯେତେ ଦୁର୍ଲ୍ଲଭ ତା ହେଲେହେଁ ଆଣି ଦେବଇଁ ମୁହିଁ ।
"କହ କହ ଫେଡ଼ ମୋ ପ୍ରାଣ ଶୁଭ୍ର-ଚନ୍ଦ୍ରମାମୁହିଁ !"
କହନ୍ତି ଜନକତନୂଜା, "ନାଥ ! ହେଉଛି ମନ,
"ଋଷି-ତପୋବନ-ସୁଷମା କରନ୍ତେଇଁ ଦର୍ଶନ ।
"ବନବାସକାଳେ ହେ ନାଥ ! ଦେଖିଥିଲଇଁ ଯାହା,
"ପୁଣି କିପାଁ ମନ ହେଉଛି ଯାଇଁ ଦେଖନ୍ତେ ତାହା ।
"ମୁନିକନ୍ୟାମାନେ ତଟିନୀ- ତଟେ ବଢ଼ାଇ ସ୍ନାନ,
"କରନ୍ତି ନୀବାର-ତଣ୍ଡୁଳ- ମଧୁ-ଅର୍ଘ୍ୟ ପ୍ରଦାନ;
"ଏକ-ହସ୍ତୁଁ ଆନ ଛଡ଼ାଇ କରୁଥାନ୍ତି ଭୋଜନ,
"ହାସ୍ୟ-କଉତୁକ ତାଙ୍କର ଦରଶନେ ମୋ ମନ ।
"ଗର୍ଭାଳସା ଏଣୀ ଆସିଣ ଖାଇ ତଣ୍ଡୁଳ ବଳେ,
"କରନ୍ତି ରୋମନ୍ଥ ଶୋଇଣ ତଟ-ବଟପତଳେ ।
"ତରୁଶାଖେ ବସି ବିହଙ୍ଗେ ରାବୁଥାନ୍ତି ସୁସ୍ୱରେ,
"ଉଡ଼ି ଆସି ବସି ଯାଆନ୍ତି ମୁନି-ତନୟା-କରେ ।
"ତପୋବନ ହବିଃ-ସୌରଭେ ସଦା ସୁପ୍ରମୋଦିତ,
"ତରୁ-ଶିର ଭେଦି ସମିଧ- ଧୂମ ହୁଏ ଉତ୍ଥିତ ।
"ପୁଣ୍ୟ ବେଦଗୀତେ ପବିତ୍ର ସଦା ସେ ତପୋବନ,
"ଫଳ-ପୁଷ୍ପ-ଭରେ ଆନତ ତରୁ ବ୍ରତତୀଗଣ ।
"ବୁଲି ବନେ ତୁମ୍ଭ ସଙ୍ଗତେ କରନ୍ତି ତା ଦର୍ଶନ,
"କାନନସିକତାପୀଠରେ କରି ଉପବେଶନ ।
"ବାସ ଅଲଙ୍କାର ବିତରି ମୁନି-ତନୟାଗଣେ
"ଆଶୀର୍ବାଣି ଘେନି ଆସନ୍ତି ପୁଣି ତୁମ୍ଭ ଗହଣେ ।"
ପ୍ରିୟାବାଣୀ ଶୁଣି କହନ୍ତି ରଘୁପତି ବଚନ,
"ସ୍ୱତନ୍ତ୍ରେ ସୁନ୍ଦରି ! କରିବ ତବ ବାଞ୍ଛା ପୂରଣ ।
"କିଛି ନାହିଁ ମୋର ଅଦେୟ, ଦେଇ ପାରେଁ ଜୀବନ,
"କାଲି ପ୍ରାତେ ଯାଇଁ କରିବ ତପୋବନ ଦର୍ଶନ ।"
ଏମନ୍ତ ସମୟେ ପ୍ରବେଶୁଁ ଭଦ୍ର ନାମେ ଦୂତକ,
ଗମିଲେ ଗୁପତ ମନ୍ତ୍ରଣା- ଗୃହେ ରଘୁନାୟକ ।

# Selections from the writings

OF

# Gangadhar Meher.

(Born 1862, Died1924.)

( ୧ )

A SCENE FROM THE

ଇନ୍ଦୁମତୀ.



( ରାଗ-ବଙ୍ଗଳାଶ୍ରୀ )

ବିଦର୍ଭ ନଗରେ ପୁରବାସିଗଣ
ଆଜି ଅତି ଉଲ୍ଲସିତ,
ଆନନ୍ଦ-ସାଗର— ତରଙ୍ଗେ ନଗର
ହେଉଅଛି ଉଦ୍‌ବେଳିତ ।
ବିଦର୍ଭାଧିପତି ଅନୁଜ୍ଞା ନିମନ୍ତେ
କରି'ଛନ୍ତି ସ୍ୱୟମ୍ବର,
ସମାଗତ ହୋଇ— ଅଛନ୍ତି ଅନେକ
ଦେଶର ନୃପକୁମର ।
ଚୌହଦେ ଶୋଭଇ ଖଡ଼ୀଶୈଳ ପ୍ରାୟେ
ତୁଙ୍ଗ ଶୁଭ୍ର ବସ୍ତ୍ରାବାସ,
ମାତଙ୍ଗ ବୃଂହିତ ଅଶ୍ୱ ହ୍ରେଷାରବେ
ପୂର୍ଣ୍ଣ ହେଉ'ଛି ଆକାଶ ।
ବିବିଧ ଦେଶୀୟ ବିବିଧ ବାଜଣା
ବାଜି ନାନାରଙ୍ଗ ସ୍ୱରେ
ଜନକୋଲାହଳ ସହିତରେ ମିଶି
ଶ୍ରବଣକୁ ସ୍ତବ୍ଧ କରେ ।
ଯୁବତୀମାନଙ୍କ ଆନନ୍ଦଚହଳେ
ଦୂଲୁଅଛି ରାଜପୁର,
ବିରସ ତହିଁରେ ଅବସର ବିନା
ରହିଅଛି ହୋଇ ଦୂର ।
ତିଳମାକୁ ସୁବେଶ କରିବା ନିମନ୍ତେ
ତତ୍ପର ସକଳ ଆଳୀ,

କେ ଘୋରେ ଚନ୍ଦନ    କେ ଘୋରେ କସ୍ତୂରୀ
କେ ଗୁନ୍ଥଇ ପୁଷ୍ପମାଳୀ ।
ଅଳଙ୍କାରପେଡ଼ୀ    ଆଣି କେଉଁ ସଖୀ
ଫେଡ଼ି ଥୋଇଅଛି ପାଶେ,
ବାଛି ବାଛି ଯୋଷା    ଲାଗି ହେବ ଭୂଷା
ଯେ ଅବା ରୁଚିକ ଆସେ ।
ନାନା ରଙ୍ଗ ପାଟ—    ଶାଢ଼ୀମାନ ଆଣି
ଦେଖାଉ'ଛି କେଉଁ ଅଳୀ,
ଯହିଁ ଅଭିରୁଚି    ହେବ ସେହି ଶାଢ଼ୀ
ଲାଗି ହେବ ବୋଲି ବାଳୀ ।
ସ୍ୱର୍ଣ୍ଣକଙ୍କତୀରେ    ସାମଳ କୁନ୍ତଳ
ଗୁନ୍ଥି ଦେଉ'ଛି କେ ବେଣୀ,
କେ ସଖୀ ସମକ୍ଷେ    ଠିଆ ହୋଇଅଛି
କନକ-ମୁକୁର ଘେନି ।
ଏଣେ ରାଜସଭା    ମନୋହର ବେଶେ
ହୋଇଲାଣି ସୁସଜ୍ଜିତ,
ଆନେ କି ଉପାମା ?    ଯା ଶୋଭା ଚାହିଁଲେ
ସୁଧର୍ମା ହେବ ଲଜ୍ଜିତ,
ଜଣେ ଜଣେ ହୋଇ    ସଭାଗତ ହେଲେ
କ୍ରମେ ସର୍ବ ନରପତି,
ସନ୍ଧ୍ୟାଦେବୀ କୋଳେ    ଉଇଁ ଆସିଲେ କି
ଉଜ୍ଜ୍ୱଳ ତାରକାପଂକ୍ତି ।
ବସିଲେ ତହିଁରେ    ଅତି ମନୋହର
ସ୍ୱର୍ଣ୍ଣମୟ ସିଂହାସନେ,
ଆଚମ୍ବିତେ ଅବା    କମଳ ସକଳ
ଫୁଟିଗଲେ ପଦ୍ମବନେ ।
ତହିଁ ମଧ୍ୟେ ବସେ    କୋଶଳ ନୃପତି-
ସୁତ ଅଜ ଯୁବରାଜ,
ସୁରବୃନ୍ଦ ସଙ୍ଗେ    ମହୀକି ଆଗତ
ହେଲେ କି ସେ ଦେବରାଜ ।
ଅବା ଅକର୍ମିତ    ସ୍ୱଚ୍ଛନୀର ଫୁଲ୍ଲ-
କୁମୁଦଶୋଭିତ ସରେ
ବାଳାର୍କମଣ୍ଡଳ    ପ୍ରତିବିମ୍ବ ଆସି
ପଡ଼ିଗଲା ତରତରେ ।

ପୂର୍ଣ୍ଣ କଳାକର    ସମୁଦିତ ହେଲେ
ତାରାକୁଳ ଯଥା ମ୍ଳାନ,
ଅଜ ଆଗମନେ    ନୃପମାନଙ୍କର
ହ୍ରସ୍ୱ ହେଲା ଅଭିମାନ ।
କନ୍ୟା ଲାଭ ଆଶା    ଦୂର ହୋଇଗଲା
ମାନସରୁ ତାହାଙ୍କର,
ଶରଦ ଆଗମ    ଦରଶନେ ଯଥା
ଆକାଶରୁ ଜଳଧର ।
ରାଜନ୍ୟମଣ୍ଡଳ    ମଧ୍ୟେ ବିରାଜିଲା
ଏକାଳେ ରାଜନନ୍ଦିନୀ,
ଇନ୍ଦ୍ରଶରାସନ    ତଳେ ବିଲସିଲା
କିବା ଶୁଭ୍ର ସୌଦାମିନୀ ।
ଅଥବା ରତନ—    ଖଣିଗର୍ଭେ ହେଲା
ଦୀପଶିଖା ପ୍ରଜ୍ୱଳିତ,
ନବ ବିକସିତ    କମଳକାନନେ
କମଳା ବା ବିରାଜିତ ।
ରାଜସୁତ ଚିତ୍ତ—    ଆହ୍ଲାଦଦାୟିନୀ
ବରମାଲ୍ୟ ଅଛି ଧରି,
କୁମୁଦମାଳିନୀ    ଶରଦ-କୌମୁଦୀ
ଶୋଭା-ଗର୍ବ ଅପହରି ।
ଶୁହିଁ ଅଦଭୁତେ    ଅପୂର୍ବ ଲାବଣ୍ୟ-
ରୂପସୀ ରୂପସାଗରେ
ରୂପଲୋଭୀ ନୃପ—    କୁମାରଙ୍କ ମନ-
ମୀନେ ବୁଡ଼ିଗଲେ ଖରେ ।



(୨)

A PASSAGE FROM THE

## କୀଚକବଧ



ବସନ୍ତ ବିଜୟ ବାରତା    ପ୍ରଚାରିଲା ଭୁବନେ,
ପାଦପ-ଆସୀନ ପତର    ପରଭୃତ ପଠନେ ।
ଗ୍ରହରାଜ କଣ୍ଠେ ପଡ଼ିଲା    ଋତୁ ସମ୍ରାଟ-ଭାଷା,
ଗମିଲେ ସରଳ ପଥରେ    ତେଜି ଦକ୍ଷିଣା ଆଶା ।
ଶିଶିର ନାଶଇ ପଦ୍ମିନୀ    ଘନ ରବିଙ୍କି ଗ୍ରାସେ,
ଏଣୁ ଋତୁ-ପତି ନାମରେ    ରବ ରହିଲେ ତ୍ରାସେ ।
ଗ୍ରହ ରାଜ୍ୟ ହେଲା ପ୍ରସନ୍ନ    ତହିଁ ଗ୍ରହ ସରବେ
ବିଲସିଲେ ମଣ୍ଡି ବିଗ୍ରହ    ରମ୍ୟ ପ୍ରଭା-ବିଭବେ ।
୧ପତି-ନୀଚଗତି-ଦୁଃଖରେ    କ୍ଷୀଣ ଥିଲା ବାସର,
୨ଫୁଲାଇଲା ମୁଦେ ଶଶୀର    ମୁଖ କରି ସୁନ୍ଦର ।
ହରଷିତ ଦିନ ବର୍ଦ୍ଧନ    ଦେଖି କୋକ ଦମ୍ପତି,
ଆନନ୍ଦ ନ ହୁଏ କାହାର    ଗୃହେଁ ପ୍ରିୟ ସମ୍ପତ୍ତି ।
ଭାନୁ ଯମାଳୟ ଗଗନ    ଦେଖି ପଦ୍ମିନୀ ସତୀ
ବାଷ୍ପପ୍ରଦ-ସ୍ରୁତ ଜଳରେ    ଝାସି ଥିଲା ଝଟିତ ।
ତପ ଫଳେ ଏବେ ସୁନ୍ଦରୀ    ନବ ଜନମ ଲଭି,
ଧ୍ରୁବ-ସମ୍ମୁଖୀନ ପତିଙ୍କ    ହେଲା ପ୍ରିୟ ବଲ୍ଲଭୀ ।
ବସନ୍ତ ଅତିଥି ପିରତି    ପାଇଁ ଅବନୀ-ରାଣୀ
ଯୋଗାଡ଼ ରଖିଲା ଭଣ୍ଡାରେ    ନାନା ପଦାର୍ଥ ଆଣି ।
ତରଭୁଜ ଆମ୍ର ପନସ    ନାନା ଖାଦ୍ୟ ସମ୍ଭାର,
ଉପହାରପାଇଁ ଉତ୍କଳ    ଫୁଲ ମାଣିକ୍ୟ-ହାର ।
ପ୍ରମୋଦ ନମନ୍ତେ କାନନ    ମଣ୍ଡାଗଲା ଯତନେ,
ମଧୂକ-ମୁକୁତା-ପୁଞ୍ଜରେ    ଗୁରୁ-ନୀଳ-ରତନେ ।

---

ପରଭୃତ—କୋକିଳ । ଦକ୍ଷିଣା ଆଶା—ଦକ୍ଷିଣ ଦିଗ । ଦକ୍ଷିଣା—ଉତ୍କୋଚବ୍ୟଞ୍ଜକ ।

୧ ସୂର୍ଯ୍ୟ ଦକ୍ଷିଣାୟନ ସମୟରେ ଦିନ ଛୋଟ ହୁଏ । ୨ ବସନ୍ତରେ (ଦିନମୁଖ) ପ୍ରଭାତ ସୁନ୍ଦର ହୁଏ, ଦିନ ବଡ଼ ହୁଏ । ଯମାଳୟ—ଦକ୍ଷିଣ ଦିଗ । ବାଷ୍ପପ୍ରଦ-ସ୍ରୁତଜଳ—ଶିଶିର । ତପ—ଗ୍ରୀଷ୍ମ । ଧ୍ରୁବସମ୍ମୁଖୀନ—ଉତ୍ତରାୟଣ । ମଧୂକ—ମହୁଲ । ନବମାଳିକା—ନଥଳୀ ।

ରତ୍ନମୟ-ହିନ୍ଦୁ-ତରଙ୍ଗ-   ଦୋଳା ବଇଜ ରଙ୍ଗେ
ବିଜେ କଲେ ଧୀର ସମୀର   ଋତୁ ବସନ୍ତ ସଙ୍ଗେ ।
ପୁଷ୍ପଚ୍ଛାୟା-ସ୍ନିଗ୍ଧ-ସୁରମ୍ୟ   ପୁଷ୍ପମୟ ମାର୍ଗରେ
ଆସି ବିହରିଲେ କୁସୁମ -   କୁଞ୍ଜେ ଅନୁରାଗରେ ।
ବିକସିତ ନବମାଳିକା-   ଅର୍ଘ୍ୟ ଧରି ସମ୍ମୁଖେ
ଚନ୍ଦ୍ରିକା ସୁନ୍ଦରୀ ସ୍ୱାଗତ   କଲା ଚକୋର ମୁଖେ ।
ଉଜ୍ଜ୍ୱଳ ବସନ ଭୂଷଣ   ମନୋହର ବେଶରେ
ସୁକାନ୍ତ ସୁମୁଖୀ ସତ୍ୱର   ମିଳିଗଲା ପାଶରେ ।
ସୁକୁମାର ବିଶ୍ୱବିଜୟୀ   ଅନୁପମ ସୁନ୍ଦର,
ପୁଷ୍ପମୟ ବେଶେ ମିଳିଲେ   ତହିଁ କୁସୁମ-ଶର ।
ପାଞ୍ଚଜଣ ମିଶି ଆମୋଦେ   ବିରଚିଲେ ତାଣ୍ଡବ,
ତାଣ୍ଡବ ନୁହେ ତା ସରସ-   ଫଳପୂର୍ଣ୍ଣ ଖାଣ୍ଡବ ।
ସେ ଖାଣ୍ଡବ ଫଳ ଭୋଜନେ   ହେଲା ଜଗତ ଲୁବ୍ଧ,
କେ ପାଇ ଆନନ୍ଦେ ନାଚିଲା କେବା ନ ପାଇ କ୍ଷୁବ୍ଧ ।
ସନ୍ତାପିତ ହେଲା ମଧ୍ୟାହ୍ନ   ପିତୃପ୍ରସୂ ସୁନ୍ଦର,
ପଲ୍ଲବିତ ହେଲେ ପାଦପେ,   ଶୁଷ୍କ ନଦୀ ଉଦର ।
କିଂଶୁକ-ରକତ-ବିଗ୍ରହ   ବନକାନ୍ତ ବଢ଼ିଲା,
ଚନ୍ଦ୍ରିକାର ନବ ପ୍ରସୂତି   ବିଭାବରୀ ସହିଲା ।
ପ୍ରୀତି-ପାରାବାରେ ଛୁଟିଲେ ପ୍ରାଣ-ପୋତ ଯୋଗିଏ,
ମଦନ-ଅନଳ ତାପରେ   ବିଚଳିତ ଯୋଗିଏ ।



ଚନ୍ଦ୍ରିକା—ଚନ୍ଦ୍ରକିରଣ । ପିତୃପ୍ରସୂ—ସନ୍ଧ୍ୟା । ଯୋଗିଏ—ସ୍ତ୍ରୀ ପୁରୁଷ ଏକତ୍ରିତ ଲୋକେ । ଯୋଗିଏ—ଯୋଗିମାନେ ।

( ୩ )

## ବର୍ଷା ଚିତ୍ର



ନାଟ୍ୟକାର ପରି ଆସି ବରଷା ସମୟ
ଦେଖାଇଲା ଲୋକେ ନବ ନବ ଅଭିନୟ;
କେତେବେଳେ ଏକ ଦିଗୁଁ ଉଠି ନବଘନ
ଦେଖୁଁ ଦେଖୁଁ ଢାଙ୍କିଦିଏ ସମସ୍ତ ଗଗନ,
ଅନ୍ତରିତ ହୋଇଯାଏ ସ୍ୱର୍ଣ୍ଣ ବର୍ଣ୍ଣ ଖରା,
ଶ୍ୟାମ ସ୍ନିଗ୍ଧ ଛାୟାବୃତା ହୋଇଯାଏ ଧରା,
ବସୁମତୀ ରାଣୀ ଅଙ୍ଗୁ ପୀତାମ୍ବର କାଢ଼ି
ପିନ୍ଧାଇ ଦିଏ କି ନବତନ ଶ୍ୟାମ ଶାଢ଼ୀ ?
କେବେ ପ୍ରାଚୀ ନୀଳ ନଭେ ସବିତାମଣ୍ଡଳ,
ପ୍ରତୀଚୀ ମୂଳରେ ନୀଳ ନୀରଦପଟଳ,
ସେ ଜଳଦେ ଇନ୍ଦ୍ରଚାପ ମନୋହର ଦିଶେ
ଦିଗଙ୍ଗନା ଯୁଗ କେଶ ରତ୍ନ ଭୂଷା କି ସେ ?
ମୟୂର ମୟୂରୀ ଏଣେ ଶିଖରୀ ଶିଖରେ
ନାଚୁଥାନ୍ତି ଊର୍ଦ୍ଧ୍ୱପୁଚ୍ଛେ ପ୍ରେମାନନ୍ଦଭରେ;
ଭଦଭଦଳିଆ ପାଇ ପୁଣ୍ଡିକା ଆହାର
ଉଡି ବସୁଥାଏ ତରୁଚୂଡ଼େ ବାରମ୍ବାର;
କଜ୍ୱଳପନ୍ତୀହିଁ ଥରେ ଥରେ ଛାଡି ସ୍ୱନ
ଉଡି କରୁଥାଏ କିଙ୍କି ଝିଣ୍ଟିକା ଭକ୍ଷଣ,
ବଙ୍କିମେ ସ୍ପରଶି ହେମରୁଚି ରବିକର
ଝଲକାଉଥାଏ ତାଙ୍କ ଶୁଭ୍ର କଳେବର,
କଦମ୍ବ କୁଟଜ ପଦ୍ମ ଆଦି ନାନା ଫୁଲ
ନବ ସୌରଭରେ ହୁଏ ସୁନ୍ଦର ଅତୁଳ,
ଇନ୍ଦ୍ରନୀଳମଣିରୁଚି ମଞ୍ଜୁ ଜମ୍ବୁଫଳ
ତରୁଣ ଅରୁଣ କର କ୍ଷାଳିତ ଉଜ୍ୱଳ,
ଶୁକଗଣ ମୁଖେ କରି ସେ ଜମ୍ବୁ ଆହାର
ଡାଳେ ଡାଳେ କରୁଥାନ୍ତି ଆନନ୍ଦେ ବିହାର;
ମରକତ-ପତ୍ର ପଦ୍ମରାଗ-ଫଳାନ୍ୱିତ
ନିନ୍ଦୁପାଦ [illegible] ମାର୍ଜିତ,

ତହିଁ ବସି କାକ କରୁଥାଏ କାଆ କାଆ,
ବୋଲୁଥାଏ ପର୍ ବୃଷପତି "ବାହା ବାଆ" !
ଦେବାଳୟ ଚୂଡ଼ ସ୍ୱର୍ଣ୍ଣ କଳଶ ରୁଚିର,
କୁଷ୍ମାଣ୍ଡ କୁସୁମଚୟେ ଶୋଭଇ କୁଟୀର;
ଦିଗମୂଳେ କେବେ ନୀଳଘନ ଦିଏ ଦେଖା,
ଶୀର୍ଷରେ ଶୋଭଇ ତାର ଶୁଭ୍ର ଅଭ୍ରରେଖା;
ଦିଗ୍ଗଜ ପୃଷ୍ଠରେ ରମ୍ୟ ରଜତ ଅମାରୀ
ଭ୍ରମ ଉପୁଜାଏ ସେହି ଦୃଶ୍ୟ ମନୋହାରୀ,
ବଳାହକ ତଳେ ନଭେ ବକମାଳ ଉଡ଼ି
ଦିଶେ ଯେସନେ ଗଜ ଗଳେ ରଜତ ଘାଗୁଡ଼ି ।
କେତେବେଳେ ପ୍ରଭଞ୍ଜନତାଡ଼ିତ ଆସାର
ଅବନୀରେ ପଡ଼େ ହୋଇ ଘନ ବକ୍ରଧାର,
କେବଳ ଦିଶଇ ଚଉଦିଗ ଧାରାମୟୀ,
ଜଳଧରମୟ ବ୍ୟୋମ ଜଳମୟୀ ମହୀ,
କୃଷିକ୍ଷେତ୍ରେ ବହେ ଜଳ ଲଙ୍ଘି କୃଷିବନ୍ଧ;
ପର୍ବତୁଁ ଝରଇ କରି ଝର୍ଝର ନିନାଦ,
ଗଜଶୁଣ୍ଡସମ ଧାରା ଅଟ୍ଟାଳରୁ ଝରେ,
ରୌପ୍ୟତାର ପରି ଛାତୁଁ ପଡ଼େ ଘରେ ଘରେ;
ସ୍ରୋତସ୍ୱିନୀ ବହେ ଖରେ ପ୍ଲାବି ବେନିକୂଳ
ଉତ୍ପାଟନ କରି ତଟ ବିଟପୀଙ୍କ ମୂଳ;
ନଦୀର ଗର୍ଜନ ପୁଣି ବୃଷ୍ଟିର ଶବଦ
କଲରବ ଗ୍ରାସି କରେ ଅବନୀ ସ୍ତବଧ;
କେତେବେଳେ ବାରିବିନ୍ଦୁ ଟପର ଟପର
ପଡି ନିନାଦିତ କରେ ପାଦପ ପତର;
କାସାରେ ନାଚନ୍ତି ମୀନଗଣ ନବଜଳେ,
ଚାତକ କ୍ରୀଡ଼ଇ ମୁଦେ ଶ୍ୟାମ ଘନତଳେ;
ଯୂଥ ଯୂଥ ମଦମତ୍ତ ବନଗଜଗଣ
କ୍ରୀଡ଼ନ୍ତି ଗମ୍ଭୀର ନାଦେ କମ୍ପାଇ କାନନ;
କେତେବେଳେ ଖସୁଥାଏ ବିରଳ ଶୀକର,
କେତେବେଳେ ବୃଷ୍ଟିହୀନ ବାଦଲ ମାଡର,
କେତେବେଳେ ପରଚଣ୍ଡ ଚଣ୍ଡାଂଶୁ କିରଣ
ଭୂପୃଷ୍ଠେ ଭୂଧର ଅଙ୍ଗେ କରେ ସଞ୍ଚରଣ,
ଭୂଲତା-ଭକ୍ଷଣ-ହୃଷ୍ଟ ସାରି ଦଳ ଦଳ
କରନ୍ତି ମଧୁର ରବେ ପୂର୍ଣ୍ଣ ବନସ୍ଥଳ;

ଦାବାନଳ ତାପମୁକ୍ତ ମୃଗଯୂଥ କାହିଁ
ଆନନ୍ଦେ ବୁଲନ୍ତି ନବ ତୃଣାଙ୍କୁର ଖାଇ;
ମାଣିକ୍ୟମଞ୍ଜୁଳ କାହିଁ ଇନ୍ଦ୍ରଗୋପଗଣ
ବାଲିଆ ଭୂମିରେ କରୁଥାନ୍ତି ସଞ୍ଚରଣ;
* ଇନ୍ଦ୍ରପୁରେ ଇନ୍ଦ୍ରଧନୁ ରତନ ତୋରଣ
ଭୁଙ୍ଗ ତରୁ ଶିରେ ରମ୍ୟ କନକ କରଣ,
ଲୋକମୁଦ କ୍ଷଣେ ଦେଇ ହୋଇ ମନୋହର
କେବେ ଅବା ହସି ହସି ବୁଡ଼ନ୍ତି ଭାସ୍କର;
ମାଳ ମାଳ ପକ୍ୱତାଳ ବୃକ୍ଷରେ ସୁନ୍ଦର,
ମସ୍ତକେ ପଡ଼ିବ ବୋଲି ମାନବକୁ ଡର;
ଆସୁ ସ୍ମରଣ ନ କରି ରୁକ୍ଷ ଗର୍ବ ବହି
କନକବରଣ ଜହ୍ନିଫୁଲ ବିକସଇ;
କେବେ ହୁଇଦଗଁ ଉଠି ନୀରଦପଟଳ
ଗ୍ରାସଇ ତାରକାପୂର୍ଣ୍ଣ ଗଗନମଣ୍ଡଳ,
ରତନମଣ୍ଡିତ ସୁରପ୍ରାସାଦର ବାଟ
ରୁଦ୍ଧ ହୁଏ କି ତା ପଡ଼ିଯାଉଁଳ କବାଟ ?
ଗବାକ୍ଷ ପଥରେ ଜାଲୀ-ବାସ-ଆବରଣେ
ସୁରବାଳା ମୁଖ ଭ୍ରମ ଜନମାଇ ମନେ
ଏକ ଏକ ତେଜସ୍କର ତାରା ଗଗନରେ
ନକ୍ଷତ୍ର ଦିଶନ୍ତି କେବେ ବିରଳ ଘନରେ;
କେତେବେଳେ ନୀଳ ନଭେ ପୂର୍ଣ୍ଣ କଳାକର—
କୌମୁଦୀରେ ଧବଳିତ ବିଶ୍ୱଚରାଚର;
ତରୁ, ତୃଣ, ଗୁଳ୍ମ, ଲତା, ପ୍ରାସାଦ, କୁଟୀର
ପାରଦମଣ୍ଡିତ ପରି ଦିଶନ୍ତି ରୁଚିର;
ଚନ୍ଦ୍ରିକା ଅମିୟ ସ୍ନିଗ୍ଧ ଲୋକ ମୁଦମୟ
ହୋଇଯାଏ ପ୍ରକୃତିର ଉତ୍ସବ ସମୟ;
ପ୍ରଦୀପ୍ତ ଔଷଧ ଯେନ ହସଇ ଭୂଧର;
ଯେନ ଖଚିତରତ୍ନମ୍ବର ନାଚଇ ସାଗର;
ପ୍ରଫୁଲ୍ଲ ଯୂଥିକା ଯେନ ହସଇ ଉଦ୍ୟାନ;
କାନନ ହସଇ ଯେନ ବନଫୁଲମାନ;
ସୁଗନ୍ଧ କୁସୁମ ରଜ- ଧୀର ସମୀରଣ
ବହି ସ୍ଥାନେ ସ୍ଥାନେ କରୁଥାଇ ବିଚରଣ;

* ଇନ୍ଦ୍ରପୁର—ପୂର୍ବଦିଗ ।

ଆମୋଦିତ ବନ, ନଗ, ପଲ୍ଲିକା, ନଗର,
ଭ୍ରମୁଥାନ୍ତି ଫୁଲେ ଫୁଲେ ପ୍ରମତ୍ତ ଭ୍ରମର;
କେତେବେଳେ ଘନଘଟା କୌମୁଦୀ ଗ୍ରାସଇ,
କରଇ ଯେମନ୍ତ କ୍ଷୀର ପାନ କୃଷ୍ଣ ଅହି ।
ଜ୍ୟୋସ୍ନାମୟୀ ନିଶା ହୁଏ ଉଷାପରି ମ୍ଲାନ,
ଜୀବର ଶରୀର ଯଥା ହେଲେ ଗତ ପ୍ରାଣ;
କେବେ ଘୋର ଅନ୍ଧକାରେ ଧରଣୀ ମଗନ,
ନାହିଁ ଚନ୍ଦ୍ର ନାହିଁ ତାରା ନ ଦିଶେ ଗଗନ,
ପଡ଼ିଯାଏ ଦୃଷ୍ଟିପଥେ ତିମିର କବାଟ,
ତିମିରସିନ୍ଧୁ ଗର୍ଭେ ଲୀନ ପ୍ରକୃତି ବିରାଟ,
କେବଳ ଖଦ୍ୟୋତ ତମ-ସାଗର-ରତନ,
ଜ୍ୟୋତିରେ ଫିଟାଉଥାଏ ମାନବ ନୟନ;
ହ୍ରାଦିନୀର ଜ୍ୟୋତିର୍ମୟୀ ରେଖା ଥରେ ଥରେ
ଚମକି ଅଚିରେ ଲୁଚିଯାଏ ଡରଡରେ;
ନିଦ୍ରାଗତ ଜୀବଗଣ କଲରବ ନାହିଁ,
ରଜନୀ ଗର୍ଜ୍ଜନ ସ୍ରୋତ ଚଳେ ଝାଇଁ ଝାଇଁ;
କର୍କଟ, ଦର୍ଦ୍ଦୁର ଆଦି ଛାଡ଼ୁଥାନ୍ତି ରଡ଼ି,
କ୍ଷଣେ କ୍ଷଣେ ହେଉଥାଏ ଘନ ଘଡ଼ଘଡ଼ି;
ହୃଦବନ ଦଗ୍ଧ ଯାର ଦୁଃଖ-ଦାବାନଳେ
ଛଟପଟ ତାର ପ୍ରାଣ-କୁରଙ୍ଗ ବିକଳେ;
ଘୃଣା କରି ନିଦ୍ରା ତାର ନିକଟେ ନ ଯାଏ,
ନିଶି ଭୀଷଣତା ବେଗ ତାହାପାଇଁ ଥାଏ ।



( ୪ )

SELECTIONS FROM THE

# ତପସ୍ୱିନୀ

## ଦ୍ୱିତୀୟ ସର୍ଗ



ରାଗ—ରାମକେରୀ

ବାଲ୍ମୀକି-ଆଶ୍ରମ-ରାଜ୍ୟରେ
ଶାନ୍ତି ରାଜତ୍ୱ କରେ,
କୋଷ ପୂର୍ଣ୍ଣ କରି ପାଦପ-
ଦତ୍ତ ସ୍ୱଚ୍ଛାୟା କରେ ।
ଅକପଟେ ଛାୟା ଦଅନ୍ତି
ସେହି ପାଦପମାନେ,
ଅଯାଚତେ ନିଜ ଶରୀର-
ମାନଦଣ୍ଡର ମାନେ ।
ପ୍ରକୃତି-ସମରେ ସେମାନେ
ପୁଣି ହୁଅନ୍ତି ସେନା
* ଆବରଣ କରି ଶରୀରେ
ଘନ-ପଲ୍ଲବ-ସେହ୍ନା ।
କରି ବରଷାର ବ୍ୟାପୃମେ
ଅଙ୍ଗ-ପୃଷ୍ଟି ସାଧନ,
ଆତପକୁ ଜିଣି ଆଣନ୍ତି
ତାର ଆଲୋକ-ଧନ ।
ଶୀତ-ଆକ୍ରମଣୁ କରିବା-
ପାଇଁ ରାଜ୍ୟକୁ ତ୍ରାଣ
ଧୂନିରୂପେ ପୁଣି ହୁଅନ୍ତି
କେତେ ଅନଳ-ବାଣ ।
ବିଜିତ ପ୍ରକୃତି ସମୟ
ଜାଣି ସନ୍ଧାଦେ ତୋଷ,
ପାଦପଙ୍କ କରେ ସମର୍ପି
ଫଳ-ପ୍ରସୂନ-କୋଷ ।

* ସେହ୍ନା—କବଚ ।

ଗର୍ଭେ ଧରି ତାରା-ରତନ
ପୂର୍ଣ୍ଣ ଗଗନ-ସିନ୍ଧୁ,
ଅଗସ୍ତ୍ୟ ଗରିମା ଶୋଷନ୍ତି
ପ୍ରଭା ଶିଶିର-ବିନ୍ଦୁ ।
ସାଗର ଗରବେ ପାଦପ-
ଆଲବାଳର ଜଳ
ପୋଷି ରଖିଥିଲେ ଗରଭେ
ସୁଧାକରମଣ୍ଡଳ ।
ଅକସ୍ମାତ କରି ପ୍ରବେଶ
ଶ୍ରମବଧୂ-ବେଦନ
ଘନ ଘନ କଲା କମ୍ପିତ
ଶାନ୍ତି-ଦେବୀ-ସଦନ ।
ବିଚଳିତ ହୋଇ କରୁଣା-
ବତୀ ଶାନ୍ତ ବଦନ
ଲେଉଟିଲେ ବେଦନୀ ଲକ୍ଷରେ
ଯିବାପାଇଁ ବାହନ ।
ମୁନି-କୁମାରୀଏ ବାହାର
ଲାଗିଥିଲେ ସେ କ୍ଷଣେ
* ବାତ-ବ୍ୟସ୍ତ ନବ ଝାଟପି-
ବଲ୍ଲୀ-ପର୍ଯ୍ୟବେକ୍ଷଣେ ।
ନବ ରବ ଏକ କର୍ଣ୍ଣରେ
ତାଙ୍କ ଯିବାରୁ ଲାଗି,
ମନ ନଯୋଜିଲେ ତାହାକୁ
ଧରି ଚହ୍ନିବା ଲାଗି ।
ଧରି ମନ ତାକୁ ଦେଖିଲା
ନୁହେ କପୋତ-ସ୍ୱନ,
ନୁହଇ କୋକିଳ-କାକଳି,
କିମ୍ବା ବୀଣା-ନିକ୍ୱଣ ।
ନୁହେ ଶଙ୍ଖନାଦ, ନୁହଇ
ପୁଣି ମୟୂର-କେକା,
ଲଳନା-କରୁଣ-କଣ୍ଠର
ସ୍ୱର-ନିର୍ଝର ଏକା ।

---

* ଇତିପୂର୍ବେ ପ୍ରଖର ପବନ ପ୍ରବାହିତ ହୋଇଥିବା ପୂର୍ବେ ଉଲ୍ଲେଖ ଅଛି ।

ସେହି କୁମାରୀଙ୍କ ହୃଦୟ-
ରଥେ ବସି ଚଞ୍ଚଳ
ଚଳାଇଲା ଶାନ୍ତ, ଉଡ଼ିଲା
ଧ୍ୱଜ-ବଳ୍କଳାଞ୍ଚଳ ।
ବେଦନ-ତରଙ୍ଗ ଦର୍ଶନେ
ଶାନ୍ତ ଚକିତ ହେଲେ,
ତଥାପି ସମୀପେ ଯିବାକୁ
ଲବେ ନ କଳା ହେଲା ।
କୁମାରୀଏ ଯାଇ ଅନତି-
ଦୂରେ କଲେ ଦର୍ଶନ,
ଅପୂର୍ବ ନାରୀଏ କରୁଛି
ଘୋର ଅଶ୍ରୁ-ବର୍ଷଣ ।
ଚକିତ ଚିତ୍ତେ କେ ଭାବିଲା,
"ଏ ତ ବିଚିତ୍ର କଥା,
ଏ ବନେ ଏଭଳି ମାନବୀ
ଅସମ୍ଭବ ସର୍ବଥା !
ସ୍ୱର୍ଗ-ପୁରୁଁ କେଉଁ ଦେବୀ କି
ସଦ୍ୟ ଶାପର ଫଳେ
ସଦେହରେ ଖସି ପଡ଼ୁଛି
ଆସି ଅବନୀତଳେ ?
* ଭ୍ରମ୍ଭ ଭ୍ରମୁ କିବା ଅଭ୍ରରେ
ଅଭ୍ରମାତଙ୍ଗ ଗତି
ପୁରନ୍ଦର-ପୁର-ଶୋଭନୀ
ପଡ଼ିଅଛନ୍ତି ଗଡ଼ି ?"
କିଏ ବା ଭାବିଲା, "ଜାହ୍ନବୀ
ଅବା ମୂର୍ତ୍ତିମତୀ କି
ସ୍ନେହକ-କଲ୍ଲୋଳେ ଭସାଉ-
ଛନ୍ତି ବସୁମତୀକି ?
† କରକା ପର୍ଯ୍ୟେ କରୁଣା
କିବା ସ୍ୱର୍ଗରୁ ଗଳି
ପର ଦୁଃଖ-ତାପେ କ୍ରମଶଃ
ଭବେ ଯାଉଛି ଗଳି ?

---

* ଅଭ୍ର— ଆକାଶ । ଅଭ୍ରମାତଙ୍ଗ— ଐରାବତ ହସ୍ତୀ ।

† [illegible] ।

ନ ହୋଇଲେ ଏ ଘନ-କୁନ୍ତଳା
ଘନ ସହିତ ତାର
ଖସି ପଡ଼ିବାରୁ ଧରିତ୍ରୀରେ
ବହି ଯାଉଛି ଧାର ।
ହୋଇଥାନ୍ତା ଯଦି ରୋଦନ-
ଧ୍ୱନି ଚମକପ୍ରଦା,
* ବୋଲନ୍ତି ଅଛିଟି ଜଳଦ
ସଙ୍ଗେ ଏ ଶତଦ୍ରୁଦା ।
ଶିଶିର-ବର୍ଷିଣୀ ଚନ୍ଦ୍ରିକା
ପିକ-ସ୍ୱର-ମୁଖରି
କାହିଁ, କାହିଁ ଝିଲ୍ଲୀ-ରାବଣୀ
ଖର ନଦାଘ ଖରି ?
ବୀଣା ଥାନ୍ତା ଯଦି ହସ୍ତରେ,
ବୋଲଥାନ୍ତି ଭାରତୀ
କାନ୍ଦୁଛନ୍ତି ବସ୍ତୁ-ବରହେ
ଅବା ହୋଇ ଅରତୀ ।”
ଭାବି ଭାବି ମୁନିସୁତାଏ
ଗଲେ ଜାନକୀ-ପାଶ;
ସାହସ ନ ହେଲା ଦେବାକୁ
କିନ୍ତୁ ତାଙ୍କୁ ଆଶ୍ୱାସ ।
ବରଷାର ମହାନଦୀର
ଗାଢ଼ ଆବିଲ ଜଳ
ସ୍ୱଚ୍ଛ କରିବାକୁ କରୂପେ
ହେବ ନର୍ମଳା ବଳ ?
** ଇବ, ଅଙ୍ଗ, ତେଲ ସଙ୍ଗରେ
ସେହି ନଦୀ ଯେସନ,
କୁମାରୀଙ୍କି ପାଇ ବଢ଼ିଲା
ସୀତା-ଶୋକ ତେସନ ।
କିଛି ନ ପରିଲେ କୁମାରୀ-
ମାନେ ରହିଲେ ବେଢ଼ି,
ଯାଇ ନ ପାରିଲେ ସେନେହ
ହେଲା ପାଦକୁ ବେଢ଼ି ।

---

* ଶତଦ୍ରୁଦା — ବିଜୁଳୀ ।

** ଇବ, ଅଙ୍ଗ, ତେଲ ଏହି ନଦୀମାନ ମହାନଦୀର ଉପନଦୀ ଅଟନ୍ତି ।

ବିକଳେ ଅନାଇ କେବଳ
ତାଙ୍କ ଶାନ୍ତ ଲୋଚନ
କଲା କ୍ଷୁବ୍ଧ-ହୃଦ-ବେଦନା-
ଶୀତ-ଜଳ-ମୋଚନ ।
ଲୋତକ-ପ୍ଳାବିତା କୁମାରୀ-
ବୃନ୍ଦ ମଧ୍ୟରେ ସତୀ
ବିକଳ ପରାଣେ ବିଳପି
ଶୋକ-ଜଳେ ଭାସନ୍ତି ।
* ଚକ୍ରବାତ-ଜାତ ପୃଷତ-
ସ୍ନାତ ପଦ୍ମିନୀବନେ
କଲରାଜହଂସୀ କୂଜଇ
କିବା ଆରତସ୍ୱନେ ।
ସଖୀ ଏକ ସହି ନ ପାରି
ଯାଇ ବାଲ୍ମୀକି ପାଶେ
ଜଣାଇଲା ଖେଦପୂରିତ
କ୍ଲେଶରଞ୍ଜିଲା ଭାଷେ ।
† "ଭୋ ତାତ ! ଏ ବନେ କାହିଏ
ନବନୀତ-ପିତୁଳୀ—
ସମ ଦିଶେ, ଆସି କାନ୍ଦୁଛି
ଯେହ୍ନେ ହୋଇ ବାଉଳୀ ।
ସମ୍ବୋଧନ କରି ଥରକୁ
ଥର ତା ପ୍ରିୟ କାନ୍ତେ,
ପତି-ଗୁଣ, ପତି-ବାତ୍ସଲ୍ୟ
ସ୍ମରୁଅଛି ଏକାନ୍ତେ ।
ଲଲିତ ଦିଶୁଛି ଲଲାଟେ
ତାର ସିନ୍ଦୂର-ବିନ୍ଦୁ,
ମୁଖକମଳକୁ ହୋଇଛି
ଯେହ୍ନେ ପୂର୍ଣ୍ଣିମା ଇନ୍ଦୁ ।
କରଯୁଗଳରେ ଶୋଭୁଛି
ଶୁଭ୍ର ରତନ-ଚୂଡ଼ୀ,
ବିଷାଦ-ସାଗର-ସଲିଳେ
ଝୁଲୁଅଛି ନ ବୁଡ଼ି ।

---

* ପୃଷତ—ଜଳକଣା । † ନବନୀତ—ଲହୁଣୀ ।

୧ ଦରବିକସିତ କମଳେ
ବରାଟକ ପଶିଏ
୨ ଶତଦଳ-ରୁଚ ରୁଚିର
ତେଲେ ସେ ଶୋଭା ପାଏ ।
ଭଳାଇ ଦେଉଛୁ ବାସକୁ
ତାର ନୟନ-ବାରି,
ଦେଖି କି ମାନସି ସହଜେ
ହେଉ ନାହିଁ ତ ବାରି ।”
ଶୁଣି ମୁନିବର ମଉନେ
ନମିଳତ ଈକ୍ଷଣେ
କାୟ, ଶିର, ଗ୍ରୀବା ସଲଖି,
ବସି ରହିଲେ କ୍ଷଣେ ।
ଉଠି ପୁଣି “ଚାଲ ଦେଖିବା”
ବୋଲି ହେଲେ ବାହାର,
ମୁନି ପଛେ ପଛେ ଚାଲିଲେ
ବହୁ ମୁନି-କୁମାର ।
କୌତୂହଳେ ଗଲେ ଯେ ଥିଲେ
ମଠେ ମୁନି-ନନ୍ଦନୀ,
ଡାକି ଆସିଥିଲା ଯେ ସଖୀ
ହୋଇ ତାର ସଙ୍ଗିନୀ ।
ଚାଲିଲେ ହରିଣ ହରିଣୀ
ତାଙ୍କ ସଙ୍ଗେ ଶାବକ,
ବୃକ୍ଷୁ ବୃକ୍ଷେ ଡେଇଁ ଚଳିଲେ
ପିକ, ମୟୂର, ବକ ।
ସମୀର-ସାଗରେ ଖେଳିଲେ
ନିଜ ଶରୀର-ପୋତ
ନୟନ-ରଞ୍ଜନ ଖଞ୍ଜନ,
ଶୁକ, ଶାରି, କପୋତ ।
୩ ଅଭିଯାନ କଲା ଶାନ୍ତିର
ଏହା ବୀରବାହିନୀ,
୪ ସୀତା-ଶୋକ-ନିଳାଶ୍ରେଣୀକୁ
ଯେସନେ ଘୋର ବାହିନୀ ।

---

୧ ବରାଟକ—ପଦ୍ମର ବୀଜକୋଷ । ୨ ରୁଚ - କାନ୍ତି । ରୁଚିର—ସୁନ୍ଦର ।
୩ ବାହିନୀ—ସେନା । ୪ ବାହିନୀ—ନଦୀ ।

ମହାନାଦୀ ମହାକନ୍ଦର
          ମହାପ୍ରବାହ ଆସି
* ହୁମେଶ୍ୱର ଶିଳାସବୁକୁ
          ଦେଲେ ସଙ୍ଗିରେ ଗ୍ରାସି;
ଟଳବେ କି ଶିଳା ସକଳ
          ସ୍ରୋତ କର୍ଷିବ ଦିନା;
ବଧୂଷ୍ଟିତ ଶିରେ ପଡ଼ବ
          ଗଡ଼ପଦ୍ଧତ ବନା ।
ସେ ଦଶା ଭୋଗିବ ନାହିଁ ତ
          ଶାନ୍ତ ଏ ଅଶ୍ମଯାନେ ?
ଲାଗୁ, ଲାଗିଛୁ ତ ପ୍ରମତ୍ତ
          ହୋଇ ସ୍ୱ ଅଶ୍ମମାନେ ।
କଛଦୂରେ ଯାଇ ମିଳଲେ
          ମୁନି ଜାନକୀ ପାଶେ;
ଅଶ୍ମମାନେ ବେଢି ରହିଲେ
          ତଳେ, ଡାଳେ, ଆକାଶେ ।
ଶ୍ୱେତ-ଶ୍ମଶ୍ରୁ-କେଶ ବିଭୂତି-
          ବପୁ ସୌମ୍ୟ-ମୂରତି
ବାଲ୍ମୀକି ମହର୍ଷି ସମୀପେ
          ହେମଗଉରୀ ସତୀ
ବସିଲେ ଯେମନ୍ତ ତୁଷାର-
          ତନୁ ହିମାଦ୍ରି-ତଳେ
ତପସ୍ୱିନୀ ଉମା ମଉନେ
          ରହିଛନ୍ତି ନିଶ୍ଚଳେ !
ମୁନି ଆଗମନେ ଜାନକୀ
          ଶୋକ କଲେ ନିବର୍ତ୍ତି,
ହୃଦୟରେ ହେଲା ସ୍ଫୁରିତ
          ଚିନ୍ତା-ଚକ୍ର-ଆବର୍ତ୍ତି ।
ବୋଇଲେ ମହର୍ଷି ସୀତାଙ୍କୁ,
          "ବତ୍ସେ, ପାରୁଛୁଁ ଜାଣି,
ବିରହ-ବିପଦ ତୋହର
          ବହୁଅଛୁ ଉଜାଣି ।

---

* ସମ୍ବଲପୁର ନିକଟସ୍ଥ ମହାନଦୀର ଗୋଟିଏ ଉପକୂଳର [illegible] ସ୍ଥାନ ।

ସ୍ରୋତସ୍ୱତୀ ଗତ ସହଜ
ଥାଏ ସାଗର-ଆଶେ;
ଲଙ୍ଘେ ଶିଳା-ଶୈଳ-ସଙ୍କଟ,
ଯେବେ ବରୁଣେ ଆସେ ।
ବାରଧି-ସଙ୍ଗମେ ଋଷ୍ଟରେ
ସବୁ ବିଗତ କ୍ଳେଶ,
ଉଭୟ ଜୀବନେ ନ ରହେ
ଆଉ ପ୍ରଭେଦ ଲେଶ ।
ଜ୍ୱଧିବଶେ ଉଠି ମଧ୍ୟରେ
ଯେବେ ଊର୍ଦ୍ଧ୍ୱକୁ ଭେଦ
ବାଲିସ୍ତୂପ ହୁଏ ସତତ
ହିନ୍ଦୁ ହୃଦୟ ଛେଦ,
ସତତ ମର ତ ନ ପାରେ
ତାର ଜୀବନ ଭାର,
* ହୃଦୟ ପ୍ରସାର ରଖଇ
ହୋଇ ହ୍ରଦ ଆକାର ।
ଅବିକଳ ସେହି ଦଶା ମା,
ଭବେ ଘଟନ୍ତି ତୋର,
ଚିନ୍ତାକୁ ତୁ ବୃଥା ନ କର
ଚିନ୍ତାସ୍ୱରୂପ ଘୋର ।
ଶ୍ୱଶୁର ତୋ ମୋର ସୁହୃଦ,
ସେହିପରି ତୋ ପିତା;
ଅଙ୍କକୋଳେ ରହ ଆଶ୍ରମେ
ମଣି ସଂସାର ଚିନ୍ତା ।
ମୋ ଆଶ୍ରମେ ତୋର ନ ଥିବ
କଉଣସି ଭାବନା,
ଜନମିବ ଯେଉଁ ସନ୍ତାନ
ତାରପାଇଁ ଭାବ ନା ।"
ମୁନି-ବାଣୀ ଶୁଣି ଜାନକୀ
ମୁନି-ଚରଣ-ତଳେ
ପଡ଼ି ଉଠି ଗଣ୍ଡ ପୋଛିଲେ
ନିଜ ବସନାଞ୍ଚଳେ ।

---

* ଉଦକାଙ୍କଗତା ନଦୀସ୍ଥାନଙ୍କର ଅବସ୍ଥା ଏଠାରେ ବର୍ଣ୍ଣନ ।

"ବୀରପ୍ରସବିନୀ ହୁଅ ମା"
ବୋଲି ଶୁଭ ଆଶିଷ
ଦେଇ ଆଶ୍ୱାସିଲେ ମଧୁରେ
ମୁନି-ମଣ୍ଡଳାଧୀଶ ।
ପୁନଶ୍ଚ ବୋଇଲେ, "ଆସ ମା,
ଆଉ ନ କର ମଠ;
କୁମାରୀମଣ୍ଡଳ ମଧ୍ୟରେ
ରହି ମଣ୍ଡି ମୋ ମଠ ।"
ଜୟ ଜୟ ଅଚ୍ଛୁ ଧର ଗୋ
ବେଗେ କୁମାରୀମାନେ,
ବୋଲନ୍ତେ ମହର୍ଷି, କନ୍ୟାଏ
ତାହା କଲେ ସମ୍ମାନେ ।
ଟଣାଟଣି ହୋଇ ସତୀଙ୍କ
ଗୃହୁ ପେଟିକାମାନ
ଧରି ବେଢି ତାଙ୍କୁ ସାଦରେ
କରାଇଲେ ପ୍ରସ୍ଥାନ ।
ପ୍ରହାର ପ୍ରହାର ପାଦୁକା
ମୁନି ଦୁର୍ଗଣ୍ଡ-ଶିରେ
ରାମ-ହୃଦ-ପ୍ରେମ-ପ୍ରତିମା —
ଆଗେ ଚଳିଲେ ଧୀରେ ।
୧ କଷାୟ-ବସନ ମହର୍ଷି
ହେଲେ ଅନୂରୂପମ,
୨ ପଛେ ବଇଦେହୀ ଦିଶିଲେ
ଭାନୁ-ଦୀଧିତି-ସମ ।
୩ ବୁଡିଥିଲା ସେହି ଦୀଧିତି
ଦୁଃଖ-ଅର୍ଣ୍ଣବ-ଅର୍ଣ୍ଣେ,
ଅନୂରୁ ତହିଁରେ ବିରାଜୁ-
ଥିଲେ ଉଜ୍ଜ୍ୱଳ ବର୍ଣ୍ଣେ ।
ମହାଯତି ମହାସତୀଙ୍କ
କଥାବାର୍ତ୍ତା ସକଳ
ଶୁଣୁଥିଲେ ବସି ବିହଙ୍ଗ—
ଦଳ ନ କରି କଳ ।

---

୧ ଅନୂରୁ — ସୂର୍ଯ୍ୟସାରଥି । ୨ ଦୀଧିତି — କିରଣ । ୩ ଅର୍ଣ୍ଣ — ପାଣି ।

ଦେଖନ୍ତେ ତାହାଙ୍କ ଆଶ୍ରମ —
ଅଭିମୁଖେ ଗମନ,
ପ୍ରମୋଦରେ କଲେ ନିସ୍ୱନ
ହୋଇ ପ୍ରଫୁଲ୍ଲ-ମନ ।
ବାଜିଗଲା ପରି ଶାନ୍ତିର
ରଣ-ବିଜୟ-ଘୋଷ !
ନାଚି ନାଚି ମୃଗ-ଶାବକେ
କଲେ ପ୍ରକାଶ ତୋଷ ।
ନବ ଅତିଥିଙ୍କ ମୁଖକୁ
ମଣି ସ୍ନେହ-ସାଗର
ସତୃଷ୍ଣ ନୟନେ ଅନାଇ-
ଥାନ୍ତି ଥରକୁ ଥର ।
ଜୟ-ଲକ୍ଷ୍ମୀ-ରୂପେ କରନ୍ତି
ଶାନ୍ତି-ପୁରକୁ ବିଜେ
ଅଶାନ୍ତି-ସାଗର-ଉତ୍ଥିତା
ରାମ-ରମଣୀ ନିଜେ ।
* ଟେକି ଚନ୍ଦ୍ରକିତ ବରହି
ବେନି ବାଥିରେ ରହି
ଗୁଲଲେ ଉଭୟ ପାର୍ଶ୍ୱରେ
ଶତ ଶତ ବରହୀ ।
ସୁକୁମାର କର-ଶାବକେ
କରେ ଟେକି କମଳ
ଠେଲା ଠେଲି ହୋଇ ଗୁଲଲେ
ସଙ୍ଗେ ଦଳକୁ ଦଳ ।
ପାଦପେ ଝୁଲିଲା ପଲ୍ଲବ
ଶୋଭି ପୁଷ୍ପ-ସ୍ତବକେ,
ଧାଡି ଧାଡି ଶ୍ୱେତ ପତାକା
ତହିଁ ହୋଇଲେ ବକେ ।
ମଧୁରେ ଗାଇଲେ କୋକିଳ—
କୁଳ ମଙ୍ଗଳ-ଗୀତ,
ଅଳି-ସ୍ୱନେ ଜୟ-ଶଙ୍ଖର
ଧ୍ୱନି ହେଲା ବ୍ୟଞ୍ଜିତ ।

---

* [illegible] — ମୟୂରପୁଚ୍ଛ ।

ବାରମ୍ବାର ଉଡ଼ି ବୃକ୍ଷରୁ
ହୋଇ ମୁକୁତ-ମୁଷ୍ଟି
ଶୁକ ସାରିଦଳ ମାର୍ଗରେ
କଲେ କୁସୁମ-ବୃଷ୍ଟି ।
ବନ୍ଦାପନା-ଦୀପ ଜଳନ୍ତି,
ଏଣେ ଗୋଧୂଳି-ତାରା,
ବର୍ଷିଲେ ଋଷି ଆଶ୍ରମେ
ପ୍ରେମ-ନୟନ-ଧାରା ।
ବାଲ୍ମୀକି ନିଦେଶେ ଉଠନ୍ତେ
ସବୁ ପେଟିକା ଥୋଇ
କନ୍ୟା ଏକ ଦେଲା ସତୀଙ୍କ
ମୁଖ-ମଣ୍ଡଳ ଧୋଇ ।
କନ୍ୟା ଏକ ଜଳ-କଳସ
ଢାଳୁଁ ଢାଳୁଁ ଚରଣେ,
ତା ହସ୍ତରୁ ନେଇ ସ୍ୱପଦ
ପ୍ରକ୍ଷାଳିଲେ ଆପଣେ ।
ସତୀଙ୍କି ବସାଇ ସୁତାଏ
ମୃଦୁ ପଲ୍ଲବାସନେ
ଫଳ ମୂଳ ଆଣି ସମକ୍ଷେ
ଦେଲା ପର୍ଣ୍ଣବାସନେ ।
ଅନୁକମ୍ପା ନାମେ ବୃଦ୍ଧାଏ
କରି ସତୀଙ୍କି କୋଳ
ପୋଛି ଦେଲେ କର-କମଳେ
ତାଙ୍କ ଭାଲ କପୋଳ ।
ମମତା-ପ୍ରପାତ-ସେନେହ,
ସ୍ୱଚ୍ଛ ଉଜ୍ଜ୍ୱଳ ଜଳ
ପକାଇ ସତୀଙ୍କ ପରାଣ
ପ୍ଲାବି କରି ଶୀତଳ,
ମୁଖ ଚୁମ୍ବି ଚୁମ୍ବି ବୋଇଲେ
ଧୀର କୋମଳ ଭାଷେ,
"ମୋ ଭାଗ୍ୟକୁ ମାଆ ଆସିଛୁ
ଆଜି ତୁ ମୋର ପାଶେ ।
ରାଜରାଜେଶ୍ୱରୀ ମାଆ ତୁ
[illegible]

ତମଃପୂର୍ଣ୍ଣ କର ଉଜ୍ଜ୍ୱଳ
କଲୁ ପୃଷ୍ଠୀର ମୋର ।
ବନଯାକ କର ନ ଥିବୁ
ପର୍ କଷ୍ଟ ଆହାର;
ସ୍ପୃଅ କରୁଥିବ ଗରଭେ
ଚଳ ପାଦପ୍ରହାର ।
ଖାଅ ମା ! ଖାଅ ମା ! ମା-ଘରେ
ତୋର କି ଅଛି ଲାଜ,
ଗୃହିଁ ରହିଛନ୍ତି ତୋତେ ତୋ
ଏହି ସଖୀସମାଜ ।”
ବୋଲି କଷ୍ଟ ଦେଇ ଧରାଇ
ଦେଲେ ନାରଙ୍ଗୀ-କଳ,
ଗୋଟି ଗୋଟି କର କର୍ପୂର—
କାନ୍ତି ପକ୍ୱ କଦଳୀ,
* ବୀଜ ଭିନ୍ନ କର କୁଲକ
ଖଣ୍ଡି ଖଣ୍ଡି ପନସ,
ସୁମଧୁର ପିଣ୍ଡ ଖର୍ଜ୍ଜୂର
ସହକାର ସରସ ।
ବାରମ୍ବାର ବୋଲି ମଧୁରେ
“ଧୀରେ ଭୁଞ୍ଜ ମା ଭୁଞ୍ଜ”,
କରେ ଦେଲେ ଭାଙ୍ଗି କରକ—
ମଞ୍ଜି ପୁଞ୍ଜକୁ ପୁଞ୍ଜ ।
ଅବଶେଷେ “ଆଉ ଦଓଟି
ଆଉ ଦଓଟି” ବୋଲି,
ଭୁଞ୍ଜାଇଲେ ସେହୁ ସତୀଙ୍କି
ଅଠ ଦଶୋଟି କୋଳି ।
ମାତୃ-ସ୍ନେହ-ସୁଖ ନ ଥିଲେ
ବୁଝି ବାଲ୍ୟ-ଜୀବନେ,
ସେହି ସୁଖ ସତୀ ବୁଝିଲେ
ଆଜ ବାଲ୍ମୀକି-ବନେ ।
ଆଚମନ କର ଜାନକୀ
ଫଳ-ଭୋଜନ-ଶେଷେ



*କୁଲକ—କେନ୍ଦୁ ।

* କାଷ୍ଠ ଆସନରେ ବସିଲେ
ତାପସୀଙ୍କ ନିଦେଶେ ।
† କୁମାରୀଏ ଦେଲେ କୋରଙ୍ଗୀ
ଫଳ ଦେବୀଙ୍କ କରେ,
ମୁଖେ ପକାଇଲେ ସୁମୁଖୀ
ତାହା ଘେନି ସାଦରେ ।
କନ୍ୟା ଏକ ଆଣି କୋମଳ
ଶୁଷ୍କ ନୀବାର ନାଳ
ଶଯ୍ୟା କରିଦେଲେ ତହିଁରେ
ପାରି ହରଣ ଛଳ ।
ସଖୀ ଦୁଇ ତହିଁ ରହିଲେ
ବଇଦେହୀଙ୍କ ପାଶେ,
ଆଉମାନେ ହେଲେ ଅନ୍ତର
ନିଜ ନିଜ ଆବାସେ ।



* ସୀତା ଗର୍ଭବତୀ ଥିବାରୁ ଉଚ୍ଚସ୍ଥାନ ଅସମ୍ଭବ । † କୋରଙ୍ଗୀ — ଗୁଜରାତୀ ।

# ଚତୁର୍ଥ ସର୍ଗ



ଗୈରିଖି ।

ମଙ୍ଗଳେ ଅଇଲା ଉଷା ବିକଚ-ରାଜୀବ-ଦୃଶା।
ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
କରପଲ୍ଲବେ ନୀହାର— ମୁକ୍ତା ଧରି ଉପହାର
ସତୀଙ୍କ ବାସ-ବାହାର-ପ୍ରାଙ୍ଗଣେ ରହି,
୧ କଳକଣ୍ଠ-କଣ୍ଠେ କହିଲା,
"ଦରଶନ ଦିଅ ସତି, ରାତି ପାହିଲା" । ୧ ।

ଅରୁଣ କଷାୟ ବାସ, କୁସୁମ କାନ୍ତି ବିକାଶ,
ପ୍ରଶାନ୍ତ ରୂପ ବିଶ୍ୱାସ ଦିଅନ୍ତି ମନେ,
କେଉଁ ଯୋଗେଶ୍ୱରୀ ଅସି ମଧୁର ଭାଷେ ଆଶ୍ୱାସି
ଡାକୁଛନ୍ତି ଦୁଃଖରାଜି-ଉପଶମନେ;
ଦେବାପାଇଁ ନବ ଜୀବନ,
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ । ୨ ।

ସମୀର ସଙ୍ଗୀତ ଗାଏ, ଭ୍ରମର ବୀଣା ବଜାଏ,
ସୁରଭି ନର୍ତ୍ତନେ ଥାଏ ଉଷା ନିଦେଶେ;
କୁମ୍ଭାଟୁଆ ହୋଇ ଭାଟ ଆରମ୍ଭିଲା ସ୍ତବପାଠ,
୨ କଳିଙ୍ଗ ଅଇଲା ପାଠ ମାଗଧ-ବେଶେ,
ଲଳିତ ମଧୁରେ କହିଲା,
"ଉଠ ସତି ରାଜ୍ୟରାଣି, ରାତି ପାହିଲା" । ୩ ।

ମୁନି-ମୁଖ-ବେଦ-ସ୍ୱନ ପୂର୍ଣ୍ଣ କଲା ଶ୍ୟାମବନ,
ଉଠିଲା ଭେଦି ଗଗନ ଉଚ୍ଚ ଓଁକାର,
୩ ବୈକୁଣ୍ଠେ ଦେଇ ଉପତ ଅନନ୍ତ ଶ୍ରୁତିକି ଗତି
ବହିଲା କି ସରସ୍ୱତୀ ବୀଣା ଝଙ୍କାର;
ବେଳୁଁ ବେଳ ବନ ଉଜ୍ଜ୍ୱଳ,
ମନ୍ତ୍ରବଳେ ଯେସନେ ବଢି ଆସିଲା ବଳ । ୪ ।

---

୧ କଳକଣ୍ଠ — କୋକିଳ ।

୨ କଳିଙ୍ଗ — [illegible] ପକ୍ଷୀ । ମାଗଧ — [illegible] । ୩ ବୈକୁଣ୍ଠ — ବିଷ୍ଣୁ ।

ଏକାଳେ ବ୍ରହ୍ମଚାରିଣୀ ଅନୁକମ୍ପା ତପସ୍ୱିନୀ
ଆସି ଜନକନନ୍ଦିନୀ ପାଶେ ଗମ୍ଭୀରେ
ବୋଇଲେ, ଉଠ ବୈଦେହି, ତୃଷା ସୁକୁମାରଦେହି
ଅଛିଛୁ ଦର୍ଶନ ଦେଇ ତୋଷ ବାଧ୍ୟରେ;
ତମସା ରହିଛୁ ଅନାଇ
କୋଲ କର ଥରେ ସୁଖ ଲଭିବାପାଇଁ । ୫ ।

* ପଦ୍ମିନୀ-ହୃଦ-ଶିଶିର— ବନ୍ଧୁରେ ଖର-ରଶ୍ମିର
ପ୍ରତିବିମ୍ବ ପରି, ଯାର ଶ୍ରମ ମୂରତି
ଶୋକଜର୍ଜରିତ ଚିତ୍ତ— ଫଳକେ କରି ଚର୍ଚ୍ଚିତ
ହେଲେ ଆସନୁ ଉତ୍ଥିତ ଜାନକୀ ସତୀ,
ନମି ଅନୁକମ୍ପା ପୟରେ
ବନ୍ଦିଲେ ତୃଷାର ପଦ ସବିନୟରେ । ୬ ।

ବୋଇଲେ ତାକୁ ପ୍ରଶଂସି, "ତୁମ୍ଭେ ତମିର-ବିଧ୍ୱଂସି-
ରବି-ଆଗମନ-ଶଂସୀ ହୁଅ ସଂସାରେ,
ତୁମ୍ଭ କୋମଳ ଚରଣ କରେ ଜ୍ୟୋତି ଆହରଣ
ତହିଁ ଯାଉଛି ଶରଣ ଦୃଢ଼ ଆଶାରେ;
ଶୁଭ୍ର ସଉରଭ ରସିକେ,
ଶୁଭ-ସମ୍ପାଦିନୀ ହୁଅ ରଘୁବଂଶିକେ" । ୭ ।

ଉତ୍ସୁକ ହୃଦସ୍ନେହ ରାଜି— ଶେଷରେ ଆଶ୍ରମ-ଧାତ୍ରୀ
ତମସା ନର୍ମଳ-ଗାତ୍ରୀ ପବିତ୍ର-ଧାରା
ପ୍ରାଙ୍ଗଣେ କୁସୁମ ବାସ୍ପ ସୁବାସିତ ନୀର ସିକ୍ତ
ମଙ୍ଗଳପ୍ରଦୀପ ରଚି ପ୍ରଭାତୀ ତାରା,
ମୁହୁର୍ମୁହୁଃ ମୀନ-ନୟନେ
ଚାହିଁ ଥିଲା ସୀତା-ସତୀ-ଶୁଭାଗମନେ । ୮ ।

ଉଠନ୍ତି ତାପସକନ୍ୟା—' ଗଣଙ୍କ ଆଦର-ବନ୍ୟା—
ପ୍ଲାବନେ ଜଗତ-ଧନ୍ୟା ସତୀ-ରଞ୍ଜନ
ବାହାର ଅବଗାହନେ ଅନୁକମ୍ପାଙ୍କ ଗହଣେ
ତମସା ଧାର ବହନେ କଲେ ଗମନ;
ସତୀଙ୍କି ତମସା ଅଙ୍କରେ
ଘେନ ସ୍ନେହେ ଆଲିଙ୍ଗିଲା ତରଙ୍ଗ-କରେ । ୯ ।

---

* ଖରରଶ୍ମି— ସୂର୍ଯ୍ୟ ।

ଅମୃତ ମଧୁର ସ୍ୱରେ ଭାଷିଲା ପରିତୋଷରେ,
"ମାଆ ଗୋ, ମୋ ମାନସରେ ନ ଥିଲା ଆଶା,
କରିବ ଅଙ୍କେ ବିହାର ରାଜଲକ୍ଷ୍ମୀ-ହୃଦହାର
ସୀତା କରି ପରିହାରି ଭୋଗ-ପିପାସା;
ଭାଗ୍ୟବତୀ ମୋତେ ସଂସାରେ
ବୋଲିବେ ତୋ' ଯୋଗୁଁ ଏକା ପରଶଂସାରେ । ୧୦ ।

ବନେ ବନେ ଭ୍ରମି ଭ୍ରମି ଗଣ୍ଡ-ଲୁହୁକେ ନ ଭ୍ରମି
ବହୁ ବାଧା ଅତିକ୍ରମି ସ୍ୱଚ୍ଛ ଜୀବନେ,
ଅନ୍ଧାର ଦୁଃଖ ନ ଗଣି ଆଲୋକ ସୁଖ ନ ମଣି
୧ ଚଳିଛୁଁ ଦୂର ସରଣୀ ନତ ବଦନେ;
ଜନମ କରୁଛୁଁ ସଫଳ
୨ ତୋୟ-ଦାନେ ତୋଷି ତୀରବାସି-ସକଳ । ୧୧ ।

୩ ମନ୍ଦାକିନୀ, ଗୋଦାବରୀ ସେ ସବୁ ଗୁଣେ ମୋ ସରି
ତଥାପି ବର୍ଦ୍ଧନ କରୁଛନ୍ତି ଗୌରବ
ଲଭି ତୋ ପବିତ୍ର ପଦ— ତହିଁ ଅକ୍ଷୟ ସମ୍ପଦ
୪ ତ୍ରିଦଶପଦ-ପଦ-ପ୍ରଦ ଅଙ୍ଗ ସୌରଭ;
ତାହା ଥିଲା ମୋର ବାଞ୍ଛିତ,
ତଦଭାବେ ହେଉଥିଲି ମନେ ଲାଞ୍ଛିତ । ୧୨ ।

କରିଥିଲି ଶୁଭ କର୍ମ ବୋଲି ଆଣିଦେଲା ଧର୍ମ
ସମସ୍ତେ ତୋତେ ମୋ ମର୍ମବାସନା ଜାଣି,
ପାଇଛୁଁ ଦୁର୍ଲଭ ଧନ କରିବି ତୃପ୍ତି ସାଧନ
ନତ କରି ସମ୍ବୋଧନ କୋଳକୁ ଆଣି;
ଅଙ୍ଗ ପରିମଳ ତୋହର
ହେବ ମୋର ଜୀବନର କଳୁଷ-ହର । ୧୩ ।

ମୋ କୋଳ-କୋଳ ଚପଳ ସାରସ ମରାଳଦଳ
୫ କୋକ ଯୁଗଳ ଯୁଗଳ ବକ ପଙ୍କତି
ତୋ ପୁଣ୍ୟମୟ ଶରୀର— କ୍ଷାଳନେ ପୂତ ମୋ ନୀର—
ପାନେ ବଞ୍ଚିଥିବେ ଚିରଦିନ ମୋ କତି;
କଳନାଦ-ଛଳେ ତୋ ଯଶଃ
ଗାଇ ମୋ ଶ୍ରୁତିକ ତୋଷୁଥିବେ ଅଜସ୍ର । ୧୪ ।

---

୧ ସରଣୀ—ପଥ । ୨ ତୋୟ—ପାଣି । ୩ ମନ୍ଦାକିନୀ—ଚିତ୍ରକୂଟର ଗିରିନଦୀ । ୪ ତ୍ରିଦଶ—ଦେବତା । ୫ କୋକ—ଚକ୍ରବାକ ।

ପତିବ୍ରତା-ଅଙ୍ଗେ ଲାଗି    ପବିତ୍ର ହେବାର ଲାଗି
ବ୍ରତତୀ-ବାସ-ବିରାଗୀ ପ୍ରସୂନମାନ
ଦୂରୁଁ ଦୂରୁଁ ହାସି ହାସି    ଧାଇଁଥିବେ ଭାସି ଭାସି
ଭ୍ରମୁଥିବେ ଆସି ଆସି ତୋ ସନ୍ନିଧାନ,
ସ୍ନାନ ସମୟେ ମୋ ପୟରେ
ଦୟାମୟି ! ନ ପେଲିବୁ ତାଙ୍କୁ ପୟରେ । ୧୫ ।

ମୋ କୂଳେ ଗୃହ ଚରଣ    କରିବୁ ମା ବିଚରଣ-
ବ୍ୟପଦେଶେ ବିତରଣ ଅମର କାନ୍ତି,
ତା ଲଭି ବନ ପାଦପ-    ରାଜି ହୋଇ ଦପଦପ
ବହିବେ ଅମର-ଦର୍ପ ବହିବେ ଶାନ୍ତି;
ପଲ୍ଲବେ ପାଟଳ ଶ୍ୟାମଳ
ରୁଚିର ରୁଚି ରହିବ ଚିର ନିର୍ମ୍ମଳ ।" ୧୬ ।

* ସୀତା ବୋଇଲେ, "ପଟୀର—    ମଧୁର ଏ ସ୍ୱଚ୍ଛ ନୀର;
ନୀର ନୁହେ, ଜନନୀର କ୍ଷୀର ପ୍ରତ୍ୟକ୍ଷେ;
ଗିରି-ସ୍ତନୁ ବିନିସୃତ.    ହୋଇ ଆସୁଛି ଅମୃତ-
ଧାରି ପରି ସୀତା ମୃତକଳପା ଲକ୍ଷେ;
ଓହୋ ଭୁ ତ ମୋ ମା ଏ ଦେଶେ,
ମୋ ଦୁଃଖେ ବିଦୀର୍ଣ୍ଣ-ବକ୍ଷା ତମସା-ବେଶେ । ୧୭ ।

ଛେଦ ଭେଦଅଛି ପୃଷ୍ଠ    ସେ ପାଖ ହେଉଛି ଦୃଷ୍ଟ
ତଥାପି ସୁତାକୁ ତୁଷ୍ଟ କରିବାପାଇଁ
ଫିଟାଇ ସ୍ନେହ-ଲୋଚନ    ପ୍ରୀତି-ମଧୁର-ବଚନ-
ବିନ୍ୟାସେ ଗୃହୁଁ ରଚନ କରୁ ଗେହ୍ଲାଇ;
ଧନ୍ୟ ଧନ୍ୟ ମା ତୋ ହୃଦୟ,
ମୋ ଦୁଃଖ-ଆତପ ପାଇଁ ବାଲୁକାମୟ । ୧୮ ।

ରାମ-ସାମ୍ରାଜ୍ୟେ ଯେ ସୀତା    ଲୋକ-ଲୋଚନେ ଦୂଷିତା
ହୋଇ ଚିର ନିର୍ବାସିତା ସେ ତୋର ମତେ
ନିଜ ପତିବ୍ରତା ଧର୍ମ—    ବଳେ ସ୍ଥାବର ଜଙ୍ଗମ
ପବିତ୍ରକରଣେ କ୍ଷମ ହେବ ଜଗତେ;
ମାତା ବୁଝେ ସୁତା ବେଦନା,
ମାତା ନେତ୍ରେ ଦଗ୍ଧ-ମୁଖୀ ଚନ୍ଦ୍ରବଦନା । ୧୯ ।

---

* ପଟୀର—ନାରିକେଳ ଜଳ ।

ହେ ଧୀର ଚିର ଅଶ୍ରାନ୍ତ ହେଲାଣି ମୋର ନିଶ୍ଚନ୍ତ,
ଭରସା ତୋ ଶାନ୍ତିମୟ ପଦକମଳେ;
ଶୂନ୍ୟ ଯାର ଚରାଚର, ଜନନୀ କୋଳ ମାତର
ତାର ଆଦର-ଆକର ମହୀମଣ୍ଡଳେ;
ଜନନୀ ଯା ରତ୍ନଗରଭା,
କାହିଁକି ସେ ଅନ୍ୟ ସ୍ଥାନ ଲୋଡ଼ିବ ଅବା ।" ୨୦ ।

ସୁଶୀତଳ ସୁନିର୍ମଳ ପବିତ୍ର ତମସା-ଜଳ;
ତଥା ସ୍ୱଭାବ ସକଳ ମୁନିସୁତାଙ୍କ;
ସ୍ନେହେ ତମସା ଚଞ୍ଚଳ କରି ପ୍ରତିବିମ୍ବ ଛଳ
ହୋଇଗଲା ଅବିକଳ ସ୍ୱରୂପ ତାଙ୍କ;
ଆଲିଙ୍ଗନେ ତାଙ୍କ ବିଗ୍ରହେ
ବିଗ୍ରହ ମିଶାଇ ଦେଲା ଶୀଘ୍ର ସାଗ୍ରହେ । ୨୧ ।

* ସତତ ସୀତା ସକାଶ ରହି ଗୃହିଁବା ସକାଶ
ପାଇ ଶୁଭ ଅବକାଶ ଏହି ଉପାୟେ,
ହୋଇ ବହୁନେତ୍ରବତୀ ବହୁ ହୃଦ ବହୁ ମତି
ଲାଭ କଲା ବୁଦ୍ଧିମତୀ ଅନେକ କାୟେ;
ସମଧର୍ମି ସମଗୁଣରେ
ମିଶି ମନ ତୋଷ ଲଭେ ବହୁ ଗୁଣରେ । ୨୨ ।

ସମସ୍ତେ ଅବଗାହନ ବଢ଼ାଇ ପ୍ରତ୍ୟାଗମନ
କରି ବାଲ୍ମୀକି ଚରଣ କଲେ ବନ୍ଦନା;
ଆଶିଷେ ମୁନି-ପୁଙ୍ଗବ ବୋଇଲେ, "ଜ୍ଞାନ-ବିଭବ-
ଅର୍ଜନେ ସୁସିଦ୍ଧି ଲଭ କରି ସାଧନା;"
ବିଶେଷେ ସୀତାଙ୍କୁ ସାଦରେ
ବୋଇଲେ, "ବିରସୂ ହୁଅ ଅପ୍ରମାଦରେ । ୨୩ ।

ନନ୍ଦନ ! ତୁ ଏ ଆଶ୍ରମ- ପାଦପଙ୍କୁ ସ୍ନେହ ଶ୍ରମ
ପ୍ରୟୋଗେ ନନ୍ଦନୋପମ କରି ଯତନ;
ସେଭାବେ ତୋ ଅନୁଭବ ସ୍ୱଭାବେ ହେବ ସମ୍ଭବ
ଭବେ କେମନ୍ତ ଦୁର୍ଲଭ ସୁତ-ରତନ;
ଅନୁକମ୍ପା ଥିବେ ନିୟତ
ସକଳ ଅଭାବ ତୋର ମୋଚନେ ରତ ।" ୨୪ ।

---

* ସକାଶ — ନିକଟ ଓ ନିମନ୍ତେ ।

ମୁନୀନ୍ଦ୍ର-ଆଦେଶ-ମତେ ତହୁଁ ଚଳିଲେ ସମସ୍ତେ,
କମଳ-କୋମଳ ହସ୍ତେ କଳସ ଧରି,
କନ୍ୟାମଣ୍ଡଳେ ଜନକ— ସୁତା-କାନ୍ତି ଝକଝକ
ସ୍ଫଟିକ ମଧ୍ୟେ ହୀରକ-ପ୍ରଭଭି ପରି;
ଉପବନ କଲେ ଗମନ,
ବଢ଼ାଇଲା ବନ ଶୋଭା ପାଇ ସେ ଧନ । ୨୫ ।

ବନ-ଲକ୍ଷ୍ମୀ-ଦ୍ୱାରେ ସୀତା ଗନ୍ଧେ ସେ ଉଲ୍ଲସିତା
ମତିରେ ହୋଇ ଭୂଷିତା ରବି-କିରଣେ,
୧ ହାସ ପଲ୍ଲବ ଅଧରେ ମଞ୍ଜୁ ମଧୂକ ରଦରେ
ମଣ୍ଡି ନାଚିଲା ଆଦରେ ଚିତ୍ତହରଣେ;
ଅର୍ଘ୍ୟ ଦେଇ ରଙ୍ଗ ଶାଳ୍ମଳୀ
ପାଦ୍ୟ ଦେଲା ଦୂର୍ବାଦଳ ହିମ-ପଟଳୀ । ୨୬ ।

ସ୍ଥଳକମଳ ଆସନ- ଦେଇ, ପ୍ରତିସମ୍ଭାଷଣ
କଲା ଶାରିକାଭାଷଣ ଛଳେ ମଧୁରେ;
ଶରଦ ସରସୀ ଜଳ ଫୁଟାଇ ନବ କମଳ
ଅଳସ୍ୱନେ ଯଥା କଳ-ହଂସବଧୂରେ;
ବୋଇଲା, "ପାହିଲା ସଜନ,
ତୋ ପଦ-ଅରୁଣେ ମୋର ଖେଦ-ରଜନୀ । ୨୭ ।

ତୋତେ ମୁଁ ଭାଗ୍ୟବଶତଃ ଲଭି ନଭିପୁଷ୍ପ ସତ-
କରି ଅସୀମ ଉସତ ଅନ୍ତଃକରଣେ,
ଚିତ୍ରକୂଟ-ଉପତ୍ୟକା ହିଦ୍ୱ-ସେବିତ ଦଣ୍ଡକା
ପାରିବାର-ପାର-ଲଙ୍କା-ଅଶୋକାରଣ୍ୟେ,
ଆଗେ ଥୋଇ ତୋତେ ଆଦର୍ଶ,
ଗଢ଼ିଲି ପ୍ରୀତି-ପ୍ରତିମା ଚଉଦ ବର୍ଷ । ୨୮ ।

୨ ଯେତେବେଳେ ପୁଷ୍ପକରେ ବାହୁଡ଼ି ଗଲୁ ପୁଷ୍କରେ
ଉଭା ହୋଇ ପୁଷ୍ପକରେ ମୃଗନୟନେ,
ଉର୍ଦ୍ଧ୍ୱେ ଗୃହିଁ ବିଷାଦରେ ତୋତେ ମଧୁର ନାଦରେ
୩ ଡାକୁ ଯେ ଥିଲି ସାଦରେ ଦୀର୍ଘ ଅୟନେ,
ସଖୀ କଥା ସ୍ମରି ମନରେ
ଆସିଲୁ କି ସଖି, ଆଜ ଏତେଦିନରେ । ୨୯ ।

---

୧ ମଧୂକ—ମହୁଲ । ୨ ପୁଷ୍ପକରେ—ପୁଷ୍ପକରଥରେ ଓ ପୁଷ୍ପହସ୍ତରେ ।
ପୁଷ୍କର—ଆକାଶ । ୩ ଅୟନ—ମାର୍ଗ ।

ଦୀର୍ଘ ବିରହ ବିଶେଷ     ସହି ମୁଁ ନ ସହି ଶେଷ—
ଚିନ୍ତାରେ ତାପସୀ ବେଶ କରି ଧାରଣ,
ତୋ ହୃଦୟ-ଆଦରଶେ     ପ୍ରତିବିମ୍ବି ସ୍ନେହରସେ
ମନ୍ତ୍ରାଇ ତୋତେ ହରଷେ କଲି ବରଣ;
ଧନ୍ୟବାଦ କର ଗ୍ରହଣ,
ଶ୍ରଦ୍ଧା ସହ କଲୁ ଯା ମୋ ବାଞ୍ଛା ପୂରଣ । ୩୦ ।

ପାଇଥିଲେ ସାଧୁ ସଙ୍ଗ     ସଦ୍‌ଭାବ ଚିର ଅଭଙ୍ଗ
ରହେ, ସ୍ଥିର ନୀଳ ରଙ୍ଗ ଯଥା ଗଗନେ;
ସାଧୁ ମିତ୍ରେ ମନୋରଥ     କଦାଚ ନ ହୁଏ ବ୍ୟର୍ଥ,
ତେଣୁ ମୁଁ ହେଲି ସମର୍ଥ ତୋର ଦର୍ଶନେ;
ଭାଗ୍ୟ ଥିଲେ ହୁଏ ଏ ଲାଭ,
ଭାଗ୍ୟବତୀ କଲା ସଖି, ମୋତେ ତୋ ଭାବ ।” ୩୧ ।

ବନଶ୍ରୀ ମଧୁମୋହନ     ସୀତାହୃଦୟ ଗହନ
ବିରହ ଦାବ-ଦହନ ଶାନ୍ତ କରଣେ;
ନବୀନ ଉଦୀୟମାନ     ଘନପଟଳ ସମାନ
ମାନସେ ପ୍ରତୀୟମାନ ହେଲା ସେ କ୍ଷଣେ;
ବୋଇଲେ ଜନକନନ୍ଦନୀ,
“ଆଜୀବନ ହେଲି ତୋର କାରା-ବନ୍ଦିନୀ ।” ୩୨ ।



# Selections from the writings

OF

# Chintamany Mahanty.

( ୧ )

## ବାଣୀପୂଜା

ଆବାହନ

ଚୌଖି

ଆସ ବାଣି ବୀଣାପାଣି ଖିଳ-ବାଣୀ-ବିଶ୍ୱରାଣୀ
କାବ୍ୟକଳାଠାକୁରାଣୀ କବିଜନନୀ,
ତବ ଆଗମନାପାଇଁ ଆଶାବୋଲା ନେଇ ଗୃହିଁ-
ଅଛନ୍ତି ବାସନ୍ତୀଲକ୍ଷ୍ମୀ ଫୁଲବରଣୀ,
ହର୍ଷେ ଉଭା ବନସୁନ୍ଦରୀ,
ଗୃହୁଁ ଫୁଲ-ସିଂହାସନ ବକ୍ଷରେ ଧରି । ୧ ।
ମଳୟ ମାରୁତ କରେ ଧରି ପଲ୍ଲବ-ଚାମରେ
ଅଛି ତବ ଅପେକ୍ଷାରେ ଖଞ୍ଜଣୀ ଆଶେ,
ଫୁଙ୍କେ ଶୁଭ ଶଙ୍ଖ ଅଳ ମହାଭାବେ ଢଳ ଢଳ,
ଗାଏ ପିକ 'ଆଗମନୀ' କୁଞ୍ଜ-ଆବାସେ,
ଫେରି ଚୂତ ପର୍ଣ୍ଣିସମ୍ପୁଟ
ଟେକିଅଛି ଭେଟିବାକୁ ସ୍ୱର୍ଣ୍ଣ ମୁକୁଟ । ୨ ।
ଆସ ଦେହେ, ଆସ ପ୍ରାଣେ, ଆସ ମା ଅନ୍ତରେ ଧ୍ୟାନେ,
ମଙ୍ଗଳ ଆକାଂକ୍ଷା ହୃଦେ ଆଣ ସତ୍ୱର,
ଦିଅ ସାଧନାରେ ବଳ ଉତ୍ସାହ ଶକ୍ତି ପ୍ରବଳ
କର ଅମ୍ଭ ସୁନିର୍ମଳ ସତ୍ୟ ସୁନ୍ଦର,
ପଦସେବା ଯୋଗ୍ୟତା ତବ
ପ୍ରଦାନ ଗୋ ଦେବି, ଭାଗ୍ୟ ପୁଣ୍ୟ ବିଭବ । ୩ ।
ଆଶୀର୍ବାଦ-ଜ୍ୟୋତିଜାଲେ ଧୁଅ ଉଜ୍ଜ୍ୱଳ କପାଳେ;
ମହିମା-ମୟୂଖେ ଉଠୁ ହସି ସେ ଖରେ,
ସ୍ୱର୍ଣ୍ଣମସୀ ଲେଖନୀରେ ଲେଖିଦିଅ ତାହା ଶିରେ
"ନବ ଉତ୍କଳିକା" ବୋଲି ସଫଳାକ୍ଷରେ,
ଯେନ ତାର ଭକ୍ତି-ଆରତି
ଗମ୍ଭୀର ଗୋପନ ବ୍ୟଥା ହର ଭାରତି ! ୪ ।

( ୨ )

## ଲଗାଣ ବର୍ଷା



ଅଶିଣ ପ୍ରଭାତେ ଅସଲେ ଅସଲେ
ବରଷି ଯାଉଛି ପାଣି,
ଆର୍ଦ୍ର କେଶବାସେ ଅନନ୍ତ ଉଦାସେ
ଯୋଗସ୍ଥା ପ୍ରକୃତି ରାଣୀ ।
ଭେକ ବାଯୁନାଏ (୧) ବସାଇଅଛନ୍ତି
ସାଡ଼ମ୍ବରେ ନହବତ,
ଶୁକ୍ତି ମକମକ ଶୁଭୁଛି ସୁଦୂର-
ନିନାଦିତ ୱାଣାବତ ।
ଘଡକେ ଇଶ୍ୱର ଘଡକେ ଅନ୍ଧାର
ଧରେ ନଭ ରୂପ ଛନ୍ଦ,
ବିଶ୍ୱ-ସରୋବରେ ଫୁଟି ଉଠୁଅଛି
ଧଳା ପଛେ ନୀଳ ପଦ୍ମ ।
ଦଣ୍ଡକେ ପ୍ରକୃତି ହସି ଉଠୁଅଛି,
ଦଣ୍ଡକେ ଲୁଷୁଣ୍ଡାମୁହିଁ,
ଥରେ ଥରେ ପୁଣି ଛାଲ ଦେଉଅଛି,
ଅସମ୍ଭାଳେ ନେତ୍ରୁ ଲୁହ ।
କପାଇଁ ତାହାର ଏ କ୍ଷଣବୃତ୍ତି,
କଏ ଏ ରହସ୍ୟ ଜାଣେ,
ହାସ୍ୟ ରୋଦନର ଦ୍ୱୈରଥ ସମର
ଲାଗିଛି ତା ପ୍ରାଣେ ପ୍ରାଣେ ।
କାନ୍ଦି କାନ୍ଦି ଚକ୍ଷୁ ମାଳିନ୍ୟ ଭଜିଛି
ପରଳ ଧୋଇଲା ପ୍ରାଏ,
ଘନ ଘନ ବକ୍ଷ- ସ୍ପନ୍ଦନ ତାହାର
ମନ୍ଦ-ମନ୍ଦ ହୋଇଯାଏ ।
କାହା ଉଦ୍ଦେଶ୍ୟରେ ଛାଳେ ଏହି ଅଶ୍ରୁ
ପ୍ରେମ ବା ଶୋକସମ୍ଭୂତ,
ଅଥବା ଏ ବେଳ ମଧୁରୁ ବାହାର
ସ୍ୱର୍ଗର ଛଣା ଅମୃତ ।

---

(୧) ବାଦ୍ୟକାର

ଶୋକାଶ୍ରୁ ହେଲେ ତ          ବ୍ୟଥା-କୀଟଦୁଷ୍ଟ
ହୋଇଥାନ୍ତା ଜ୍ୱାଳାମୟ,
ଶୀତଳ ସ୍ୱଚ୍ଛଳ          ପୁଣ୍ୟ ଶାନ୍ତିଭରା
ପ୍ରେମାଶ୍ରୁ ଏଣୁ ନିଶ୍ଚୟ ।
ଅଶ୍ରୁ ରୂପେ ଝରେ          ଅଣାକାରଙ୍କର
ଅନନ୍ତ କରୁଣାଧାରା,
ଲୁହ ନୁହେ ଏହା,          ଜୀବନ ପ୍ରବାହ
ଜୀଅଉଛି ବିଶ୍ୱସାରା ।
ଗଢ଼ୁଛି ଅଦୃଷ୍ଟ          ଜୀବନନାଟକ
ବାର୍ଦ୍ଧକ୍ୟ ବାଲ୍ୟ ଯୌବନ,
ଏହା ଯୋଗୁଁ ହିନା          ସୃଷ୍ଟିଦେବୀ ଶୋଭା
ଧରନ୍ତି ନିତ୍ୟ ନୂତନ ।



( ୩ )

## ଅଗିରା ପୁନେଇ

ଅଗିରା ପୁନେଇ ପ୍ରବେଶ
ଶୀତ ପଡ଼ିଲା ଠେଲି,
ଅଗ୍ନି ସ୍ତୂପ ରଚି କ୍ଷେପିଲେ
ଜନେ ବାର୍ତ୍ତା ବୁ ବଳ ।
ବହ୍ନୁ ଜିହ୍ୱା ଶୂଳ ଶୃଟିଲା
ଶୀତେ ଶିଖା-ସମ୍ପତ୍ତି, (୧)
ବଦାନ୍ୟ ଆରତି ଅର୍ପିଲେ
ଶୀତେ ଜନପଙ୍କତ ।
ସାଧିଗଲା ଯେତେ ଯତ୍ତ ସେ
ଶୋଭା-ସଭା ଧରାର,
କରୁଛି ବସନ୍ତ ତାହାର
ଯଥାଯୋଗ୍ୟ ସଂସ୍କାର ।
ଅତୀତ-ଗୌରବ-ଗୀତିକା
ପୁଣ୍ୟକୀର୍ତ୍ତିଭୂଷିତ
ବିପଞ୍ଚୀ ପଞ୍ଚମେ ଗାଉଛି
ପିକ ହୋଇ ମୋହିତ ।
ମଧୁମୟ ମଧୁ ସମୟ
ହୁଏ ମଧୁ ଜୋଛନା,
ଶୋଭା ମଧୁ ଗ୍ରନ୍ଥେ ହୋଇଛି
ମଧୁ ଅଧ୍ୟା ସର୍ଜନା ।
ଅଥବା ମିଶିଛି ଦୁଗ୍ଧରେ
ମଧୁ-ପୁଷ୍ପ ସମ୍ପଦ,
ମଧୁ ତମସ୍ୱିନୀ (୨) ମାଧୁରୀ
କିବା ଆନନ୍ଦପ୍ରଦ ।
ପ୍ରକୃତ ବାର୍ଷିକ ସୌଭାଗ୍ୟ
ଏବେ ଆସିଛି ଫେରି,
ରୂପ-ଦେବେ ହେବେଁ ଲଜ୍ଜିତ
ତାହା ମାଧୁରୀ ହେରି ।

(୧) ଅଗ୍ନି । (୨) ରାତ୍ରି ।

ଅଗ୍ନିର କିରଣେ ଯେସନ
ବହ୍ନିବଶୀ ଉଜ୍ଜ୍ୱଳ,
ଉଜ୍ଜ୍ୱଳୁ ତେସନ ଉନ୍ନତି—
ଦେବୀ-ମୁଖ-କମଳ ।
ସୁଷୁପ୍ତ ମାନବ ଚେଇଁବ
ବାହୁଡ଼ିବ ଅଜ୍ଞାତ,
ବାହୁଡ଼େ ଯେସନ ବସନ୍ତ
ହେଲେ ଅତୀତ ଶୀତ ।
ଦେଶୋନ୍ନତି-ଯାଗେ ଅର୍ପିବେ
ତୁଚ୍ଛ ସ୍ୱାର୍ଥ ଆହୁତି,
ହସିବ ଉତ୍କଳ-ସୁନ୍ଦରୀ
ଲଭି ହୃଦ ବିଭୂତି ।



( ୪ )

## କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ



( ୧ )

ମହାତୀର୍ଥ ମହାସ୍ୱର୍ଗ ଉତ୍କଳ ପ୍ରଦେଶ,
ବିହରନ୍ତି ସଦା ଯହିଁ ହରି ହୃଷୀକେଶ,
ଜନ୍ମିଲେ ଯା ଅଙ୍କେ ତୁମ୍ଭ ବାପେ ଗୋସବାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୨ )

ସୁଧାକଳ୍ପ ପୁଷ୍ଟିକର ଯାର ଜଳବାୟୁ,
ପ୍ରବର୍ଦ୍ଧନ କରେ ନିତ୍ୟ ଜୀବ ପରମାୟୁ,
ଏକାଳେ ସେ ଅବନତ ତୀବ୍ର ବ୍ରହ୍ମଶାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୩ )

ନିପଟ ଓଡ଼ିଆ ପୂର୍ବ ପୁରୁଷେ ତୁମ୍ଭର,
ଆକୁମାରୀ ହିମାଳୟ ହୋଇ ଥରହର
କମ୍ପି ଉଠୁଥିଲା ଦିନେ ତାହାଙ୍କ ପ୍ରତାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୪ )

ପୁଣ୍ୟପୂତ ଦେବସ୍ତୁତ ସ୍ୱାଧୀନତାଧାତ୍ରୀ,
ଚିର ରତ୍ନପ୍ରସବିନୀ ରତ୍ନୋଜ୍ଜ୍ୱଳଗାତ୍ରୀ,
ସଙ୍କୁଚିତ ସେହି ଦେଶ ପ୍ରତିବେଶିଦର୍ପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୫ )

ଯେ ଦେଶର ଯଶୋଗୀତି ଭାଷା ଅତିକ୍ରମେ,
ଜଗତ ଯା ପଦମୂଳେ ନମେ ସସମ୍ଭ୍ରମେ,
ଜନ୍ମିଲ ସେ ଦେଶେ ତୁମ୍ଭେ ତାର କେଉଁ ପାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୬ )

ଜ୍ଞାନ ଧର୍ମ ବିତରଣେ ସଦା ଯେ ଅକୁଣ୍ଠ,
ଶାନ୍ତିପ୍ରିୟ ଅଉଧା ଯାର ମର୍ତ୍ତ୍ୟବୈକୁଣ୍ଠ,

ସନ୍ତାପିତ ଏବେ ହାୟ ଅଭାବ-ସନ୍ତାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୭ )

ସ୍କନ୍ଦକଳ୍ପ ଉତ୍କଳୀୟ ବୀର ଜଣେ ଜଣେ
ନ କରନ୍ତି ଭୟ ରଣେ ଅଥବା ମରଣେ,
ନ ମାରି ଅରି ଯା ଖଣ୍ଡା ଫେରେ ନାହିଁ ଖାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୮ )

ବୀରତ୍ୱର ବରଭୂଷା ଯେଉଁ ବୀରମାନେ,
ନ ଥିଲା ଅସାଧ୍ୟ ଶବ୍ଦ ଯାଙ୍କ ଅଭିଧାନେ,
ତାଙ୍କର ବଂଶଜ ମତ୍ତ ଆଲସ୍ୟ ଆଳାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

( ୯ )

ଥିଲେ ଦେଶଦାସ ତୁମ୍ଭ ପିତାମହଗଣ,
ମାତ୍ର ତୁମ୍ଭେ ମୋହ-ମଦେ ତନ୍ଦ୍ରାଳନୟନ,
କହ ତାଙ୍କ ସମକକ୍ଷ ତୁମ୍ଭେ କେଉଁ ମାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

(୧୦)

ତାହାଙ୍କର ରୋଷ-ଦୀପ୍ତ ଆରକ୍ତନୟନ
କରୁଥିଲା ଶତ୍ରୁପିଣ୍ଡ ଜୀବନ ଶୋଷଣ,
ମାତିଅଛ ତୁମ୍ଭେ ହାୟ ବିଫଳ ପ୍ରଳାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ।

(୧୧)

ମୁଁ କିଏ, ପାସୋର ମନ୍ତ୍ର ମୁହଁରେ କେବଳ,
କର୍ମ ତେଜ କପାଳକୁ କରିଛ ସମ୍ବଳ,
ଚିହ୍ନି ନାହଁ ତୁଚ୍ଛ ନିଜ ପଣଗୋସବାପେ,
କିରୂପେ ଚିହ୍ନିବ ଭଲା ଆପଣାକୁ ଆପେ !

(୧୨)

ନବଡ଼ ସଭ୍ୟାଳୁ ଭ୍ରମେ ମଣୁଅଛ ତୃଷା,
ଅନୁକରି ପର ଭାଷା ପର ବେଶଭୂଷା,
ମଣୁଅଛ ହାସ୍ୟରୋଳ ବ୍ୟାକୁଳ ବିଳାପେ,
କେମନ୍ତେ ଚିହ୍ନିବ ହାୟ ଆପଣାକୁ ଆପେ !

## A selection from the poem "Naraj"

BY

## Mrutyunjaya Rath

(Born 1882, Died 1924)

'ବୌଦ୍ଧ କୀର୍ତ୍ତି ରାଜି—ମଣ୍ଡିତ ନରାଜ'
ସତେ କି ଏ ନେତ୍ରେ ବିରାଜିବ ଆଜ ?
ଭେଟାଇଲା ଅଦ୍ୟେ ଏହି ଅଶାବନ୍ଧ
ସନ୍ଧ୍ୟାଠନବନ୍ଧ, କାଠଯୋଡ଼ୀ-ବନ୍ଧ ।
ବାଲଭାନୁ ସ୍ୱର୍ଣ୍ଣ— କିରଣେ ଛୁରିତ
ସୈକତାଶଯ୍ୟନ ଦିଶେ ଶ୍ୱେତପୀତ ।
ଶବଳିତ ଶଯ୍ୟା ତେଜି ପଶ୍ଚିମାସ୍ୟେ
ପଶ୍ଚିମାଶାପଥ ଧରୁଁ ଦୃଷ୍ଟି-ଆଶେ
ପ୍ରାଚୀର ଆକାରେ ଦୂରୁ ଶୈଳରେଖା
ନୀଳ ବ୍ୟୋମତଳେ ଦୂଲେ ଦେଲା ଦେଖା ।
ଏକେ ଏକେ ପାଶେ ହେଲେ ସୁବ୍ୟକ୍ତ
କେ ନୀଳ ହରିତ ମିଶ୍ର ଆରକ୍ତ ।
ଦକ୍ଷିଣେ ପାଟଲ କେତଲ ମୁଣ୍ଡିଆ
ଭାଲୁଙ୍କା ଚୂଡ଼ାଙ୍କ ପାଶେ ପାଶେ ଟିଆ ।
ଉତ୍ତରେ ବଧାର—ପୁର ଠାଙ୍ଗି ଦିଶେ
କ୍ଷେତ୍ର ସୀମାପ୍ରାନ୍ତ—ସେତୁ ସତେ କି ସେ ?
ମଧ୍ୟେ ବିରାଜଇ ଚିତ୍ରୂରବରଣୀ
ଚର୍ଚ୍ଚିକାଗାମିନୀ ବୈରିକ ସରଣୀ ।
ଦୂଲେ ଦୂଲେ ଯାଇ ଏହି ଠାଙ୍ଗି ଅନ୍ତେ
ପ୍ରଣତୀ ପ୍ରଣୟୀ— ପ୍ରୟାଣେ ଚଳନ୍ତେ
ଦିଶିଲା ଅଦୂରେ ନରାଜ ମୁହାଣ
ଉତ୍କଳେ ପ୍ରୟାଗ- ନାମେ ଯାର ଠାଣ ।
କାଠଯୋଡ଼ୀ ଯହିଁ ଲଭଛି ଜନମ
ବେନ ସଙ୍ଗ ତହିଁ କିବା ମନୋରମ !
ତୀରେ ବିରାଜିତ ମହା-ଶ୍ମଶାବଟ,
ଉତ୍କଳେ ଏହି କି ହେବ ଶ୍ୟାମବଟ ?
ଦଗ୍ଧ ଡ଼ାଳପତ୍ରେ ଥିବାରୁ ସୁସଗ୍ଧ
ଛୁଇଁ ନ ପାରଇ ଆତପ ଯା ମଗ୍ଧ ।

ଦିନମାନ ଏଥି   ପାଷାଣ ବିକାଣୀ
ଯାପନ୍ତି ଆତପ   କଷଣ ନ ଜାଣି ।
ଗ୍ରୀଷ୍ମେ ଥୋକେ ତାପ   ଦେଖିଲେ ଅନଳ୍ପ
ଆଶ୍ରନ୍ତି ମଧ୍ୟାହ୍ନେ   ଯା ଶୀତଳ ତଳ୍ପ ।
ସେହି ବଟମୂଳ୍ଙ୍କ   ନଇର୍ତେ ଯାନ୍ତେ
ପଡ଼ିଲେ ନଗ୍ରଜ—ଯାତ୍ରୀ ନେତ୍ରପ୍ରାନ୍ତେ ।
କେ କେତେ କରମେ   ଯାଉଛନ୍ତି ମାଡ଼ି
ଅମନ୍ଦେ ବନ୍ଧୁର—ପଥେ ବାନ୍ଧି ଧାଡ଼ି ।
ବେଉଲି ଠୋକାଇ   କାଖେ କାଖିଆଇ
ଶବର ପୁରନ୍ଧ୍ରୀ   ଗମନ୍ତି ଧୂଆଁଇ ।
ଜଞ୍ଜାଳ ଝଞ୍ଜାରେ   କ୍ଷେପି କ୍ଷିପ୍ରେ ପାଦ
ଲକ୍ଷ୍ୟସ୍ଥାନେ ଯାନ୍ତି   ନ ଗଣି ପ୍ରମାଦ ।
ପୂରିଲେ ଭାଜନ   ଫେରିବେ ଭବନେ
ନିଜ ପଣ୍ୟ ଘେନ   ଆଶାପୂର୍ଣ୍ଣମନେ ।
ବାହୁଡ଼ନ୍ତି କେହି   ଖଣ୍ଡ ଶିଳା ଶିରେ
ପାର୍ଶ୍ୱ-ପଲ୍ଲୀ ପ୍ରୌଢ଼ା   ଯୁବତୀଏ ଧୀରେ ।
ଦିଶନ୍ତି ଏ ଖର୍ବା   ଗ୍ରୀବା ସଙ୍କୋଚରେ
ମ୍ଲାନ ଗଣ୍ଡଯୁଗେ   ସ୍ୱେଦଧାରା ଝରେ ।
ବିଷାଦ ଭାବନା—ମିଶ୍ରିତ ବରଣେ
ଅଙ୍କିତ ବଦନ,   ତାଙ୍କ ଅଯତନେ
ହିମପାତେ ମ୍ଳାନ   କମଳ ପରିଏ
ଖଣ୍ଡିତ ମୃଣାଳ— ଗଲେ ଶୋଭାପାଏ ।
ବନ୍ଧୁରିତ ଉର   ବିକଟିତ ବାସେ
ନୁହେ ହୃଦ ମନ୍ଦୀ— ଭୂତ ଲଜ୍ଜାତ୍ରାସେ ।
ସ୍ଥିର ରଖି ବେନ   ଚକ୍ଷୁ ନାସାମୂଳେ
ଗମନ୍ତି ମନ୍ଥରେ   ଆହା କ ମଉନେ ?
ଭାରବନ୍ତି ଶିଳ   ବସାଇ ମସ୍ତକେ
ଆସୁଛନ୍ତି ଥୋକେ   ଖଣିରୁ ବାହୁକେ ।
ତାଙ୍କ ବିନା ଆଉ   ସେ ଶିଳାଭାଜନ *
ବାହିବାକୁ କିଏ   ହେବ ବା ଭାଜନ ?
ଉଦର ଯନ୍ତ୍ରଣା   କରେ କଦର୍ଥନା
ସେଥିପାଇଁ କାର   ନ ଥାଏ ଶୋଚନା ।

---

* ଭାଜନ— ବୋଝ ।

ନାହିଁ ସାଧ କେଣେ    ଗୃଳବାକୁ ମୁଖ
ସହନ୍ତି ସମ୍ମୁଖେ    ତପନ-ମୟୂଖ ।
ବେନି କର୍ଣ୍ଣମୂଳେ    ସ୍ୱେଦଜଳଧାର
ବହିଯାଏ ଶୈଳ - ଗର୍ତ୍ତୁ ଝର୍ଝକାର ।
ଖଣିଗର୍ତ୍ତେ କେତେ    ଶିଳାଶିଳ୍ପୀ ଛପି
କାଟୁଛନ୍ତି ଶିଳା    ଜଳପି ଜଳପି ।
ଶାର୍ଦ୍ଦୂଳ ପରାଏ    ଗରଜି ଶାବଳ
ପ୍ରବଳ ଠେଙ୍କାରେ    ଠାଳଇ ପଥର ।
ଯନ୍ତ୍ର ଘେନି ଥୋକେ    ଗଢ଼ନ୍ତି ବର୍ଦ୍ଧକୀ
ଚିଲ ଚିଲପଚା    ଖମ୍ବ ଖୁର୍ଣ୍ଣି ଚକ ।
ଛାୟାପ୍ରଦ ବଟ    ପନସ ରସାଳ—
ଆଦ ଦ୍ରୁମ ପାଶେ    ଶୋହେ ଯେଉଁ ମାଳ,
ନଦୀପାର ହୋଇ    ଦୂର ଶଗଡ଼ିଆ
ଛାୟାତଳେ ଯାର    ହୋଇ କ୍ଷଣେ ଠିଆ,
ଚଳନ୍ତି ଅଦୂର    ସ୍ଥଳେ କେ ଉପେକ୍ଷି,
କେହି ବା ଲାଗନ୍ତି    ପାକେ ବେଳ ଦେଖି ।
ସେ ମାଳ ଦକ୍ଷିଣେ    ନଦୀ ପୂର୍ବପାରେ
ନରାଜ ଅଚଳ    ଠିଆ ନିଜ ଭାରେ ।
କଣ୍ଟାବଂଶ କୁଞ୍ଜ    ପୁଞ୍ଜ ପୁଞ୍ଜ ଅଙ୍ଗେ,
ବାଉରି ଶବରେ    ତହିଁ କି ଅଭଙ୍ଗେ
କାଟୁଛନ୍ତି କଣ୍ଟା    ଏଣେତେଣେ ବୁଲି,
କରେ ଲଗ୍ନ ତୀକ୍ଷ୍ଣ    କଟୁରି ସବୁରି ।
ଢନଯାକ କଣ୍ଟା    କାଟି ଯେଉଁ ଜନେ
ପରଦିନ ପ୍ରାତେ    ଚଳନ୍ତି ସଗଣେ ।
ଚଳଗୁଳ୍ମ ରେଖା    ପରାୟେ ସେ ଦଳ
କାଠଯୋଡ଼ୀ ଗର୍ଭେ    ଦଶେ ଅବିକଳ ।
ନାହିଁ ତାଙ୍କ କ୍ଷୁଧା    ତୃଷା ପଥଖେଦ,
ଏ ବୌଦ୍ଧ ଅଚଳେ    ମଣନ୍ତି ଅଭେଦ ।
ଅଚଳ ମୂରତି    ପଡ଼ନ୍ତେ ନୟନେ
ତା କଳ୍ପିତ ରୂପ    ଛପିଲା ତକ୍ଷଣେ ।



# A selection from the writings

OF

# Nilakanth Das M. A.

## ରାମଚଣ୍ଡୀଠାରେ ରାତି



୧

କି କରାଳ ଆଜି ରଜନୀ ? ବହେ ଝଞ୍ଜା ପବନ ।
ତାରା ନ ଦିଶଇ ଗଗନେ, ଶୁଭେ ଘନ ଗର୍ଜନ ।
ମୂଷଳ-ଧାରାରେ ଝଟିକା ଦିଏ କରତାଳି କେବେ ।
ଶୋଇ ପଡ଼ିଛ ତ ବାପା ହେ ଜାଣୁ ନ ଥିବ ଲବେ ।
ଆଜି ଯେ ତୁଆଁର ପୁନିଅଁ କେତେ ସୁଖ-ସରଧା,
ମାଆ ଭଉଣୀଙ୍କ ଆଦର, ନବ-ବସନ-ପିନ୍ଧା,
ମନେ ପଡୁ ନାହିଁ ବାବୁ ହେ ଲାଗି ଯାଇଛି ନିଦ;
ମାଆ ଭଉଣୀଏ ଭବନେ ଭଜୁଥିବେ ବିଷାଦ ।
ଲୁଗାରେ ହଳଦି ଲଗାଇ ଶୁହିଁଥିବେ ଜନନୀ ।
ପିଠାପଣା ଖାଉ ନ ଥିବ ସୁଖେ ଆଜି ଭଗିନୀ ।
ପବନ-ଝଙ୍କାରେ ଶୁଣୁ ସେ ଥିବେ ଡାକ ତୁମର,
ପଲକେ ପଲକେ ଚମକି ହେଉଥିବେ କାତର,
ଫାଟି ଯାଉଥିବ ଜାହାଜ ତାଙ୍କ ହୃଦ-ସାଗରେ,
ନିରାଶାରେ ଆଶା-ଚମକେ ଥିବେ ସେହୁ ଜାଗରେ ।
ଜନନୀର ଗୁରୁ ବେଦନା, ଭଗିନୀର ବିଷାଦ,
ଘୁମର ସପନେ ଚମକି ଭାଙ୍ଗିଯିବଟି ନିଦ ।
ଶୁଅ ଶୁଅ ଧନ, ଆରାମେ ଶୋଇଥାଅରେ ଶିଶୁ
ପଥଶ୍ରମ କରି ଆସିଛ, ଶ୍ରମେ ବିରାମ ମିଶୁ ।

୨

ବନ୍ଧୁ ବାଲବନ୍ଧୁ ଡେଇଁ ହେ ଆଜି ଆସିଛ ଚାଲି ।
ସଇକତ-ନଦୀ-ଗରଭେ ପଶି ହୋଇଛ ପାରି ।
ଉଭଗ-କୁଟିଳ-ଚଟାଣି ଭରା ଆସାର-ନୀରେ
ବିହଙ୍ଗ ସୋହାଗେ ଡେଇଁଛ କେତେ ବାଙ୍କେ ପ୍ରାନ୍ତରେ ।

ବାଟ ଭୁଲି କେତେ ଅନ୍ଧାରେ ସହି ବରଷାଧାରି,
ନବ ଗୁଡ଼ିକଙ୍କ ଲତିକା ମାଡ଼ି ଚାଲିଛ ପରି !
କାନ୍ଧେ ଭାର ବହି ଏସବୁ ପଥେ ସହି ନ ରହେ,
କ୍ଷୁରିହେଲେ ପୁଣି ଶାମୁକା ସାଉଁଟିଛ ହେ କେତେ ।
ନୂଆ ଜୀବନଟିଏ ଅନ୍ଧାରେ ଦେଖି ନଈ-ମୁହାଣେ
ନାଚ ଉଠିଅଛ କି ଭାବ ବହି ଶିଶୁ ପରାଣେ ।
ସେ ଭାବ ମୋହର କାହିଁ ହେ, କାହିଁ ବୁଝିବି ମୁହିଁ ?
ଶିଶୁ ମେଳେ ସିନା ବୁଲୁଛି କାଳ ଯାଉଛି ବହି !
ସୁମରିଲେ ପଦ-ବେଦନା ଭାର ନ ଦଶେ ମୋତେ;
ଭାରଟିଏ ନେବି ଭାବିଲେ ପାଦ ନ ପଡ଼େ ହାତେ ।
ନିରର୍ଥକ ସେ ତ ଶାମୁକା, କାହିଁ ରୁଚି ମୋହର ?
କି ଅଛି ତହିଁରେ, କିପାଇଁ ବେଳା କଲି ହେ ଜୂର ?
ବୁଝାଇ ଦେବ କି ବାଳକେ, ଥରେ ଶୁଣିବି ମୁହିଁ ?
ଶିଖାଉଚ ନାହିଁ; ଶିଖିବି ଆଜ ପରାଣ ଦେଇ ।
ପ୍ରବୀଣ-ହିଗ୍ରହେ ଉଠିବ ଶିଶୁ-ହୃଦୟ ନାଚ,
ସୁମର ଝୁରିବି, ଆସିଛି ମୁହିଁ ବେଳା ମୁରୁଛି ।

୩

ରହ ରହ ବାଅ ବତାସି, ରହ ବରଷା ଧାରି;
କୁଆଁର ପୁନିଅଁ ହେଉ ରେ ଆଜ ରଜନୀସାରି ।
ଉଠିଆସୁ ନୀଳ ଲହରୀ ଭେଦ ତାରକାରାଜି;
ନିଶାମଣି ଶୋଭୁ ଗଗନେ ମହା-ମୁକୁର ମାଜି;
ସରଗୁ ରଜତ କିରଣ ଖେଳିଯାଉ ଭୂତଳେ;
ସରସ-ବାଲୁକା-ବିତାନ ହସୁ ଜୋଛନା-ଖେଳେ ।
ପାଦପ-ପତର-ଗହଳେ ଛଳ-ଚନ୍ଦ୍ରୁନି-ଖେଳି ।
ଦୂର ଚକ୍ରବାଳ-ସୀମନ୍ତ, ଭଗ୍ନ ମନ୍ଦିର ତହିଁ,
ପୁନିଅଁ-ଜୁଆର-ପୁଲକେ ଭରି ତଟିନୀମୁଖ;
ମୃଦୁଳ-ଲହରୀ-ହିଲ୍ଲୋଳେ ଚାରୁ-ଚନ୍ଦ୍ର-ମୟୂଖ,
ବିହ୍ୱଳିତ-ନଦୀ-ଉରସେ ନଭ-ବିମଳ-ରୁଚି,
ବନ୍ତରୂଳେ ଶିଶୁ ଦେଖିବେ; ହୃଦ ଉଠିବ ନାଚ ।

୨୪—ବାଲିପାଟରେ, ବିଶେଷରେ ସମୁଦ୍ରକୂଳ ବାଲିରେ, ଗୁଡ଼ିକଙ୍କ ବୋଲି ଏକ ପ୍ରକାର ଟାଣ ଘାସ ପ୍ରଚୁର ହୁଏ । ତାହା ବାଲି ଉପରେ ଲତାପରି ମାଡ଼େ ଏବଂ ଚାଲିଲା ବେଳେ ପାଦରେ ଗଳିଯାଏ । ଏ ଘାସର ନୂଆଗଛା ସବୁ ବଡ଼ ଛୁଞ୍ଚିଆଁ ।

ମୁହିଁ ଦିନେ ଶିଶୁ ଥିଲଇଁ, ମନେ ପଡୁଛି ମୋର;
ବସି ଶିଶୁମେଳେ ଦେଖନ୍ତି ଏ ବିଭବ ରୁଚିର !

୪

ଥିଲୁ ହୁଅନ୍ତୁ କି ବଡ଼ ହି, ମେଘ ଯାଆନ୍ତୁ ଗୁଳି;
ପୁନଅଁ-ବହାରେ ବୁଲନ୍ତେ ଶିଶୁ ଏଥି ବାହାର;
ଗୃହଗାଧବଳ ବିତାନେ, ସିକତିଲ ପ୍ରାନ୍ତରେ
ଶିଶୁ ସଙ୍ଗେ ବସି ପୁହାନ୍ତି ଚିତ୍ତ ମୁଁ ଉଜାଗରେ ।
କଲକଲେ ନଦୀ ତରଣୀ ଚୁମ୍ବି ଯାଆନ୍ତା ବହି;
ଅର୍ଦ୍ଧ ନିଦ୍ରାବେଶେ ରହନ୍ତି ସୁଖେ ଆଦର ମହୀ;
ନିରବେ ଶିଶିର-ମୟୂଖେ ବରଷନ୍ତା ଶିଶିର;
ସିକତା ପଖାଳ ତନ୍ତାନ୍ତା ମୋର ସୁପ୍ତ ଶରୀର ।
ସ୍ୱପନେ ଶୁଣନ୍ତି ସଙ୍ଗୀତ, ଦୂରୁ ବ୍ୟୋମ ବିମାନେ
ଥର ଥର ଭାସି ଯାଆନ୍ତା ମୃଦୁ-ଶୀତ-ସ୍ପନ୍ଦନେ,
କଲତାନେ କେତେ ବାଳକେ କଉତୁକ ଅତର
ସେ ଗୀତେ ମିଶାଇ ଦିଅନ୍ତେ ପ୍ରାଣ-ମଧୁ-ଲହରୀ ।
ସମୀର ହିଲ୍ଲୋଳେ ସାଗର କୂଳେ ଉଠନ୍ତା ଫୁଲି,
ମୃଦୁଭଙ୍ଗେ ବେଣୀ କୁଞ୍ଚନେ ଆସୁଥାଆନ୍ତା ମାଡ଼ି;
ଲବଣି ସୋହାଗେ ଉଗାର ଧୀର-କୁଟିଲ-ଗାରେ
ଫେନ-ସୀମା କାଟି ଦିଅନ୍ତା ବେଳା ଚିକ୍କଣ-ଧାରେ ।
ତନ୍ଦ୍ରୀ-ଉରସେ ତରଣୀ ଭାସୁଥାଆନ୍ତା ହସି;
ଗୀତ ଗାଇ ସୁଖେ ନାବିକ ଯାଉଥାଆନ୍ତା ଭାସି

୫

କାହିଁକି ଗରଜୁ ବତାହି, ଆଜି ନୁହେ ତୋ ଦିନ,
କୁମାର-ଉତ୍ସବ-ଜାଗରେ ନିଶି ଦିଶୁ ପ୍ରସନ୍ନ ।
ନଭସ-ନୀଳିମା ବିକାଶୁ ଶୁଭ୍ର ଶାରଦ ହାସେ,
ଲୁବ୍ଧକ ସାଟରେ ରଜତ ବିନ୍ଦୁ ଉଡୁ ଆକାଶେ ।
ଖେଳନ୍ତୁ ପ୍ରାନ୍ତରେ ବାଳକେ ଲୋଲ ତୁରଙ୍ଗପର ।
କ୍ଷଣେ ପୁଣି ଦେଖି ଅସନ୍ତୁ ଭଗ୍ନ କୋଣାର୍କଶରୀ ।
ଦୁର୍ଦ୍ଦିନ-ଭ୍ରୂକୁଟୀ-କରାଳ-ଗ୍ରାସେ ଜୀର୍ଣ୍ଣ କୀରତ
ଦେଖିଛନ୍ତି କେତେ ଅବେଗେ, ବନ୍ଧ୍ୟ ପ୍ରାଣେ ଆରତ ।

୭୪—ଲୁବ୍ଧକ—ପ୍ରଶ୍ନାତାରା । ପଞ୍ଚ ପୁନର୍ବସୁ ନକ୍ଷତ୍ରର ଏହା ଯୋଗତାରା, ଦକ୍ଷିଣ ଦିଗରୁ ଦେଖାଯାଏ । ଆକାଶରେ ଏପରି ଅଧିକ ଉଜ୍ଜ୍ୱଳ ତାରା ନାହିଁ । କୁମାର ପୂର୍ଣ୍ଣିମା ଦିନ ରାତି ପ୍ରାୟ ଦୁଇପ୍ରହରଠାରେ ଏ ତାରା ଉଦିତ ହୁଏ ।

ଅବୃତ ଗଗନେ ଖୋଦିତ-ଶିଳ୍ପ-ବିକଳ-ରୁଚି,
ଗଠନ-ଶୃଙ୍ଖଳ ଭାଙ୍ଗିଛି କେତେ ଲବଣ-ବୀଚି;
ଦିବାଲୋକ ତହିଁ ବିକାଶେ ରୁଦ୍ର ବିକଟ ଛବି;
ବିଭଙ୍ଗ ଦେଖଇ ମନବେ, ଶିଳ୍ପେ ନାଚଇ ରବି;
ଦିଶେ ନାରଖାର ପୁରାଣ କୀର୍ତ୍ତି କଙ୍କାଳ-ସାର;
ଘନଘଟା-ଅର୍ଦ୍ଧ-ତାମସେ ପୁଣି ବିକଟ ଘୋର !
ଦେଖି ଶିଶୁ ଯେହ୍ନେ ଅଶାନ୍ତ ତ୍ରାସେ କୋଳେ ଅଜା ।
ଫାଟିଯାଉ ମେଘ, ଜୋଛନା ଫୁଟି ଉଠୁ ବିହସି ।
କାଳ-ଦନ୍ତ-ଘାତ-ବିଭତ୍ସ-ଚିହ୍ନ ମୋହନ-କଳା
ସରସ-ହିମାଂଶୁ-ପରଶେ କରୁ ଜୀବନ୍ତ ଲୀଳା ।

୨

ମନେ ପଡ଼ୁଛି ମୋ' ସେ ଦିନ, ଯେବେ ବାଲ୍ୟତପଦେ
କୋଣାର୍କ-ଅବେଗେ ପରାଣ ଭରି କଠୋର ମୁଦେ,
ବାଲୁକୁଞ୍ଜ ଛାଡ଼ି ପ୍ରାନ୍ତରେ ପଶି କୋଣାର୍କ ଦେଖି,
ଚମକି ପୁଲକେ ରହିଁଲି. ହୃଦେ ରହିଛି ଲାଖି ।
ବାରୁଣୀ-ତାମସ-ଅରୁଣ-ଭ୍ରମେ ପ୍ରାଚୀ-ଲଲାଟେ
ଧୂସର-ତିଳକ-ମନ୍ଦିର ଦିଶେ ସାଗର-ତଟେ ।
ଫେନ-ତାରକିତ-ନୀଳିମା ଭେଦି ଉଠିଲା ଛବି ।
ପୁଚ୍ଛିଥିଲି, "ଏ କି କୋଣାର୍କ, ଉଡ୍ର-କରିତ-ରବି ?"
ଲଦୁ ସେ କିଶୋର ଚରଣେ ନିକଟ ପ୍ରାନ୍ତରେ
କୁରଙ୍ଗ-ବିଭବେ ଚଳିଲା ବନ୍ଧୁ ବନ୍ଧ୍ର ପ୍ରଘାତେ ।
ଶାବକ-ନୟନେ ଚଳାଏ ପଥେ କୁରଙ୍ଗ ବାଳା;
ଗ୍ରୀବାଭଙ୍ଗେ ଦୂରେ ଦେଖାଏ ଲଘୁ ଚପଳ ଲୀଳା ।
ଦେଖି ନ ଦେଖିଲି ସେ ଛବି; ଶୃଙ୍ଗ ପୁରିଲା ଧ୍ୱନି;
ଚପଳ ରଜତ-ପ୍ଲାବନେ ଚଳି ନିକଟା ଭାସି ।
ଉଠି ପଡ଼ି କେତେ ଅବାଟେ ଭଗ୍ନ ଶଇଳ ଭେଦି,
ଅଦୂରେ ମନ୍ଦିର-ଚତ୍ୱରେ ତହିଁ ଦେଖିଲି ସାଦୀ :
ପୃଥୁ ବାଜୀବର, ପର୍ଯ୍ୟାଣେ ତୁଙ୍ଗ ବପୁଷ୍କ ବୀର ।

୮୯—୧୧୮— ଗ୍ରନ୍ଥକାର ପ୍ରଥମେ ବାଲ୍ୟକାଳରେ ଯେଉଁବେଳେ କୋଣାର୍କ ଦେଖିଥିଲେ, ସେହି କାଳର କଥା ଏଠାରେ କହୁଛନ୍ତି ।

୧୦୪ ସାଦୀ = ଅଶ୍ୱାରୋହୀ ।

୧୦୫— ପୃଥୁ = ପୃଥୁଳ, ମୋଟା । ପର୍ଯ୍ୟାଣ = ପଲାଣ, ଘୋଡ଼ା ଉପରେ ବସିବାର ଆସନ, ଜିନ୍ । ବପୁଷ୍ମ = ଦୃଢ଼ାଙ୍ଗ, ମାଂସଳ ।

ଦେଖି ଶିଶୁ ପ୍ରାଣେ କି ହେଲା ? କ୍ଷଣେ ରହିଲା ସ୍ଥିର ।
ଶିଳ୍ପ-ବିରଚନ ଜାଣିଲା; ଗଲା ଭିଡ଼ିସି ପାଶେ ।
ଦେଖିଲା ଜୋଛନା ଲାବଣ୍ୟ କିବା ମୂରତି ହସେ !
ବାରଂବାର ଭ୍ରମେ ଦେଖିଲା ପୁଣି ନିରେଖି ଛବି;
ବାରଂବାର ଚିତ୍ତେ ଚମକି, ଗଲା ପୁଲକେ ଦ୍ରବି ।
ଗୃହିଁଲା ମନ୍ଦିର-ଲଲାଟେ; ବୁଲି ଦେଖିଲା କେତେ :
ସୂଚୀ ଶିଳ୍ପ, କାରୁ-ଖୋଦନ, ଭଙ୍ଗୀ ମୂରତି ଯେତେ ।
ଭୁବନ-ମୟୂଖ-ରସାଣେ ସବୁ ଦିଶିଲା ଚୋଖି ।
ଜୀର୍ଣ୍ଣ କଳଙ୍କିତ ପଥର, ସବୁ ନବ ଧବଳି ।
ଜୋଛନାର ଖେଳ ଦିଶିଲା ସ୍ତରେ ସ୍ତରେ ମନ୍ଦିରେ ।
କାଳର ବିଭଙ୍ଗ ଲୁଚିଲା ପୁଣ୍ୟ ଜୋଛନାମୃତରେ ।
ପୁରାଣ କୋଣାର୍କ ଦେଖିଲା କେଡ଼େ ଜୀବନ୍ତ ପରି;
ସୁଧାଂଶୁ-କିରଣେ ସତେ କି ପଡ଼େ ଅମୃତ ଝରି !
ଦିବା-ଅଛନ୍ଦାସେ ଶିଶୁଏ କାଳ-ଭଙ୍ଗୁର-ଲେଖା
ଦେଖିଛନ୍ତି; ରହ ଝଟିକା, ଫୁଟି ଉଠୁ ଚନ୍ଦ୍ରିକା ।



୧୧୩—ଭୁବନ-ମୟୂଖ = ଚନ୍ଦ୍ର, ଚନ୍ଦ୍ରକିରଣ ।

# An unpublished poem

OF

# Paribrajaka Kishorimohan Das.

## ଧର୍ମମତବାଦ



ନବ ନବ ମତ        ଜନ୍ମି ଶତ ଶତ
କରନ୍ତି ଧର୍ମ-ପ୍ଲାବନ;
ନରହତ୍ୟା କେତେ        ଯୁଦ୍ଧାଦି ଜଗତେ
ହୋଇଛି ଏଥୁଁ ଘଟିତ ।
ହିଂସାପ୍ରବୃତ୍ତି        କରଇ ସ୍ୱୀକୃତ,
ଯଦି ଏ ଧର୍ମ ବିଧାନ;
କହ, କି ନିମିତ୍ତ        ଦୁଃଖରେ ପୀଡ଼ିତ
ଧାର୍ମିକ ହିନ୍ଦୁ-ସନ୍ତାନ ।
ସହୁଛି ସହିଛି,        ଧର୍ମ-ରକ୍ଷା କହି
ଦୁଃସହ ଦୁଃଖ ପରାଣେ,
ଦେହ-ଦାହ ସତୀ        ସହ ମୃତ ପତି
କରି ଜ୍ୱଲନ୍ତ ଶ୍ମଶାନେ ।
ଅନାହାରେ ରହି        କୃଚ୍ଛ୍ର-ତପ କରେ
କଠୋର ବ୍ରତ ପାଳଇ,
ଊର୍ଦ୍ଧ୍ୱବାହୁ ହୋଇ        ଦେଶ ଦେଶାନ୍ତରେ
ତୀର୍ଥ ବା କେତେ ଭ୍ରମଇ ।
ପୂଜଇ ଆଦରେ        ବିଭିନ୍ନ ରୂପରେ
ଈଶଙ୍କୁ କରି କଳ୍ପନା,
ମୃଣ୍ମୟ ଧାତବ        ଦାରୁ ଅବୟବ
ସ୍ୱଗୃହେ କରି ସ୍ଥାପନା ।
ହରି ହର ରାମ,        କାଳୀ ଦୁର୍ଗାନାମ
କରେ ଜପ ନିରନ୍ତର,
ଭାବ ଆବେଶରୁ        ବହଇ ନେତ୍ରରୁ
କେତେ ବା ଲୋତକ ଝର ।
ସମ୍ଭବେ କି ତାର,        ଧାର୍ମିକ ଯେ ଜନ,
ଦୁଃଖ କ୍ଲେଶ ମନସ୍ତାପ,
କହ ହେ ପଣ୍ଡିତ !        ଏ କି ବିଡ଼ମ୍ବନ
ଧର୍ମରୁ ଜନ୍ମେ କି ପାପ ?

କହେ କେତେ ଜନ,— ଈଶ୍ୱର ସୃଜନ
ଈଶ୍ୱର କରେ ସଂହାର;
ଈଶ ଅବତରି ଦୁଷ୍କୃତ ସଂହରି
ଧର୍ମର କରେ ପ୍ରଚାର ।
ଅନାଦି, ଅନନ୍ତ, ସର୍ବ-ଶକ୍ତିମାନ,
କରୁଣାର ପ୍ରସ୍ରବଣ,
ନିତ୍ୟ, ପରିପୂର୍ଣ୍ଣ ଅଟେ ଭଗବାନ
ନାହିଁ କିଛି ପ୍ରୟୋଜନ ।
ସର୍ବଦର୍ଶୀ ଅଟେ, ବ୍ୟାପିଛି ସକଳ,
ସୁଖ ଶାନ୍ତିର ନିଧାନ,
ନ୍ୟାୟ-ଦଣ୍ଡ ଧରି ପାପ-ପୁଣ୍ୟ ଫଳ
କରଇ ସଦା ବିଧାନ ।
ସର୍ବେ ତାର ସୁତ, ନାହିଁ ଆତ୍ମ ପର,
ସର୍ବେ ସମ ଅଧିକାରୀ,
ବିପଦରେ ଜୀବ ହୋଇଣ କାତର
ଡାକିଲେ କରେ ଉଦ୍ଧାର ।
ପୂଜାରେ ପ୍ରସନ୍ନ ହେଲେ ଈଶମନ,
କରଇ ଦୟା ପ୍ରକାଶ,
ଅନ୍ତର୍ଯ୍ୟାମୀ ହରି ଶୋକ ତାପ ହରି
ପୂର୍ତ୍ତି କରେ ଅଭିଳାଷ ।
ଅହଲ୍ୟା ତାରିଛି, ଆତୁର ରଖିଛି
ଦ୍ୱିଜ-ଗଜ-ମୃଗ-ପ୍ରାଣେ,
ବର୍ଣ୍ଣିବ ବା କେତେ ତାର ଗୁଣ ଯେତେ,
ସତ ମିଛ ସେହି ଜାଣେ ।
ଏହି ଜଗତର କିପରି ହେ ଈଶ,
କରିଛ ସୃଷ୍ଟି ସାଧନ ?
ଏଥିର ନିମିତ୍ତ ଉପାଦାନ କିସ
କିଧାଇଁ କଲୁ ସୃଜନ ?
ଜାଣନ୍ତି ସମସ୍ତେ,— କୁମ୍ଭକାର ଭାଇ
ଗଢ଼ଇ ଘଟ ମାଟିରେ,
ତୁହି ଅଦ୍ୱିତୀୟ, ଅନ୍ୟ କିଛି ନାହିଁ,
ସୃଜିଲୁ ବିଶ୍ୱ କାହିଁରେ ?
ଯଦି ଏ ବିଶ୍ୱର ଉପାଦାନ ଭିନ୍ନ
ଆଦିକାଳୁ ସ୍ଥିତ ହୁଇ,

ଉପାଦାନ ହେତୁ ଅନ୍ତି ପରିଚ୍ଛିନ୍ନ,
ସର୍ବବ୍ୟାପୀ ନୋହନ୍ତୁ ତୁହି ।
ଯଦି ମୋ ଈଶ୍ୱର କାରଣ ଉଭୟ
ଜୀବ-ବ୍ରହ୍ମେ ଭେଦ କାହିଁ ?
ଘଟ-ମାତ୍ର ଭେଦ ନାମ-ରୂପ ଦ୍ୱୟ,
ଅନ୍ୟ କିଛି ଭେଦ ନାହିଁ ।
ଯଦି ସର୍ବବ୍ୟାପୀ ଅଟନ୍ତି ନାରାୟଣ,
ଜୀବ ବ୍ରହ୍ମ ନୋହେ ଭିନ୍ନ,
ଅନନ୍ତର ଅଂଶ ଅଜ୍ଞର ବଚନ,
ଅଂଶ ହେଲେ ପରିଚ୍ଛିନ୍ନ ।
ପରିଚ୍ଛିନ୍ନ ଯାହା, ତାହା ଧ୍ୱଂସଗତ,
ନୋହେ ଅବ୍ୟୟ, ଶାଶ୍ୱତ;
ସୀମାବଦ୍ଧ ବୁଦ୍ଧି ଜନର ସତତ
ଈଶେ ଜାଣିବ କେମନ୍ତ ?
"ସୃଷ୍ଟିରୂପେ ବ୍ରହ୍ମ ସ୍ୱୟଂ ପରିଣତ",
କାହିଁ କେତେ ଅବିଶ୍ୱାସୀ,
ଜଡ଼ରେ ଚୈତନ୍ୟ କପର ବିବର୍ତ୍ତ,
ବ୍ରହ୍ମ ପରି ଅବିନାଶୀ ।
ଜୀବରୂପ ଯଦି ହେଲେ ନିର୍ବିକାର,
ଭୋଗେ ଜନ୍ମ, ମୃତ୍ୟୁ, ଦ୍ୱନ୍ଦ,
ଏଥିରେ କପର, କର ତୁ ବିଚାର,
କାହିଁରୁ ସଚ୍ଚିଦାନନ୍ଦ ?
ଦୁଗ୍ଧରୁ ଲବଣୀ ଉଦ୍ଧୃତ ହୋଇଣ
ନ ହୁଏ ପୁଣି ମିଳିତ,
ତଦ୍ରୂପ ଈଶ୍ୱର ଜଗତ ଜନ୍ମିଣ
ଯଦି ଭିନ୍ନ ଭାବେ ସ୍ଥିତ,
ଅନାଦି ଅନାଦି ବିୟୋଗରେ ଶେଷ
"ଶୂନ୍ୟ" କେବଳ ରହିଲ,
ପରିଣାମ-ହୀନ ଅଜର, ଅଶେଷ,
ବିକୃତ କେମନ୍ତେ ହୁଅଇ ?
କହେ ବନ୍ଧୁ ଜନ,— ଇହାରୁ ଈଶ୍ୱର
ଜଗ ସୃଷ୍ଟି-ସ୍ଥିତି-ଲୟ,
ଅଭିବାରୁ ଇଚ୍ଛା ଜନ୍ମଇ ଜୀବର,
ଭବ ଦୁର୍ଦ୍ଦିନଜନ୍ମୟ ।

ଅମୃ-ତୃପ୍ତ ଦେବ, କେଉଁ ପ୍ରୟୋଜନ
ଥିଲା ସୃଷ୍ଟିରେ ତାର ?
ଦେଇ ଦୁଃଖ ଜୀବେ, ପ୍ରଶଂସା-ଭାଜନ-
ହେବା ଇଚ୍ଛାକୁ ଧିକ୍କାର !
ଖେଳାପାଇଁ ଯଦି କରିଛି ଈଶ୍ୱର
ଏହି ବିଶ୍ୱର ସୃଜନ,
କିମ୍ପା ହରି ନିଏ ସୁଖକୁ ଜୀବର
ନ ହେଉଁ ବାଞ୍ଛା ପୂରଣ ?
ଦେଖି ପୁତ୍ର ମୁଖ ପିତାମାତା-ସୁଖ
ପାରେ କେ କରି ବର୍ଣ୍ଣନ ?
ପୁତ୍ର ଯେବେ ମରେ ହତାଶହୃଦରେ
କରନ୍ତି କେତେ କ୍ରନ୍ଦନ ।
ଅନ୍ଧ, ପଙ୍ଗୁ, କ୍ଳୀବ, ମୂକ, କ୍ଷୁଧାତୁର
କେତେ କେତେ କଷ୍ଟ ଭୋଗେ,
ଜନ୍ମରୁ ଦରିଦ୍ର ଦୁଃଖରେ ବିଧୁର
ସହେ କେତେ ତାପ ରୋଗେ ।
କିଛି ଅନୁଭବ କରୁ କି ମାଧବ !
ଜୀବର ଏହି କଷଣ ?
ଖେଳରେ ସତତ ହୋଇଛୁ ଉନ୍ମତ୍ତ,
କରିବୁ କିମ୍ପା ଶ୍ରବଣ ।

ଅଜର, ଅମର, ଜାଣିବୁ କିପରି
ଜରା-ଦୁଃଖ, ମୃତ୍ୟୁ-ଭୟ;
କରୁ ଯାହା ଦାନ, ନେଉ ତାହା ହରି,
ଏହି କି ଖେଳ-ଆଳୟ ?
ମୃତ ଶିଶୁ କୋଳେ ମାତାଶୋକଭୋଳେ
ମାଗେ ଭିକ୍ଷା ପୁତ୍ର-ପ୍ରାଣ,
ସେ କରୁଣ ସ୍ୱର ଶୁଣି କେବେ କରି
ଦୟା ତୁମ୍ଭେ ଭଗବାନ ?
ଜରା ଜୀର୍ଣ୍ଣ ପିତା ଜୀବନ-ସମ୍ବଳ-
ପୁତ୍ରର ଶବକୁ ଧରି,
ଶୋକର ବେଗରେ ହୋଇଣ ବିହ୍ୱଳ
ଡାକେ "ବାରେ ରଖ ହରି !"
ସ୍ତ୍ରୀ ଛଳେ ନିପାତ ରାକ୍ଷସ ଅରାତି
ରଖିଲୁ ଦେବଗଣକୁ;

ଏବେ କି ବଧିର          ନ ଶୁଣୁ ଦୁଃଖିର
ଘୋର ଆତୁର ଡାକକୁ ?
ଅହିତା ବିହଗୀ-          ସମ ଛଟପଟ
ଅଭାଗୀ ବାଳ-ବିଧବା,
କିମ୍ବା ଦୟାମୟ          ଦୟା ତୁ ପ୍ରକଟ
କରୁ ନାହୁଁ ବାରେ ଅବା ?
ଦୁର୍ଭିକ୍ଷ-ମାରୀରେ          ଦେଶ ଛାରଖାର,
ନ ଜାଣୁ କି ଦୟା-ସିନ୍ଧୁ ?
ଘରେ ଘରେ ସର୍ବେ          କରେ ହାହାକାର,
ନ ପାଏ ଦୟାର ବିନ୍ଦୁ ।
ତ୍ରିତାପେ ତାପିତ          ହୋଇ ଜୀବଗଣ
କାନ୍ଦେ କହି ତ୍ରାହି ତ୍ରାହି;
ଶୁଣ ଦିବ୍ୟକର୍ଣ୍ଣେ          ଜୀବର କ୍ରନ୍ଦନ,
ବିଶ୍ୱେ ସୁଖୀ କେହି ନାହିଁ ।
ଅଛ କି ହେ ହରି !          ବହୁତ ଦୂରରେ,
ନ ଶୁଭେ ଜନ-କ୍ରନ୍ଦନ,
କିମ୍ବା ଦୟା-ହୀନ          ଜୀବର ଦୁଃଖରେ,
ଏଣୁ ବଧିର ଆପଣ ।
କିମ୍ବା ଅନ୍ତର୍ଯ୍ୟାମୀ          ଅଟୁ ଦୟାବାନ,
ଶକତି ନାହିଁ ତୋହର;
ଏଣୁ ପ୍ରତୀକାର          ନ କରୁ ବିଧାନ,
ବୃଥା ରୋଦନ ଜୀବର ।
ବୃଥା ଦୀନବନ୍ଧୁ          ନାମ ଅଛୁ ଧରି,
ଜାଣିଲି ତୁହି ନିର୍ଦ୍ଦୟ;
ବୃଥା ଜୀବ-ଆଶା          ତୋର ସେବା କରି
ଲଭିବ ପଦ ଅଭୟ ।
ଯଦି କହୁ ଈଶ          ସୁଖ-ପ୍ରେମମୟ
କିପାଇଁ ଜୀବ ଦୁଃଖିତ ?
ନିଷ୍ଠୁର, ପାମର          ସେ ସ୍ରଷ୍ଟା ନିଶ୍ଚୟ,
ଏ ବିଶ୍ୱ ଯାହା ରଚିତ ।



# A selection from the writings

OF

# Raja Sacchidananda Tribhubana Deo

Late Ruling Chief of Bamra.

(Born 1873, Died 1916)

## ବୈଦିକ ପ୍ରକୃତି



ଦୁଗ୍ଧ-ଫେନ-ଗୌର ପ୍ରବ ଦେବାକୃତ ନର,
ପ୍ରଲମ୍ବ, କୁଞ୍ଚିତ, ଗ୍ମୀକର ତେଜ ଜିଣି,
ଦୋଲଇ ପୃଷ୍ଠରେ ରୁକ୍ଷ ଅଲୁଳିତ କେଶ;
ଅଯତ୍ନ ସୀମନ୍ତ ଯୋଗେ ଦ୍ୱିଫାଳ ଚକୁର,
ଧର୍ମ-ଦାଣ୍ଡ୍ର କବା ଦୈତ୍ୟ ସତ୍ତ୍ୱ ଅବର୍ଭବେ ?
ଅପ୍ରମତ୍ତ ଲୋଚନ ବେନି ଅନ୍ତର୍ଦୃଷ୍ଟି ଦୃଢ଼ତ,
ବିନିନ୍ଦଇ ଶାର୍ଙ୍ଗ ଧନୁ ଭ୍ରୂଲତା-ଯୁଗଳ,
ବେନି ନିଶ୍ରେଣୀରେ, ମଧ୍ୟେ ଈଷତ ଅନତ
ଶାରଙ୍ଗପାଣିର ପାଣି କମଳପାଇଁ କି ?
ମୁହୁର୍ମୁହୁ ସଜୁଥାଇ ଲୀଳାର ତାଣ୍ଡବ,
ଦେଖି ପ୍ରକୃତିର ଦ୍ୟୁତିମନ୍ତ ଶୋଭାରାଶି;
ଅସିଧାର ସମ ଯାର ନାସିକା-ସୁଷମା,
ଅଙ୍କୁରିତ ଶ୍ମଶ୍ରୁରାଜି ଅନ୍ୟୋନ୍ୟ ଅଗ୍ରସ୍ଥେ,
କୁସୁମିତ ଯତ୍ନବନ କୋମଳ ପରଶେ
ଲଳିତ ଆସ୍ୟ-କମଳ ଦେବାକୃତ ଛଟା,
ପ୍ରଶାନ୍ତ ମହତ ଭାବ ବିଭାସଇ ହେଳେ,
ଅନ୍ତରାତ୍ମା-ନିଦର୍ଶନ ଯେଣୁ ବକ୍ତ୍ରାମ୍ବୁଜ ।
ଉଷାରେ ରକ୍ତିମା-ଛଟା ଅଧରୋଷ୍ଠ ବେନି,
ସତେ କି ସେ ସରସ୍ୱତୀ, ଯୁବା ବାଲ୍ମୀ-ଛଳେ
ତାମରସ-ଦଳେ ଦୁଗ୍ଧ ପିଆଉଁ ଆଦରେ,
ବର୍ଣ୍ଣି-ବଇଭବ ତହିଁ ନିତ୍ୟ ସଂଘର୍ଷଣେ
ଗ୍ରେର କଢ଼ଅଛୁ ଏହି ସୁଷମା-ମାଧୁରୀ ?
ଶାଳପ୍ରାଂଶୁ ବପୁ, ଭୁଜ ଆଜାନୁଲମ୍ବିତ,
ନାହିଁ ତହିଁ ଜ୍ୟାଘାତର ବ୍ରଣ-କିଣ-ରାଜି,
ସର୍ବାଙ୍ଗରେ ଉର୍ଜସ୍ୱଳ [illegible] ଉଦାର,

କ୍ଷତ୍ରଧର୍ମ ଦେହ ପରଗ୍ରହେ କି ଭୂତଳେ ?
କି ଛାର ଉପମା ତହିଁ, ଭାର୍ଗବ ମୁନୀନ୍ଦ୍ର
ବିଜିଗୀଷା ମୂଳମନ୍ତ୍ର ଯାର ଧର୍ମନୀତି,
ଛୁଇଁ ନାହିଁ ଏ ଯୁବାର ତନୁକୁ ଅମର୍ଷ ।
ଆର୍ତ୍ତରକ୍ଷା, ପରସେବା, ଯାର ନିତ୍ୟବ୍ରତ,
ଶାଶ୍ୱତ ସତ୍ୟର ଯେଉଁ ଚିନ୍ମୟ ପ୍ରସୂନ,
ସେହି ମାତ୍ର କୁସୁମିତ ହୃଦୟ-କେଦାରେ;
ଉନ୍ନତ ବିଶାଳ ବକ୍ଷ ରଜତାଦ୍ରି ଜିଣି,
ଦୃଢ଼ ମାଂସପେଶୀ ବନ୍ଧେ ଈଷତ ବନ୍ଧୁର,
ନାହିଁ ଉପବୀତ ନବଗୁଣ ସ୍କନ୍ଧଦେଶେ ।
କୈଶୋର-ଲାବଣ୍ୟ-ସୀତ-ମଣ୍ଡିତ ବିଗ୍ରହ,
ଅମରୀ-ବାଞ୍ଛିତ ଏହି ପୁରୁଷପୁଙ୍ଗବ ।
ଚର୍ମ ଉତ୍ତରୀୟେ ଯୁବା, ଗଜାଜିନଧାରୀ
ଶୂଳପାଣି ମହେଶଙ୍କ ସୁଷମା ହରଇ;
ଗୌରୀ ସମ ସଦା ପାର୍ଶ୍ୱେ ଅନୂଢ଼ା ଯୁବତୀ
ତିଗ୍ମାଂଶୁ ତପନ ସଙ୍ଗେ ଛାୟାଦେବୀ ଯଥା,
ସଙ୍ଗେ ସହଚରୀ ତାଙ୍କ ପତିତ୍ୱ ବରଣେ
ବିନିମୟେ ନିଜ ଆତ୍ମା ହୃଦୟେ ଯୁବାର ।
ନିବୀତ ସ୍ୱରୂପେ ବାହୁ ଯୁବା-ଗଳଦେଶେ
ଲମ୍ବାଇ ସଜଳନେତ୍ରେ ଊର୍ଦ୍ଧ୍ୱମୁଖେ ବାଳା,
ନୈସର୍ଗିକ ଲୀଳାକ୍ଷେତ୍ର ସୁମେରୁ ପ୍ରାନ୍ତରେ
ନିସର୍ଗ-ଲକ୍ଷ୍ମୀର ଭାବମୟ ଚିତ୍ରପଟ
ବୁଝିବାକୁ ନିରେଖଇ ଯୁବା-ମୁଖ ପ୍ରତି ।
ଚରମ ଦୋଲଇ ବେଣୀ ଜାତବେଦ ସମ
ଅନୁପମ ଶୋଭା ବହି ଅଜିନ କଞ୍ଚୁକ,
ପୀନୋନ୍ନତ ବକ୍ଷୋଜକୁ ଆବରେ ନୀରବେ ।
କୃତ୍ତିବାସ ଉତ୍ତରୀୟ ଗାତ୍ର ଆବରଣ,
ସତ୍ତ୍ୱ ମୂର୍ତ୍ତିମତୀ ହୈମକାନ୍ତିକଲେଶ୍ୱରୀ
କି ଅବା ସେ ଶୈବାଳର ଆବରଣ ତଳେ ?
ସ୍ଥିର ବିଦ୍ୟୁଲ୍ଲତା ଯଦି ନିବୀତ ପ୍ରଦେଶେ
ଧାତୁଶ୍ରୟେ ବିଭାସଇ ଅଜର ଦ୍ୟୁତିକି,
ତେବେ ଅବା ସତ ହେବ ସେହି ଦିବ୍ୟଜ୍ୟୋତି,
ଲାବଣ୍ୟବତୀର ଲୀଳା-ଲଳିତ ଲାବଣ୍ୟେ ।
ମର୍ତ୍ତ୍ୟରେ ଅମରୀ ଅବା ଦେହ ପରିଗ୍ରହି

ସଞ୍ଚାରଣୀ ଦୀପଶିଖା ପ୍ରାୟେ ସମୁଜ୍ଜ୍ୱଳେ,
ଯୁବା ସହଚାରିଣୀ ସେ ଯୁବାମନୋହରା ।
ବିସ୍ତୃତା ଯାଦସପତି-ସୁନୀଳ-ବକ୍ଷରେ
ଚକ୍ରବାଳ ଯାର ସୀମା ଦୃଷ୍ଟି ଅପସର ।
ବିମ୍ବିତ ଚଣ୍ଡାଂଶୁ ସମ ଦୀପି ଅନ୍ତରୀକ୍ଷ,
ଉଦୀଚୀ-ଅଜର-ଦ୍ୟୁତି-ଚପଳା-ସୁନ୍ଦରୀ
ମୁରହର-କଣ୍ଠହାର-କୌସ୍ତୁଭ ସମାନ,
ଚଞ୍ଚଳ ହିଲ୍ଲୋଳେ ଯହିଁ ବହଇ ସୁଷମା;
ହେର ସେହି ଅକୂପାର ଲୋଲ-ଜଳକେଳି,
ମୁଗ୍ଧନେତ୍ରେ ଉଭା ସତୀ ଭାବି ପତି-ପାଶେ,
ଭଙ୍ଗ ଭଙ୍ଗେ ମିଶି ଯହିଁ ଶବଦ ଭୈରବ
ସ୍ତବଧ କରଇ ହେଲେ ମାନବ ଜୀବନ;
ପ୍ରଶାନ୍ତ, ମହତ ଭାବ—ଅନନ୍ତ ଶାଶ୍ୱତ,
ଆହରକ ଯେଣୁ ସେହି ଭାବୁକ ମାନସେ ।
ପ୍ରଭାମୟୀ ଉଷାଦେବୀ ପାଟଳବରଣା,
ପୌରନ୍ଦରୀ ଦ୍ୱାରେ ଉଭା ଅର୍ଯ୍ୟମା ଅଗ୍ରତେ,
ପୃଥିବୀର ଆବର୍ତ୍ତିନୀ ଦେବୀ ଧନବତୀ
ଲୋକ ଦଶାନ୍ତର ଅଭ୍ୟୁଦୟର ପରାୟେ,
ଦୀର୍ଘ ଧ୍ୱାନ୍ତ ବିନାଶିନୀ ଦ୍ୟୁଲୋକ-ଦୁହିତା,
ବିବେକ ବିକାଶ ଯଥା ଅଜ୍ଞାନ-ଅନ୍ଧାର—
ଲୁପ୍ତ କରି ପ୍ରକାଶଇ ଜ୍ଞାନଘଟା ଛଟା;
ଜଳ ବୁଦ୍‌ବୁଦର ଦ୍ୟୁତି ଧରି ରୁକ୍ଷାବଳି,
ସୀମାତୀତ ଦେଶେ, ପକ୍ୱ ପଲାଣ୍ଡୁ ସମାନେ,
ମସ୍ତକ ଉପରି ଧ୍ରୁବ କେନ୍ଦ୍ରୀଭୂତ କରି
କେବେ ସବ୍ୟେ ସବ୍ୟେତରେ ବନୋଷ୍ଠ ସଦୃଶେ
ବୁଲୁଛନ୍ତି ସପ୍ତର୍ଷିଙ୍କି ଅଧୃନ ଚକ୍ରରେ ।
ଜ୍ୟୋତିଃପୂର ଛଳେ ନବ ଦୀକ୍ଷିତ-ମସ୍ତକେ
ଢାଳୁଛନ୍ତି ଆଶିଃ ଚିତ୍ର ଶିଖଣ୍ଡୀମଣ୍ଡଳ ।
ହିମକୂଟ ଶୈଳ ଦେହେ ଉଷା-ଅରୁଣିମା
ସତ୍ତ୍ୱଗୁଣେ ରଜୋଧର୍ମ ମିଶ୍ରଣ ପରାୟେ
ଦେଖି ଯୁବା ପ୍ରେମ ଇଚ୍ଛି ଚାନ୍ଦ୍ରୀ ରୂପସୀ,
ଅନୁରୂପେ ମିଶାଇବ ଆପଣା ଦେହକୁ,
ଯୁବକ ସାତ୍ତ୍ୱିକ ଦେହେ ରଜୋମୂର୍ତ୍ତିମତୀ ।
ଧନାଢ୍ୟ ହରଷେ ଏଣେ ଉଷା-ସହଚରୀ

ସ୍ଥିରଜ୍ୟୋତି ସୌଦାମିନୀ ଗଗନ ଉଦ୍‌ଭାସି,
ମଣ୍ଡିବ ପ୍ରବେଣୀ ଅବା ସାର୍ବଭୌମ ଶିରେ ?
ଅଂଶୁମାଳି-ସପ୍ତବର୍ଣ୍ଣ-ବଇଭବ ଧେନ ।
ଏହି କି ସେ ଦ୍ୟୁତି ଯାହା ଆଦ୍ୟ ସୃଷ୍ଟିକାଳେ
ଚିତ୍‌ଶକ୍ତି ସ୍ୱରୂପେ ସ୍ଫୁରିଥିଲା ମହେଶଙ୍କ ।
ମାହେଶ୍ୱରୀ ତେଜ ଏହା, ନାହିଁ ଟି ସଂଶୟ;
ନୋହିଲେ କି ମିତ୍ର, ବରୁଣଙ୍କୁ ଏକାଧାରେ
ମର୍ତ୍ତ୍ୟରେ ଦେଖାନ୍ତା ? ଯାହା ଅମର୍ତ୍ତ୍ୟଇପ୍ସିତ
ଦୂର ପ୍ରାନ୍ତେ ବାମଳୂର ବକ୍ଷିପ୍ତ ପର୍ଯ୍ୟନ୍ତେ
ଉଟଜ ଶୋଭେ, ନବୃତ ଶାଦ୍ୱଳ ପ୍ରଦେଶେ;
ଗୋଷ୍ପଦରେଣୁରାଜି ଯୋଗେ ପବିତ୍ରିତ
ଉଟଜ ପ୍ରାଙ୍ଗଣେ ଦୀପ୍ତ ଇଳତ ପ୍ରମନ୍ଥ
ଦୃସଦ୍ୱି ହିଖୋଲ୍କେ, ବର୍ଷୀୟାନ ମେଳେ
ସୂର୍ଯ୍ୟୋଢ଼ ସଲ୍ଲାରେ ରତା ମେଧାବିନୀ ସତୀ;
ଦେଖି ଏହି ଗୃରୁହାସ୍ୟ ପ୍ରକୃତି-ଦେବୀର,
ପୂଚ୍ଛିଲା କୌତୁକେ ସତୀ ଯୁବକବରଙ୍କୁ :—
"ଆର୍ଯ୍ୟପୁତ୍ର !
ଏହି କି ସତ୍ୟର ସେହି ବର୍ଣ୍ଣିତ ମୂରତି,
ବାଲ୍ୟକାଳେ ଗଳୁଛିଲେ ବର୍ଷୀୟାନ ମୁଖେ,
ଭୂମା ଆବର୍ଭାବ କଥା କର୍ଣ୍ଣ-ରସାୟନ,
ଶୁଣା ଥିଲା ଯାହା, ଦେବ ! କହ କୃପା କରି ।"
କଣ୍ଟକିତ ହେଲା ବପୁ, କଦମ୍ବ କେଶର
ଜଳଦାଗମେ ଶୀକର-ବାତ ଯୋଗେ ଯଥା
ଉତ୍ତରିଲା, "(ଦେବ !) ବହୁବର୍ଷେ ଦୂର ଦାକ୍ଷିଣାତ୍ୟେ
ଏହି ଆର୍ଯ୍ୟବଂଶ ଯେବେ ପ୍ରକୃତି-ବିପ୍ଳବେ
ତ୍ୟଜିବେ ଆର୍ଜବ-ଆର୍ଯ୍ୟ-ଅରିଷ୍ଟ ସ୍ଥଳକ
ତେବେ ଦୂର ବଂଶଧର ମଧ୍ୟରେ ଏ ବାଣୀ
ହେବ ଅଲୋଚିତ,ଯାହା ଏବେ ଅଗୋଚର ।"
ଏତେ କହି ଧୀରେ ନୀରବିଲା ସରସ୍ୱତୀ ।
କଳ୍ପନାଖ୍ୟ ବର ସରସ୍ୱତୀଙ୍କ ପ୍ରସାଦେ
ଲଭିଥିଲା ଶୈଶବରେ ଏ ଯୁବା ବରେଣ୍ୟ,
ଏଣୁ ଜ୍ଞାନ-ଚକ୍ଷୁ ଯୋଗେ ଦୂର ଭବିଷ୍ୟତ
ବଂଶଧର ସହ ପକ୍ଷିଶ୍ରିତ ଚିତ୍ରପଟେ
ନିରୀକ୍ଷିଲା, ହେମକୂଟ ମାର୍ଜିତ-ରଜତ—

ପ୍ରଭା ପୁଞ୍ଜୀଭୂତ ସାନୁମାନ ହିମାଳୟ
ଉଦ୍ଧତୀ ପ୍ରାଚୀର ପରାୟେ ଭାରତ ଦୁର୍ଗର ।
ଭାରତକୁ ତ୍ରିଦିବରୁ ଓହ୍ଲାଇବା ପାଇଁ
ରାଶିକୃତ ପୁଣ୍ୟଭାର ବହଇ କି ଶିରେ ?
ଭାରତରୁ ତମ ଅବସାନପାଇଁ ଅବା
ପରାଚୀ-ଦଗ୍ବଧୂ ମେଲେ ମହା ଜ୍ୟୋତିର୍ମୟୀ
ଉଜ୍ଜ୍ୱଳ କଣ୍ଠମଣି ଖଚିତ କୁନ୍ତଳେ
କାବ୍ୟତରୀ ଖଞ୍ଜି, ଉଷା ପାଟଳବରଣା
ପୂଷା ନୀରାଜନା ବିଧି ସାଧେ କି ଅଗ୍ରତେ ?
ସରିଲାଣି ମେରୁକକ୍ଷେ ପୃଥ୍ୱୀର ଅଟନ
ବିଶ୍ୱସୃଷ୍ଟି ଶୂନ୍ୟ-ବର୍ତ୍ମେ ଅୟନ କ୍ଷେତ୍ରରେ
ଦେଶାନ୍ତରୁ ସନ୍ଧ୍ୟାରାଗ ହୋଇ ତିରୋହିତ
ଉଷାରୂପେ ଫୁଟିଲାଣି ପୌରନ୍ଦରୀମୁଖେ;
ସୁନ୍ଦରୀ-ଲଲାମ-ଗଣ୍ଡ-ଲାଜ-ପାଟଳିମା
ରାଗେ ରଞ୍ଜିଲାଣି ଏବେ ଆସ୍ୟ ହରିତର;
ବର୍ଣ୍ଣି ବିଚ୍ଛୁରିତ ଯେବେ ପ୍ରତୀଚୀ ଗଗନ
ଦେଖି ଦେଖି ଦିନମଣି ଯିବେ ଅସ୍ତାଚଳେ
ବିଭାସିବେ ତେବେ ଦୀପ୍ତ ଜୀବ ଗ୍ରହମଣି
ଲଲାଟିକା ପ୍ରାୟେ ପୁଣି ବାରୁଣୀ ଲଲାଟେ;
ଅନ୍ତରୀକ୍ଷ ମୁକ୍ତା ଲଲନ୍ତିକା ପୁନର୍ବସୁ
ତରଳମଣି ସଦୃଶେ ଯହିଁ ଜୈବାତୃକ
ଲୂତାତନ୍ତୁ-ବିତାନ-ବର୍ତ୍ତୁଳ ସମ ଦ୍ୟୁତି
ଧରି ଚୁମ୍ବିଲେଣି ଏବେ ଚରମାଚଳକୁ ।
ସୌରମଣି ଧୂମଧାର ପ୍ରାୟେ କାଦମ୍ବିନୀ
ଚକ୍ରବାଳ ବ୍ୟାପି ଦିବ ମର୍ତ୍ତ୍ୟର ସୀମାକୁ
ସ୍ୟୂତ କର୍ମେ ସମ୍ମାଦୁଷ୍ଟି ଯୋଜିବ ଏକତ୍ରେ
ତ୍ରିଦିବ ଗୁମ୍ଫୁଜାକୃତ ଖିଲାନ ସହିତେ;
ସୃଜିବ ଏ ରଙ୍ଗମଞ୍ଚ, ଯହିଁ ବିଭାବସୁ
ସୂତ୍ରଧାରରୂପେ ଉଭା ହୋଇ ଦ୍ୱାରଦେଶେ
ଅଭିନୟ ସମ୍ପାଦିବେ ପ୍ରକୃତି ମେଳରେ;
ଯେଉଁ ମଞ୍ଚେ ନଟୀରୂପେ ସତୀ ସରୋଜିନୀ
ଏକ ଦୁଇ କ୍ରମ ଗଣନାରେ ଦଶଶତ
କରିଥିଲା ସମ୍ବର୍ତ୍ତିକା ସଙ୍କୋଚ ଅତୀତେ
ପତ୍ରପାଣୀ ପତ୍ର-କର ସଜ୍ଜିତ ହଲରେ

ଗଣିବାରେ ପ୍ରସାରିତ କରିଲାଣି ପୁଣି
ଏକ ପରେ ଏକ ତାର ସହସ୍ର ଦଳକୁ
ଦେଖି ପ୍ରାଚୀମୂଳେ, ଦଶ-ମୁକୁଟ-ମଣ୍ଡନ-
ରତ୍ନାଙ୍କୁର ସହସ୍ରଧାଧୃତ ଦିବ୍ୟରୁଚି;
ସ୍ତୁତ୍ୟା ଦେବୀ ବିରହିତ ବିଶ୍ୱବନ୍ଦନୀୟ—
ହେରି ସେହି ସୌମ୍ୟ ମୂର୍ତ୍ତି ଦେବ ବିକର୍ତ୍ତନ
ନୀରାଜନା ରୂପେ ଦେଖ ସୂର୍ଯ୍ୟ କାନ୍ତମଣି
ଭୂମିପୃଷ୍ଠେ ଜାଳିଲେଣି ଉଗାରି ଜ୍ୱଳନ
ପ୍ରାଚୀ ଫୁଟି, ଦିଶିଲେଣି ଦେବ ବିରୋଚନ
ସୁରେନ୍ଦ୍ର-ସିନ୍ଧୁର ଶିର-ସିନ୍ଦୂର-ଅରୁଣ
ସତେ ଅବା ବିଶ୍ୱକର୍ମୀ-ଶାଣଲୀଢ଼ ବପୁ,
ବିକର୍ତ୍ତନ ନାମ ଖ୍ୟାତ ଯା ଯୋଗୁଁ ଜଗତେ ।
ବହୁଥିଲା ଏ କାଳରେ ମଳୟ ପବନ,
ହସୁଥିଲେ ପୁଷ୍ପରାଜି ବିଟପିବୃନ୍ତରେ,
କିନ୍ତୁ ଶାଖାଗ୍ରରୁ ଗଙ୍ଗଶିଉଳି ସୁମନ
ଥପ ଥପ ପଡୁଥିଲା ତୁଷାର ସହିତେ ।
ସ୍ତବକ ସ୍ତନରେ ନତ ବଲ୍ଲୀନିଚୟ
ତରୁଦେହେ ବଲ୍ଲଭର ଅଙ୍କାଶ୍ରିତା ପରି
ନିଶାର ତୁଷାରଶୋଭ ନବ କିଶଳୟ-
ମୌକ୍ତିକଗୁମ୍ଫିତ ଗୁରୁ କର୍ଣ୍ଣିକାର ଯେନ,
ଭକ୍ତିଭରେ ନତ ଆଜି ବିବସ୍ୱାନ-ପଦେ ।
ଦେଖି ଏହି ବୈଚିତ୍ରିକ ବିଭବସମ୍ଭାର,
ପୁଷ୍ପୋଦ୍ଗମ ଛଳେ ଦେଖ ବନେ କୁରଅନା,
କଣ୍ଟକିତ ହୋଇଲାଣି ପ୍ରଣୟ ବିକାରେ,
ପ୍ରଭାତ ତୁଷାରାନିଳ ପରଶ ମାତ୍ରକେ ।
ବୃକ୍ଷ ଚୂଳେ ବସି ପିକ ସଙ୍ଗୀତ-ଲହରୀ
ଢାଳୁଅଛି, ସୁମଧୁରେ ବିଶ୍ୱବିମୋହନ
କୁକ୍କୁଟେ-ମଙ୍ଗଳ-ଭେରୀ ଭ୍ରମରଗୁଞ୍ଜନ
ବହି ଆଣୁଅଛି ଦୂରୁଁ ପରାଗ-ମଣ୍ଡନ
କୁସୁମ କେଦାରେ ଢଳ ଢଳ ଗନ୍ଧବହ ।
ସ୍ଥାଣୁ ଶିରେ ବର୍ଣ୍ଣ ତୋଳି ବର୍ହୀ ସମାଦରେ
ପ୍ରିୟା ଆଗେ ନାଚୁଅଛି ବେଗେ ଫେରି ଫେରି;
ନୀଳମଣିଜିଣା ପିଚ୍ଛ, ପ୍ରଭାତ କିରଣ,
ରଞ୍ଜୁଅଛି ବର୍ଣ୍ଣୋତ୍କୁଲେ ହି ଦିବମଣ୍ଡଳ

ବାସବବାଞ୍ଛିତ ଇନ୍ଦ୍ର-କୋଦଣ୍ଡ ସମାନେ ।
ପୂଷା ବନ୍ଦାପନାପାଇଁ ଉଷାର ଅଗ୍ରତେ
ପରାଗ-କୁଙ୍କୁମେ ଲିପ୍ତ କରି କଳେବର,
ମଲ୍ଲିକା-କୋରକ ଶଙ୍ଖ ବଜାଏ ମଧୁପ ।
ଏ ଉତ୍ସବେ ତୌର୍ଯ୍ୟତ୍ରିକ ସମ୍ପାଦିବାପାଇଁ
ମାଡ଼ୁଁ ଉଠି ମାତୋଦ୍‌ଭବା ସରସ୍ୱତୀ କୂଳେ
ମତ୍ତ କଳରବେ, ନିଜ ପ୍ରିୟାର ସଙ୍ଗତେ ।
ଉଇଁଲେଣି ବିଭାବସୁ ଘନବାଲ ଭେଦି
ସୌଦ୍ରାମଣୀ ପାରିଜାତ ଅବତଂସରୂପୀ;
ହିରଣ୍ମୟ ରଥେ ଭାନୁ ଅରୁଣ ସହିତେ
ମର୍ତ୍ତ୍ୟରେ ଅମୃତଧାରା କରନ୍ତି ବର୍ଷଣ ।
ଋତ୍ୱିକ ଉଦ୍ଗାତା ହୋତା ପୋତା ଅଧ୍ୱର୍ଯ୍ୟୁ
ସରସ୍ୱତୀ-କୂଳେ ମହା ଅଧ୍ୱର ପ୍ରାଙ୍ଗଣେ,
ଅରଣୀ ମନ୍ଥନେ ଆତହୋତ୍ରକୁ ଆହ୍ୱାନ,
ସମ୍ପାଦନ୍ତି ଯଜ୍ଞ, ବିଧି-ବିହିତ ସମ୍ମାନେ ।
କେ ଏ ଯୁଞ୍ଜାନଯୋଗୀ ସବିତା ଉଦ୍ଦେଶି
ତ୍ରିଷ୍ଟୁଭ ଗାୟତ୍ରୀ ଛନ୍ଦେ, ସୋମରସେ ମତ୍ତ,
ସୁଲଳିତ ତାନେ ମହା ପୁଲକ ଅନ୍ତରେ
ଗାଏ ମହାଗୀତ, ଧାୟି ବ୍ରହ୍ମାଣ୍ଡ ଈଶ୍ୱର ।
କେମନ୍ତେ ଏ ମହାଭାବ ଋଷି-ହୃଦାକାଶେ
ଧ୍ରୁବ ଜ୍ୟୋତିରୂପେ ଫୁଟି ମୋହିଲା ଅନ୍ତର;
ଦୂରବଂଶେ ଜ୍ଞାନ-ରବି ଉଦୟକୁ ହେଲା
ପୁଲକକଣ୍ଟ; ସତେ ଅବଗ୍ରହେ ମରୁପ୍ରାନ୍ତେ
ଉଦିଲା ଅମ୍ବରେ ଅବା ବାରିଦ-ପଟଳ ?
ଆବୃତ୍ତି କରିଲା ଯୁବା ସେହି ମହାଗୀତ;
ଗୀତରାଗେ ମୁଗ୍ଧା ହୋଇ ସେ ମୁଗ୍ଧା ରୂପସୀ
ବିଶ୍ୱପ୍ରେମେ ମତ୍ତ ହୋଇ ଆଲିଙ୍ଗି ପ୍ରିୟକୁ,
ଚୁମ୍ବିଲା ସରାଗେ ପକ୍ୱ-ବିମ୍ବ-ଯୁବାଧର ।
ପ୍ରତିଦାନେ ପ୍ରେମମଣି ଲଭି ଇଚ୍ଛାବତୀ,
ପ୍ରକୃତି ପୁରୁଷ ରୂପେ ଅନ୍ୟୋନ୍ୟ ମିଳନେ
ବୃଣ୍ୟହିତ-ବ୍ରତ-ବିଧି ସାଧିଲେ ଦମ୍ପତି ।



# Two Poems

BY

**Sri Chandrachudamoni Raja Harichandan Jagadeb,**

**Raja of Surangi.**

## ଖଳ

ଖ୍ୟାତ ପଞ୍ଚଭୂତେ ସୃଷ୍ଟି ସକଳ ମହୀରେ,
ଖଳଙ୍କୁ ସୃଜିଲେ ବିଧି କେ ଜାଣି କାହିଁରେ ।

ଯେଉଁ ଦିନ ନ ଗାଏ ସେ ପରଦୋଷ-ଗୀତା,
ସେ ଦିନ ଅମୃତ ଖାଦ୍ୟ ଲାଗେ ତାକୁ ପିତା ।

ଉଡ଼ିଯାଏ ସର୍ପ ବିଷ ପଦ ଗଦ ବଳେ,
ଖଳର ଔଷଧ ମାତ୍ର ନାହିଁ ଭୂମଣ୍ଡଳେ ।

ବନ୍ୟ ହିଂସ୍ର ଜନ୍ତୁ ହୁଏ ସ୍ନେହେ ବଶୀଭୂତ,
ଖଳର ପ୍ରକୃତି କିନ୍ତୁ ଅଦ୍ଭୁତ ଅଦ୍ଭୁତ ।

ଦୁଗ୍ଧ ପାନ କଲେ ସେହୁ ଉଗାରେ ଗରଳ,
ଶ୍ୱାନପୁଚ୍ଛ ପ୍ରାପ୍ତ କେବେ ନ ହୁଏ ସରଳ ।

କି ରସରେ ରସାଣିଛି ବିଧି ତା ରସନା,
କାଠବ୍ୟେ(୧) ଧାନୁଆ ଲଙ୍କା ନୁହେ ତ ତୁଳନା ।

ଖଳ ଗୁଣ ଅନୁଭବି ଭଞ୍ଜକୁଳ-ରବି
ଭଦ୍ରାପରିଣୟ କାବ୍ୟେ (୨) ଗାଇଛନ୍ତି କବି—



(୧) କଟୁତାରେ ।
(୨) ସୁଭଦ୍ରାପରିଣୟ କାବ୍ୟ ।

## ଦାରିଦ୍ର୍ୟ



୧

ରେ ଦାରିଦ୍ର୍ୟ ନାହିଁ କେହି ତୋ ପରି ଉଗାରି,
ତୋହ ଲାଗି ସିନା ନରେ ବୋଲାନ୍ତି ଭିଖାରି,
ଆଜ ଯେ ମୁକୁଟଧାରି,
ହୁଏ କାଲି ଆହା ସେହି ଭିଟୀରିଧିକାରୀ ।

୨

ସର୍ବତ୍ର ତୁ ପରିଚିତ ଯଥା ମୃତ୍ୟୁଦୂତ,
ଅଯାଚିତ ରଙ୍କ ଆଖ୍ୟା ପ୍ରଦାନେ ପ୍ରସ୍ତୁତ,
ପର ଅନ୍ନ ପର ବାସ
ଘଟାଉ ମାନବ ଭାଗ୍ୟେ କରି ବୁଦ୍ଧି ନାଶ ।

୩

ଆହା କେତେ କେତେ ଜ୍ଞାନୀ ମାନୀ ତୋର ବଶେ
ହରାଇ ସମ୍ମାନ କାଳ କ୍ଷେପନ୍ତି ବରଷେ,
ଅଟୁ ତୁ ଧର୍ମ ଅରାତି,
ଭିକ୍ଷୁକ ସଂଖ୍ୟା ବୃଦ୍ଧିର ମୁଖ୍ୟ ପକ୍ଷପାତୀ ।

୪

ବିପୁଳ ସମ୍ପତ୍ତିରେ ଯେ ଗୃହ ଆଜ ପୂର୍ତ୍ତି,
କାଲି ତୋ ଆଗମେ ହୁଏ ତା ଶ୍ରୀହୀନ ମୂର୍ତ୍ତି,
ବଡ଼ ସାନ ଭାବ ଭବେ
ସର୍ବଦା ଉଦ୍ଭବ ହୁଏ ତୋହର ପ୍ରଭବେ ।

୫

ତୋହର ରାଜତ୍ୱ ଯହିଁ ହୁଏ ବିସ୍ତାରିତ,
ଧନୀକ ଗୌରବ ତହିଁ ହୁଏ ନିର୍ବାସିତ,
ତୋର ଅଧିକାର ଯୋଗେ,
ନିରାମୟ ଲୋକ ସୁଦ୍ଧା ଭୋଗେ ନାନା ରୋଗେ ।

୬

କୋବିଦ କଳ୍ପନା ଶକ୍ତି ତୋ ଶକ୍ତି ନିକଟେ
ପରିଷ୍ଫୁଟେ ନୋହି ସଦା ରହେ ଅପ୍ରକଟେ,
ଶିଷ୍ଟ ପରାକ୍ରମଶାଳୀ
ତୋହ ଅଧିକାରେ ରହେ ନୀଚ ଅକ୍ଷି ପାଳି ।

୭

ଦୁର୍ବାର ବୁଭୁକ୍ଷାନଳେ କରି ବ୍ୟତିବ୍ୟସ୍ତ
କରାଉ ବଡ଼ ଲୋକଙ୍କୁ ଇତରଦ୍ୱାରସ୍ଥ,
ଭିକ୍ଷା ଲାଗି ଦ୍ୱାରେ ଦ୍ୱାରେ
ଭ୍ରମାଉ ତୁ ଆହା ତାଙ୍କୁ ଚିର ହାହାକାରେ ।

୮

ଜୀର୍ଣ୍ଣ ଛିନ୍ନ ବସ୍ତ୍ର ଭେକ ଭଳି ଏ ଉଭୟ
ଅଟନ୍ତି ତୋ ଶାସନର ପ୍ରଧାନ ଆଶ୍ରୟ,
ଯେଉଁ ଧର୍ମ ତୋତେ ଡରି
ନ ଚଳିଲା ହେଲା ତ ସେ ତୋର ପ୍ରଜା ସରି !

୯

ଅଜ୍ଞାତରେ ଅନୁକ୍ଷଣେ ଧର୍ମ ଭୋଗୀ ପାଶେ
ଜଗିଥାଉ ଅବସର ପାଇବାର ଆଶେ,
ଭାଗ୍ୟ ଦୋଷେ ସେ ସହାୟ
ପାଇବା ମାତ୍ରକେ ହରି ନେଉ ହାୟ ହାୟ !

୧୦

ତୋହ ଆବିର୍ଭାବ ମାତ୍ରେ ଲଜ୍ଜା ଅଭିମାନ
ପୁଣି ଶିକ୍ଷା ଦୀକ୍ଷା ଆଦି ହୁଏ ଅନ୍ତର୍ଦ୍ଧାନ,
କପାଁ ତୋ ଏ ଲୁମ୍ଫରତି,
ଦୃଷ୍ଟ ହେଲା କେ ଜାଣିବ ଅଛି କା ଶକତି ।



## A selection from the writings

OF

## Kuntalakumari Sabat L. M. P.

### ତାରା ପ୍ରତି



ଦୂର ଗଗନରେ ଜୁଳୁ ଜୁଳୁ ଚାହିଁ
ହସୁ ତୁହି କ୍ଷୁଦ୍ର ତାରା,
କ୍ଷଣକେ ହୃଦୟେ ପରଶି ମୋହର
କେତେ ଚିନ୍ତା ଆଣୁ ପରା ।

କେଉଁ ଦୂର ଦେଶେ ଅଛୁ ତୁ ତାରକା,
ଭାବି ଯାଇ କଥା ଉପୁଜଇ ଦକା,
ଚିନ୍ତା, ଜ୍ଞାନ ତହିଁ ହୁଏ ମୋର ଥକା,
କ୍ଷଣକେ ହୃଦୟେ ପଶଇ ଛନକା,
ସତେ କେତେ ତୁଚ୍ଛ ନର ଅହମିକା,
ତୁଚ୍ଛ ଦର୍ପ ମାତ୍ର ତା ଉପଜୀବିକା ।

ଅନନ୍ତ ବିସ୍ତୃତ ନୀଳାକାଶ ତଳେ
ହସୁ ତୁହି କ୍ଷୁଦ୍ର ତାରା,
ସାନ୍ତ ମୁଁ ମାନବ ବହେ ମୋ ପରାଣେ
ଅନନ୍ତ ଭାବନା-ଧାରା ।

ନୀରବ ନିଶୀଥେ ନଭସ୍ତଳ ଚାହିଁ
କୋଟି କୋଟି ତାରା କ୍ଷଣକେ ଦେଖଇଁ,
ନୀରବ ଆକାଶ ନୀରବ ଧରଣୀ
ଗମ୍ଭୀରେ ପ୍ରଶାନ୍ତେ ସତ୍ୟ ଦିବ୍ୟବାଣୀ,
ନୀରବତା ଭେଦି ଆସି ମୋ ପରାଣେ
ପଶେ ସେହି ସ୍ୱର ବାଜେ ଘନେ ଘନେ ।

କହିଯାଏ କାନେ କେତେ କେତେ କଥା,
ସତେ ମୁଁ ମାନବ ଛାର,
ଆସିଅଛୁ କାହୁଁ ଯିବି ମୁଁ କେଣିକି
କେଉଁ ଦେଶେ ମୋର ଘର ।

କାହିଁ ମୋ ଅସ୍ତିତ୍ୱ ବୁଦ୍‌ବୁଦ ସମାନ,
କ୍ଷଣେ ଫୁଟି କ୍ଷଣେ ଯାହା ହୁଏ ଲୀନ,
କ୍ଷଣକେ ହସଇ ସଜ ଫୁଲ ପରି
ଫେଇ ମୋର ରୂପ ଫେଇ ମୋର ଶିଖା,
ପରକ୍ଷଣେ କାହିଁ ଯିବ ମୁଁ ଉଭେଇ,
ପାରବୁ କି ତାରା, ପାରବୁ କି କହି ?

କାନ୍ଦି କାନ୍ଦି କହାଁ ବୁଲୁଅଛି ଭବେ,
ଜାଣିବାର ଇଚ୍ଛା କେତେ,
କେତେ ଶାସ୍ତ୍ର ପଢି କେତେ ତତ୍ତ୍ୱ ଘୋଡି
ବୁଝି ନ ବୁଝିଲି ସତେ ।

କାହିଁ ମୁଁ ମାନବ ଆସି ଏ ବିଦେଶେ
ଦୁଇଦିନ ପରେ ଫେରିଯିବ ଶେଷେ,
ଆସିଲି ମୁଁ କାହୁଁ, ଯିବ ମୁଁ କେଣିକି ?
କହି ତାରା, ମୁହିଁ ପାରିବି ଜାଣି କି ?
ଜଣାଇ ପାରୁ କି ନଭୋଦେଶବାସୀ,
କାହିଁ ମୋର ଘର କହାଁ ମୁଁ ପ୍ରବାସୀ ?

ଆସିଅଛି କେଉଁ ଦୂର ରାଇଜରୁ
କହିବୁ କି କ୍ଷୁଦ୍ର ତାରା,
କ୍ଷୁଦ୍ର ତୋର ହାସ୍ୟ ଗଗନର ପ୍ରାନ୍ତେ
କେତେ କଥା କହେ ପରା !

କହି ସତେ ମୋର ଅଛି ଜଣେ ମିତ୍ର,
ଅଦୃଶ୍ୟ ଅନନ୍ତ ପ୍ରେମରେ ବିଚିତ୍ର,
ନିମିଷେ ନିମିଷେ ଯା ପରଶ ପ୍ରାଣେ
ନବ ନବ ଆଶା ପ୍ରେମ ଭକ୍ତି ଆଣେ,
କରେ ଆକର୍ଷଣ ଗୋପନେ ଗୋପନେ,
ଦେଖେଁ ମୁଁ ଅଦୃଶ୍ୟ ମୂରତି ସ୍ୱପନେ,

ଲଳିତ ବୀଣାର ତାନେ
ମରମେ ପରଶି ଗାଏ କେତେ ଗୀତ
ବାଜିଯାଏ ସିଁତେ କାନେ ।

ଯାରେ ନାହିଁ ବୁଝି ସେ ଅବ୍ୟକ୍ତ ଭାଷା,
ତଥାପି ପ୍ରାଣରେ ଆକୁଳ ପିପାସା

ଯେନ ମରୁପଥେ ଧାଏଁ ମୁଗ୍ଧଁ ପାନ୍ଥ,
ମରୀଚିକା ଦେଖି କ୍ଷଣେ କ୍ଷଣେ ଭ୍ରାନ୍ତ,
କପାଁ ସେ ଭୁଲାଏ କପାଁ ସେ ପଳାଏ,
ସେହି ଜାଣେ କପାଁ ହସାଏ କନ୍ଦାଏ,

କ୍ଷଣେ ଦେଇ ହୃଦେ ଦେଖା,
ଲୁଚିଯାଏ କେଉଁ ଅଦୃଶ୍ୟ ଆକାଶେ
ହୃଦେ ରଖି ପଦରେଖା ।

ଅନୁସରି ଧାଇଁଯାଏ ପଦଚିହ୍ନ,
ଖୋଜି ବଣସାରି ହୁଏ କ୍ଳାନ୍ତ କ୍ଷୀଣ,
ଗୋପନେ ଆସି ସେ ସ୍ନେହ-କରସ୍ପର୍ଶେ
ହରନିଏ ଶ୍ରାନ୍ତି, ପ୍ରେମ ଭକ୍ତି ହର୍ଷେ
ଉଚ୍ଛୁଳେ ମୋହର ଏ କ୍ଷୁଦ୍ର ପରାଣ,
କପାଇଁ ବା ତାର ଏ ପ୍ରେମଭିଆଣ

ମୋହ ସଙ୍ଗେ, କହ ତାରି,
ଅଛି କି ତାହାର ଅଚ୍ଛେଦ୍ୟ ସମ୍ବନ୍ଧ,
କହ ଆଜି କହ ତ୍ୱରି ।

ସବୁ ପରିଶ୍ରମ ହେବ ମୋ ସଫଳ,
ଶୁଖିବ ମୋହର ନୟନରୁ ଜଳ,
ପାଇବି ଯଦି ମୁଁ ଦେଖା ଶ୍ରୀଚରଣ,
ଜୀବନେ ମରଣ କରିବି ବରଣ,
ମରି ମୁଁ ଜୀଇବି ଶୁଭକର୍ମ ଲାଗି
ତା ଶ୍ରୀପଦେ ସର୍ବ ଚିନ୍ତା ଦୁଃଖ ତ୍ୟାଗି,
ଥରେ ଥରେ କପାଁ ଦେଖା ଦଏ ସେହି,
ଉଭେଇ ଯାଏ ସେ କ୍ଷଣେ,
କେତେ କାନ୍ଦେ ମୁହିଁ ତାହାର ପଶ୍ଚାତେ
ଶୁଣି କି ସେହି ନ ଶୁଣେ ।

ସତ କହ ତାରି, ଏଡ଼େ ସେ ନିଷ୍ଠୁର,
ଶ୍ରୀଚରଣ ତଳୁ କରିବ ସେ ଦୂର,
ଭକତବତ୍ସଳ ପ୍ରଭୁ ଭଗବାନ
ଯୁଗେ ଯୁଗେ କହିଛନ୍ତି ମହାଜନ,
ଆଜି ସେହି ନିତ୍ୟ ସତ୍ୟ ପୁଣ୍ୟମୟ
ଦେବେ ପଦତଳେ ଅଭୟ ଆଶ୍ରୟ,

ପଦସ୍ପୃହା ଲାଗି ସିନା
ବିଜନ ଏ ମରୁ- ପ୍ରାନ୍ତରେ ବୁଲୁଛି,
ଗତି ନାହିଁ ତାହା ବିନା ।

କୌମୁଦୀଧଉତ ନୀରବ ଆକାଶ
ଧରୁଛି ଅଙ୍ଗେ କି ଧବଳ-ଶ୍ୱେତ-ବାସ,
ପୁଣ୍ୟ ଶ୍ରୀ ସୁନ୍ଦରୀ ତପସ୍ୱିନୀ ସମା
ଗମ୍ଭୀରେ ଉଚ୍ଚାର ଶାନ୍ତ ମନ୍ତ୍ର କ୍ଷମା
ଢାଳେ ପ୍ରତି ପ୍ରାଣେ ଶାନ୍ତିରସଧାରା,
ହସି ହସେ ତାହା ଦେଖୁଛି କି ତାରା,

ମୋର କ୍ଷୁଦ୍ର ପ୍ରାଣେ ଆଜ
ପରଶୁଛି ସେହି ଶାନ୍ତିସୁଧାରସ
ମର୍ମବୀଣା ଉଠେ ବାଜ ।

କେତେ କେତେ କଥା ଜାଗେ ମୋର ମନେ
ଦେଖି କ୍ଷୁଦ୍ର ରୂପ ସୁଦୂର ଗଗନେ,
କେତେ ଉଚ୍ଚେ ତୁହି ଅଛୁ କ୍ଷୁଦ୍ର ତାରା,
କ୍ଷୁଦ୍ର ନୋହୁ ତୁହି କେଡ଼େ ବଡ଼ ପରା,
କ୍ଷୁଦ୍ର ମୁହିଁ ତେଣୁ ଦିଶେ ମୋ ନୟନେ
କ୍ଷୁଦ୍ର ରୂପ ତୋର, ଭବେ ତେଣୁ ମନେ,

କ୍ଷୁଦ୍ର ମୋ ଧରଣୀଠାରୁ,
ଜକ ଜକ ତୋରା ମଣିଟି ପରାଏ
ରୂପଟି ଝଲୁଟେ ଚାରୁ ।

ହସୁ ଦିନା ତୁହି ଦୂର ନଭୋଭାଲେ,
ଦେଖୁଛୁ ସବୁ ଯା ଘଟେ କାଳେ କାଳେ,
କ୍ଷୁଦ୍ର ତୋର ତନୁ ଦିଶେ ମୋ ନୟନେ,
ଜାଣୁ ତୁ ଯାହା ମୁଁ ନ ଜାଣଇ କ୍ଷଣେ,
ଜାଣୁ କ୍ଷୁଦ୍ର ତାରା ଭବ-ଇତିହାସ,
ନର ସୁଖ ଦୁଃଖ ବ୍ୟସନ ବିଳାସ,

ଦେଖିଛୁ ତୁ ଧରାତଳେ,
ନ୍ୟାୟ ଅନ୍ୟାୟର ଜୟ ପରାଜୟ
ନ ଜାଣେ ଯା ବୁଦ୍ଧିବଳେ ।

ଜାଣୁ ତାରା ତୁମ୍ଭ କେମନ୍ତେ ଜଗତ
ସୃଷ୍ଟି ହୋଇଥିଲା, ନ ଜାଣେ ଯା ତତ୍ତ୍ୱ
କ୍ଷୁଦ୍ର ମୋର ବୁଦ୍ଧି, ଭୁଲେ ମୋର ଧନ୍ଦା
ବଡ଼ ସନ୍ଧଠାରୁ, ନାହିଁ ତାର ପନ୍ଥା,
କୋଟି କୋଟି ଧନ୍ଦା ଅଛନ୍ତି ଯା ସମ
ଦେଖୁଛୁ, ନ ଜାଣେ ଯାହା ମୁଁ ଅଜ୍ଞାନ,

ଅନନ୍ତ ଆକାଶ ବକ୍ଷ
ବିମଣ୍ଡିତ କରି ଅଛନ୍ତି ଅଦୃଶ୍ୟ
ଗ୍ରହ ତାରା ଲକ୍ଷ ଲକ୍ଷ ।

କାହିଁ ସୃଷ୍ଟି ଏତେ, ଭାବେଁ ବସି ମନେ,
କେମନ୍ତେ ରକ୍ଷିତ ଏ ଅନନ୍ତ ଶୂନ୍ୟେ,
ଏଡ଼େ ବଡ଼ ବିଶ୍ୱେ କେଡ଼େ କ୍ଷୁଦ୍ର ସ୍ଥାନ
ଅଟେ ମାତ୍ର ମୋର, ଜାଣେ କି ଅଜ୍ଞାନ,
ବୃଥା ମୁଁ ସ୍ୱପନ ଦେଖୁଅଛି କେତେ,
କେଡ଼େ କ୍ଷୁଦ୍ର ମୁହିଁ ସମସ୍ତ ଜଗତେ,

ଭାବିଲେ କ୍ଷୁଦ୍ରତା ମୋର,
ଆବେଗେ ନୟନୁଁ ବହିଯାଏ ନୀର
ଜାଗେ ହୃଦେ ଚିନ୍ତା ଘୋର ।

ସତେ କି ତାରକା, ଜାଣୁ ମୋର ତତ୍ତ୍ୱ,
କେଉଁ ଦେଶେ ପୂର୍ବେ ଥିଲା ମୋ ଅସ୍ତିତ୍ୱ,
ଅଥବା କେବଳ ଧୂଳି ମାତ୍ର ଜୀବ
ଅଣୁ ପରମାଣୁ ସଂଯୋଗେ ଉଦ୍ଭବ,
ସତେ କି ନଶ୍ୱର ଏ ବିଶ୍ୱ ନିୟତ,
ଯେତେ ଭାବେଁ ମନେ ନ ହୁଏ ପ୍ରତୀତ,

କହ ମୋତେ କ୍ଷୁଦ୍ର ତାରା,
ଅଣୁକଣା ମାତ୍ର ନୁହେ ଏ ଜଗତ
ଅନନ୍ତ ପ୍ରେମରେ ଭରା ।

ଜାଣୁଛ ତ ତାରା ଧନ୍ଦା ବିବରଣ,
ନିଖିଳ ଜଗତ ଦେଖେ ତୋ ନୟନ,
ଦେଖିଅଛୁ ତୁମ୍ଭ ଉତ୍ଥାନ ପତନ
ମାନବକୁଳର, ଦେଖୁ ଅନୁକ୍ଷଣ

କେତେ ରାଜ୍ୟ ଜୟ କଲେ କେତେ ଶୂର,
କେତେ ରାଜ୍ୟ ନାଶି କେତେ କର କ୍ରୂର,
ପଶୁ ପ୍ରାୟେ ବଧି ମାନବପରାଣ
କେତେ ରକ୍ତପାତ କଲେ ଅକାରଣ,

ଦେଖିଛୁ ନିଷ୍ଠଳେ ଥାଇ
କେତେ ଅତ୍ୟାଚାର          ନିର୍ଦ୍ଦୋଷପୀଡ଼ନ
ଇତିହାସେ ଯାହା ନାହିଁ ।

ଦେଖୁ ଯୁଗେ ଯୁଗେ ନର ଅହଙ୍କାର,
ଶିର ଟେକ ଉଚ୍ଚେ କରେ ସେ ଚିତ୍କାର
ପର ଗୁଣ ଦ୍ୱେଷି, ଆତ୍ମପ୍ରଶଂସାରେ,
ଦଳ ପଦତଳେ ଦୁର୍ବଳେ ସଂସାରେ
ବୋଲାଏ ମହତ, ଅନ୍ୟାୟ ଶାସନ
ଶୁଣିଅଛୁ କେତେ ପୃଥିବୀ ରୋଦନ,

ଅନ୍ୟାୟର ଭରେ ମହୀ
କେତେ ଛାରଖାର          ହୋଇଛି ଦେଖୁଛୁ,
ମୁଖେ ଯା ନୋହିବ କହି ।

ଦେଖିଅଛୁ ପୁଣି କେତେ ବୀର ଗୁଣୀ,
କେତେ ମହାରଥୀ କେତେ ଋଷି ମୁନି,
ଶୁଣିଅଛୁ ସେହି ଶାନ୍ତ ଆଶ୍ରମରେ
ରାମାୟଣ ଗାଥା ବାଲ୍ମୀକି ମୁଖରେ,
ଦେଖିଅଛୁ ତୁହି ଅନ୍ୟାୟ ଆହବ
ପାଣ୍ଡବଙ୍କ ସଙ୍ଗେ କଲେ ଯା କୌରବ,

ଶୁଣିଛୁ ପୁରାଣ ଗାଥା
ବେଦ ବେଦାନ୍ତର          ଓଁକାରନିର୍ଘୋଷ
ଅନନ୍ତ ନିର୍ବାଣ କଥା ।

ନିରଞ୍ଜନା କୂଳେ ମହାଦ୍ରୁମ ମୂଳେ
ଶାକ୍ୟସିଂହେ ତୁହି ଦେଖିଛୁ ନିଷ୍ଠଳେ,
ସପ୍ତବରଷର କଠୋର ତପସ୍ୟା
ଫେଡିବାକୁ ନରଦୁଃଖର ସମସ୍ୟା,
"ଅହିଂସା ପରମ ଧର୍ମ" ଏ ଜଗତେ
ପ୍ରଚାରିତ ଯେହୁ କଲେ ଲୋକହିତେ;

ଦେଖିଛୁ ସେ ଧର୍ମପ୍ରାଣ
ଅଶୋକ ନୃପତି— କୀରତିନିଚୟ
ଥିଲେ ଯେହ୍ନୁ ଦୟାବାନ ।

ଦେଖିଅଛୁ ପୁଣି ବୀର ସିକନ୍ଦର
ସମସ୍ତ ଜଗତ କରି ଅଧିକାର
ଏକଛତ୍ର ମହାସାମ୍ରାଜ୍ୟ ସ୍ଥାପନେ
କୃତକାର୍ଯ୍ୟ ନୋହି ମରି ବିଷପାନେ
କହି ଯାଇଥିଲେ, "ମୁକ୍ତ ରଖି କର
ଦେଖାଇବ ବୃଥା ନର ଅହଙ୍କାର,
ଯାଉଛି ମୁଁ ଶୂନ୍ୟ କରେ,
କେହି କିଛି ସଙ୍ଗେ ଘେନି ତ ନ ଯାଏ,
ଅଲୀକ ସବୁ ସଂସାରେ ।"

ଦେଖୁଅଛୁ ପୁଣି ଘୋର ମରୁଦେଶେ
ଋଷି ମହମ୍ମଦ ବିଭୁଙ୍କ ଆଦେଶେ
ପ୍ରଚାରିଲେ ପୁଣ୍ୟ ଧର୍ମ ଇସଲାମ
ଦୂର କରି ଘୋର ମୂର୍ତ୍ତିପୂଜାତମଃ,
ସମସ୍ତ ଆରବ ମନ୍ତ୍ରମୁଗ୍ଧ ସମ
ଶୁଣିଥିଲେ ଯାର ବାକ୍ୟ ଅନୁପମ,
ଦେଖିଅଛୁ କ୍ଷୁଦ୍ର ତାରା
ଶ୍ରୀକୃଷ୍ଣ ଚୈତନ୍ୟଙ୍କ ମହାପ୍ରେମ-ଧର୍ମ
ପ୍ରଚାରେ ପବିତ୍ର ଧରା ।

ଦେଖିଅଛୁ ପୁଣି ଶତ ନରପତି
ରଖି ଯାଇଛନ୍ତି ବିଶ୍ୱେ ଯେ କୀରତି,
ଆଜଯାଏ ଶୋଭେ ଯେ ତାଜମହଲ,
ଆଜଯାଏ ରାଜେ ରମ୍ୟ ନୀଳାଚଳ,
ଅଜଯାଏ କ୍ଷୁଦ୍ର ଉତ୍କଳ ବକ୍ଷରେ
ପୂର୍ବ ଶିଳ୍ପ-ଶୋଭା ଦେଖାଇ ଗର୍ବରେ
ରାଜଇ ମନ୍ଦିର ଶତ,
କାହିଁ ଆମ୍ଭେ ହୀନ ଉତ୍କଳୀୟ ଆଜ
ତୁଚ୍ଛ, ବଳହୀନ, ନତ !

ଶୁଣିଅଛୁ ପୁଣି ଶତ ପୁଣ୍ୟଗାଥା,
ଅପୂର୍ବ ସାହସ କର୍ତ୍ତବ୍ୟର କଥା,

ଦେଖିଅଛୁ ସେହି ଜ୍ୱଳନ୍ତା ନାବରେ
ପ୍ରାଣବିସର୍ଜନ କଲା ଅକାତରେ
ତେଜସ୍ୱୀ ତରୁଣ ସେ କାସାବିଏଙ୍କା
ପିତ୍ରାଦେଶେ ତେଜି ଜୀବନର ଶଙ୍କା,

ନେପୋଲିୟନ ମହାବୀର
ଅଦ୍ଭୁତ ଉନ୍ନତି ଦେଖିଅଛୁ, ସବୁ
କର ପାରେ ସୁଧୀ ଧୀର ।

ୱାଟର୍ଲୁର ସେ ସମର ଭୀଷଣ,
ଦେଖିଛୁ କେମନ୍ତେ କ୍ଷଣକେ ପତନ,
ବିଶ୍ୱାସଘାତକ, ଯା ପାପର ନାହିଁ
ପ୍ରାୟଶ୍ଚିତ୍ତ ଭବେ, ଦେଖିଲୁ ତୁ ଚାହିଁ,
କୂଟ ରାଜନୀତି ସବୁ ପାରେ କରି
କଳାକୁ ଧଳା ସେ ପଚାର ବଚାର,

ଦେଖିଅଛୁ ତାହା ପୁଣି,
ସ୍ୱାଧୀନତା ଲାଗି କଲେ ପ୍ରାଣପଣ
ଫ୍ରାଙ୍କଲିନ ବୀର ଗୁଣୀ ।

ଦେଖିଅଛୁ କେତେ ଗହନ କାନନେ
ଭ୍ରମିଛନ୍ତି ନର ଧର୍ମଜ୍ୟୋତି ଦାନେ,
ସୁଦୂର ଆଫ୍ରିକା ୟୁରୋପ ସୁଦୂର
ଅସମ ସାହସେ ଲଙ୍ଘି ପାରାବାର
ଲଙ୍ଘି ଗିରିବନ ନିଗ୍ରୋ କୁଟୀରରେ
ଜାଳିଛନ୍ତି ଧର୍ମଦୀପ କେତେ ନରେ,

ଦେଖିଅଛୁ ପୁଣି ଚାହିଁ,
ସ୍ୱାର୍ଥ ସାଧନାର ଆଶ୍ଚର୍ଯ୍ୟ ବିକାଶ
କଳଙ୍କିତ କଲା ମହୀ ।

ଭୀଷଣ ଦାସତ୍ୱ ପ୍ରଥା ସୃଜି ସୁଖେ
ଲଗାଇଲେ କେତେ କାଳି ଧର୍ମମୁଖେ,
କେତେ ଅତ୍ୟାଚାର କେତେ ଆର୍ତ୍ତସ୍ୱର
ପହଞ୍ଚ ନାହିଁ କି ସେ ତ୍ରିଦିବପୁର,
ଥିଓଡ଼ର ତହୁଁ ଆସି ଧରାତଳେ
ଦୂର କଲେ ତାହା ଦୟା ବୁଦ୍ଧିବଳେ,

ଦେଖିଅଛୁ ସତେ ତାହିଁ,
ପୁଣ୍ୟମୟୀ କେତେ ରମଣୀର କୀର୍ତ୍ତି
ସୀତା, ଦୁର୍ଗାବତୀ, ମୀରା ।

ପୁଣ୍ୟବତୀ ଦେବୀ ରାଣୀ ଭିକ୍ଟୋରିଆ,
ଅହଲ୍ୟା, ଫ୍ଲରେନ୍ସ ମୂର୍ତ୍ତିମତୀ ଦୟା
ଅନାଥରେ କେତେ ଦୟାଧର୍ମ ବହି
ପାଦପଦ୍ମ ସ୍ପର୍ଶେ ପୁଣ୍ୟ କଲେ ମହୀ;
ଦେଖିଅଛୁ ସତେ ଧରା ଅଳଙ୍କାର
ରମଣୀ ଚରିତ୍ର ସୁଷମାର ସାର,

ଶୁଣିଅଛୁ ତୁହି ତାହିଁ,
କେତେ କବିଙ୍କର ମଧୁମୟୀ ତାନ
ଉଚ୍ଛ୍ୱସିତ ପ୍ରେମଧାରା ।

ସାରଳା, ଉପେନ୍ଦ୍ର, କାଳିଦାସ ଆଦି,
ହୋମର, ହାଫେଜ, ଭବଭୂତି, ସାଦି,
ବାଇରେନ, ସେଲି, ମୂର, ଟେନିସନ୍,
ଗାଇଥିଲେ ଯେଉଁ ଗାଥା ମିଲଟନ୍,
ଶୁଣିଅଛୁ ଶତ ହୃଦୟ ଉଚ୍ଛ୍ୱାସ,
ଶ୍ରୀଚରଣ ତଳେ ସଙ୍ଗୀତବିଳାସ,

ଦେଖିଅଛୁ ପୁଣି ତୁହି
ଭୀଷଣ ସମର ସ୍ୱାର୍ଥସାଧନାରେ
ନାରଖାର କଲା ମହୀ ।

ଜ୍ଞାନବିଜ୍ଞାନର ଅଦ୍ଭୁତ କୌଶଳ,
ଜଳେ, ସ୍ଥଳେ, ନଭେ ତଡ଼ିତର ବଳ,
ବିନା ତାରେ ବାର୍ତ୍ତା ପ୍ରେରଇ ପଲକେ,
ସୃଷ୍ଟି ବିପର୍ଯ୍ୟୟ ଘଟାଏ କ୍ଷଣକେ,
ବାଷ୍ପୀୟ ତରଣୀ, ବାଷ୍ପୀୟ ଶକଟ
ନର ବୁଦ୍ଧି ଜ୍ଞାନ କରଇ ପ୍ରକଟ,

ବିହର ଅମ୍ବର ରାଜ୍ୟେ
କଳ୍ପନାର ବଳ କରେ ପରାଜିତ
ନର ଯାହା ସାଧେ କାର୍ଯ୍ୟେ ।

ପଶୁତ୍ୱ ଦେବତ୍ୱ ରାଜେ ନରଠାରେ,
ଅମର ହୁଏ ସେ ନିଜ କରମରେ,

ସମସ୍ତ ଶାସନ କରି ପାରେ ନର,
ସର୍ବନାଶ କିନ୍ତୁ କରେ ଅହଙ୍କାର,
ଅହଂଭାବ ତେଜି ହୋଇ ନମ୍ରଚିତ୍ତ
କରି ପାରେ ନର ଜୀବନ ମହତ,
ଉଦାର ବିମଳ ସ୍ନେହେ
ବାନ୍ଧି ପାରେ ବିଶ୍ୱ ନିଜ ହୃଦୟରେ,
ମହତ ଜୀବନ କହେ ।

ହେଉ ତାରି ମୋର ସେହି ଦିବ୍ୟଜ୍ଞାନ,
କରିବି ଯେସନେ ଏ ଜୀବନ ଦାନ
ବିଶ୍ୱସେବା ଲାଗି ହେଲେହେଁ ମୁଁ ହୀନ,
ନୁହେ ମାତ୍ର ବିଭୁ ଆଶିଷରେ ହୀନ,
ନ ଜାଣେ ଯିବି ବା କାହିଁ ମୋର ବାସ,
ଅଛି ମାତ୍ର ପ୍ରଭୁ ପଦ୍ମରେ ବିଶ୍ୱାସ,
ଧରି ରଖିଅଛି ତାହା
ଅନ୍ଧକାର ଭବ- ବିଷମ ଗହନେ
ସେ ଆଲୋକେ ଦିଶେ ରାହା ।

ନୋହିଲେ ତ ମୁହିଁ ହେବି ପଥହରା,
ଶୂନ୍ୟମୟ ମୋର ହେବ ସର୍ବଧରା,
ବ୍ୟର୍ଥ ଉନ୍ମାଦନା ଜାଗେ କି ପରାଣେ,
ଜନ୍ମ ଲଭି ନାହିଁ ନର ଅକାରଣେ,
ମହତ ଉଦ୍ଦେଶ୍ୟ ଅଛି ତା ଜୀବନେ,
ହେବ ତତପର ଯେହ୍ନେ ତା ସାଧନେ,
ନିରିଟନ ସମ ମାତ୍ର
ଜ୍ଞାନପାରାବାର ବେଳାଭୂମି ପଟର
ଉପଲେ ଭରଇ ପାତ୍ର ।

ସାରା ଜଗତର ଯେତେ ଜ୍ଞାନରାଶି
କ୍ଷୁଦ୍ର ମୋ ହୃଦୟେ ଧାରେ କି ବିକାଶି,
ପାରେ କିନ୍ତୁ କରି ହୃଦୟ ବିକାଶ
ପ୍ରଭୁପଦେ ରଖି ଅଟଳ ବିଶ୍ୱାସ,
ଈଶ ପ୍ରତିମୂର୍ତ୍ତି ମାନବ ଅନ୍ତରେ
"ରଙ୍ଗେ, ଜଣାଇବି ଯେସନେ ସଂସାରେ,

ଆସୁ ପ୍ରାଣେ ନବଶକ୍ତି
ଅଦୃଶ୍ୟ ଚରଣେ ଲଗ୍ନ ରଖି ନତି
ଉଚ୍ଛୁଳୁ ମୋ ପ୍ରାଣେ ଭକ୍ତି ।

କହ କହ ତାରା, ଆସିଛୁ କି ଭବେ
ଦୁଇଦିନ ପାଇଁ କାନ୍ଦିବି ନୀରବେ,
ହୃଦଭେଦୀ ତପ୍ତ ଶ୍ୱାସେ ଆୟୁ ମୋର
କ୍ଷୟ କରି ମୁହିଁ ତେଜିବି ସଂସାର,
ଆଉ କିଛି କାର୍ଯ୍ୟ ନାହିଁ କି ମୋପାଇଁ,
ମହତ୍ତ୍ୱ ଦେବତ୍ୱ ଦେଖି ଯିବି ଧାଇଁ,

ତେବେ କପାଁ ଏତେ ପ୍ରେମ
ହୃଦୟେ ଉଚ୍ଛୁଳେ ଆବେଗେ ଗୋପନେ
ବୃଥା ଯଦି ପରିଣାମ ।

ବୃଥା ଯଦି ମୋର ହୃଦୟ ଉଚ୍ଛ୍ୱାସ,
ବୃଥା ଯଦି ମୋର ଈଶ୍ୱରବିଶ୍ୱାସ,
ଏତେବଡ଼ ବିଶ୍ୱ ବୃଥାରେ ବୃଥାରେ
କିଏ କଲା ସୃଷ୍ଟି କହିବୁ କି ବାରେ,
ଧୂଳିରେ ଯଦିଚ ହୁଏ ତନୁ ଲୀନ,
ବିରାଜିତ ଥିବ ଆତ୍ମା ଚିରଦିନ,

ରବି କମଳର ପରି,
ଈଶ-ପୁଣ୍ୟ-ପ୍ରେମ- କରେ ଆତ୍ମା-ପଦ୍ମ
ଲଭିବ ସ୍ୱର୍ଗୀୟ ଶିରୀ ।

କହ ତାରା, ଯଦି ଏହି ଜ୍ଞାନ ମୋର
ଭ୍ରାନ୍ତ ବୋଲି କେହି କହେ ସୁଧୀବର,
ବୃଥା ଉନ୍ମାଦନା କହେ ଯେବେ କେହି,
ନାହିଁ ତିଳେ ଲଜ୍ଜା, କ୍ଷୋଭ, ଦୁଃଖ ତହିଁ,
କପରି ପ୍ରାଣରେ କରିବି ଧାରଣ
ଅନନ୍ତ ଶୂନ୍ୟତା ଜଡ଼ର ପ୍ରମାଣ,

ହେବି ଶେଷେ ଜଡ଼ବତ,
ତାଠାରୁ ବରଂ କର୍ତ୍ତବ୍ୟ ପଥରେ
ଧାଇଁ ଥିବି ଅବିରତ ।

ଜାଣେ ହେବ ମୋର ନସ୍ୱୃତ ପତନ,
ଲଭି ଦୁଃଖ କଳୁ କରିବ ଯତନ,
ଉଠି ପଡ଼ି ମୁହିଁ ଧାଇଁବି ଏକାଗ୍ରେ,
ପର୍ବତ ସମାନ ବିଘ୍ନ ଆସୁ ଅଗ୍ରେ,
ଅବହେଳି ତାହା, ଦଳି ପଦତଳେ
ଧାଇଁ ଯିବି ପ୍ରଭୁ ଶୁଭାଶିଷବଳେ,
ସମର୍ପି ହୃଦୟ ମନ
ପାଦପଦ୍ମ ତଳେ ଅନନ୍ତ ବିଶ୍ୱାସେ
ତେଜି ତୁଚ୍ଛ ଅହଂଜ୍ଞାନ ।

ହେଉ ବିଶ୍ୱସେବା ମୋ ଜୀବନ ବ୍ରତ,
ଆସୁ ବାଧା, ଆସୁ ଦୁଃଖ ଶତ ଶତ,
ନ ହୁଏ ଯେପରି ମୁଁ କ୍ଷଣେକ ନିରାଶ,
ହେଉ କର୍ମ ଲକ୍ଷ୍ୟ, ବିଭୁପଦେ ଆଶ,
କର୍ତ୍ତବ୍ୟ ମହତ, କର୍ତ୍ତବ୍ୟ ଉଚିତ
କଲି ତାରି, ଆଜି ଜୀବନେ ନିହିତ,
ମୋ ଜୀବନ ନୈଶାକାଶେ
ତାରାସମ ସଦା ଜଳୁ ଆଶାଜ୍ୟୋତିଃ,
ମାଗୁଣି ମୋ ବିଭୁପାଶେ ।



## Selections from the writings

OF

## Maharaja Sir Biramitrodaya Singha Deb K. C. I. E.

The Ruling Chief of Sonpur.

### ଋତୁସଂହାର

#### ଶରତ୍



ଉଦିଲା ଶରତ ଆଜ ନବବଧୂ ପରି ସାଜ,
ପକ୍ୱପ୍ରାୟ ଧାନ୍ୟଗୁଚ୍ଛ କୃଶ-ଅଙ୍ଗେ ତୁଳନା ।
କାଶପୁଷ୍ପ ବାସ-ତୁଲ୍ୟ, ବଦନ କମଳ ଫୁଲ୍ଲ,
ନୂପୁର-ବାଜଣା କଳ ହଂସରୁତେ ଲଳନା ।୧।
ଧରା କାଶ-ବିଭୂଷଣା, ରଜନୀ ଶଶି-ଶୋଭନା,
ଶୋଭେ ସରଃ କୁମୁଦରେ, ନଦୀ ହଂସକୁଳରେ ।
ବନାନ୍ତ କୁସୁମାନ୍ୱିତ, ସପ୍ତଚ୍ଛଦ ସୁଶୋଭିତ,
ଧବଳିତ ଉପବନ ମାଳତୀର ଫୁଲରେ । ୨ ।
ବାୟୁରେ ଶତଧା ଭିନ୍ନ ଲଘୁ ମେଘ ଅତି ଖିନ୍ନ,
ରଜତ, ମୃଣାଳ ଅବା ଶଙ୍ଖସମ ଦିଶିଲା,
ଯେହ୍ନେ ସେ ଚାମର ଶୁଭ୍ର ଦୋହଲାଇ ଏବେ ଅଭ୍ର
ଅତି ଧୀର ବ୍ୟଜନରେ ରାଜ-ଅଙ୍ଗ ତୋଷିଲା ।୩।
ଶଶିମୁଖୀ ନିଶା-ବାଳା ଦିବ୍ୟ ତାରକାର ମାଳା
ମେଘର ଅବଗୁଣ୍ଠନ କରି ଏବେ ମୋଚନ ।
ଚନ୍ଦ୍ରିକା ଦୁକୂଳ-ସରି ଅଙ୍ଗରେ ଲମ୍ବିତ କରି,
ବସୁଅଛି ବାଳା ଯେହ୍ନେ ଲଭି ରୂପ ମୋହନ ।୪।
ତଟିନୀ-ତରଙ୍ଗପରେ କାରଣ୍ଡବ କ୍ରୀଡ଼ା କରେ
କାଦମ୍ବ-ସାରସକୁଳ କୂଳଭୂମି ଲଭିଲା ।
ପଦ୍ମରେଣୁ-ଗନ୍ଧାକୁଳା ହଂସନାଦରେ ବିହ୍ୱଳା,
ମୋହିନୀ ତଟିନୀ ଏବେ ଜନମନ ମୋହିଲା ।୫।
କରି ମୃଦୁ ତରଙ୍ଗିତ ଶାଳି କ୍ଷେତ୍ର ଅଗଣିତ,
କୁରୁବକ-ପୁଷ୍ପଶାଖା ଦୋହଲାଇ ସତତ ।
ପଦ୍ମବନରେ ବିଚରି, ଫୁଲକୁ ଚଞ୍ଚଳ କରି,
ଅନିଳ ଆକୁଳ କଲା ଯୁବଚିତ୍ତ ପ୍ରମତ୍ତ । ୬ ।

( ୨ )

## ନୈଶଲୀଳା



ବୀତକ୍ଳାନ୍ତ ଧରଣୀକୁ କରି ପ୍ରମୁଦିତ,
ରମଣୀୟ ଚନ୍ଦ୍ରଦେବ ଏବେ ସମୁଦିତ ॥
ମିଳନ ସ୍ୱର୍ଗମର୍ତ୍ତ୍ୟର ହେବାରୁ ବିହିତ,
ନାଟକର ଅଭିନୟ ଯେସନେ ଅଭିନୀତ ॥
ଦର୍ଶନୀୟ ରଙ୍ଗମଞ୍ଚ ଶ୍ୟାମଳ ପ୍ରାନ୍ତର
ଯବନିକାପଟେ ତାର୍ ଚିତ୍ରିତ ସୁନ୍ଦର ॥
ଦେଖି ଅଭିନୟ ଅତି ପ୍ରସନ୍ନ-ଅନ୍ତରେ,
ବନଦେବୀ ଗାଉଛନ୍ତି ଗୀତ ପିକସ୍ୱରେ ॥
କନକ-କିରଣ-ଦୀପ୍ତ ରଙ୍ଗ-ମଞ୍ଚପରେ,
ବିଳାସିନୀ ନଟୀସମା ସୁଷମା ସଞ୍ଚରେ ॥
ବିଧୁର ମଧୁର କର ପରଶି ଧରଣୀ
ରସସିକ୍ତା ପ୍ରୀତିଯୁକ୍ତା ହିରଣ୍ୟବରଣୀ ।
ଚିତ୍ତପୁଲକରେ ନେତ୍ର ଅର୍ଦ୍ଧ-ନିମୀଳିତ,
ତରୁଣୀ-ଜୀବନ ହେଲା ପ୍ରେମ ଲଭି ପ୍ରୀତ ॥



( ୩ )

## ସନ୍ଧ୍ୟା

ପାଟଳ-ରାଗରେ ରଞ୍ଜିତା ସନ୍ଧ୍ୟା ସ୍ନିଗ୍ଧ ଆନନେ,
ଶର୍ବରୀର ଅଗ୍ରଦୂତୀ ସେ ଉଭା ହେଲା କାନନେ ।

ଯୁବତୀ ସେ ସୁରାଙ୍ଗନାଙ୍କୁ କରିବାକୁ ପୂଜନ,
ମଧୁ-ନାଦେ ଶତ ବିହଗ କରେ ସ୍ତୁତି-କୂଜନ ।

ସେବି ସେ ଦେବୀଙ୍କ ଚରଣ ବାୟୁ ସୁମନ୍ଦ-ଅତି
ହେଲା ଅକଳଙ୍କ-ଶରୀର, ଶୀତ ସୁଗନ୍ଧ ଅତି ।

କୁରଙ୍ଗ-କୁରଙ୍ଗୀ ନାଚିଲେ ଉତ୍ସବ-ଅବସରେ,
ତରୁ-ତଳାସ୍ତୃତ କୋମଳ ତୃଣ-ଦୁଲିଚା'ପରେ ।

ସରସୀ-ସଲିଳ ଭାସ୍ୱର ଶୋଭେ କାନନ-ତୀରେ,
ଦେବୀଙ୍କ ଦର୍ପଣ ଅମଳ ହୀରା-ଖଚିତ କି ରେ !

ଦେଖି ମୁଖ ସରେ ସୁନ୍ଦରୀ କଳାନାଥେ ନିନ୍ଦିଲା,
କୃଷ୍ଣ କୁନ୍ତଳରେ ତାରକା-ହାର ଗୁନ୍ଥି ପିନ୍ଧିଲା ।

କମ୍ପିତ ଅଞ୍ଚଳ ଉଡ଼ିଲା ଛାୟା-ତୃପ୍ତ ଅମ୍ବରେ,
ସୁରବୃନ୍ଦ ସେହି ସୁଷମା ଦେଖେ ମୁଗ୍ଧ-ଅନ୍ତରେ ।

ହେଲା ସନ୍ଧ୍ୟା ଦେବୀ-ପ୍ରତିମା ବିଶ୍ୱପଟେ ଅଙ୍କିତ,
ଗୀତ ହେଲା ନର-ଜଗତେ ସ୍ତୁତିମନ୍ତ୍ର-ସଙ୍ଗୀତ ।



( ୪ )

## ଚିତ୍ରୋତ୍ପଳା



ପୂତ-ଉତ୍କଳ-ରାଷ୍ଟ୍ର-ବାହିନୀ    ଉପଳ-ବକ୍ଷମେ ଅଚ୍ଛନ୍ଦବାହିନୀ
ବନ୍ଦେ ଚିତ୍ରୋତ୍ପଳା ଅମଳା,
ପ୍ରାନ୍ତର, ବନ, ଶୈଳ, ନଗରୀ    ଶୈତ୍ୟ-ସୁଖରେ ନନ୍ଦିତ କରି,
ଚାଲିଅଛୁ ଧାରା ପ୍ରବଳା ।
ପୂର୍ବ-କାଳେ ଘେନ ସେନାନୀ-ସହିତ    ଯେବେ ବୀରବର ଗୃହମାନ*-ପତି
ଆସିଥିଲେ ଦେଶ ଜୟରେ,
ଦେଖି ରମଣୀୟା ତଟିନୀ, ତ୍ୱରିତ    କରିଥିଲେ ପଥ-ଶ୍ରାନ୍ତ ବପୁରତ
ଏହି ସୁଶୀତଳ ପୟରେ ।
ଗୃହମାନ*-କୁଳ-ବୀରତ୍ୱ-କାହାଣୀ    ସେ ଦିନୁ ଗାଉଛି ପ୍ରବାହିନୀ-ବାଣୀ
କରି କଳ-ସ୍ୱରେ ଧ୍ୱନିତ,
ଶ୍ରବଣରେ ପଶି ଗୀତ-ଇତିହାସ    କରୁଅଛି ଚିତ୍ତେ ଆନନ୍ଦ-ବିକାଶ,
ଉଚ୍ଛ୍ୱସି ବକ୍ଷରେ ଶୋଣିତ ।
ଅନାର୍ଯ୍ୟରେ ଦେଶ ଥିଲା ପରିପ୍ଳୁତ    ହେଲା ଆର୍ଯ୍ୟ-ଧର୍ମ-କର୍ମରେ ସେ ପୂତ,
ପୂଜ୍ୟା ହେଲେ ଦେଶେ ଭାରତୀ,
ସେଥିପାଇଁ ଦିନା ନଦୀ ଚିତ୍ରୋତ୍ପଳା    ସ୍ୱର୍ଗଗତ-ବୀର-ତର୍ପଣେ ଅମଳା
ଧାରାରେ କରୁଛି ଆରତି ।
ସେହି ପୂଣ୍ୟ କଥା ଚିତ୍ରୋତ୍ପଳା ନଦୀ    ଚିର-ପ୍ରବାହରେ ଗାଉ ନିରବଧି,
ହେଉ ନଦୀ-ଗାଥା ପ୍ରବଳା
ପୁରାତନ-ଗୃହମାନ*-ବଂଶ-ଜାତ    କବିଙ୍କ ଏ ଗୀତ କରି ଜଗନ୍ନାଥ,
ନଦୀ-ଧାରା ପରି ଅମଳା ।



---

* ଚୌହାନ-ବଂଶର ସଂସ୍କୃତ ନାମ ଗୃହମାନ ।

( ୫ )

## ସତ୍ୟମ୍



ସ୍ନେହ, ଦୟା, ସୌଖ୍ୟ ଯାହା ହୃଦୟରେ ଜାତ,
ନୁହନ୍ତି କି ସ୍ରଷ୍ଟା ତାର ଦେବ ଜଗନ୍ନାଥ ?

ବିଧାତାଙ୍କ ଦାନ ଯେବା କହେ ସତ୍ୟ ନୁହେ,
ଧର୍ମତଃ ତେଣିକି ଥାଉ, ସେ ଯେ ପାପ-ବ୍ୟୂହେ

ଆବୃତ ହୋଇଣ କରେ ଭ୍ରାନ୍ତ-ଆରାଧନା;
ତତ୍ତ୍ୱ-ଜ୍ଞାନ-ଅନ୍ୱେଷଣେ ହେଲା ବାଟ-ବଣା ।

ନୁହେ ତ ଅଲୀକ କିମ୍ବା ମିଥ୍ୟା ମାୟାମୟ
ରଚନ୍ତି ଯା ଚିତ୍‌ସ୍ୱରୂପ ଦେବ ଦୟାମୟ ।

ଆତ୍ମା ନିତ୍ୟ ଅବିନାଶୀ; ହେଉ ଦେହ-ନାଶ,
ପ୍ରୀତି, ଧର୍ମ ଅମୃତଲୋକରେ କରେ ବାସ ।

ସ୍ମରି ସତ୍‌ସ୍ୱରୂପ ଦେବଙ୍କର ଶ୍ରୀଚରଣ,
ବିଶ୍ୱ-ସେବା-ବ୍ରତ ଆମ୍ଭେ କରିବୁଁ ଗ୍ରହଣ ।

ସ୍ନେହ-ସୌଖ୍ୟ ପୁଷ୍ପସମ ହୋଇ ବିକଶିତ,
ନର-ସେବା-ବାଟେ ହେବ ଦେବପଦେ ଜାତ ।



Printed by V. Kar. The Utkal Sahitya Press, Cuttack.